# କୁରୁକ୍ଷେତ୍ରରେ ଦ୍ୱୈପାୟନ

ମୂଳ ବଙ୍ଗଳା : ଦୀପକ ଚନ୍ଦ୍ର

ଅନୁବାଦ : ସ୍ୱରାଜ୍ୟଲକ୍ଷ୍ମୀ ମିଶ୍ର





ଡକ୍ଟର ଦୀପକ ଚନ୍ଦ୍ର (ଜନ୍ମ ୧୯୩୮ ନଭେମ୍ବର ୧୯ତା) ଭାରତୀୟ ସାହିତ୍ୟ ଓ ସଂସ୍କୃତିର ଜଣେ ବଳିଷ୍ଠ ନିରଳସ ଏକନିଷ୍ଠ ଗବେଷକ । ପେଶା ଅଧ୍ୟାପନା । ତାଙ୍କର ପ୍ରଥମ ମୁଦ୍ରିତ ରଚନା 'ସାପ୍ତାହିକ ସ୍ୱତନ୍ତ୍ର' (୧୯୬୨), ପ୍ରଥମ ମୁଦ୍ରିତ ଗ୍ରନ୍ଥ 'ମନୋଜବସୁ : ଜୀବନ ଓ ସାହିତ୍ୟ' (୧୯୭୦) । ପିଏଚ୍.ଡ଼ି. (୧୯୭୬), ଗବେଷଣାର ବିଷୟବସ୍ତୁ 'ବାଂଲା ନାଟକେ ଆଧୁନିକତା ଓ ଗଣଚେତନା' (୧୯୨୩-୧୯୭୦) । ମାଇକେଲ ମଧୁସୂଦନ ପୁରସ୍କାର (୧୯୮୫) 'ରାମେର ଅଜ୍ଞାତ ବାସ' ପାଇଁ ।

ରାମାୟଣ, ମହାଭାରତ, ହରିବଂଶର ପୁରାତନୀ କାହାଣୀଗୁଡ଼ିକର ନେପଥ୍ୟରେ ଯୁଗ ଯୁଗ ଧରି ଚଳି ଆସିଥିବା 'ଗ୍ରହଣ-ବର୍ଜନ'ର ଧାରାକୁ ସହୃଦୟ ଶିଳ୍ପୀର ଦୃଷ୍ଟିକୋଣ ଦେଇ ଡ. ଦୀପକ ଚନ୍ଦ୍ର କେବଳ ଯେ ପର୍ଯ୍ୟବେକ୍ଷଣ କରିଛନ୍ତି ତା' ନୁହେଁ, ବରଂ ପୁରାଣର ଘଟଣାଗୁଡ଼ିକୁ ସମାଜ ସଚେତନ - ଜୀବନମୁଖୀ ଉପନ୍ୟାସର ଶିଳ୍ପରୂପ ପ୍ରଦାନ କରିବାରେ ଅଭିନବତ୍ୱ ସୃଷ୍ଟି କରିଛନ୍ତି, ଯାହା ତାଙ୍କୁ ଜନପ୍ରିୟତାର ଶୀର୍ଷରେ ପହଞ୍ଚାଇ ପାରିଛି । ଭାଷାର ସରଳତା, ବିଷୟ ବିନ୍ୟାସର ପ୍ରାଞ୍ଜଳତା ତାଙ୍କ ଲେଖନୀର ବୈଶିଷ୍ଟ୍ୟ, ଯାହା ପାଠକର କୌତୂହଳ ଓ ଉତ୍କଣ୍ଠା ଜାଗ୍ରତ କରିବାରେ ସମର୍ଥ ହେବା ସଙ୍ଗେ ସଂଗେ ନୂତନ ସତ୍ୟର ଉପଲବ୍ଧି ସହିତ ଏକ ନୂତନ ଜଗତର ସଂଧାନ ଦିଏ ।

# କୁରୁକ୍ଷେତ୍ରରେ ଦ୍ୱୈପାୟନ

ମୂଳ ବଙ୍ଗଳା

ଦୀପକ ଚନ୍ଦ୍ର

ଅନୁବାଦ

ସ୍ୱରାଜ୍ୟଲକ୍ଷ୍ମୀ ମିଶ୍ର



କୁରୁକ୍ଷେତ୍ରରେ ଦ୍ୱୈପାୟନ

ମୂଳ ବଙ୍ଗଳା : ଡକ୍ଟର ଦୀପକ ଚନ୍ଦ୍ର

ଅନୁବାଦ : ଡକ୍ଟର ସ୍ୱରାଜ୍ୟଲକ୍ଷ୍ମୀ ମିଶ୍ର
'କୈବଲ୍ୟ', ବଳଗଣ୍ଡି, ବଡ଼ଦାଣ୍ଡ, ପୁରୀ

ପ୍ରକାଶକ : ବିଜୟିନୀ ପବ୍ଲିକେଶନ୍ସ
ଶଙ୍କରପୁର, ଅରୁଣୋଦୟ ମାର୍କେଟ୍, କଟକ - ୧୨

ପ୍ରଥମ ପ୍ରକାଶନ : ୨୦୧୪

ପ୍ରଚ୍ଛଦ : ରମାକାନ୍ତ ସାମନ୍ତରାୟ

ମୁଦ୍ରଣ : ସଙ୍ଗୀତା ପ୍ରିଣ୍ଟର୍ସ, କଟକ

---

Kurukshetrare Daipayana

Written by : Dr. Dipak Chandra

Translated by : **Dr. Swarajya Laxmi Mishra**
'Kaibalya', Balagandi, Badadanda, Puri - 1

Publisher : Bijayinee Publications
Shankarpur, Arunodaya Market, Cuttack - 753 012

First Edition : 2014

Cover Art : Ramakanta Samantaray

Printed at : Sangeeta Printers, Cuttack

---

Price : ₹. 150

ମୋର 'କୁରୁକ୍ଷେତ୍ରରେ ଦ୍ୱୈପାୟନ'
ଶ୍ରୀଯୁକ୍ତ ପୀତାମ୍ବର ପ୍ରଧାନଙ୍କ ହାତରେ ସମର୍ପଣ କରୁଛି,
ଯାହାଙ୍କଠୁ ମୁଁ ସାହିତ୍ୟର ଅ, ଆ ଶିଖିଛି...

ସ୍ନେହର,

ସ୍ୱରାଜ୍ୟ

# ଲେଖକଙ୍କ ଦୃଷ୍ଟିରେ

ମହାଭାରତର ବିଶାଳ କାନଭାସ୍‌ରେ ଲେଖା ହୋଇଥିବା ମୋର ଉପନ୍ୟାସଗୁଡ଼ିକ ମହାଭାରତର ଘଟଣା ଓ ଚରିତ୍ରର ଗୋଟିଏ ଗୋଟିଏ ଭିନ୍ନ ସ୍ୱାଦର ସୃଷ୍ଟି । କିନ୍ତୁ ଏହି କାହାଣୀରେ ଗୋଟିଏ ପ୍ରଧାନ ଚରିତ୍ରର ନୀରବ କାର୍ଯ୍ୟକଳାପକୁ କହିବା ପାଇଁ ଭୁଲି ଯାଇଥିଲି । ଦ୍ୱୀପବାସୀ ଅନାର୍ଯ୍ୟ ରମଣୀର କାନୀନର ପୁତ୍ର ମହର୍ଷି କୃଷ୍ଣ ଦ୍ୱୈପାୟନ ବେଦବ୍ୟାସ କେବଳ ମହାଭାରତର ରଚୟିତା ନୁହନ୍ତି, ନିଜେ ହିଁ ଜଣେ କୁଶୀଳବ । କହିବାକୁ ଭୁଲିଯାଇଛି, ସେ ହିଁ କୁରୁକ୍ଷେତ୍ର ଯୁଦ୍ଧର ସ୍ରଷ୍ଟା । କୃଷ୍ଣ ନୁହନ୍ତି । ମହାଭାରତ କାହାଣୀର ସୂଚନାରୁ ଶେଷ ପର୍ଯ୍ୟନ୍ତ ସେ ହିଁ ଅଛନ୍ତି । ଏତେ ପ୍ରଚ୍ଛନ୍ନ ଭାବେ ଅଛନ୍ତି ଯେ ତାଙ୍କୁ ଅନେକ ଥର ଖୁବ୍ ଅଳ୍ପ ସମୟ ପାଇଁ ଦେଖିବାକୁ ମିଳିଛି । କେତେବେଳେ ବି ମନେ ହୁଏନା ଯେ, ତାଙ୍କର କଳକାଠି ମୋଡ଼ିବାରେ ହିଁ ମହାଭାରତ ଯୁଦ୍ଧ ହୋଇଛି ବୋଲି ।

ଏହାର ଅର୍ଥ କେହି ଯେମିତି ମନେ ନ କରେ ମୁଁ ତାଙ୍କୁ ଅଶ୍ରଦ୍ଧା କରୁଛି । ବ୍ୟାସଦେବ ତ୍ରିକାଳଜ୍ଞ, ଭବିଷ୍ୟତ୍ ଦ୍ରଷ୍ଟା । ଐତିହାସିକ ତ ନିଶ୍ଚୟ । ଇତିହାସ ରଚନାରେ ସେ ନିରପେକ୍ଷ ନୁହନ୍ତି- କାହିଁକି ସ୍ୱୟଂ ପାଣ୍ଡବଙ୍କ ପକ୍ଷରେ ଅନେକ ସହାୟତା କରିଛନ୍ତି । କାହିଁକି ? ଧୃତରାଷ୍ଟ୍ର ଓ ପାଣ୍ଡବମାନଙ୍କ ସହିତ ତାଙ୍କର ସଂପର୍କ ତ ସମାନ । ତଥାପି ଧୃତରାଷ୍ଟ୍ର ଏବଂ ତାଙ୍କର ପୁତ୍ରମାନଙ୍କ ସବୁ କାର୍ଯ୍ୟର ସେ ବିରୋଧ ହିଁ କରିଥିଲେ । କାହିଁକି ? ତାଙ୍କ ଜୀବନରେ କ'ଣ କିଛି ଦୁଃଖ ଥିଲା ? ନିଶ୍ଚୟ କୋଉଠି ଗୋଟାଏ ବଡ଼ ବ୍ୟଥା ଲୁଚି ରହିଥିଲା । ଆଲୋଚ୍ୟ ଉପନ୍ୟାସରେ ମୁଁ କୃଷ୍ଣ ଦ୍ୱୈପାୟନଙ୍କ ଜୀବନର ସେଇ ଦୁଃଖ, କଷ୍ଟ, ବେଦନା, ବଞ୍ଚନାକୁ ଖୋଜି ଆବିଷ୍କାର କରିଛି ।

ମହାଭାରତ କୁରୁ ବା ପୁରୁ ବଂଶର ପାରିବାରିକ ଇତିହାସ । ଶାନ୍ତନୁଙ୍କଠାରୁ ତାର ସୂତ୍ରପାତ । ଏଇଠୁ ପୁରୁବଂଶର ଅଭ୍ୟନ୍ତରରେ ଏକ ନୂତନ ପ୍ରଜନ୍ମର ଉଦ୍ଭୂତ ହେଲା । ଏହାର ସ୍ରଷ୍ଟା ମହର୍ଷି କୃଷ୍ଣ ଦ୍ୱୈପାୟନ । ତେଣୁ ହିଁ ପୁରୁବଂଶର ନୂତନ କାଳର ବର୍ଣ୍ଣନା

ପ୍ରସଙ୍ଗରେ ଦ୍ୱୈପାୟନଙ୍କ ଜନ୍ମ ବୃତ୍ତାନ୍ତ ଆସିଛି ଅନିବାର୍ଯ୍ୟ ଭାବେ । କାହାଣୀକାରଙ୍କ ବର୍ଣ୍ଣନା ଅନୁସରଣ କଲେ ସ୍ପଷ୍ଟ ଜଣାଯାଏ ଯେ, ବ୍ୟାସଦେବ ଜାରଜ ପୁତ୍ର ହେଲେ ମଧ୍ୟ ତାଙ୍କ ଶରୀରରେ ପୁରୁବଂଶ ରକ୍ତର ବୁନ୍ଦାଏ ଛିଟା ଅଛି । ବୈଜ୍ଞାନିକ ବିଶ୍ଳେଷଣ ଦୃଷ୍ଟିରୁ ପୁରୁବଂଶର ଜିନ୍ ତାଙ୍କ ଶରୀରରେ ରହିଛି, ଏହା ବୁଝାଇବା ପାଇଁ ହିଁ ରାଜା ଉଶୀନରଙ୍କ ଗଳ୍ପ ଏଠାରେ ପ୍ରତିପାଦ୍ୟ । ପୁରୁବଂଶ ଉଦ୍ଭୂତ ନୃପତି ଉଶୀନର କାମମୋହିତ ହୋଇ ବଳପୂର୍ବକ ଅନାର୍ଯ୍ୟ ରମଣୀ ଆଦ୍ରିକାର କୌମାର୍ଯ୍ୟ ହରଣ କରିଥିଲେ । ଏହି ଅବାଞ୍ଛିତ ମିଳନରୁ, ଆଦ୍ରିକା ଗର୍ଭରୁ, ପୁରୁବଂଶର ରକ୍ତରୁ ଜନ୍ମ ହେଲା ସତ୍ୟବତୀର । ପରାଶର ମୁନିଙ୍କ କାମନା ଚରିତାର୍ଥ କରିବାକୁ ଯାଇ ସତ୍ୟବତୀଙ୍କ ଗର୍ଭରୁ ଯେଉଁ ଶିଶୁଟିର ଜନ୍ମ ହେଲା ସେ ମଧ୍ୟ ତା ଜନନୀ ନିକଟରୁ ଉତ୍ତରାଧିକାରୀ ସୂତ୍ରରେ ପୁରୁବଂଶର ରକ୍ତ ପାଇଲା । ସୁତରାଂ ପୁରୁବଂଶର ଉତ୍ତରାଧିକାରୀର ସଂକଟ ମୋଚନ କରିବାକୁ, ପୁରୁବଂଶର ରାଜମହିଷୀ ସତ୍ୟବତୀ ଗର୍ଭଜ ପୁତ୍ର ଦ୍ୱୈପାୟନଙ୍କ ଦ୍ୱାରା ଏକ ଜାରଜ ବଂଶ ସୃଷ୍ଟି କଲେ । କିନ୍ତୁ କ୍ଷେତ୍ରଜ ପୁତ୍ରମାନେ କେହି ଏକାବେଳକେ ବଂଶଛଡ଼ା ହେଲେ ନାହିଁ ।

ବିରୋଧର ସୂଚନା କିନ୍ତୁ ଏଇଠି । ଏହି ବିରୋଧ ଭୀଷ୍ମ ଏବଂ ଦ୍ୱୈପାୟନଙ୍କର । କହିଲେ ଅବଶ୍ୟ ଭୁଲ ହେବନି, କୁରୁକ୍ଷେତ୍ର ଯୁଦ୍ଧ - ଦୁଇ ଭାଇଙ୍କର ସେହି ବିରୋଧର ପରିଣତି । ଭୀଷ୍ମ ଓ କୃଷ୍ଣ ଦ୍ୱୈପାୟନ ଦୁଇ ଭାଇ । କିନ୍ତୁ ଦୁହିଁଙ୍କ ପିତାମାତା ଅଲଗା ଅଲଗା । ତଥାପି ଏମାନେ ଭାଇ ହେଲେ ପରସ୍ପରର । ଏମାନଙ୍କ ଭ୍ରାତୃତ୍ୱ ବନ୍ଧନର ସୂତ୍ର ସତ୍ୟବତୀ ।

ବିରୋଧର ଉତ୍ପତ୍ତି ବିଧି ନିର୍ଦ୍ଦିଷ୍ଟ ନିର୍ବନ୍ଧ । ମଣିଷର କୌଣସି ହାତ ନାହିଁ ଏଥିରେ । ତଥାପି ସତ୍ୟବତୀ ତାର ନିମିତ୍ତ ହେଲେ । ସଂକଟର ସୂତପାତ ଏଇଠୁ । ଶାନ୍ତନୁ ଓ ସତ୍ୟବତୀଙ୍କ ବିବାହ ଫଳରେ ଆର୍ଯ୍ୟ-ଅନାର୍ଯ୍ୟର ମିଳନ ଯେମିତି ଘଟିଥିଲା, ବିବାଦ ମଧ୍ୟ ସେମିତି ଚାଲିଥିଲା । ଭୀଷ୍ମଙ୍କ ସଂଗେ ସତ୍ୟବତୀଙ୍କର ଏବଂ ତାଙ୍କ ଗର୍ଭଜପୁତ୍ର ଅନାର୍ଯ୍ୟ ଦ୍ୱୈପାୟନଙ୍କର କାରଣ ସତ୍ୟବତୀଙ୍କ ପାଳକ ପିତାଙ୍କ ନିକଟରେ ପ୍ରତିଜ୍ଞାବଦ୍ଧ ହୋଇ ଭୀଷ୍ମ ଚିରକୁମାର ରହିଥିଲେ । ମହାଭାରତର କାହାଣୀରେ ଭୀଷ୍ମଙ୍କୁ ଯେତେ ମହତ ଭାବେ ପରିବେଷଣ କରାଯାଇଥାଉ ପଛକେ, ସତ୍ୟବତୀ କେବେ ବି ତାଙ୍କୁ ସେଭଳି ଦୃଷ୍ଟିରେ ଦେଖି ନାହାନ୍ତି । ମହାଭାରତରେ ଭୀଷ୍ମଙ୍କ ସହିତ ଦ୍ୱୈପାୟନଙ୍କ ସଂପର୍କ କିଭଳି ଥିଲା, ତାହା ମଧ୍ୟ ସ୍ପଷ୍ଟ ଭାବେ ଅଙ୍କା ଯାଇ ନାହିଁ । କିନ୍ତୁ ସେମାନେ ପରସ୍ପରର ପ୍ରତିଦ୍ୱନ୍ଦ୍ୱୀ ଥିଲେ । କୌରବ ପାଣ୍ଡବଙ୍କ ଶିବିରରେ ଦୁହେଁ ପୃଥକ୍ ପୃଥକ୍ ଭାବେ ଯୋଗ ଦେଉଥିଲେ । ଧୃତରାଷ୍ଟ୍ର, ପାଣ୍ଡବଙ୍କ ଉପରେ ଯେଉଁ ଅବିଚାର, ଅନ୍ୟାୟ, ଅପରାଧ କରନ୍ତୁ ନା କାହିଁକି, ଭୀଷ୍ମ କେବେବି ତାର ପ୍ରତିବାଦ କରି ନାହାନ୍ତି । ନୀରବ ଦର୍ଶକ ହିଁ ସାଜିଛନ୍ତି । କୂଟବୁଦ୍ଧିର କୌଶଳରେ

କିଏ କେତେ ମାତ୍ରାରେ ବିଜୟ ହାସଲ କରି ନେଇପାରେ ତା'ପାଇଁ ପାଣ୍ଡବମାନଙ୍କୁ ଗିନିପିଗ୍ ଭଳି ବ୍ୟବହାର କରାଯାଇଥିଲା ।

ଅଥଚ ଏମିତି ଯେ ଘଟିପାରେ ବା ଘଟିବା ସମ୍ଭବ ହୋଇପାରେ, ମହାଭାରତର ପାଠକଗଣଙ୍କ ମନରେ ତାର କୌଣସି ପୂର୍ବାଭାସ ନ ଥିଲା । ବେଦବ୍ୟାସ ଓ ଭୀଷ୍ମ ଦୁହେଁ ବ୍ରହ୍ମଚାରୀ, ଦୁହେଁ ଅକୃତଦାର । ଭୀଷ୍ମ ବିବାଦ କରିବେନି ବୋଲି ପ୍ରତିଜ୍ଞାବଦ୍ଧ । ଆରଜଣକ ଦ୍ୱୈପାୟନ । ସେ ତ ସାଧୁ, ସନ୍ନ୍ୟାସୀ ମଣିଷ । ସୁତରାଂ ଗୃହ ସଂସାର, ପୁତ୍ରକନ୍ୟା ନେଇ କୌଣସି ବିରୋଧ, ସଂଘାତ ଯେ ସେମାନଙ୍କ ଭିତରେ ହେବ ନାହିଁ ଏହାହିଁ ଥିଲା ପ୍ରତ୍ୟାଶିତ । କିନ୍ତୁ ଭାଇପୁଅମାନଙ୍କୁ ନେଇ ଲଢ଼େଇ / ସଂଘର୍ଷ ତୀବ୍ର ହେଲା । ଆଲୋଚ୍ୟ ଗ୍ରନ୍ଥରେ ତାର ମନସ୍ତତ୍ତ୍ୱ ଓ ଜାତିତତ୍ତ୍ୱର ଆଲୋକ ପକାଇ ଭୀଷ୍ମ ଓ ଦ୍ୱୈପାୟନଙ୍କ ଦୁଃଖ, ଯନ୍ତ୍ରଣା ଓ ବିରୋଧ ବିଦ୍ୱେଷର କ୍ଷେତ୍ରକୁ ଚିହ୍ନିତ କରିଛି ।

ମଣିଷର ସମସ୍ତ କର୍ମଧାରା ପଛରେ ଗୋଟିଏ କାର୍ଯ୍ୟକାରଣର ସଂପର୍କ ସର୍ବଦା କାମ କରିଥାଏ । ଡେସ୍‌ଡିମୋନାର ରୁମାଲ ହଜାଇବା ଭଳି ତୁଚ୍ଛ ଘଟଣାଟିଏ ଅଥେଲୋର ମନକୁ ମୁହୂର୍ତ୍ତକରେ ତ ବିଷାକ୍ତ କରିଦେଇପାରିଥିଲା । ସେହିଭଳି କୁତ୍ସିତ ଦର୍ଶନ ଅତୀବ କୃଷ୍ଣକାୟ ଦ୍ୱୈପାୟନଙ୍କୁ ବରଣ କରିବା ପାଇଁ ବିଚିତ୍ରବୀର୍ଯ୍ୟଙ୍କ ଶ୍ୱେତାଙ୍ଗିନୀ ପ୍ରଧାନ- ପାଟମହିଷୀ ଅମ୍ବିକା ମନରେ ଯେଉଁ ଅଜସ୍ର କୁଣ୍ଠା, ଦ୍ୱିଧା, ଜଡ଼ତା ଆଉ ଭୟ ସଞ୍ଚାର ହୋଇଥିଲା ତାହା ମୁହୂର୍ତ୍ତକରେ ବ୍ୟାସଦେବଙ୍କ ନିକଟରେ ଏକ ଭୟଙ୍କର କୃଷ୍ଣାଙ୍ଗ ଘୃଣାଜନିତ ଅପମାନ ଓ ପ୍ରତ୍ୟାଖ୍ୟାନର ଘଟଣା ହୋଇ ଠିଆ ହେଲା । ବ୍ୟାସଦେବଙ୍କ ମନ ଭିତରୁ ଅମ୍ବିକାର ଏହି ଅବହେଳାଜନିତ ନିଦାରୁଣ ଯନ୍ତ୍ରଣା ଆଉ କେବେ ବି ପୋଛି ହେଲା ନାହିଁ । ଅମ୍ବିକାର ଅପମାନ, ଅନାଦରର ସବୁ ଆକ୍ରୋଶ ଯାଇ ପଡ଼ିଲା ତା'ର ଅନ୍ଧପୁତ୍ର ଧୃତରାଷ୍ଟ୍ର ଉପରେ । ଭୟଙ୍କର ପ୍ରତିଶୋଧର ସ୍ପୃହାରେ ଦ୍ୱୈପାୟନ ଧୃତରାଷ୍ଟ୍ରଙ୍କ ପ୍ରତି ନିଷ୍ଠୁର ହେଲେ । ସମଗ୍ର ଜୀବନ ଧରି ଦ୍ୱୈପାୟନ ତାଙ୍କର କେବଳ ଅମଙ୍ଗଳ ଏବଂ କ୍ଷତି ହିଁ କାମନା କଲେ । ଗୋପନରେ ଭୀଷ୍ମ ମଧ୍ୟ ତାଙ୍କୁ ହସ୍ତିନାପୁରର ମାଟି ଓ ପରିବାରରୁ ଉତ୍‌ଖାତ କରିବାର ଚକ୍ରାନ୍ତରେ ଲିପ୍ତ ରହିଲେ । କିନ୍ତୁ ସତ୍ୟବତୀଙ୍କ ଅଧିକାର ସୂତ୍ରରେ ହସ୍ତିନାପୁର ଉପରେ ବ୍ୟାସଦେବଙ୍କର ଗୋଟିଏ ଦାବି ଓ ଅଧିକାର ଜନ୍ମିଥିଲା । କିନ୍ତୁ ଭୀଷ୍ମ ତାଙ୍କୁ ଗୋପନରେ ଉତ୍‌ଖାତ କରିବା ପାଇଁ ଯେଉଁ ଷଡ଼ଯନ୍ତ୍ର ଓ କୌଶଳ କଲେ ତାକୁ ବ୍ୟାସ ଭଲ ମନରେ ନେଇ ନ ଥିଲେ । ତେଣୁ ତାଙ୍କ ଅଧିକାର ଓ ଦାବି ଫେରି ପାଇବା ପାଇଁ ଦ୍ୱୈପାୟନ ନିଜ ଅଭ୍ୟନ୍ତରରେ ଭୀଷ୍ମଙ୍କ ସଂଗେ ଏବଂ ହସ୍ତିନାପୁର ସହିତ ଏକ ଗୋପନ ସଂଘର୍ଷରେ ଜଡ଼ିତ ହୋଇପଡ଼ିଲେ ।

କୁରୁକ୍ଷେତ୍ର ଯୁଦ୍ଧ ହିଁ ଏହାର ବିଷମୟ ଫଳ ।

କୁରୁକ୍ଷେତ୍ର ଯୁଦ୍ଧକୁ ମୁଁ ଅନ୍ୟାନ୍ୟ ଉପନ୍ୟାସରେ ଭାଇ ଭାଇ ମଧ୍ୟରେ ସଂଘର୍ଷ ଓ ଯୁଦ୍ଧ ବୋଲି କହିଛି । ଏଇଠି ବି ମୁଁ ତାର ବ୍ୟତିକ୍ରମ କରି ନାହିଁ । କେବଳ ଦ୍ୱନ୍ଦ୍ୱର ପରିବେଶ ଭୀଷ୍ମ ଓ ଦ୍ୱୈପାୟନଙ୍କ ମଧ୍ୟରେ ସୃଷ୍ଟ ହେଇଛି । ଗୋଟିଏ ମହାଭାରତ କାହାଣୀ ଓ ଯୁଦ୍ଧ ଏହି ଦୁଇ ଭାଇଙ୍କ ବିରୋଧ ଓ ବିଦ୍ୱେଷର ଫଳଶ୍ରୁତ । ଶ୍ରୀକୃଷ୍ଣ ରାଜନୈତିକ ଘଟଣାର ଦଉଡ଼ି (ଲଗାମ) ଧରିଥିଲେ କେବଳ । ଆଉ ବ୍ୟାସଦେବ ତାଙ୍କ ଭିତରକୁ ଜୀର୍ଣ୍ଣ କରିବା ପାଇଁ ଇନ୍ଧନ ଯୋଗାଇଥିଲେ ।

ଦୀପକ ଚନ୍ଦ୍ର

## ।। ଏକ ।।

ଅରଣ୍ୟର ସଂକୀର୍ଣ୍ଣ ପଥରେ ଦ୍ୱୈପାୟନ ଏକା ଏକା ଚାଲିଥିଲେ ହସ୍ତିନାପୁର ଅଭିମୁଖେ । ସଂସାରତ୍ୟାଗୀ, ସ୍ୱାବଲମ୍ବୀ, ଆତ୍ମନିର୍ଭରଶୀଳ, ଶାନ୍ତ ତପୋବନବାସୀ ସାଧକର ଅନ୍ତଃକରଣ ହଠାତ୍ ଜନନୀଙ୍କ ଆହ୍ୱାନରେ କିଛି ମାତ୍ରାରେ ଚଳଚଞ୍ଚଳ ହୋଇଉଠିଥିଲା । ବାଟ ଚାଲୁ ଚାଲୁ ଦ୍ୱୈପାୟନ ଏଇ କଥା ଚିନ୍ତା କରୁଥିଲେ । ବର୍ତ୍ତମାନ ସେ ଆଉ ବାଳକ ନୁହନ୍ତି - ବିଗତ ଯୌବନ ପ୍ରାୟ ପୁରୁଷ । ତଥାପି ଜନନୀଙ୍କ କଥା ମନେପଡ଼ିଲେ ଛାତି ଭିତରେ ସେ ଏକପ୍ରକାର ଯନ୍ତ୍ରଣା ଅନୁଭବ କରନ୍ତି । ଶ୍ୱାସ ପ୍ରଶ୍ୱାସ ଦ୍ରୁତ ହୁଏ । ଗୋଟାଏ ତିକ୍ତ ହତାଶାରେ ଖାଁ ଖାଁ କରେ ଚତୁର୍ଦ୍ଦିଗ ।

ସେ ଋଷି । ଋଷି ଜୀବନରେ ଲୌକିକ ହୃଦୟଚର୍ଚ୍ଚାର କୌଣସି ସ୍ଥାନ ନାହିଁ । ଜପ ତପ ନିୟମ ପାଳନର କଠୋରତା ଭିତରେ ଛାତିତଳର ସ୍ନେହ ପ୍ରେମର ପୁଷ୍କରିଣୀଟି ପ୍ରାୟ ଶୁଷ୍କ ହୋଇପଡ଼ିଛି । ଆବେଗ ମଧ୍ୟ ନିଃଶେଷ ହେଇଯାଇଛି । ସଂସାର ଏବଂ ପରିଜନମାନଙ୍କ ପ୍ରତି କୌଣସି ପ୍ରକାରର ଆନ୍ତରିକତାକୁ ସେ ଅନୁଭବ କରିପାରନ୍ତି ନାହିଁ । ତାହେଲେ... ଇଏ କି ପ୍ରକାର ଅସ୍ଥିରତା ତାଙ୍କୁ ଭିତରେ ଭିତରେ ବିବ୍ରତ କରି ତୋଳୁଛି ? ଇଏ କି ପ୍ରକାର ଅନୁଭୂତି ? ବ୍ୟଥା ନୁହେଁ, ବେଦନା ନୁହେଁ, ଜ୍ୱାଳା ବି ନୁହେଁ, ଗୋଟାଏ ଭିନ୍ନ ଧରଣର, ଓଜନିଆ ଛାତି ଭିତରେ ହୃତ୍‌ପିଣ୍ଡ ସହିତ ଝୁଲି ପଡ଼ିଲା ଭଳି ।

ନିସ୍ତବ୍ଧ ଅରଣ୍ୟର ଗଛ ଶାଖାରେ ଲୁଚିରହି କୋଉଠି ଗୋଟାଏ କୁମ୍ଭାଟୁଆ ଅବିରାମ ଭାବେ ଡାକୁଥିଲା । ବହୁଦୂର ପର୍ଯ୍ୟନ୍ତ ତା ଗୁମ୍‌ସୁମ୍ ଡାକର ଗୁମୁରା ଅରଣ୍ୟର ନିଶବ୍ଦତାକୁ ଭେଦ କରି ଦ୍ୱୈପାୟନଙ୍କ କାନରେ ଯାଇ ବାଜୁଥିଲା । ପକ୍ଷୀଟା ଆଖିରେ ନ ପଡ଼ିଲେ ବି ବାଦାମୀ ରଙ୍ଗର ଲୋମରେ ଆବୃତ୍ତ ତା ଶରୀର, ଦୀର୍ଘକଳା ଲାଞ୍ଜ, କଳାମୁଣ୍ଡ, କାଇଁଚ ଭଳି ଦୁଇଟି ଲାଲ ଆଖିକୁ କଳ୍ପନାଚକ୍ଷୁରେ ଦେଖିପାରୁଥିଲେ ଦ୍ୱୈପାୟନ । ବେଶ୍ କିଛି ଦୂର ଯିବା ପରେ ମଧ୍ୟ କୁମ୍ଭାଟୁଆର ଡାକ କାନରେ ବାଜୁଥିଲା ରହିରହି । ଅନ୍ୟମନସ୍କ ଭାବେ ଏ ପାଖ ସେ ପାଖ ହେଇ ଗଛର ଡାଳରେ ପକ୍ଷୀଟିକୁ ସେ ଖୋଜିଥିଲେ କିଛିକ୍ଷଣ ଧରି ।

ଦ୍ୱିପ୍ରହରର ପ୍ରଚଣ୍ଡ ସୂର୍ଯ୍ୟତାପରେ ଗଗନପବନ ଉତ୍ତପ୍ତ ହେଇ ଉଠିଛି । ଶୀତର ଚିହ୍ନ ବର୍ଣ୍ଣ ହିଁ ନାହିଁ, । ଖରାତାତିରେ ଦେହ ଜଳିଯାଉଛି । ତଥାପି, ଖରାର ତାପକୁ ବେଖାତିର କରି କୁମ୍ଭାଟୁଆର ଡାକକୁ ଶୁଣିବାକୁ ଲାଗିଲେ ।

କୁମ୍ଭାଟୁଆ କାହାକୁ ଡାକୁ ନ ଥିଲା । ହୁଏତ ଡାକିବା ଭଳି କେହି ତାର ନ ଥିଲେ । ତଥାପି, ସେଇ ଘନଘୋର ଜଙ୍ଗଲ ଭିତରେ ସେ ବଂଞ୍ଚି ରହିଛି - ଏକାନ୍ତ ଭାବେ ନିଃସଙ୍ଗ ଆଉ ନିଃସ୍ୱ ହେଇ ମଧ୍ୟ ସେ ବଞ୍ଚିଛି - ଏଇ କଥାକୁ ଜଣେଇ ଦେବାପାଇଁ ସେ ଯେମିତି ଅହରହ ଡାକି ଚାଲିଛି ଏବଂ ଦିଗଦିଗନ୍ତରେ ଏହି ବାର୍ତ୍ତାକୁ ପହୁଞ୍ଚେଇ ଦେବାପାଇଁ ସତେକି ଡାକି ଡାକି କହୁଛି - "ମୁଁ ଏକା, ଏକାନ୍ତ ଭାବେ ଏକା । ଛାତିରେ ମୋର ଏକାକୀତ୍ୱର ଛାତିଏ ଯନ୍ତ୍ରଣା । ଏଇ ହାହାକାର ହିଁ ତ ମୋର ପ୍ରତିଟି ମୁହୂର୍ତ୍ତର ସାଥୀ ।"

ବାଟ ଚାଲୁ ଚାଲୁ ଦ୍ୱୈପାୟନଙ୍କ ଛାତି ଭିତରଟା କେଜାଣି କାହିଁକି ଥରିଉଠିଲା । ଏ ତ ପକ୍ଷୀର କଥା ନୁହେଁ, ଏହା ଯେ ତାଙ୍କର ଗଭୀର ଅନ୍ତରର କଥା । ନିର୍ଜନ ଏଇ ବନଭୂମିର ପବନରେ ବତାସରେ ସେଇ କଥା ହିଁ ବିଞ୍ଚି ହେଇ ପଡ଼ିଛି । ସେଇ ମୁହୂର୍ତ୍ତରେ ଦ୍ୱୈପାୟନ ଅନୁଭବ କଲେ ସେ ମଧ୍ୟ ଏକା, ଭୀଷଣ ଭାବେ ଏକା, ଏଇ କୁମ୍ଭାଟୁଆ ଭଳି ଏକା । କିନ୍ତୁ ଏକଥା ଚିତ୍କାର କରି ଅନ୍ୟକୁ ଜଣେଇଲା ଭଳି କଥା ନୁହେଁ । ଏଇ ଫିସ୍ ଫିସ୍ ପବନ ଭଳି, ଫିସ୍ ଫିସ୍ କରି ଅନୁଭବ କରୁଥିଲେ ନିଜ ଛାତି ଭିତରେ । ନିଜ କଥା ଶୁଣେଇବା ପାଇଁ କେହି ଜଣେ ବି ତ ନ ଥିଲେ ତାଙ୍କର ଆପଣାର । ଯାହା ପାଖରେ ମୁହୂର୍ତ୍ତେ ବସି ମନକୁ ଖୋଲି ଦେଇ ହାଲୁକା କରିବେ । ଜନନୀଙ୍କର ଆସନ୍ନ ସାନ୍ନିଧ୍ୟର ପ୍ରତ୍ୟାଶାରେ ବୋଧହୁଏ ତାଙ୍କର ମନ ଚଳଚଞ୍ଚଳ ହେଇଉଠୁଥିଲା ।

ନିଜ ଭିତରର ଏହି ପ୍ରତିକ୍ରିୟା ସଂପର୍କରେ ସଚେତନ ହେଇ ଉଠିଲେ ଦ୍ୱୈପାୟନ । ଛାତି ଭିତରଟା କେମିତି ହେଇଯାଉଥିଲା । ସମଗ୍ର ଶରୀରରେ ଗୋଟାଏ ପୁଲକର ଅଜଣା ଆନନ୍ଦ । ଗୋଟାଏ ଉପଲବ୍ଧି । କଳ୍ପନାଚକ୍ଷୁରେ ଜନନୀ ସତ୍ୟବତୀଙ୍କର ଉଜ୍ଜ୍ୱଳ ମୁଖ ଭାସି ଉଠିଲା ହଠାତ୍ ଏବଂ ଛାତି ଭିତରର ହୃତ୍‌ସ୍ପନ୍ଦନ ଦ୍ରୁତଗତିରେ ଦମ୍‌ଦମ୍ ହୋଇ ବାଜିବାକୁ ଲାଗିଲା । ଏଇ ଛୋଟ କଳ୍ପନାଟି ସତେ ଯେମିତି ଦେବଲୋକର ସମସ୍ତ ସ୍ପର୍ଶ, ଗନ୍ଧ ଓ ଶବ୍ଦ ନେଇ ଆସିଲା ତାଙ୍କ ପାଖକୁ । ମନେହେଲା, ବାତ୍ସଲ୍ୟର ତୃଷ୍ଣା ସତେ କେତେ ଅନନ୍ତ । ତାର କୌଣସି ବୟସ ନାହିଁ । ସେଠି ସମସ୍ତେ ଶିଶୁ - ସବୁବେଳ ପାଇଁ । ଦ୍ୱୈପାୟନଙ୍କ ଭିତରେ ଏକ ବିଦ୍ୟୁତ୍‌ର ଶିହରଣ ଖେଳିଗଲା ମୁହୂର୍ତ୍ତକ ପାଇଁ ।

ମାତୃସ୍ନେହରୁ ବଞ୍ଚିତ ଯେଉଁ ଚିରନ୍ତନ ଶିଶୁଟି ଏତେଦିନ ଧରି ତାଙ୍କ ଭିତରେ ନିଦ୍ରିତ ଥିଲା ବାଲ୍ୟରେ ଜନନୀଙ୍କ ସଂସ୍ପର୍ଶ ମଧ୍ୟ ଯାହାର ନିଦକୁ ସଂପୂର୍ଣ୍ଣ ଭାବେ ଭାଙ୍ଗି ପାରିନଥିଲା, ସେଇ ନିଦ ଆଜି ହସ୍ତିନାପୁର ରାଜମହିଷୀ ହିଁ ଭାଙ୍ଗିବାରେ ସମର୍ଥ ହେଲେ । ସ୍ନେହରଙ୍କୁଣା

ମନ ଦୀନ ଦରିଦ୍ରଙ୍କ ଭଳି ଏମିତି ଅଧୀର ହେଇ ଉଠିଲା ଯେ, ଆବେଗରେ ମସ୍ତକ ନଇଁଗଲା । ଦ୍ୱୈପାୟନଙ୍କ ସମଗ୍ର ସତ୍ତା ଆଜି କେବଳ ଜନନୀଙ୍କୁ ହିଁ ଖୋଜି ବସିଛି ।

ଦଳେ ଟିଆ ଆଉ ମଇନାଙ୍କର କିଚିରି ମିଚିରି ଶବ୍ଦରେ ଅକସ୍ମାତ୍ ତନ୍ମୟତା ଭାଙ୍ଗିଗଲା ଦ୍ୱୈପାୟନଙ୍କର । ଆଖି ଦୁଇଟି ଅନୁସରଣ କଲା ସେଇ ଶବ୍ଦକୁ । ଝଲମଲ ଖରାରେ ସେମାନଙ୍କର ମସୃଣ ଡେଣା ଚକ୍‌ମକ୍ କରିଉଠୁଥିଲା । ଆପଣା ଖୁସିରେ ସେମାନେ ଡେଣା ଝାଡ଼ି ଥରେ ଥରେ ଚକ୍କର କାଟି ଡାଳ ଉପରେ ଯାଇ ବସି ପଡୁଥିଲେ; ପୁଣି ଡାଳରୁ ଡାଳକୁ ଉଡ଼ି ବୁଲୁଥିଲେ । କେତେବେଳେ ମୈଥୁନରେ ମଗ୍ନ ରହୁଥିଲେ ତ, ମଜ୍ଜି ଯାଉଥିଲେ ଶୃଙ୍ଗାରରେ ।

ଚଲାବାଟରେ ଦଳେ ଚିତଳ ଓ ହରିଣ ହଠାତ୍ କୌଣସି ଭୟରେ ଦୌଡ଼ିବାକୁ ଲାଗିଲେ । ସୂର୍ଯ୍ୟରଶ୍ମିରେ ତାଙ୍କର ବାଦାମୀ ରଂଗର ଝଲକ ଝଲସି ଉଠିଲା । ରାସ୍ତା ପାରି ହେଇ ଏକା ଦୌଡ଼ରେ ବଣ ଭିତରକୁ ପଶିଗଲେ । ସେମାନଙ୍କ ପଦପାତରେ ବଣର ଶୁଖିଲା ପତ୍ର ମଡ଼ମଡ଼ କରି ଉଠିଲା । ନିଜ ପାଦଶବ୍ଦରେ ନିଜେ ହିଁ ଚମକି ଉଠୁଥିଲେ । ଭୟରେ ଆତଙ୍କିତ ହେଇ ପଞ୍ଚାଏ ଡାହାଣପଟ ଜଙ୍ଗଲରୁ ବାମପଟ ଜଙ୍ଗଲକୁ ଧାଉଁଥିଲେ ତ ଆଉ ପଞ୍ଚେ ଅନ୍ୟଆଡ଼କୁ ଅବା କିଏ ଗୋଠଛଡ଼ା ହେଇ ଏକା ଏକା ଭୟରେ ଦୌଡୁଥିଲା ।

ହେମନ୍ତର ଏଇ ଦିପହର ଖରାରେ ଏକା ଏକା ଅରଣ୍ୟ ପଥରେ ବାଟ ଚାଲିବାକୁ ଦ୍ୱୈପାୟନଙ୍କୁ ଭୀଷଣ ଭଲ ଲାଗୁଥିଲା । ନିବିଡ଼ ଅରଣ୍ୟ ଭିତରୁ କେମିତି ଗୋଟାଏ ଆଶ୍ଚର୍ଯ୍ୟଜନକ ଫିସ୍‌ଫିସ୍ ଶବ୍ଦ ଭାସି ଆସି ପରିବେଶକୁ ରହସ୍ୟମୟ କରି ତୋଳୁଥିଲା । ପବନରେ ସାଇଁ ସାଇଁ ଶବ୍ଦ । ଏକୁଟିଆ ବାଟ ଚାଲିଲେ ଏଭଳି କେତେ କଣ ଭାବନା ଭାବି ହେଇଯାଏ ମନକୁ ମନ । ଚମତ୍କାର ବି ଲାଗେ ଭାବିବାକୁ । ଭାବୁ ଭାବୁ ସମୟ କୋଉ ବାଟେ ଚାଲିଯାଏ ମୋଟେ ଜାଣିହୁଏନା ।

ଦ୍ୱୈପାୟନଙ୍କର ମନେହେଲା, ଅରଣ୍ୟ ଭଳି ତାଙ୍କ ଛାତି ଭିତରେ ବି କିଏ ଯେମିତି ଫିସ୍‌ଫିସ୍ କରି ଅଜସ୍ର କାହାଣୀ କହିଯାଉଛି । ଆଖି ସାମ୍ନାରେ କେତେ ଚିତ୍ରବିଚିତ୍ର ଛବି ଆଙ୍କି ହେଇଯାଉଛି । ମୁଣ୍ଡ ଭିତରେ ଅସୁମାରି ଚିନ୍ତା ଖଣ୍ଡ ବିଖଣ୍ଡ ମେଘଭଳି ଭାସି ଚାଲିଛି ।

ଦାସପଲ୍ଲୀ, ଯମୁନାର ଉତ୍ତାଳ ଢେଉ, କୂଳରେ ବନ୍ଧା ହେଉଥିବା ଡଙ୍ଗା, ସୁନୀଳ ଆକାଶ । ପ୍ରଶାନ୍ତ ପ୍ରାନ୍ତର, ପାର୍ଶ୍ୱବର୍ତ୍ତୀ ଉଦାସୀନ ତାର ଭୂମି । ତୀରର ଅନତିଦୂରରେ ଦିଗନ୍ତବିସ୍ତାରି ବଣ ପାହାଡ଼, ଏଇସବୁ ଦୃଶ୍ୟ ଭିତର ଦେଇ ଉଙ୍କି ମାରୁଥିଲା ଜଣେ ଆର୍ଯ୍ୟ ଋଷିଙ୍କର ପ୍ରଶାନ୍ତ ମୁଖମଣ୍ଡଳ । ଅଥଚ ତାଙ୍କ ଭଳି ଶତ୍ରୁ ଦ୍ୱୈପାୟନଙ୍କର ଆଉ ଦ୍ୱିତୀୟ କେହି ନ ଥିଲେ । ସିଏ ଋଷି ପରାଶର । ପିତା ହେଲେ ମଧ୍ୟ ତାଙ୍କର ପରମ ଶତ୍ରୁ । ଏଇ ଶତ୍ରୁତା ରକ୍ତର ସଂସ୍କାର ଦେଇ ଅନ୍ତରର ଗଭୀରତମ ପ୍ରଦେଶରୁ ଜନ୍ମ ନେଇଥିଲା । ଚେତନାର

ସମସ୍ତ ଦ୍ୱାର ରୁଦ୍ଧ ସେଇ ଆବଦ୍ଧ କୋଠରି ଭିତରେ କିଏ ଯେମିତି ବ୍ୟାକୁଳ ଭାବେ ଡାକି ଉଠିଲା ମା-ମା- ବୋଲି । ଜନନୀଙ୍କର ଉଜ୍ଜ୍ୱଳ ମୁଖ ଭାସିଉଠିଲା ଦ୍ୱୈପାୟନଙ୍କ ଆଖି ଆଗରେ ।

ଦ୍ୱୈପାୟନଙ୍କ ଓଠରେ ଭାଷା ନ ଥିଲା । ଯନ୍ତ୍ରଣାବିଦ୍ଧ ଜିଜ୍ଞାସା ନିକଟରେ ସତେ ଯେମିତି ଉତ୍କର୍ଣ୍ଣ ମୂକଟିଏ ସେ । ଛଳଛଳ ଆଖିରେ ଗଭୀର ମାୟା ଆଉ କରୁଣା ବୋଳି ହୋଇ ରହିଥିଲା । ପରାଶରଙ୍କ ନିକଟରୁ ଭିକ୍ଷା ଚାହୁଁଛି ସେ, ତା' କଳାମାଣିକ କୃଷ୍ଣ ଦ୍ୱୈପାୟନଙ୍କ ଦୁଇ ଆଖିରୁ ଟପ୍‌ଟପ୍ ହୋଇ ଗଡ଼ିଆସୁଛି ଧାର ଧାର ଅଶ୍ରୁ । ସେଇ ନିରବ ଅଶ୍ରୁର ଧାରାରେ ପ୍ଲାବିତ ହୋଇଯାଉଥିଲା ମୁଖମଣ୍ଡଳ ଓ ଗଣ୍ଡଦେଶ । କୌଣସି ଶବ୍ଦ ନ ଥିଲା । ତଥାପି ସେ କାନ୍ଦି କାନ୍ଦି ଅଥୟ ହୋଇଯାଇଥିଲା । ଦୁଇ ବାହୁ ପ୍ରସାରିତ ହୋଇ ରହିଥିଲା ପୁଅ ଆଡ଼କୁ । ଭୂମିରେ ମଥାପାତି କେତେ କାକୁତି ମିନତି ଜଣେଇଥିଲା ସେ । ତେବେକେ ଆର୍ଯ୍ୟଋଷିଙ୍କ ପାଷାଣ ହୃଦୟ ତରଳି ନ ଥିଲା । କରୁଣାର ସଞ୍ଚାର ହୋଇନଥିଲା ତିଳେମାତ୍ର । କୃଷ୍ଣବର୍ଣ୍ଣ ଔରସଜାତ ପୁତ୍ର ପ୍ରତି ତାଙ୍କର କାଣିଚାଏ ହେଲେ ଅନୁକମ୍ପା ଜାଗ୍ରତ ହୋଇନଥିଲା । କାଳାନ୍ତକ ଭଳି ସେ ତାକୁ ଛଡ଼େଇ ନେଇଥିଲେ ମା'କୋଳରୁ । ମୂର୍ଚ୍ଛା ଯାଇଥିଲେ ଜନନୀ ।

ଏଇସବୁ ଦୃଶ୍ୟ ଏବଂ ଅନୁଭୂତି, ଯାହା ତାଙ୍କ ଭିତରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରୁଥିଲା । ହଠାତ୍ ତାହା ଯେମିତି ଗୋଟାଏ ଧକ୍କା ଦେଲା କୋଉଠି । ବିଚିତ୍ର ଧରଣର ଯନ୍ତ୍ରଣା ଛାତି ଭିତରେ ଟଣ୍ ଟଣ୍ ହୋଇ ଟଣକିବାକୁ ଲାଗିଲା । ଏକ ଦୁରନ୍ତ ଅଭିମାନ, ରାଗ, ବିଦ୍ୱେଷ ଆଦିର ଇନ୍ଧନ ପାଇ ହଠାତ୍ ଯେମିତି ଦ୍ୱିଗୁଣିତ ହୋଇଉଠିଲା ସେଇଟା । ମନ ବିଦ୍ରୋହ କରି ଉଠିଲା ପିତାଙ୍କ ଉପରେ; ଆର୍ଯ୍ୟମାନଙ୍କ ଉପରେ । ଏ ପ୍ରକାର ଅନୁଭୂତି ଆଚମକା ହିଁ ଉଦୟ ହେଲା ମନ ଭିତରେ । ଚାଲୁ ଚାଲୁ ସେ ବିସ୍ମୟରେ ଥମକି ଠିଆ ହୋଇଗଲେ କିଛି ମୁହୂର୍ତ୍ତ ପାଇଁ ପଥଧାରରେ । ତାଙ୍କର ଶାନ୍ତ, ହିସାବି ମନ କୌଣସି ବିଷୟରେ କେବେବି ଅସତର୍କ ନୁହେଁ । ତା'ହେଲେ ଏ ପ୍ରକାର ଧାରଣା ତାଙ୍କ ମନରେ ଜାଗ୍ରତ ହେଲା କାହିଁକି ? ତାର କୌଣସି ସୁସ୍ପଷ୍ଟ ଉତ୍ତର ତାଙ୍କୁ ଜଣା ନ ଥିଲା । ତଥାପି ଏଇ ଚିନ୍ତାଟା ମନ ଭିତରେ ବିଛେଇ ହୋଇ ପଡ଼ିଥିଲା – ମନେହେଉଥିଲା, ଯେମିତି କିଛି ଗୋଟାଏ ହେବ । କିଛି ଗୋଟାଏ ଘଟିବ ଜୀବନରେ । କିଛି ସ୍ୱସ୍ତିକର ଲାଗୁ ନ ଥିଲା । ବାରମ୍ବାର ମନେ ହେଉଥିଲା କିଛି ଘଟିବ, ଘୋଷରା ଛାଞ୍ଚର ଜୀବନଟା ହୁଏତ ନୂଆ ପ୍ରକାରେ ମୋଡ଼ ନେବ । ଏମିତି ଗୋଟାଏ ବିଚିତ୍ର ଭାବନାରେ ତାଙ୍କର ମନ ପ୍ରସରିଯାଉଥିଲା ଦୂରରୁ ଦୂରକୁ ।

ଦ୍ୱୈପାୟନର ବାରବର୍ଷ ବୟସ ବେଳର ଗୋଟାଏ ଘଟଣା ମନେପଡ଼ିଗଲା । ସେଇ ଦିନଟି ତାଙ୍କ ସ୍ମୃତିରେ ଏବେବି ସତେଜ ହୋଇ ରହିଛି ।

ବାହାରେ ମଧ୍ୟାହ୍ନର ଝାଇଁ ଝାଇଁ ଖରା । ସମଗ୍ର ପଲ୍ଲୀଟା ଯେମିତି ସୂର୍ଯ୍ୟଙ୍କର ପ୍ରଖର ରୌଦ୍ରତାପରେ ଝାଉଁଳି ପଡ଼ିଛି । ଚାରିଆଡ଼େ ନିର୍ଜନ, ଖାଁ ଖାଁ, ନିଛାଟିଆ, ଅଥଚ ଖରାରେ ଝଲମଲ । ଦୂରରୁ ଭାସି ଆସୁଥିବା କାପ୍ତାର ଉଦାସ ଡାକ କେମିତି ଗୋଟାଏ ଅଦ୍ଭୁତ ଶୂନ୍ୟତା ସୃଷ୍ଟି କରୁଛି ।

ପ୍ରଶସ୍ତ ଗୃହ-ସଂଲଗ୍ନ-ବାରଣ୍ଡାର ଗୋଟାଏ ବେଦୀ ଉପରେ ସତ୍ୟବତୀ ତାର ଦୁଇ ଆଣ୍ଠୁ ଉପରେ ମୁହଁ ରଖି ଚୁପ୍‌ଚାପ୍ ଗୁମ୍ ହେଇ ବସିଥିଲା । ତାର ଖୁବ୍ ନିକଟରେ ବସି ଦ୍ୱୈପାୟନ ମନକୁ ମନ ବିଦ୍ୟାଭ୍ୟାସ କରୁଥିଲେ ।

ଛାତି ତୀର ଧାରରେ, ବାରଣ୍ଡାର ରେଲିଂ ଉପରେ ପାରାବତମାନଙ୍କ ଗୁମୁରା ଏକ ଅଦ୍ଭୁତ ମାୟା ସୃଷ୍ଟି କରୁଥିଲା ।

ମଧ୍ୟାହ୍ନ ଅତିକ୍ରାନ୍ତ ପ୍ରାୟ । ସୂର୍ଯ୍ୟ ପଶ୍ଚିମଦିଗକୁ ଟିକିଏ ଢଳୁଥିଲେ । ତଥାପି ସୂର୍ଯ୍ୟଙ୍କ ଆଡ଼କୁ ଭଲ ଭାବରେ ଚାହିଁ ହେଉନଥିଲା । ମୁଣ୍ଡ ଉପରେ ନୀଳ ଆକାଶ ଧୁ ଧୁ କରୁଥିଲା । ସ୍ତବ୍ଧ ମଧ୍ୟାହ୍ନଟା ସତେ ଯେମିତି ଗୋଟାଏ ବିରାଟ ପ୍ରଶ୍ନବାଚୀ ଭଳି ଆଶ୍ଚର୍ଯ୍ୟରେ ଚାହିଁ ରହିଥିଲା ସତ୍ୟବତୀ ମୁହଁକୁ ।

ଦ୍ୱୈପାୟନଙ୍କର ପାଠପଢ଼ାରେ ମନ ଲାଗୁନଥିଲା । ଅନେକ ସମୟଧରି ଗଭୀର ଦୃଷ୍ଟିରେ ସେ ମା'ଙ୍କ ମୁହଁକୁ ଚାହିଁ ରହିଥିଲେ । ଅନ୍ୟମନସ୍କଭାବେ ହିଁ ମୁଣ୍ଡ ହଲେଇଲେ ସତ୍ୟବତୀଙ୍କୁ ଚାହିଁ । ସତରେ ସତ୍ୟବତୀଙ୍କ ଆଖି ଦୁଇଟି ଆଶ୍ଚର୍ଯ୍ୟ ଭାବେ ସୁନ୍ଦର । କି ଗଭୀର ମାୟା ସେ ଆଖିରେ । କେତେ ଛଳ ଛଳ ଆଉ କେତେ କରୁଣ । ଥରେ ଚାହିଁଲେ ଦୃଷ୍ଟି ଫେରେନା । ମନ ହୁଏନା ଫେରେଇବାକୁ ।

ସତ୍ୟବତୀ କିନ୍ତୁ ପୁତ୍ରକୁ ଦେଖିପାରୁ ନ ଥିଲା । ବାହାର ପ୍ରକୃତିକୁ ଚାହିଁଥିଲା । ଜନନୀଙ୍କର ଏଇ ନିର୍ବିକାର ଉଦାସୀନତା ଦ୍ୱୈପାୟନଙ୍କୁ ଟିକିଏ ଅଭିମାନୀ କରି ତୋଳିଲା । ମା' ଯେ କିଛି ଗୋଟାଏ ଗଭୀର ଦୁଃଖରେ କଷ୍ଟ ପାଉଛନ୍ତି, ଏ କଥା ସେ ବାଳକଟିଏ ହୋଇ ମଧ୍ୟ ବେଶ୍ ବୁଝିପାରୁଥିଲେ । ତେଣୁ ତାଙ୍କର ସମଗ୍ର ମନଧ୍ୟାନ ମା'ଙ୍କ ଆଡ଼କୁ ଟାଣି ହେଇ ଯାଉଥିଲା । ଛାତି ଭିତରଟା ଟଣକି ଉଠୁଥିଲା । ଅଜାଣତରେ ଦୀର୍ଘଶ୍ୱାସଟିଏ ଛୁଟିଆସିଲା । ମା'ଙ୍କର ଏଇ ନୀରବତାର ନିଶ୍ଚୟ ଗୋଟାଏ କିଛି ରହସ୍ୟ ଅଛି । ଏକଥା ଭାବିଲା ବେଳକୁ ସେ ଉଦ୍‌ବିଗ୍ନ ହେଇପଡୁଥିଲେ । ବିଷଣ୍ଣ କଣ୍ଠସ୍ୱର ମୁଖଶ୍ରୀରେ ବିମର୍ଷତାର ରେଖାଙ୍କିତ କଲା । ପାଠପଢ଼ା ଛାଡ଼ି ସେ ସତ୍ୟବତୀଙ୍କ କୋଳରେ ଘଷି ହେଇ ଠିଆ ହେଲେ ।

ସତ୍ୟବତୀ ଚମକି ଉଠେ । ବିବ୍ରତ ହୁଏ । ଅପ୍ରତିଭ ଭାବେ ହସେ ।

ଟିକିଏ କେମିତି ଆଶ୍ଚର୍ଯ୍ୟ ହୋଇ ସେ ପ୍ରଶ୍ନ କରନ୍ତି- ମା' ! ତୁମକୁ ଏମିତି ଗମ୍ଭୀର ଦେଖିଲେ ମୋର ଭାରି ଭୟ ହୁଏ । ଖୁବ୍ କଷ୍ଟ ଲାଗେ । ଏଇ କେତେଦିନ ହେଲା ଦେଖୁଛି, ତୁମେ କେମିତି ବଦଳି ଯାଇଛ ।

ସ୍ନିଗ୍ଧ ଓ ସ୍ମିତମୁଖରେ ସତ୍ୟବତୀ ଦ୍ୱୈପାୟନ ମୁଖକୁ ଅବାକ୍ ଆଖିରେ ଚାହିଁ ତାଙ୍କୁ ନିଜ କୋଳକୁ ଟାଣି ନେଇ ମୁଣ୍ଡ ଉପରେ ହାତ ବୁଲେଇ ସ୍ନେହସିକ୍ତ କଣ୍ଠରେ କହିଲା, ଦୂର୍, ପାଗଳା । ଚୁପ୍ ହେଇ ରହିଲେ ତୋତେ ବୋଧେ ଖୁବ୍ କଷ୍ଟ ଲାଗେ, ଦୁଃଖ ହୁଏନାରେ ? ଏସବୁ କେବଳ ତୋର ମନର ଭ୍ରମ, ଆଖିର ଭ୍ରମ । ଦ୍ୱୈପାୟନ ଅବାକ୍ ହେଇ ଚାହିଁଲେ ସତ୍ୟବତ୍ରୀଙ୍କ ଆଡ଼କୁ । ଅବୋଧ ଆଖିରେ ବିସ୍ମୟ ଭରି କହିଲେ, ଭ୍ରମ ବୋଲି କାହିଁକି କହୁଛ ମା' ? ଶରୀରରେ ବ୍ୟାଧି ଦେଖାଦେଲେ ତ ତାହା ନିଶ୍ଚୟ ପ୍ରକାଶ ପାଇବ । କୌଣସି ପ୍ରକାରେ ତାକୁ ଲୁଚେଇ ହେବନି । ସେଇଭଳି ମନର ପ୍ରତିକ୍ରିୟା ତାର ଆଚରଣରେ ପ୍ରକାଶିତ ହୁଏ । ଶୀତରେ ଦେହ ଥରେଇ ଦେଉଥିବା ଭଳି ଥଣ୍ଡା ପାଣି ଶରୀରର ଯେଉଁ ଅଂଶରେ ବି ଟିକିଏ ଲାଗିଲେ ସମଗ୍ର ଶରୀରଟା କମ୍ପିଉଠେ । ଶରୀରର ପରିବର୍ତ୍ତନଗୁଡ଼ିକ ସ୍ନାୟୁତନ୍ତ୍ରୀରେ ଏତେ ଦ୍ରୁତ ଭାବେ ଘଟେ ଯେ, ଆଖି ତାକୁ ଧରିପାରେନା । ଇନ୍ଦ୍ରିୟ ମଧ୍ୟ ବିଶ୍ଳେଷଣ କରିପାରେନା । ଅଭିବ୍ୟକ୍ତିମାନଙ୍କ ଭିତର ଦେଇ ତାର ସାମଗ୍ରିକ ରୂପ ଅନ୍ୟର ଆଖିରେ ଧରାପଡ଼େ । ମଣିଷର ଅଭିବ୍ୟକ୍ତି ତାର ଅନେକ ଆଚାର ଏବଂ ଆଚରଣର ସମଷ୍ଟି ମାତ୍ର ।

ପୁତ୍ରର ପ୍ରଜ୍ଞା ଓ ବିଚକ୍ଷଣତାରେ ସତ୍ୟବତୀ ଅବାକ୍ ହେଇଗଲା । ଅନେକ ସମୟ ପର୍ଯ୍ୟନ୍ତ କିଛି କଥା ଖୋଜି ପାଇଲାନି କହିବା ପାଇଁ । ତା'ପରେ ଧୀରେ ଧୀରେ କହିଲା- କୃଷ୍ଣ, ତୁ ଏତେକଥା ଜାଣିଛୁ ବାପ । ତୋର ଦର୍ଶନଜ୍ଞାନ ବାସ୍ତବରେ ମୋତେ ଚମତ୍କୃତ କରିଛି । ହେଲେ ପୁତ୍ର, ଜୀବନ ଓ ଦର୍ଶନ କେବେ କ'ଣ ଏକ ହୁଏ ? ଫୁଲର ସୌନ୍ଦର୍ଯ୍ୟ ତ ଉପଭୋଗ କରିବାପାଇଁ, ଦର୍ଶନ ଭିତରେ ଜୀବନର ଉପଭୋଗ ପାଇଁ କିଛି ନାହିଁ । ଫୁଲ ଆଉ ସୌନ୍ଦର୍ଯ୍ୟ ଭିତରେ ଯେଉଁ ତଫାତ୍, ଦର୍ଶନ ଓ ଜୀବନ ଭିତରେ ମଧ୍ୟ ସେଇ ପାର୍ଥକ୍ୟ । ମୋ ନୀରବତା ସହିତ ତୋର ମୁଖସ୍ଥ କରିଥିବା ଦର୍ଶନ ଜ୍ଞାନର କୌଣସି ସଂପର୍କ ନାହିଁ ପୁତ୍ର ।

ଦ୍ୱୈପାୟନ ଟିକିଏ ବି ଦବିଲେନି । ବରଂ ଉତ୍ସାହିତ ହେଇ ଦୃଢ଼ ସ୍ୱରରେ କହିଲେ- "ସଂପର୍କ ଅବିଚ୍ଛେଦ୍ୟ । ତୁମେ ସେଇ ପାର୍ଥକ୍ୟ ଲକ୍ଷ୍ୟ କରିପାରୁନ । ମୁଖ ହେଉଛି ମନର ଦର୍ପଣ । ମନର ଅତଳତଳେ ନିରନ୍ତର ଯେଉଁ ନାନାବିଧ ପ୍ରତିକ୍ରିୟା ସୃଷ୍ଟି ହେଇ ଚାଲିଛି, ତାର ଛାୟାପାତ ଘଟୁଛି ସେଇ ମୁଖମଣ୍ଡଳରେ । ମୁଖର ଖୁବ୍ ନିକଟରେ ଦର୍ପଣଟିଏ ଧରିଲେ ବି ସେକଥା ସ୍ପଷ୍ଟ ଭାବେ ଧରାପଡ଼େ ନାହିଁ, ଅଥଚ ଦର୍ପଣକୁ ଟିକିଏ ଦୂରେଇ ଧରିଲେ, ତେବେ ଯାଇ ତାହା ସ୍ପଷ୍ଟ ଓ ସୁନ୍ଦର ଭାବେ ଫୁଟିଉଠେ । ଜୀବନ ସଂଗେ ଦର୍ଶନର ଏତିକି ପାର୍ଥକ୍ୟ, ଏଇମାତ୍ର ଦୂରତ୍ୱ । ଯେଉଁ ପ୍ରଦୀପଶିଖାଟି ସ୍ଥିର ହେଇ ଜଳି ଚାଲିଛି, ତାହା ଗୋଟିଏ ଶିଖା ବୋଲି ପ୍ରତୀୟମାନ ହେଲେ ମଧ୍ୟ ପ୍ରକୃତରେ ତାହା ନୁହେଁ । ପ୍ରତିଟି ମୁହୂର୍ତ୍ତରେ

ଶିଖାଟି ଜଳି ନିଃଶେଷ ହେଇସାରି ଆଉ ଏକ ନୂତନ ଶିଖାକୁ ସୃଷ୍ଟି କରୁଛି । ଜୀବନ ଓ ଦର୍ଶନ ସହିତ ସଂପର୍କ ଅନେକାଂଶରେ ଏହିଭଳି ମା' । ତେବେ ତର୍କ ଥାଉ, ଦର୍ଶନ ବିଷୟରେ ଜ୍ଞାନ ଦେବା ପାଇଁ ମୁଁ ତୁମ କଷ୍ଟର କଥା ଜାଣିବାକୁ ଚାହିଁନଥିଲି । କେବଳ କହୁଥିଲି ଯେ, ତୁମ ମନ ବଡ଼ ଅଶାନ୍ତ, କାହିଁକି ମା', କ'ଣ ହେଇଛି ?

ସତ୍ୟବତୀ ଗଭୀର ଦୃଷ୍ଟି ତୋଳି ପୁଅ ମୁହଁକୁ ଚାହିଁଲା । ଆଖିର ତାରା ଆନନ୍ଦରେ ଚମକି ଉଠିଲା । ଓଠ ଦୁଇଟି ଈଷତ୍ ଥରିଗଲା । ମାୟାବୀ ଦୃଷ୍ଟି ନେଇ ଏକ ଅଦ୍ଭୁତ ଆଖିରେ ସେ ଦ୍ୱୈପାୟନଙ୍କୁ ଟିକିନିଖି କରି ଦେଖିବାକୁ ଲାଗିଲା । ଅନେକକ୍ଷଣ ପର୍ଯ୍ୟନ୍ତ ପାଟିରୁ କଥା ସ୍ଫୁରିଲା ନାହିଁ । ସଜଳ ହେଲା ଆଖିପତା । ମନ କିନ୍ତୁ ଆନନ୍ଦରେ ଅଧୀର ହେଇ ଫାଟି ପଡୁଥିଲା । ସନ୍ତାନର ଅପ୍ରତ୍ୟାଶିତ ସାଫଲ୍ୟରେ ମା'ର ମୁଖମଣ୍ଡଳରେ ଯେଉଁ ତୃପ୍ତି ଓ ଆଖିରେ ବିସ୍ମୟ ଫୁଟି ଉଠେ, ସେଇଭଳି ଗୋଟିଏ ପ୍ରଶାନ୍ତିରେ ଆଛନ୍ନ ହେଇଯାଉଥିଲା ତା'ର ସମଗ୍ର ସତ୍ତା । କଥା କହିବାକୁ ଯାଇ ଦୀର୍ଘଶ୍ୱାସଟିଏ ଛାଡ଼ିଲା ଏବଂ ମୃଦୁମଧୁର ସ୍ୱରରେ କହିଲା, କୃଷ୍ଣ ତୋର ମେଧା ମୋତେ ଆଶ୍ଚର୍ଯ୍ୟ କରିଛି । ମୋର ସବୁ ଯୁକ୍ତି ତୋର ବ୍ୟାଖ୍ୟା ଓ ବିଶ୍ଳେଷଣ ନିକଟରେ ହାର ମାନିଛି । ମୋର ବୁଦ୍ଧିବଣା ହେଇଯାଉଛି । କ'ଣ କହିବି ? ଦିନେ ଏହି ପୃଥିବୀର ଜଣେ ଶ୍ରେଷ୍ଠ ବ୍ୟକ୍ତି ହୁଅ, ଏହି ଆଶୀର୍ବାଦ କରୁଛି । ତୋର କୀର୍ତ୍ତି ଚିରକାଳ ଅକ୍ଷୟ ରହୁ । ମହାକାଳର ମଧ ଯେମିତି ସାଧ ନ ହୁଏ, ତୋର ଅମର କୀର୍ତ୍ତିର କେଶାଗ୍ର ସ୍ପର୍ଶ କରିବାକୁ । କୃତି ପୁତ୍ରର କୀର୍ତ୍ତିରେ ଜନନୀ ମଧ ଧନ୍ୟ ହେବ । ଏହି ସୁଖ ଟିକକ ମୋର ସକଳ ଦୁଃଖଯନ୍ତ୍ରଣା ଭିତରେ ଉଜ୍ଜ୍ୱଳ ପ୍ରଦୀପଟିଏ ହେଇ ଜଳିଉଠୁଥିବ । ତୁ ମୋର ବିପର୍ଯ୍ୟସ୍ତ ଜୀବନ୍‌ର ଭଙ୍ଗା କୁଡ଼ିଆରେ ସାନ୍ତ୍ୱନାର ଶୀତଳ ଚନ୍ଦ୍ରାଲୋକ । ସେଇ ଟିକକ ହରାଇବାର ଭୟରେ ତ ମୋ ମନ ଆଜି ଏତେ ଅସ୍ଥିର ହେଇପଡ଼ିଛି ।

ସତ୍ୟବତୀର କଥା ଶୁଣୁ ଶୁଣୁ ବାଳକ ଦ୍ୱୈପାୟନଙ୍କ ସମଗ୍ର ଶରୀର ସିରସିରେଇ ଉଠିଲା । ଛାତି ଭିତରେ ଜଳପ୍ରପାତର ଭୟଙ୍କର ଶବ୍ଦ ହେଲା । ଜନନୀଙ୍କ ମୁହଁକୁ ଚାହିଁ ମୃଦୁ ହସିଲେ । ସତ୍ୟବତୀ ମଧ ସ୍ନିଗ୍ଧ ମୁଖରେ କ୍ଷୀଣ ହସର ଭାବଟିକୁ ଅତୁଟ ରଖି ଯେତେବେଳେ କଥା କହୁଥିଲା, ସେତେବେଳେ ଏକ ଆଶ୍ଚର୍ଯ୍ୟ ପରିତୃପ୍ତିର ଉପଲବ୍ଧିରେ ଦ୍ୱୈପାୟନଙ୍କ ସମଗ୍ର ଚେତନା ଆଛନ୍ନ ହୋଇ ଉଠିଥିଲା । ସତ୍ୟବତୀଙ୍କ ଖୁବ୍ ନିକଟରେ ଦେହକୁ ଲାଗିହେଇ ସେ ବସିପଡ଼ିଲେ ଏବଂ ମା'ଙ୍କର ଦୁଇ ଆଣ୍ଠୁ ଉପରେ ଚିବୁକ ରଖି ଉଜ୍ଜ୍ୱଳ ଦ୍ୱିପ୍ରହରକୁ ଚାହିଁଥିଲେ ଆଉ ମା'ଙ୍କ କଥା ଉପଭୋଗ କରିଥିଲେ ।

ହଠାତ୍ ସତ୍ୟବତୀର କଣ୍ଠସ୍ୱର ରୁଦ୍ଧ ହେଇଗଲା । ଦୁଇ ଟୋପା ଉଷ୍ଣଜଳ ପଡ଼ିଲା ତାଙ୍କର ପିଠି ଉପରେ । ସଚକିତ ହୋଇ ସତ୍ୟବତୀଙ୍କ ଆଖିକୁ ଚାହିଁଲେ । ତତ୍‌କ୍ଷଣାତ୍ ସେ ଦୁଇ ହାତପାପୁଲିରେ ନିଜ ମୁହଁକୁ ଢାଙ୍କି ପକେଇଲା । ଆହୁରି ନିବିଡ଼ ହେଇ ବସିଲେ

ଦ୍ୱୈପାୟନ । ସତ୍ୟବତୀଙ୍କୁ ଜଡ଼େଇ ଧରିଲେ ଦୁଇ ହାତରେ । ବିସ୍ମୟ ବିବ୍ରତ ହୋଇ ଅପଲକ ଦୃଷ୍ଟିରେ ଅନେକ ସମୟ ଯାଏ ଚାହିଁରହିଲେ ମା'ଙ୍କ ମୁଖକୁ । କାନ୍ଦ ମାଡ଼ି ଆସୁଥିଲା । କ୍ରମଶଃ ଓଠ ଟିକିଏ ଫାଙ୍କ ଦିଶିଲା ଏବଂ ଶେଷରେ ମୁହଁ ଫାଟିପଡ଼ିଲା ଲୁହରେ ।

ସତେକି ସତ୍ୟବତୀର ମୁଖମଣ୍ଡଳକୁ ଘେରି ରହିଥିଲା ଏକ ଦିବ୍ୟଜ୍ୟୋତି । ଦ୍ୱୈପାୟନଙ୍କ ଛାତି ଫାଟି ପଡୁଥିଲା ଯନ୍ତ୍ରଣାରେ । ଅଶ୍ରୁପୂର୍ଣ୍ଣ ନେତ୍ରରେ କରୁଣ ଭାବେ ସେ ପଚାରିଲେ- ମା' ତୁମର କଣ ହେଇଛି ? କାହିଁକି ତୁମେ କାନ୍ଦୁଛ ?

ସତ୍ୟବତୀର ଆଖି ସଜଳ ହେଇ ଉଠିଲା । କ୍ରନ୍ଦନର ବେଗକୁ ସମ୍ବରଣ କରିବା ପାଇଁ ସେ କିଛି ମୁହୂର୍ତ୍ତ ନେଲା । ତା'ପରେ ମୁଣ୍ଡ ହଲେଇ ଧୀରେ ଧୀରେ କହିଲା- ତୁ ସେ କଥା ବୁଝିପାରିବୁନି ପୁତ୍ର, ଆଜି ମୁଁ ତୋତେ ଯେତେ ନିକଟରେ ପାଇଛି, ସେତିକି ନିକଟତର କରିବା ମୋ ପକ୍ଷରେ ଉଚିତ ହେଇନି । ବରଂ ଦୂରେଇ ରଖିବା ଶ୍ରେୟ ହେଇଥାନ୍ତା ।

ଦ୍ୱୈପାୟନ ଏକଥା ଶୁଣି ସତ୍ୟବତୀଙ୍କ ମୁହଁକୁ ଅସହାୟ ଭାବେ ଚାହିଁଲେ । ଲଜ୍ଜା ଓ ଆତ୍ମଗ୍ଲାନିରେ ଦେହମନ ପୋଡ଼ି ଯାଉଥିଲା । ଆତ୍ମଅଭିମାନର କୋହ ଉଠି ଆସୁଥିଲା ନାଭି ଦେଶରୁ । ଭଙ୍ଗା ଭଙ୍ଗା ଗଳାରେ ସେ କହିଲେ- କିଏ କହୁଥିଲା ତୁମକୁ ଏତେ ନିଜର କରିବା ପାଇଁ ? କିଏ ଚାହୁଁଥିଲା ତୁମ ପାଖରୁ ସ୍ନେହ, ଆଦର, ଭଲ ପାଇବା ? ପିଲାଦିନରୁ ବଣରେ ଫୋପାଡ଼ି ଦେଇ ଆସିଲନି ? ବାପାଙ୍କ ପାଖରେ ବି ଛାଡ଼ି ଦେଇ ଆସିପାରିଥାନ୍ତ ।

ସତ୍ୟବତୀ ଓଠରେ ବିଷଣ୍ଣ ହସ । ଆଖିରେ ଲୁହ । ଦ୍ୱୈପାୟନଙ୍କୁ ଦୁଇବାହୁରେ କୋଳାଗ୍ରତ କରି ଛାତି ଉପରକୁ ଟାଣିନେଲା । ଗାଲ ଉପରେ ମୁହଁ ରଖି ଆଦର କଲା । ହତାଶ ଓ ଗମ୍ଭୀର ସ୍ୱରରେ କହିଲା, ସେଇ ତ ସମସ୍ୟା ପୁତ୍ର । ଯେଉଁଦିନ ଦ୍ୱାଦଶବର୍ଷ ପୂର୍ଣ୍ଣ ହେବ ସେଇଦିନ ଆସିବେ ତୋର ପିତା, ଏଇଠୁ ତୋତେ ନେଇଯିବାପାଇଁ । ଆଜି ହିଁ ତାଙ୍କର ଆସିବା କଥା । ସେଇ ଅସ୍ଥିରତାହିଁ ମୋତେ ପାଗଳ କରି ଦେଉଛି । ଛାତି ଭିତର କୋରି ହେଇଯାଉଛି । ମୋ ଶେଷ ପରିଣତି ଯେ କଣ ହେବ ମୁଁ ଜାଣେନା । ତେବେ ମରିବାଯାଏ ମନେରହିବ ତୋର କୋମଳ ସ୍ପର୍ଶ । ମୁଁ ନ ଥିଲେ ମଧ୍ୟ, ତୋ ମା' ବୋଲି ମୋର ପରିଚୟ ଦେବାରେ ତୁ ଯେମିତି କୁଣ୍ଠିତ ନ ହେଉ ପୁତ୍ର । ଟିକିଏ ସ୍ନେହ, ଆଉ ଭଲପାଇବା ସେତିକି ତ ମୋର କାମ୍ୟ ।

ଖୁବ୍ କରୁଣ ଦୃଷ୍ଟିରେ ଦ୍ୱୈପାୟନ ଚାହିଁ ରହିଥିଲେ ସତ୍ୟବତୀଙ୍କ ମୁହଁକୁ । ସତ୍ୟବତୀର ଅଶ୍ରୁବୋଳା ମୁଖଶ୍ରୀ ସତେଯେମିତି ପରିବେଶର ସୀମା ଡେଇଁ ଚାରିଆଡ଼େ ବିଞ୍ଚି ହୋଇ ପଡ଼ିଥିବା ଅପରାହ୍ନର ଛାଇଆଲୁଅ ଭିତରକୁ ପ୍ରସାରିତ ହେଇ ଯାଉଥିଲା ।

ବଡ଼ ସୁନ୍ଦର ସେ ରୂପଚିତ୍ର । ଦ୍ୱୈପାୟନ ଆଖିକୁ ଲୁହ ଆସିଯାଉଥିଲା ।

ସତ୍ୟବତୀଙ୍କ ଛାତିର ଧୁକ୍ ଧୁକ୍ ଶବ୍ଦକୁ ନିଜେ ଦ୍ୱୈପାୟନ ନିଜ ଛାତି ଭିତରେ ଶୁଣିବାକୁ ପାଉଥିଲେ । ଅନେକ ମୁହୂର୍ତ୍ତ କଟିଗଲା ଏହିଭଳି ଭାବରେ । ସତ୍ୟବତୀଙ୍କ କଥା ଶୁଣି ହଠାତ୍ ଚମକି ପଡ଼ିଲେ ସେ ।

ଆର୍ତ୍ତସ୍ୱରରେ ସତ୍ୟବତୀ କହିଥିଲା- 'ସେ ଆସୁଛନ୍ତି କୃଷ୍ଣ, ଏଇ ତ..." ଆତଙ୍କିତ ଦୃଷ୍ଟିରେ ଅରଣ୍ୟର ପଥଧାରକୁ ଚାହିଁଥିଲା ସେ । ଆଖିରେ ତ୍ରସ୍ତା ହରିଣୀର ଚାହାଣି, ଭୀତ, ଚଞ୍ଚଳ । ସମଗ୍ର ସତ୍ତାରେ ଫୁଟି ଉଠୁଥିଲା ଏକ ଅପ୍ରତିରୋଧ୍ୟ ଅସ୍ଥିରତାର ଅଭିବ୍ୟକ୍ତି ।

ସତ୍ୟବତୀଙ୍କ କଥାରେ ଚମକି ଉଠି ଦ୍ୱୈପାୟନ ସେହି ପାହାଡ଼ିଆ ଅରଣ୍ୟପଥ ଆଡ଼କୁ ଚାହିଁଲେ । ତାଙ୍କ ହାତପାଦ ଥରିଉଠିଲା କିଛି ଗୋଟାଏ ଅଜଣା ଆଶଙ୍କାରେ । ଛାତି ଉଠପଡ଼ ହେଲା । ତ୍ରସ୍ତ ଭାବେ ଚାରିଆଡ଼କୁ ଦ୍ୱୈପାୟନ ଦୃଷ୍ଟି ନିକ୍ଷେପ କଲେ । ଭୟଭୀତ ଶିଶୁ ଯେମିତି ଅସହାୟ ଭାବେ ମା'କୁ ଜାବୁଡ଼ି ଧରେ, ଠିକ୍ ସେହିଭଳି ସତ୍ୟବତୀଙ୍କୁ ଜାକି ଧରିଥିଲେ ଦ୍ୱୈପାୟନ । ମା'ଙ୍କ ଛାତିରେ ମୁହଁ ଲୁଚେଇ କମ୍ପିତ ଗଳାରେ କହିଲେ- ନା, ମୁଁ ଯିବିନି, କୁଆଡ଼େ ଯିବିନି ।

ଦ୍ୱୈପାୟନଙ୍କ ଛାତି ଭିତରଟା ଧଡ଼ପଡ଼ କରିଉଠିଲା । ସତ୍ୟବତୀଙ୍କ ଆଖିକୁ ଅସହାୟ ଭାବେ ଅନୁସନ୍ଧିତ୍ସୁ ଦୃଷ୍ଟିରେ ସେ ଚାହିଁଥିଲେ । ଛାତି ଥରିଉଠୁଥିଲା । ସତ୍ୟବତୀର ଆଖି ଛଳ ଛଳ । ମୁହଁରେ ଯନ୍ତ୍ରଣାର ଛାଇ । ଦେଶ କାଳ ପରିସ୍ଥିତିର ବାସ୍ତବତା ଭିତରେ ଜନନୀ ହୃଦୟର ଅସ୍ଥିରତାକୁ ଚାପି ରଖିବା ପାଇଁ ନିଜ ମନକୁ ସେ ଆହୁରି ଶକ୍ତ, ଆହୁରି କଠିଣ କରିବାର ପ୍ରୟାସ କରୁଥିଲା । ବିସର୍ଜି ଦେବାର ଦୃଢ଼ ମନୋଭାବକୁ ନିଜ ଭିତରକୁ ଆଣିବା ପାଇଁ ଚେଷ୍ଟା କରୁଥିଲା ସତ୍ୟବତୀ । ଦ୍ୱୈପାୟନଙ୍କର ଭୀଷଣ ଭୟ ହେଲା । ଆଶ୍ଚର୍ଯ୍ୟ ଏକ ମାୟା ଆଉ ଗଭୀର ଅନୁରାଗରେ ସେ ନିବିଡ଼ ଭାବେ ଜାକି ଧରିଲେ ମା'ଙ୍କୁ । ସତ୍ୟବତୀ ମଧ୍ୟ ତାଙ୍କୁ କୋଳେଇ ନେଲା । ଯେମିତି କିଛି ଗୋଟାଏ ଅଶୁଭ ଅମଙ୍ଗଳ ଆକ୍ରମଣରୁ ଆଗୁଳି ରଖୁଛନ୍ତି ତାକୁ ଛାତି ଭିତରେ ।

ମା'ଙ୍କୁ ଛାଡ଼ିଯିବାର ଏକ ଦାରୁଣ ଅନୁଭୂତି ତାଙ୍କ ହୃଦୟରେ ହାହାକାର କରି ଉଠୁଥିଲା । ପିତା ତାଙ୍କ ପ୍ରତି ସ୍ନେହସିକ୍ତ କି ନୁହେଁ ସେ ଜାଣିନଥିଲେ । ପିତା ଓ ପୁତ୍ରଙ୍କ ମଧ୍ୟରେ ବାତ୍ସଲ୍ୟ ମମତାର କୌଣସି ଭିତ୍ତିଭୂମି ନଥିଲା । ଅପରିଚିତର ବ୍ୟବଧାନ ଏବଂ ଦୂରତ୍ୱର ସୀମା ଲଂଘନ କରି ସେମାନେ ପରସ୍ପରର କେତେ ନିକଟବର୍ତ୍ତୀ ହେବେ, ଆପଣାର ହେବେ - ଏହି ସଂଶୟ ଦ୍ୱୈପାୟନ ଅନ୍ତରକୁ କ୍ଷତବିକ୍ଷତ କରି ପକାଉଥିଲା । ପ୍ରାପ୍ତିର ଆଶ୍ୱାସରେ କୌଣସିମତେ ପରିତୃପ୍ତ ହେଉନଥିଲା ମନ । ଋଷି ପରାଶରଙ୍କୁ ପିତା ବୋଲି ଭାବିବା ପାଇଁ ଚେଷ୍ଟା କରୁଥିଲେ ମଧ୍ୟ ମନ ମାନୁ ନ ଥିଲା । ତାଙ୍କ ରୂପ ଚେହେରା ଆଖିରେ ଭାସି ଉଠୁ ନ ଥିଲା । କେମିତି ଭାସିଉଠନ୍ତା ? ପିତା ନାମକ ବ୍ୟକ୍ତି ସହିତ ତାଙ୍କର ତ

କେବେ କୌଣସି ଆତ୍ମୀୟତା ହିଁ ଗଢ଼ି ଉଠିନି । ଆଗରୁ କେବେ ସେ ପରାଶରଙ୍କୁ ଦେଖି ନାହାନ୍ତି ମଧ୍ୟ । ପିତାଙ୍କ ପ୍ରତି କୌଣସି ଭକ୍ତି, ଶ୍ରଦ୍ଧା ବା ଅନୁରାଗ ତାଙ୍କ ମନରେ ଜନ୍ମି ନାହିଁ । ଏଭଳି ଜଣେ ବ୍ୟକ୍ତି ଯେ ତାଙ୍କର ଅତି ଆପଣାର ହୋଇଅଛନ୍ତି, ସେ କଥା ତ ମନରୁ ଲିଭିଯାଇଛି । ଅନୁଭୂତ ଶୁଷ୍କ ହେଇ ପଡ଼ିଛି । ତେଣୁ ହିଁ ଏହି ମୁହୂର୍ତ୍ତରେ ପରାଶରଙ୍କୁ ପିତା ବୋଲି ମନପ୍ରାଣ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ନୁହେଁ । ବରଂ ତାଙ୍କର ପ୍ରତିଟି ସତ୍ତା ପିତାଙ୍କର ଦୁଃଶ୍ଚରିତ୍ରତା ପ୍ରତି ଧିକ୍କାର କରୁଥିଲା । ତାଙ୍କର ଏ ପ୍ରକାର ଭାବନା ଭିତରେ ଯେତିକି ଯୁକ୍ତି ଓ ବିଚାର ନ ଥିଲା, ସେତିକି ଆବେଗ ଥିଲା ନିଶ୍ଚୟ । ନିର୍ଦ୍ଦୋଷରେ ବାଳକ ପୁତ୍ରକୁ ପରିତ୍ୟାଗ କରିବାର କ୍ଷୋଭ ଓ ଦୁଃଖ ନିରନ୍ତର ତାଙ୍କୁ ଆଘାତ କରୁଥିଲା । ସେଇ ମୁହୂର୍ତ୍ତରେ ତାଙ୍କର ମନେ ହେଇଥିଲା ତାଙ୍କର ଓ ମା'ଙ୍କର ସମଗ୍ର ଜୀବନଟାକୁ ସେଇ ଲୋକଟା ବ୍ୟର୍ଥ କରିଦେଇଛି । ଏ ପ୍ରକାର ତୀବ୍ର ସନ୍ଦେହର ଯନ୍ତ୍ରଣା ଭିତର ଦେଇ ପରାଶରଙ୍କୁ ନିଷ୍ଠୁର, ଦୁଃଶ୍ଚରିତ୍ର ଏବଂ କଦର୍ଯ୍ୟ ବ୍ୟକ୍ତି ବ୍ୟତୀତ ସେ ଆଉ କିଛି ବି ଭାବି ପାରୁନଥିଲେ । ସତ୍ୟବତୀଙ୍କର କରୁଣ ବିଷଣ୍ଣ ମୁଖଶ୍ରୀ ଭାସିଉଠୁଥିଲା ଆଖି ଆଗରେ । ତାଙ୍କର ସମଗ୍ର ଅନ୍ତଃକରଣ ଘୃଣାରେ ବିଷେଇ ଉଠିଲା । କୌଣସି ପ୍ରକାରେ ସେଇ ମନଟା ପରାଶରଙ୍କ ପାଇଁ ସହଜ ହେବାକୁ ଚାହୁଁ ନ ଥିଲା ।

ଦ୍ୱୈପାୟନଙ୍କର କୌଣସି ଦୋଷ ନ ଥିଲା । ସତ୍ୟବତୀ ହିଁ ତାଙ୍କୁ କାଙ୍ଗାଳ ଭଳି ଜାକି ଧରିଥିଲା । ପରାଶରଙ୍କ ବିପୁଳ ପ୍ରଭାବ ଓ କ୍ଷମତା ଠାରୁ ଦୂରେଇ ରହିବା ପାଇଁ ସତ୍ୟବତୀ ପୂର୍ବରୁ ଶିକ୍ଷା ଦେଇଥିଲା - କହିଥିଲା ଜନ୍ମ ହେଉଛି ଦୈବର ଅଧୀନ କିନ୍ତୁ ପୌରୁଷ ମଣିଷର ନିଜ କରାୟତ୍ତ । ଜୀବନରେ ତାହାହିଁ ପୁରୁଷୋଚିତ । ନିଜକୁ ନିଜେ ରକ୍ଷା କରିବାର ଶିକ୍ଷା ଯଦି ସଂପନ୍ନ ନ ହୁଏ ତା'ହେଲେ ହୁଏତ କାହାର ସାଧ୍ୟ ନାହିଁ ବହିର୍ବିଶ୍ୱର ନାନାବିଧ ଆକ୍ରମଣରୁ ତାକୁ ଆଉ କିଏ ରକ୍ଷା କରିବ ।

ବାଳକ ଦ୍ୱୈପାୟନ ଜନନୀଙ୍କ କଥାଗୁଡ଼ିକୁ ମନ ଧ୍ୟାନ ଦେଇ ବୁଝିବା ପାଇଁ ଚେଷ୍ଟା କରୁଥିଲେ । ତାଙ୍କର ଏହି ବୟସରେ ବୋଧ ବୁଦ୍ଧି ଯଦିଓ ପରିଣତ ନୁହେଁ; ତଥାପି ମନର ଆଲୋକ ଅନ୍ଧାରି ଆବହାୱା ଭିତରେ କେତେ ପ୍ରକାର ଚିନ୍ତାର ଛବି ଆଙ୍କି ଦିଏ । ମନେହୁଏ, ସତରେ ପିତା ଏକ ଉପଲକ୍ଷ ମାତ୍ର । ସନ୍ତାନ ପାଇଁ ଜନନୀ ହିଁ ସବୁକିଛି । ଜନନୀର ସ୍ନେହ ଆଦର ସତର୍କତା ତାକୁ ସଦାସର୍ବଦା ଘେରି ରଖିଥାଏ । ପିତା ପୁତ୍ରର ଜୀବନରେ ଛାୟାବୃତ୍ତ ଏକ ବୃକ୍ଷ ଭଳି । ସେଠି ଚରିତ୍ରର ସ୍ୱାଭାବିକ ବିକାଶ ପାଇଁ କିଛି ସୁଯୋଗ ନାହିଁ । ଏହି କଥା ତାଙ୍କୁ ସତ୍ୟବତୀ ସ୍ପଷ୍ଟ ଭାବେ ବୁଝାଇବାକୁ ଯାଇ କହିଥିଲେ ଯେ, ପ୍ରଖ୍ୟାତ ବ୍ୟକ୍ତିମାନଙ୍କ ପୁତ୍ରମାନେ ବଡ଼ ହତଭାଗ୍ୟ । ପୁତ୍ରର ନିଜସ୍ୱ ମେଧା, ପ୍ରତିଭା ଓ ଯୋଗ୍ୟତା ଥିବା ସତ୍ତ୍ୱେ ସେମାନେ ପିତାର ଔଜ୍ଜଲ୍ୟ ନିକଟରେ ନିଷ୍ପ୍ରଭ ଦିଶନ୍ତି । ଲୋକେ ସେମାନଙ୍କୁ ଯଥାର୍ଥ ମାନ୍ୟତା

ଦିଅନ୍ତି ନାହିଁ । ତା'ର ବ୍ୟକ୍ତିତ୍ୱ ନିଜ ଭଳି ଗଢ଼ିଉଠେ ନାହଁ । ବ୍ୟକ୍ତିତ୍ୱକୁ ନିଜ ବାଟରେ ବିକଶିତ କରିବା ପାଇଁ ହେଲେ ପିତୃ ପରିଚୟର ଆବଶ୍ୟକତା ନାହିଁ । ଆର୍ଯ୍ୟପିତାର ଅନୁକମ୍ପା ବ୍ୟତୀତ ଯେ ଅନାର୍ଯ୍ୟ ଜନନୀର ଦାୟ ଦାୟିତ୍ୱରେ ବିକଶିତ ହେବାର ଯଥେଷ୍ଟ ସୁଯୋଗ ଅଛି, ଏକଥା ଯେମିତି କୌଣସି ଦିନ ଭୁଲି ନ ଯାଉ । ଆର୍ଯ୍ୟମାନଙ୍କର ଘୃଣା ଓ ଅବହେଳାରେ ମନ ମୋର ତିକ୍ତ ହେଇଯାଇଛି ।

କଥାଗୁଡ଼ିକ ଦ୍ୱୈପାୟନଙ୍କ ମନରେ ବଦ୍ଧମୂଳ ଭାବେ ବସା ବାନ୍ଧି ରହିଯାଇଥିଲା । ଜନନୀଙ୍କ ଆର୍ତ୍ତସ୍ୱର ଶୁଣିବାମାତ୍ରେ ତାଙ୍କର ସେଇ ଅନୁଭୂତି ଭିତରୁ କଥାଗୁଡ଼ିକ ଝଙ୍କୃତ ହୋଇଉଠିଲା । କିଶୋର ପ୍ରାଣରେ ଦାରୁଣ ଆଘାତ ଲାଗିଲା । ନିଜ ଭିତରେ ସତ୍ୟବତୀଙ୍କର ଅସହ୍ୟ ଯନ୍ତ୍ରଣାକୁ ସେ ଅନୁଭବ କରିପାରୁଥିଲେ । ଜନନୀଙ୍କ ପାଇଁ ସମବେଦନାରେ ତାଙ୍କର ଉଦ୍‌ଗତ ନିଃଶ୍ୱାସ ଛାତିର ପିଞ୍ଜରା ଭିତରେ ଅଟକି ଯାଇ ବ୍ୟଥା ଜନ୍ମାଏ ।

ପାଦର ଶବ୍ଦ ଶୁଭୁଥିଲା । କ୍ରମଶଃ ନିକଟତର ହେଉଥିଲା ସେଇ ଶବ୍ଦ । ପିତା ଓ ପୁତ୍ର ଉଭୟଙ୍କ ମୁଖଶ୍ରୀ ପାଂଶୁଳ ହେଇ ଉଠୁଥିଲା କ୍ରମଶଃ । ପରାଶର ଆସିଲେ ଦାସ ରାଜାଙ୍କୁ ସାଥିରେ ଧରି । ଗର୍ବରେ ଛାତି ଫୁଲେଇ ଶିରୋନ୍ନତ କରି ଠିଆ ହେଲେ ସେ ସତ୍ୟବତୀଙ୍କ ସମ୍ମୁଖରେ । ସତେ ଯେମିତି କାହାକୁ ସେ ଚିହ୍ନି ନାହାନ୍ତି । ସତ୍ୟବତୀକୁ ମଧ ତାଙ୍କର ମନେ ନାହିଁ । ତଥାପି ପ୍ରସନ୍ନ କଣ୍ଠରେ ଉଚ୍ଛ୍ୱସିତ ହେଇ କହିଲେ, "ମୁଁ ଆସିଛି... ।"

କପଟ ଅବାକ୍ ସ୍ୱରରେ ସତ୍ୟବତୀ ପ୍ରଶ୍ନ କଲା, କିଏ ଆପଣ ?

ପରାଶରଙ୍କ ମୁଖରେ ହସ, ଆଖିର ଦୃଷ୍ଟି ଚମକି ଉଠୁଥିଲା । ଖୁସି ଖୁସି ଭାବ ନେଇ ସେ କହିଲେ, 'ମୁଁ ଋଷି ପରାଶର । ବାରବର୍ଷ ପୂର୍ଣ୍ଣ ହେବ ସଂଧାଗମ ହେଲେ ।'

ସତ୍ୟବତୀ ପରାଶରଙ୍କର ଚମକିଲା ଆଖିକୁ ଚାହିଁ କେଇ ମୁହୂର୍ତ୍ତ ପାଇଁ କୌଣସି କଥା କହିପାରି ନ ଥିଲା । ତାପରେ ହଠାତ କୋଉଠୁ କେଜାଣି ତା' ମନରେ ଏତେ ମାତ୍ରାରେ ଉତ୍କଣ୍ଠା ଜାତ ହେଲା; ସେ ପଚାରିଲା, କାହା କଥା କହୁଛନ୍ତି ଋଷି ?

ପରାଶର କିଞ୍ଚିତ୍ ଲଜ୍ଜିତ ମୁଖରେ ହସି ଦେଇ କହିଲେ, ମୁଁ ଆସିଛି, : ପୁତ୍ର କୃଷ୍ଣଦ୍ୱୈପାୟନକୁ ସାଥିରେ ନେଇ ଯିବାପାଇଁ ।

ପରାଶରଙ୍କ କଥା ଶୁଣି ସତ୍ୟବତୀ ବିବ୍ରତ ହେଲା । ଦ୍ୱୈପାୟନଙ୍କ ସର୍ବାଙ୍ଗରେ ଶିହରଣ ଖେଳିଗଲା । କେମିତି ଗୋଟାଏ ଉଦ୍‌ଭ୍ରାନ୍ତ ଉତ୍ତେଜନାରେ ଛାତି କମ୍ପିଉଠିଲା । ଆଗରୁ କେବେ ଏଭଳି ଅନୁଭବ ହୋଇନଥିଲା । କଥାଟା କିନ୍ତୁ ବିଦ୍ୟୁତ୍‌ର ଚମକ ଭଳି ସମଗ୍ର ଚେତନାକୁ ଆକ୍ରାନ୍ତ କରି ଝଙ୍କୃତ ହେଇ ଉଠିଲା, କାହିଁକି ? କାହିଁକି ? କାହିଁକି ? ବାରମ୍ବାର ଏହି ପ୍ରଶ୍ନ ଛାତିରେ ତାଙ୍କର ଆଘାତ କରିବାକୁ ଲାଗିଲା । ଏହିଭଳି ଭାବେ କିଛି ସମୟ କଟିଗଲା ନୀରବରେ । ଅଭିମାନାହତ ଚିତ୍ତରେ ଏଥର ସତ୍ୟବତୀ କହିଲା,

"ଜଠରରେ ଭ୍ରୁଣରୂପେ ଯାହାକୁ ଆପଣ ଅନିଶ୍ଚିତ ଭବିଷ୍ୟତ କାଳର ଗର୍ଭରେ ନିକ୍ଷେପ କରିଯାଇଥିଲେ, ତାକୁ ପୁତ୍ର ବୋଲି ଦାବି କରୁଛନ୍ତି କୋଉ ଅଧିକାରରେ ?"

'ପିତାର ଅଧିକାରରେ ।'

ପିତାର କୌଣସି କର୍ତ୍ତବ୍ୟ କରିଛନ୍ତି କି ଋଷିବର ? ନିଜ ଚେଷ୍ଟାବଳରୁ ପୁତ୍ର ଦ୍ୱୈପାୟନ ଆଜି ସୁପଣ୍ଡିତ । ବେଦରେ ତା'ର ସଂପୂର୍ଣ୍ଣ ଦଖଲ ଅଛି ।

ସୁବିଦିତ ଅଛି କଲ୍ୟାଣୀ । କୃଷ୍ଣ ମୋର ଅବହେଳାରେ ଫୋପାଡ଼ି ଦେଇଥିବା ସେଇ ହଜିଲା ରତ୍ନ । ଅଞ୍ଚଳରେ ବାନ୍ଧି ସାଇତି ରଖିଲା ଭଳି ରତ୍ନ ସେ ନୁହେଁ । କୃଷ୍ଣ ମୋର ହୀରା ଖଣ୍ଡେ । ଆକରିକ ହୀରାର କୌଣସି ମୂଲ୍ୟ ନ ଥାଏ କଲ୍ୟାଣୀ । ଯେଉଁ ହୀରାର ଦ୍ୟୁତି ଯେତେ ତାର ମୂଲ୍ୟ ସେତିକି ବେଶି । ହୀରା କାଟିଲେ ସିନା ଦ୍ୟୁତି ବାହାରିବ । କୃଷ୍ଣ ଭିତରେ ଲୁକ୍କାୟିତ ହେଇଥିବା ସେ ହୀରାର ଦ୍ୟୁତିକୁ କାଟି ବାହାର କରିବାର ଦାୟିତ୍ୱ ମୋର । ସେଇଥିପାଇଁ ତ ମୁଁ ଆସିଛି ତାକୁ ମୋ ସାଥିରେ ନେଇଯିବା ପାଇଁ । ହେ ମତ୍ସ୍ୟଗନ୍ଧା ! ତୁମେ ରତ୍ନଗର୍ଭା ଏବଂ ମୁଁ ତା'ର ମଣିକାର । ପରାଶରଙ୍କ କଣ୍ଠସ୍ୱରରେ ସ୍ନେହ, ପ୍ରୀତି ଓ ଗର୍ବର ସ୍ପର୍ଶ ।

ପରାଶରଙ୍କ ସୌମ୍ୟମୂର୍ତ୍ତି, ଆଖିଝଲସା ଉଜ୍ଜ୍ୱଳ ରଂଗ, ତୂଳିକାରେ ଅଙ୍କିତ ହେଲା ଭଳି ମୁଖ ଏବଂ ଚକ୍ଷୁ । ତୁଷାରୋଜ୍ଜ୍ୱଳ ଶୁଭ୍ରକେଶ ଓ ଶ୍ମଶ୍ରୁ, ତାକୁ ଚୁମ୍ବକ ଭଳି ଆକର୍ଷିତ କରୁଥିଲା । ଦୀର୍ଘ ବାରବର୍ଷ ପରେ ଦ୍ୱୈପାୟନ ତାଙ୍କର ପିତାଙ୍କୁ ଦେଖୁଥିଲେ । ଯାହାଙ୍କୁ କି ସେ କେବେବି ଆଖିରେ ଦେଖି ନ ଥିଲେ କିମ୍ବା ଯାହାଙ୍କ କୋଳରେ ବସି ଆଦର ଟିକେ ପାଇନଥିଲେ । ତାଙ୍କୁ ଦେଖି ବର୍ତ୍ତମାନ ବିସ୍ମୟ ଓ ଆନନ୍ଦରେ ଛାତି କମ୍ପି ଉଠୁଥିଲା ବାରମ୍ବାର । ଇଚ୍ଛା ହେଉଥିଲା ଥରେ ପିତା ବୋଲି ସମ୍ବୋଧନ କରିବାକୁ । ମୁଗ୍ଧତା କ୍ରମଶଃ ତାଙ୍କ ଅନ୍ତରରେ ଶ୍ରଦ୍ଧା ଓ ଅନୁରାଗରେ ରୂପାନ୍ତରିତ ହେଇଗଲା । ପିତାଙ୍କ ସଂପର୍କରେ ଗୋଟାଏ କେମିତି ଖୁସି ଏବଂ ଗୌରବବୋଧ ଜାଗ୍ରତ ହେଲା ଅନ୍ତର ଭିତରେ ।

ପରାଶରଙ୍କ କଥାରେ ସତ୍ୟବତୀର ହୃଦୟ ଭିତର ଥରି ଉଠିଲା । ନିଜକୁ କେମିତି ଶକ୍ତିହୀନ ଓ ଦୁର୍ବଳ ମନେହେଲା । ଏକା ସଂଗେ ଛାତି ଭିତରେ ଅନେକ କଥା ଉଦ୍‌ବେଳିତ ହେବାକୁ ଲାଗିଲା । ଅଥଚ ପଦୁଟିଏ ମଧ୍ୟ ଉଚ୍ଚାରଣ କରିପାରିଲା ନାହିଁ । ଚକିତ ହୋଇ ଦ୍ୱୈପାୟନଙ୍କ ହାତ ଦୁଇଟିକୁ ଧରି ପରାଶରଙ୍କ ହସ୍ତରେ ସମର୍ପି ଦେଉ ଦେଉ ବାଷ୍ପ ଗଦ୍‌ଗଦ ସ୍ୱରରେ କହିଲା, ଋଷିବର ! ଏଇ ଆପଣଙ୍କ ପୁତ୍ର । ଗଚ୍ଛିତଧନ ଭଳି ମୋର ସମସ୍ତ ଶକ୍ତି ଦେଇ ତାକୁ ଯତ୍ନରେ ଆଗୁଳି ରଖିଥିଲି । ଆପଣଙ୍କ ଜିନିଷ ଆପଣଙ୍କୁ ଫେରେଇ ଦେଇ ଆଜି ମୁଁ ଭାରମୁକ୍ତ ହେଲି । କୃଷ୍ଣ ! ଏଇ ହେଉଛନ୍ତି ତୁମର ପିତା, ଯାଙ୍କୁ ପ୍ରଣାମ କର ପୁତ୍ର । ଆଜିଠାରୁ ତୁମେ ତାଙ୍କ ସହିତ ରହିବ ।

କଥାଗୁଡ଼ିକ ସତ୍ୟବତୀର ଅନ୍ତର ଭିତରୁ ବାହାରୁ ନ ଥିଲା । ସେ କେବଳ ଯନ୍ତ୍ର ଭଳି କହିଯାଉଥିଲା । ଛାତି ଭିତରୁ ମାଡ଼ି ଆସୁଥିଲା ପ୍ରବଳ କୋହ । ଝଡ଼ ଭଳି ଆପଣାର କକ୍ଷ ଭିତରକୁ ଯାଇ ଦ୍ୱାର ବନ୍ଦ କଲା ସତ୍ୟବତୀ ।

॥ ଦୁଇ ॥

ଝରକା ଧାରରେ ବସି ସତ୍ୟବତୀ ବାହାରକୁ ଚାହିଁଥିଲେ । ସୁଉଚ୍ଚ ଅଟ୍ଟାଳିକା ଶ୍ରେଣୀ ଭେଦ କରି ଦୃଷ୍ଟି ତାଙ୍କର ଅନେକ ଦୂର ପର୍ଯ୍ୟନ୍ତ ଲମ୍ବି ଯାଇଥିଲା । ଏଇଠୁ ସଂପୂର୍ଣ୍ଣ ଆକାଶଟା ମୋଟେ ଦୃଶ୍ୟମାନ ହୁଏ ନାହିଁ । ହେଲେ, ଅଧା ଖଣ୍ଡିଆ ଏଇ ଆକାଶଟା ଅନନ୍ତ ପ୍ରଶ୍ନବାଚୀଟିଏ ଭଳି ସତ୍ୟବତୀଙ୍କ ମୁହଁକୁ ଚାହିଁ ରହିଥିଲା ସତେକି । ପ୍ରଶ୍ନ...ପ୍ରଶ୍ନ... ଆଉ ପ୍ରଶ୍ନ... । ଅନେକ ପ୍ରଶ୍ନ ତାଙ୍କ ମନରେ ଭାସିଉଠୁଥିଲା । କାହିଁକି ଜାଗ୍ରତ ହେଉଥିଲା ? ମଣିଷ ଜୀବନରେ ତ ଏମିତି ଅନେକ ଘଟଣା ଘଟେ – ଯାହାର କୌଣସି ପ୍ରୟୋଜନ ନ ଥାଏ । ତା'ର ଆରମ୍ଭ ତ ସେ ଦେଖିପାରୁଥିଲେ ହେଲେ ଶେଷ ଖୋଜି ପାଉନଥିଲେ ।

ସକାଳ ପ୍ରହରରୁ ଆକାଶଟା ମେଘୁଆ ମେଘୁଆ ଥିଲା । କାଣିଚାଏ ବୋଲି ଖରା ନ ଥିଲା । ଚାରିଆଡ଼େ କେମିତି ଗୋଟିଏ ଅସ୍ପଷ୍ଟ ରହସ୍ୟମୟ ଥମ୍‌ଥମ୍ ଭାବ ଛାଇ ହେଇ ରହିଥିଲା । ସେଇ ବିଷଣ୍ଣ ସ୍ତବ୍ଧତା ସତ୍ୟବତୀଙ୍କ ହୃଦୟକୁ ଭାରାକ୍ରାନ୍ତ କରି ତୋଳୁଥିଲା । ତାଙ୍କର ଶାନ୍ତ ଓ ଭାବଲେଶହୀନ ମନ ଆଜି କାହିଁକି ଏତେ ଚଞ୍ଚଳ ହେଇଉଠୁଛି କେଜାଣି ।

ଟପ୍ ଟପ୍ ହେଇ ବର୍ଷା ପଡୁଥିଲା । ଗଛଲତା ଭିଜି ଯାଉଥିଲେ । ଝଡ଼ିପୋକମାନେ ଚାରିଆଡ଼େ ପରୀ ଭଳି ଉଡ଼ିବାକୁ ଲାଗିଲେ । ପକ୍ଷୀମାନେ ଭିଜି ଭିଜି ସେମାନଙ୍କୁ ଧରୁଥିଲେ । ହଜାର ହଜାର ସଂଖ୍ୟାରେ ଏମାନେ ତଳକୁ ଖସି ମରିପଡୁଥିଲେ । ତଥାପି ଉଡୁଥିଲେ ।

ନିର୍ନିମେଷ ନୟନରେ ସତ୍ୟବତୀ ସେଇ ଦୃଶ୍ୟକୁ ଦେଖିବାକୁ ଲାଗିଲେ । କେତେ ପ୍ରକାରର ଦାର୍ଶନିକ ଚିନ୍ତା ଛୁଇଁଯାଉଥିଲା ମନକୁ । ଜୀବନ ପ୍ରବାହ ଅନନ୍ତ, ଶେଷ ନାହିଁ ତାହାର । କ୍ଷୟ ନାହିଁ । ନିରବଛିନ୍ନ ଏହି ଗତି ପ୍ରବାହକୁ କୌଣସି କାରଣରୁ ରୋଧ କରାଯାଇପାରେନା । ନଦୀର ସ୍ରୋତ ଭଳି ଗତିଧାରା ତା'ର ପରିବର୍ତ୍ତନ ହେଇ ଗଡ଼ି ଚାଲିଥାଏ ।

ଝରକା ନିକଟରେ ପଲଙ୍କ ଉପରେ ବସି ଖୁବ୍ ଚିନ୍ତିତ ମନରେ ଦୁଇଆଣ୍ଠୁ ଉପରେ ଚିବୁକ ରଖି ଶୂନ୍ୟ ଦୃଷ୍ଟିରେ ସମ୍ମୁଖଭାଗକୁ ଚାହିଁ ରହିଥିଲେ ସତ୍ୟବତୀ । ମନ ଅସ୍ତବ୍ୟସ୍ତ । ଅସ୍ଥିର ହେଇ ଉଠୁଥିଲା କ୍ରମଶଃ । ସେ ବେଶ୍ ବୁଝିପାରୁଥିଲେ, ଏଇ ବିଷଣ୍ଣତା ତାଙ୍କ ମନର

ଅଭ୍ୟନ୍ତରକୁ ବେଶ୍ ଚେର ଭଳି ମାଡ଼ିଯାଇଛି । ଯାକୁ ସହଜରେ ଉପାଡ଼ି ହେବ ନାହିଁ । ତାର ଏହି ରହସ୍ୟମୟ ଆକର୍ଷଣ ଏବଂ ତାକୁ ଆବିଷ୍କାର କରିବାର ଏକ ଦୁରନ୍ତ ନିଶା ତାଙ୍କୁ ଆବୋରି ବସିଲା । ଅନେକ କଥା ମନେ ପଡ଼ିଯାଉଥିଲା ତାଙ୍କର ।

ଏହି ଜୀବନ ତାଙ୍କର ଅନେକ କାରଣରୁ ଦୁଃଖ ଆଉ ଯନ୍ତ୍ରଣାରେ ଭରପୂର । ସେଥିରେ ତାଙ୍କର ଦୁଃଖ ଅଥବା କୌଣସି ପ୍ରକାରେ କ୍ଷୋଭ ରହିବା କଥା ନୁହେଁ । ଦେବବ୍ରତ ତାଙ୍କୁ ଖୁବ୍ ଭଲପାଏ; ଜନ୍ମିତ ପୁଅଠାରୁ ବି ଅଧିକ । ତାଙ୍କ ଉପରେ ତାର କି ଗଭୀର ବିଶ୍ୱାସ ! କେବଳ ପିତାଙ୍କୁ ସୁଖୀ ଏବଂ ଆନନ୍ଦିତ କରିବା ନିମନ୍ତେ ନିଜକୁ ରାଜସିଂହାସନ ଠାରୁ ବଞ୍ଚିତ କରି ସୁଦ୍ଧା ତାର ମନରେ, କିଞ୍ଚିତ୍ ଦୁଃଖ ନାହିଁ । ବିମାତା ବୋଲି ସତ୍ୟବତୀକୁ କେବେ ମଧ୍ୟ ସେ ଅଶ୍ରଦ୍ଧା କରି ନାହିଁ । ବରଂ ତାର ମହିମାମୟ ସ୍ନେହରେ ଶ୍ରଦ୍ଧା ଓ ଭକ୍ତିକୁ ମିଶାଇ ନିବେଦନ କରିଛି ତାଙ୍କୁ । କୃତାର୍ଥ ହୋଇଛି ସତ୍ୟବତୀଙ୍କ ଜୀବନ ।

ତଥାପି ଏହି କିଛି ଦିନ ହେଲା ଜୀବନର ଆସ୍ୱାଦ ଯେମିତି ବଦଳି ଯାଇଛି । ଗୋଟାଏ ଭୟଙ୍କର ଅତୃପ୍ତି ହୃଦୟକୁ ଦଳିତମଥିତ କରି ହାହାକାର ସ୍ୱରରେ ବାଜି ଚାଲିଛି ଅବଚେତନର ଗଭୀରତମ ପ୍ରଦେଶରେ । ସତ୍ୟବତୀଙ୍କ ଛାତି ଥରି ଉଠୁଥିଲା ଏକ ଅଜଣା ଆଶଙ୍କାରେ । କହିବାକୁ ଗଲେ ଝଡ଼ ମୁହଁର ଶୁଖିଲା ପତ୍ରଭଳି ସେ କମ୍ପି ଉଠୁଥିଲେ । ବିଶ୍ୱାସ କରି ପାରୁନଥିଲେ ସେ ନିଜକୁ । ମନେହେଉଥିଲା, ସେ ଯେମିତି ସମୟର ପଛକୁ ଅର୍ଥାତ୍ ଅତୀତକୁ ଫେରିଯାଉଛନ୍ତି । କେମିତି ସମ୍ଭବ ହେଲା ଏଇଟା ?

କାଳର ନିଜର କୌଣସି ଉଦୟ ଅସ୍ତ ନାହିଁ । ମହାକାଳର ଦାପଟରେ ସବୁ କୁଆଡ଼େ ହଜିଯାଏ ।

ପୁଣି ପର ମୁହୂର୍ତ୍ତରେ ପ୍ରଶ୍ନ ଉଠିଲା ମନରେ, ତାହେଲେ କଣ ଏହାହିଁ ସତ୍ୟ ? କାଳ କେବଳ ଧ୍ୱଂସ ହିଁ କରେ ? ପୁରାତନ କରେ ? କିଛି ନୂଆ କରେନା ? ଜୀବନଟା ତାଙ୍କର ପୁରୁଣା ହେଇଯାଇଛି । ବୟସର, ଯୌବନର ଲାଳିତ୍ୟ ଯାଇଛି । ଚେହେରାରେ ରୂପାନ୍ତର ଘଟିଛି । ହେଲେ ମନ ? ଯେଉଁ ମନ ତାଙ୍କର ଅତୀତକୁ ଦେଖିବା ପାଇଁ ବ୍ୟଗ୍ର, ସେହି କୌତୂହଳୀ ଉତ୍ସୁକ ମନଟା ତ ନୂଆ ନା ! ଏଇ ସମୟ ପ୍ରବାହର ସୃଷ୍ଟି ସେଇଟା । ତା'ହେଲେ କାଳସ୍ରୋତର ଗର୍ଭରେ ସବୁ କିଛି ବିନାଶ ହୁଏନା । ଧ୍ୱଂସ ହୁଏନା । କେବଳ ତା'ର ରୂପାନ୍ତର ଘଟେ । ପୁରୁଣା ନୂଆ ହୁଏ । ଅସଲରେ କାଳ ନିରପେକ୍ଷ । ସମସ୍ତଙ୍କୁ ସେ କେବଳ ଆକର୍ଷଣ କରେ । ବୋଧହୁଏ ତାଙ୍କୁ ବି କରିଛି । ତାଙ୍କର ମନେହେଲା, ସେ ହେଉଛନ୍ତି କାଳର ଏକ ଅପ୍ରତିରୋଧ ସୃଷ୍ଟି ।

ହଠାତ୍ ମୁହୂର୍ତ୍ତକ ପାଇଁ ତାଙ୍କର ଦେହମନ ଭିତରେ କୁଆଡୁ କିମିତି ତରଙ୍ଗଟିଏ ଖେଳିଗଲା । ସେଇ ତରଙ୍ଗରେ ଭାସିବାକୁ ଭୟ ହେଲା ତାଙ୍କର । ପଞ୍ଚଇନ୍ଦ୍ରିୟ ଦେଇ

ଯେଉଁ ଜଗତ, ତାକୁ ତ ସତ୍ୟବତୀ ଚିହ୍ନନ୍ତି ଏବଂ ଜାଣନ୍ତି । ସେଠି ତ ତାଙ୍କର ସତ୍ତା ଖଣ୍ଡିତ ଏବଂ ସୀମାବଦ୍ଧ । ତା ବାହାରେ ପାଦ ଦେବାକୁ ତାଙ୍କର ସାହସ ହୁଏନା । ତାକୁ ଭୟ କରନ୍ତି । ଯେଉଁ ଭାବନା ନିମିଷକ ଲାଗି ମନରେ ଉଦ୍‌ଭାସିତ ହେଇଉଠିଲା, ସେଇଟା ଯେ କେତେ ଭୟାନକ ଏବଂ ବିପର୍ଯ୍ୟୟକାରୀ ସେ ଜାଣନ୍ତି । ଚାଳିଶ ବର୍ଷ ତଳର ଗୋଟିଏ ଘଟଣା ତାଙ୍କର ସବୁ କିଛିକୁ ଗୋଳମାଳିଆ କରିଦେଲା ।

ସତ୍ୟବତୀଙ୍କର ବାରମ୍ବାର ମନେହେଲା, ସେ ମହାକାଳ ଭିତରେ ଅନୁପ୍ରବିଷ୍ଟ କରିଛନ୍ତି । ସମୟ ତାଙ୍କ ପଛରେ କିମ୍ବା ନିକଟରେ ନାହିଁ । ଏକାବେଳକେ ସମ୍ମୁଖରେ । ଠିଆ ହେଇଛି ଆତ୍ମପ୍ରକାଶ ପାଇଁ । ସମସ୍ତ ସୀମାବଦ୍ଧତା ଭାଙ୍ଗିଯାଇଛି । ଚାଳିଶ ବର୍ଷର ଗଣ୍ଡିଟାକୁ ସେ ନିମିଷକରେ ପାରି ହେଇଗଲେ ଯେମିତି । ଯେଉଁ ବିସ୍ମୟ ତାଙ୍କ ମନ ଭିତରେ ଜାଗ୍ରତ ହେଲା, ତାହା ଆଜିର ପଞ୍ଚାବନବର୍ଷୀୟ ହସ୍ତିନାପୁର ରାଜମହିଷୀ ସତ୍ୟବତୀଙ୍କୁ ଦେଖି ନୁହେଁ । ତାଙ୍କ ମୁହଁରେ ତ ବର୍ତ୍ତମାନ ବୟସର ବଳିରେଖା, କେଶରେ ଧଳାରଙ୍ଗ, ଦେହ ସୌଷ୍ଠବହୀନ । କିନ୍ତୁ ଦୃଷ୍ଟି... ଏଇ ସୀମା ଡେଇଁ ବହୁ ଦୂରକୁ ଆଗେଇ ଯାଇଛି । ସେଇଠି ସେ ଦେଖିପାରୁଛନ୍ତି ଚତୁର୍ଦ୍ଦଶୀ ମତ୍ସ୍ୟଗନ୍ଧାକୁ । ପଞ୍ଚାବନ ବର୍ଷରେ ପାଦ ରଖି ମଧ୍ୟ ସେ ତିରିଶବର୍ଷ ତଳର ଦୃଶ୍ୟକୁ ସ୍ପଷ୍ଟଭାବେ ଦେଖିପାରୁଥିଲେ । ଆଖିରେ ଯଦିଓ ଦୃଷ୍ଟିଶକ୍ତି ନ ଥିଲା ସ୍ମୃତିର ଭାରରେ ଭାରାକ୍ରାନ୍ତ ହେଇ ପଡୁଥିଲା ସେଇ ଆଖି ଦୁଇଟି । ଅନେକ ଦିନ ପୂର୍ବର ଗୋଟିଏ ଦୃଶ୍ୟକୁ ସେ ଦେଖିବାକୁ ଲାଗିଲେ ।

କଳକଳ ରବରେ ବହି ଚାଲିଛି ଯମୁନା । ଉଚ୍ଛ୍ୱାସର କଳଗୀତିରେ ସେ ବୁଣି ଦେଇଯାଉଛି ତା'ର ଅଫୁରନ୍ତ ଖୁସିକୁ । ଢେଉର ଦୋଳାରେ ଦୋଳାରେ ବସନ୍ତର ରତିବିଳାସ । ଭୁବନମୋହିନୀ ନଟୀ ଭଳି ଅଭିସାରରେ ଚାଲିଛି ସେ ।

ଯମୁନାର କୂଳେ କୂଳେ ଖେୟାଘାଟ ଅଭିମୁଖେ ଚାଲିଛନ୍ତି ଋଷି ପରାଶର । ହଠାତ୍ ଯମୁନାର କଳଧ୍ୱନି ଭଳି ନୂପୁରର ନିକ୍ୱଣ ଶୁଣି ସେ ଥମକି ଠିଆ ହେଇପଡ଼ିଲେ । ଗୋଟାଏ ଅଜଣା ଆନନ୍ଦର ଶିହରଣ ବିଦ୍ୟୁତ୍‌ର ତରଙ୍ଗ ଭଳି ତାଙ୍କର ଦେହ ମନକୁ ଛୁଇଁ ଦେଇଗଲା ମୁହୂର୍ତ୍ତକ ପାଇଁ ।

ଚାଳିଶବର୍ଷ ହେଇଗଲାଣି । ମଝିରେ ମଝିରେ ଏଇମିତି ତାଙ୍କ ଅତୀତ ମନକୁ ଛୁଇଁ ଦେଇଯାଏ । ଯେତେବେଳେ ବି ତାଙ୍କର ପରାଶରଙ୍କ କଥା ମନେପଡ଼ିଛି, ସଂଗେ ସଂଗେ ସେ ନିଜକୁ ପ୍ରଶ୍ନ କରିଛନ୍ତି– କାହିଁକି ଏମିତି ହେଲା ? ନ ହୋଇଥିଲେ ବି ତ ଭଲ ହେଇଥାନ୍ତା । ଆଉ ' ସେତିକିବେଳେ ଲଜ୍ଜା, ଭୀଷଣ ଲଜ୍ଜାରେ ସମସ୍ତ ଚେତନା ଆଚ୍ଛନ୍ନ ହେଇଉଠେ ।

ସେଇ ସବୁ ସ୍ମୃତି ଅବଚେତନର ଗଭୀରତମ ପ୍ରଦେଶରେ ନିର୍ବାସିତ ହେଇ ରହିଥିଲେ ହେଁ ବେଳେବେଳେ ମନେ ପଡ଼ିଯାଏ । ଆଖି ଆଗରେ ଭାସିଉଠେ ସେଇ ସବୁ ଦୃଶ୍ୟ ।

ସଂପୂର୍ଣ୍ଣ ନ ହେଲେ ବି କିଛି ଅସ୍ପଷ୍ଟ, କିଛି ଅବ୍ୟକ୍ତ, ଆଉ କିଛି ରହସ୍ୟାବୃତ୍ତ ହେଇ । ସତ୍ୟବତୀଙ୍କର ସେ ସବୁ ଦେଖାକଥା ନୁହେଁ । କିନ୍ତୁ ପରାଶରଙ୍କ ଶରୀରରେ ଯେଉଁ ପ୍ରତିକ୍ରିୟା ତାଙ୍କୁ ଉତ୍ତେଜିତ ଏବଂ ଇନ୍ଦ୍ରିୟ ଦମନରେ ବାଧା ସୃଷ୍ଟି କରିଥିଲା, ତା'ର କାଞ୍ଚନିକ ରୂପକୁ ସତ୍ୟବତୀ ଦେଖିପାରୁଥିଲେ... ।

.... ସୂର୍ଯ୍ୟଙ୍କ ନିସ୍ତେଜ ଆଲୋକର ମହଳଣରେଖା ପରାଶରଙ୍କ ବୟସ୍କ ମୁଖମଣ୍ଡଳରେ ଲେପି ହେଇଯାଇଥିଲା । କୌଣସି ଭୃକ୍ଷେପ ନ କରି ସତ୍ୟବତୀ ବିଚିତ୍ର ଅଙ୍ଗଭଙ୍ଗୀ କରି ମନ୍ଥର ଗତିରେ ତାଙ୍କ ପାଖ ଦେଇ ଚାଲିଯାଇଥିଲା । ତାର ଅଙ୍ଗ ସୌରଭ ପବନରେ ଅଜାଡ଼ି ହେଇ ପବନକୁ କରିଥିଲା ଗନ୍ଧବହ । ଚାଲୁ-ଚାଲୁ ସତ୍ୟବତୀ ଖୁବ୍ ଜୋର ଜୋରରେ ବାସ୍ନାକୁ ଆଘ୍ରାଣ କରିବାର ଶବ୍ଦ ଶୁଣିବାକୁ ପାଇଥିଲା । ଏମିତି ଏକ ଦୁରନ୍ତ କୌତୁକରେ ଏବଂ କୌତୂହଳରେ ସେ ଫେରିଚାହିଁଲା ପଛକୁ । ଦେଖିଲା ଜଣେ ଅପରିଚିତ ଋଷି ନାସା ଏବଂ ଓଷ୍ଠକୁ କୁଞ୍ଚେଇ ଖୁବ୍ ଜୋର୍‌ରେ ନିଃଶ୍ୱାସ ନେଉଛନ୍ତି । ତାଙ୍କୁ ଏ ପ୍ରକାର ଅବସ୍ଥାରେ ଦେଖି ସତ୍ୟବତୀକୁ ଭୀଷଣ ହସ ଲାଗିଲା । ପେଟ ଭିତରୁ ତାର ହସର ଅଫୁରନ୍ତ ସୁଅ ଛୁଟିଆସିଲା ସତେକି । ନିହାତି ବେପରୁଆ ଭାବେ ସେ ହସିଥିଲା । ନିଜକୁ ସଂଯତ ରଖିବାର ସମସ୍ତ ଚେଷ୍ଟା ଭାସିଯାଇଥିଲା କୁଆଡ଼େ । ଗାଲରେ ଆଙ୍ଗୁଠି ରଖି ଖିଲିଖିଲି ହେଇ ସେ ହସିଲା । ସେଇ ପୁରୁଷଟିର କ୍ଷେତ୍ରରେ କିନ୍ତୁ କୌଣସି ଭାବାନ୍ତର ହେଇନଥିଲା । ନିର୍ନିମେଷ ନୟନରେ ସେ କେବଳ ତାକୁ ହିଁ ଚାହିଁ ରହିଥିଲେ ।

ହଠାତ୍ ଗୋଟାଏ ବିସ୍ମୟବୋଧ ଫୁଟି ଉଠିଲା ସତ୍ୟବତୀର ମୁହଁରେ । ବିବ୍ରତ ଭାବେ ସେ ଲଜ୍ଜାରେ ସଙ୍କୁଚିତ ହେଇଯାଇଥିଲା । ଯଦିଓ ପୁରୁଷଜଣକ ବୟସ୍କ ଥିଲେ ତଥାପି ତାଙ୍କର ଯୌବନୋଚିତ ଆକର୍ଷଣ କିଛି କମ୍ ନ ଥିଲା ।

ମଣିଷର ମନ ବଡ଼ ରହସ୍ୟମୟ । ସତ୍ୟବତୀର ଅନୁଭୂତିଶୀଳ ମନ ଭିତରେ ନାରୀ ଓ ପୁରୁଷବୋଧଟା ହଠାତ୍ ତାକୁ ସଚକିତ କରିଦେଲା । ମୁହୂର୍ତ୍ତକରେ ଜଣେ ଦାୟିତ୍ୱଶୀଳ ଦେହ ସଚେତନ ନାରୀରେ ସେ ରୂପାନ୍ତରିତ ହେଇଗଲା । ଅନ୍ତର୍ବାସହୀନ ବକ୍ଷଦେଶର ଅଞ୍ଚଳଟି ଯଥେଷ୍ଟ ସଂଯତ ଓ ଶାଳୀନ ଥିବା ସତ୍ତ୍ୱେ ମଧ୍ୟ ସେ ପୁଣିଥରେ ତାକୁ ଖୋଲି ସଜାଡ଼ି ନେଇ ଟାଣକରି ଖୋଷି ନେଲା ଅଣ୍ଟାରେ । ସେଇତକରେ ଚତୁର୍ଦ୍ଦଶୀର ଉନ୍ନତ ବକ୍ଷସ୍ଥଳ ଆହୁରି ଉଦ୍ଧତ ଓ ଆକର୍ଷଣୀୟ ହେଇଉଠିଲା । ସେଇ ଚମତ୍କାର ଦୃଶ୍ୟାବଳୀକୁ ବିସ୍ଫାରିତ ଚକ୍ଷୁରେ ଥର ଥର କରି ପିଇ ଯାଉଥିଲେ ଋଷି ପରାଶର । ଚତୁର୍ଦ୍ଦଶୀ ସତ୍ୟବତୀର ଛାତିରେ ରକ୍ତ ଚହଲି ଉଠିଲା । ଭୟରେ ଜଡ଼ସଡ଼ ହେଇଗଲା ସେ । କଣ ଭାବିଲା କେଜାଣି ଦୌଡ଼ି ଚାଲିଗଲା ସେଇ ସ୍ଥାନ ଛାଡ଼ି । ପାଦର ନୂପୁର ସୁମଧୁର ତାନରେ ବାଜିଉଠିଲା ରୁଣୁଝୁଣୁ ହେଇ । କେତେବେଳେ ମୃଦୁ ଛନ୍ଦରେ ତ କେତେବେଳେ ଉଚ୍ଚ ଝଙ୍କାର ତୋଳି ।

ଶାନ୍ତ ଜିତେନ୍ଦ୍ରିୟ ଋଷିଙ୍କର ଛାତି ଭିତରେ ସେଇ ଧ୍ୱନି ସହସା ଅବିରାମ ଗତିରେ ଦ୍ରୁତ ଲୟରେ ବାଜି ଉଠିଲା । ନିମିଷକ ଲାଗି ଋଷି ପରାଶର ଅନ୍ୟ ଏକ ମଣିଷ ହେଇଗଲେ । ରକ୍ତରେ ବିପୁଳ ଉତ୍ତାପ । ଶିରାପ୍ରଶିରାରେ କେମିତିକା ଟଣଟଣ ଯନ୍ତ୍ରଣା ।

କିଛି ବାଟ ଆଗକୁ ଯାଇ ଠିଆ ହେଇପଡ଼ି ସତ୍ୟବତୀ ପଛକୁ ଚାହିଁଲା । ଦେଖିଲା, ଋଷି ତାକୁ ଅନୁସରଣ କରୁଛନ୍ତି । ଏକ ବିଚିତ୍ର ଦୃଷ୍ଟିରେ ଚାହିଁଛନ୍ତି ତା ଆଡ଼ିକି । ପୁଣି କେତେବେଳେ ତା'ର ଉଜ୍ଜ୍ୱଳ କୃଷ୍ଣବର୍ଣ୍ଣ ସୁଉଚ୍ଚ ବକ୍ଷଦେଶର ସୁଡୌଲ ମାଂସପିଣ୍ଡ ଉପରେ ତାଙ୍କର ସ୍ନିଗ୍ଧ ନୟନାଭିରାମ ଦୃଷ୍ଟି ନ୍ୟସ୍ତ ହେଇପଡୁଛି । ଆଖିର ପଲକ ପଡୁନି । ଋଷିଙ୍କର ସେଇ ଅନୁରାଗରଂଜିତ ଆଖି ଦୁଇଟିକୁ ଚାହିଁବା ମାତ୍ରେ ଲଜ୍ଜାରେ ରକ୍ତିମ ହେଇ ଉଠିଲା ସତ୍ୟବତୀ । ପରାଶରଙ୍କର ମଦିର ବିହ୍ୱଳ ଚାହାଣି ତାକୁ ସମ୍ମୋହିତ କରି ପକାଉଥିଲା । ପାଦ ଦୁଇଟି ଓଜନିଆ ହେଇଗଲା ଭଳି ମନେହେଲା । ପରାଶରଙ୍କୁ ଦେଖି ପ୍ରଥମ କରି ସେ ନିଜ ଭିତରେ ଏକାସଙ୍ଗେ ଭଲ ଲାଗିବା ଓ ଲଜ୍ଜା ଲାଗିବା- ଉଭୟଟିକୁ ଅନୁଭବ କରିଥିଲା ଏବଂ ସେଇ ବୋଧଟା ତା ମୁହଁ ଆଉ ଆଖିରେ ଫୁଟିଉଠି ତାର ରୂପକୁ ବଦଳେଇ ଦେଇଥିଲା ମଧ୍ୟ । ଗୋଟାଏ କିମିତି ଉଲ୍ଲାସ ଆଉ ଗୌରବବୋଧ ମନରେ ଜାଗିଉଠିଲା । ତଥାପି ନାରୀସୁଲଭ ଲଜ୍ଜା ତା ଭିତରେ ଏତେ ମାତ୍ରାରେ ଥିଲା ଯେ, ପରାଶରଙ୍କ ଆଡ଼କୁ ଚାହିଁବା ପାଇଁ ମଧ୍ୟ ତାକୁ ଲଜ୍ଜା ଲାଗିଲା । ଅନ୍ୟ ଦିଗକୁ ଚାହିଁଲା ସେ । ସେଇ ଆଚ୍ଛନ୍ନ ଅବସ୍ଥାରେ ସତ୍ୟବତୀ ତାର ସଂକ୍ଷିପ୍ତ ବସ୍ତ୍ରାଞ୍ଚଳକୁ ସନ୍ତର୍ପଣରେ ଟାଣି ନେଇଥିଲା ଛାତି ଉପରକୁ ।

ପରାଶରଙ୍କ ଦେହ ମନରେ ଜାଗିଉଠିଲା କାମନାର ମତ୍ତ ଜୁଆର । ଶ୍ଲଥ ପାଦରେ ବାଟଅବାଟ ନ ଦେଖି ସେ ଆଗେଇ ଯାଇଥିଲେ ଧୀବରବାଳା ଆଡ଼କୁ । ଆଶ୍ଚର୍ଯ୍ୟ, ଉଜ୍ଜ୍ୱଳ ଅଥଚ ଦ୍ୱିଧାଯୁକ୍ତ ଦୃଷ୍ଟିରେ ତା ଆଡ଼କୁ ଚାହିଁ ବୋଧହୁଏ ଅନେକ କିଛି ଖୋଜି ବସିଥିଲେ ପରାଶର । ପରମୁହୂର୍ତ୍ତରେ କଣ୍ଠସ୍ୱର କମ୍ପିଉଠିଲା । ମୃଦୁ ମଧୁର ସ୍ୱରରେ କହିଲେ- ତୁମେ କେତେ ସୁନ୍ଦର । ବାସ୍ତବରେ ଅପରୂପା ତୁମେ ।

ଖୁବ୍ ନିକଟରୁ ପରାଶରଙ୍କ ମୁଖରେ ନିଜ ରୂପର ପ୍ରଶଂସା ଶୁଣି ସମ୍ମୋହିତ ହୋଇଥିଲା ସତ୍ୟବତୀ । କି ସୁନ୍ଦର କଥା; ଦେହ ମନକୁ ଆଚ୍ଛନ୍ନ କଲା ଭଳି । କଥାର ମୂର୍ଚ୍ଛନା ବାଜି ଯାଉଥିଲା ସମଗ୍ର ଦେହମନରେ ଦାମାମା ଭଳି । ବୟସର ଯଥେଷ୍ଟ ପାର୍ଥକ୍ୟ ଥିବା ସତ୍ତ୍ୱେ ପରାଶରଙ୍କ ତୋଫା ଗୌରଶରୀର ଉନ୍ମୁକ୍ତ ବକ୍ଷଦେଶର ଭ୍ରମରକଳା ରୋମାବଳୀର ଅନିର୍ବଚନୀୟ କାନ୍ତି, ଶିରଦେଶର ସୁଦୀର୍ଘ କେଶଚୂଡ଼ା, ଶାନ୍ତସୌମ୍ୟ ତାପସ ମୂର୍ତ୍ତିର ଚୁମ୍ବକୀୟ ଆକର୍ଷଣ ସତ୍ୟବତୀକୁ ସେଦିନ ଟାଣି ନେଇଥିଲା ତାଙ୍କ ଆଡ଼କୁ । ସେ ଜାଣିପାରିଥିଲା ସେକଥା । କେତୋଟି ମୁହୂର୍ତ୍ତର ବିଭ୍ରମ । ଆକର୍ଣ୍ଣ ବିସ୍ତୃତ ସଲଜ୍ଜ ହସର ରେଖା ଟାଣି ହେଇ ଯାଇଥିଲା ତାର ଓଷ୍ଠାଧରରେ । ସେଇ ଲଜ୍ଜା ଆଉ ଆନନ୍ଦକୁ ଲୁଚେଇବାକୁ ଯାଇ ସେ

କହିଲା- ମୁଁ ଏହି ମତ୍ସ୍ୟଦେଶର ଧୀବର କନ୍ୟା । ମୋର ପିତା ଦାସରାଜ । ଏଇ ଘାଟ ତାଙ୍କର । ତାଙ୍କର ଅବର୍ତ୍ତମାନରେ କେବେ କେବେ ମୋତେ ଏଇ ଘାଟର ଦେଖାଶୁଣା କରିବାକୁ ପଡ଼ିଥାଏ । ମୁଁ ନିଜେ ନୌକା ଚାଳନା ଜାଣେ । ନଦୀ ପାର ହେବାକୁ ଚାହିଁଲେ ମୁଁ ଆପଣଙ୍କୁ ସାହାଯ୍ୟ କରିପାରେ ।

ସତ୍ୟବତୀ ଏଇ ଆମନ୍ତ୍ରଣ କଲାବେଳେ କିଛି ଭଲମନ୍ଦ ବିଚାର କରି ନ ଥିଲା । ଅନ୍ତଃସ୍ଥଳରେ ଏକ ଶିହରିତ ଆନନ୍ଦର ଉଜ୍ଜୀବନ ସ୍ପର୍ଶରେ ପରାଶରଙ୍କୁ ସେ ଆହ୍ୱାନ କରିଥିଲା ମାତ୍ର । ପରାଶରଙ୍କ ପ୍ରଲୁବ୍ଧ ମନ ଏଇ ଆମନ୍ତ୍ରଣ ଅପେକ୍ଷାରେ ଥିଲା ଯେମିତି । ସତ୍ୟବତୀର ପ୍ରସ୍ତାବ ଶୁଣି ତାଙ୍କର ଆଖିରେ ମୁଖରେ ଏକ ଅଦ୍ଭୁତ ଅପାର୍ଥିବ ମୁଗ୍ଧଭାବ ନଇଁ ଆସିଲା । ମନେହେଲା ସତେଯେମିତି ଏହା ଏକ ରୂପକଥାର ଗଳ୍ପ । ପରାଶର ଟିକିଏ ପ୍ରଗଲ୍‌ଭ ହେଇ ସାହସ କରି କହିଲେ, ନିଶ୍ଚୟ ଯିବି ସୁନ୍ଦରୀ ।

ସତ୍ୟବତୀର ଛାତି ଧଡ଼ପଡ଼ ହେବାକୁ ଆରମ୍ଭ କଲା । ଚତୁର୍ଦ୍ଦଶୀ ସତ୍ୟବତୀର ରକ୍ତରେ କଳଧ୍ୱନିର ସୂଚନା ମିଳୁଥିଲା । କିଛି ଯେମିତି ଘଟିବ- ଇଏ ତାର ଭୂମିକା ମାତ୍ର । ସେଇ ଘଟଣାଟା କ'ଣ ହୋଇପାରେ ? ତାହା ମଧ୍ୟ ସେ ଅନୁମାନ କରିପାରୁଥିଲା କିଛିଟା । କିନ୍ତୁ ତାର ଲୋଭ ହେଲା, ଇଛା ବି ହେଲା, କୌଣସି ପ୍ରକାରେ ନିଜକୁ ପ୍ରତିରୋଧ କରିପାରି ନ ଥିଲା ।

ତୀବ୍ର ଏକ ଆନନ୍ଦମିଶ୍ରିତ ଭୟରେ ତା ଛାତି ଭିତରଟା ଛନକି ଉଠିଲା । ହଠାତ୍ କଥାଟା କହି ପକେଇ ସେ ଭୁଲ କରିଦେଇଛି- ଅନୁଭବ କଲା । କିନ୍ତୁ କଥାକୁ ଫେରେଇ ନେବାର ଯୁକ୍ତି ମଧ୍ୟ ସେ ଖୋଜି ପାଇନଥିଲା । ଋଷିଙ୍କ ଅଭିଶାପରେ ଯଦି କିଛି ଅନର୍ଥ ଘଟେ, ଅମଙ୍ଗଳ ହୁଏ- ଏଇ ଭାବନାରେ ତାର ବୁଦ୍ଧିବଣା ହେଇଗଲା । ଯୁଗପତ୍ ଭୟରେ ଭାବୁ ଭାବୁ ହିଁ କହି ପକେଇଲା- ତାହେଲେ ନୌକାରେ ଆରୋହଣ କରନ୍ତୁ ଋଷିବର ।

କୁହୁଡ଼ି ଓ ଅନ୍ଧକାର ଯମୁନା ଛାତିରେ ଘନେଇ ଉଠିଥିଲା । ମନ୍ଦିର ଭିତରୁ ପବନରେ ଭାସିଆସିଲା ଶଙ୍ଖଧ୍ୱନି । ଯମୁନାକୂଳରେ ବନ୍ଧା ହେଇଥିବା ହୁଲିଡଙ୍ଗାର ଦଉଡ଼ି ଖୋଲି ସୁଅ ମୁହଁକୁ ଠେଲିଦେଇ ନିଜେ ସତ୍ୟବତୀ ନଉକାରେ ଉଠିଲା । ଋଷିଙ୍କୁ ବସେଇଲା । ଦୁହେଁ ଚୁପ୍‌ଚାପ୍ ଥିଲେ ନୌକାରେ । ସତ୍ୟବତୀ ନୌକାର ଆହୁଲା ଧରିଥିଲା ।

ଛୋଟିଆ ହୁଲି ଡଙ୍ଗାଟି ମୃଦୁମନ୍ଦ ଗତିରେ ଭାସି ଚାଲିଥିଲା । ପରାଶରଙ୍କ ପ୍ରଲୁବ୍ଧ ଚକ୍ଷୁ ଚତୁର୍ଦ୍ଦଶୀ ସତ୍ୟବତୀର ଯୌବନଭରା ରୂପକୁ ଚାହିଁ ରହିଥିଲା । ତାର ନିଟୋଳ ସୁଠାମ ଦେହର କାନ୍ତି, ଉନ୍ନତ ବକ୍ଷୋଜ ଉପରେ ତାଙ୍କର ଦୃଷ୍ଟି ଅଠାକାଠି ଭଳି ଲାଗି ରହିଥିଲା । କୌଣସି ପ୍ରକାରେ ଦୃଷ୍ଟି ଫେରେଇପାରୁ ନ ଥିଲେ ପରାଶର । ସ୍ରୋତର ପ୍ରତିକୂଳରେ ନଉକା ବାହିନେବା ସମୟରେ ତା ଶରୀରର ମାଂସପେଶୀ, ବକ୍ଷ, ଉରଜ, ନିତମ୍ବ ଆଦି

ପ୍ରତିଟି ଅଙ୍ଗପ୍ରତ୍ୟଙ୍ଗ ନାନା ଛନ୍ଦରେ ହିଲ୍ଲୋଳିତ ହେଉଥିଲେ । କଟିର ନିମ୍ନଦେଶ ଦୁଇ ଉରୁସ୍ତମ୍ଭରେ ସତେ ଯେମିତି ଝଡ଼ର କମ୍ପନ ଅନୁଭୂତ ହେଉଥିଲା । ଯମୁନାର ହିଲ୍ଲୋଳିତ ତରଙ୍ଗ ଭଳି ତାର ସ୍ତନ, କଟି, ଜଂଘ ଓ ପଦଦ୍ୱୟ ନୃତ୍ୟଛନ୍ଦରେ ଆନ୍ଦୋଳିତ ଓ ଆବର୍ତ୍ତିତ ହେବାକୁ ଲାଗିଲା ।

ଏଇ ଦୃଶ୍ୟ ପରାଶରଙ୍କ ଛାତି ଭିତରେ ଏକ ଅବୋଧ୍ୟ ରହସ୍ୟମୟ ଅନୁଭୂତିରେ ଖୁଜୁବୁଜୁ ହେବାକୁ ଲାଗିଲା । ସମୀରଣ ଯେଉଁଭଳି ଯମୁନାକୁ ପ୍ରତି ମୁହୂର୍ତ୍ତରେ ଆଲିଙ୍ଗନ କରେ, ସେଇଭଳି ଏକ ମିଳନ ଆଶାରେ ତାଙ୍କର ସମଗ୍ର ଶରୀର ଆର୍ତ୍ତ ହେଇ ଉଠୁଥିଲା । ଦେହର ଶିରାପ୍ରଶିରାରେ ଉଚ୍ଛ୍ୱସିତ ରକ୍ତର ପ୍ରବାହ ଅସହ୍ୟ ଉତ୍ତାପରେ ଅସ୍ଥିର ହେଇ ଉଠୁଥିଲା । ଛାତିତଳେ ସୃଷ୍ଟି ହେଲା ଘୂର୍ଣ୍ଣିଝଡ଼ । ଏହି ଭୟଙ୍କର ଉତ୍ତେଜନା ତାଙ୍କୁ ଦେଇ ଶରୀରର ଅଜଣା ଏକ ଉପଲବ୍ଧି ନିକଟରେ ପହଞ୍ଚେଇ ଦେଇଥିଲା, ଯାହାକୁ ସେ ଏ ଯାବତ୍ ଚିହ୍ନି ନ ଥିଲେ । ନିଜର ଯେ ଶରୀରଟିଏ ଅଛି, ଏକଥା ଯେମିତି ଋଷିବର ଜାଣିନଥିଲେ । ଯାହା ଜାଣିଥିଲେ ତାହା ଶୁଦ୍ଧ, ସଂଯମ ଆଉ ନିଦିଧ୍ୟାସନ ମାତ୍ର । ପରାଶର ଏଇ ବିକ୍ଷୁବ୍ଧ, ଉତ୍ତେଜିତ ଶରୀରକୁ ନେଇ କଣ କରିବେ ଭାବିପାରୁ ନ ଥିଲେ । କେବଳ ଅନୁଭବ କରିପାରୁଥିଲେ ଯେ, ଏଇ ମୁହୂର୍ତ୍ତରେ ଶରୀରଟା ସମସ୍ତ ସଂଯମର ଶାସନ ଶୃଙ୍ଖଳକୁ ଭାଙ୍ଗି ବନ୍ୟ ଆଉ ବର୍ବର ହୋଇଉଠିବ । ଆଉ ସ୍ଥିର ଭାବେ ରହିପାରିଲେନି ପରାଶର ବେଶିକ୍ଷଣ । ଅକସ୍ମାତ୍ ଉଠି ଠିଆହୋଇ ପଡ଼ିଲେ । ସତ୍ୟବତୀକୁ କିଛି ଭାବିବା ପାଇଁ ନ ଦେଇଁ ନିବିଡ଼ ବାହୁବନ୍ଧନରେ ବାନ୍ଧିଦେଲେ ତାକୁ । ବିମ୍ବାଧର ଭଳି ଓଷ୍ଠ ଦ୍ୱୟରେ ଆଙ୍କିଦେଲେ ଏକ ଚୁମ୍ବନ । ଉଦ୍‌ଗତ ନିଃଶ୍ୱାସକୁ ଛାତି ଭିତରେ ଚାପିରଖି, ଆଖିରେ ଆଖି ରଖିଲେ, ତାଂର ଅଙ୍ଗଲତାରେ ଅଙ୍ଗୁଳି ସଞ୍ଚାଳନ କଲେ ମୃଦୁଳ ଭାବେ । ବାଧା ଦେବାପାଇଁ ଶକ୍ତି ନ ଥିଲା । ସମସ୍ତ ଶରୀର ଓ ମନକୁ ଆଚ୍ଛନ୍ନ କରି ବାଜିଉଠିଲା ସୁଖର ସଂଗୀତ । ଦୁଇ ବିପରୀତ ଶରୀରର ସଂସ୍ପର୍ଶ ପାଇଁ ତାହା ଅବଶ୍ୟମ୍ଭାବୀ କରି ତୋଳିଥିଲା ।

ସତ୍ୟବତୀର ସମସ୍ତ ଅଙ୍ଗରେ ଶିହରଣ ଅଦ୍ଭୁତ ଧରଣର ଏବଂ ଗୋଟାଏ ଭଲ ଲାଗିବାର ଆବେଶ ଛାଇ ଯାଉଥିଲା କ୍ରମଶଃ । ନିଶାବୋଳା ଏହି ମୁହୂର୍ତ୍ତର ମଧୁର ଆମେଜ ଭିତରେ ତାର ଚେତନା ଟିକିଏ ଟିକିଏ ହେଇ ନିମଜ୍ଜିତ ହେଲା । ପରାଶରଙ୍କ ମଥା ନଇଁ ଆସିଲା । ତାଙ୍କ ଅଧର ସତ୍ୟବତୀର ଅଧର କୋଣ ଓ ଗଣ୍ଡଦେଶକୁ ସ୍ପର୍ଶ କଲା । କିଛି ମୁହୂର୍ତ୍ତପାଇଁ ସତ୍ୟବତୀ ବିଭ୍ରମରେ ପରାଶରଙ୍କ କଣ୍ଠଦେଶକୁ ଆଶ୍ଳେଷି ଧରିଥିଲା । ପରାଶର ସତ୍ୟବତୀ ଅଧରକୁ ଧୀରେ ଧୀରେ ଓଦା କରି ଦେଉଥିଲେ ଏବଂ ସେହି ସ୍ପର୍ଶ ସତେଯେମିତି ଚୁମ୍ବନ ସଂପର୍କରେ ଅନଭିଜ୍ଞ କିଶୋରୀର ଅନୁଭୂତି ଭିତରେ ସ୍ୱପ୍ନର ଇନ୍ଦ୍ରଜାଲ ସୃଷ୍ଟି କରୁଥିଲା । ସତ୍ୟବତୀର ନିବିଡ଼ ଆଶ୍ଳେଷଜନିତ ଆକର୍ଷଣ ଏବଂ ପରାଶରଙ୍କ ଘନ ନିବିଡ଼ ଆଲିଙ୍ଗନ

ଉଭୟଙ୍କ ରକ୍ତରେ ନିଆଁ ଲଗେଇ ଦେଲା, ଯେମିତି ବାରୁଦରେ ନିଆଁ ଲାଗେ । ସତ୍ୟବତୀର ପ୍ରତିଟି ଅଂଗ ଉତ୍ତପ୍ତ ହେଇଉଠିଥିଲା ସେଇ ଦୁରନ୍ତ କାମନାଗ୍ନି ଆବେଶର ତୀବ୍ରତାରେ ଅନଭିଜ୍ଞ । କିଶୋରୀ ବାଳିକା ତୃଷ୍ଣାର ଚୁମ୍ବନକୁ ଏକ ଗଭୀର ସୁଖକର ଅନୁଭୂତି ଭାବି ହଜେଇ ଦେଲା ନିଜକୁ ତା ଭିତରେ । ସଘନ ନିଃଶ୍ୱାସ ଦୁହିଁଙ୍କୁ କ୍ଳାନ୍ତ କରି ଦେଇଥିଲା । ବିଶ୍ରାମ ନେବା ଉଦ୍ଦେଶ୍ୟରେ ଦୁହେଁ ବିଚ୍ଛିନ୍ନ ହୋଇ ପରସ୍ପରକୁ ଚାହିଁ ରହିଲେ ମୁହୂର୍ତ୍ତକ ପାଇଁ । ସେତେବେଳକୁ ନାରୀସୁଲଭ ଲଜ୍ଜା ଓ ସଂକୋଚ ତାକୁ ମାଡ଼ି ବସିଥିଲା । ଅପମାନ ଲାଗିଲା ଏବଂ ତତ୍‌କ୍ଷଣାତ୍ ଏକ ଚକିତ ଯନ୍ତ୍ରଣାରେ ଜର୍ଜରିତ ହୋଇ ବ୍ୟଥାହତ କଣ୍ଠରେ କହିଲା- ଏ କି ପ୍ରକାର ଆଚରଣ ଆପଣଙ୍କର ଋଷିବର । ଏହି ନିର୍ଜନ ନଦୀବକ୍ଷରେ ମୋତେ ଏକୁଟିଆ ପାଇ ଆପଣ ଯେଉଁଭଳି ଉନ୍ମତ୍ତ ଆଚରଣ କଲେ, ତାହା କ'ଣ ଶୋଭନୀୟ ହେଲା ? ଧିକ୍ ଆପଣଙ୍କର ଋଷିତ୍ୱକୁ ।

ପରାଶର କିନ୍ତୁ ସତୃଷ୍ଣ ନୟନରେ ତା ଆଡ଼କୁ ଚାହିଁ ରହିଥିଲେ । ସ୍ମିତ ହସି ସବିନୟରେ କହିଲେ, ମୁଁ ତୁମକୁ ଦେଖି ମୋହାଚ୍ଛନ୍ନ ହେଇପଡ଼ିଛି । ବର୍ତ୍ତମାନ ମୁଁ ତୁମଠାରେ ଆସକ୍ତ । ମୋ ରକ୍ତରେ ଦୁରନ୍ତ ତୃଷ୍ଣା । ପ୍ରତିଟି କୋଷ ମୋର କ୍ଷୁଧାରେ ଆତୁର । ପ୍ରକୃତିର ଅଲଂଘ୍ୟ ନିୟମରେ ମୁଁ ତୁମକୁ ମୋ ବକ୍ଷରେ ନିକ୍ଷେପିତ କରିଛି । ଜୀବନ ଧର୍ମର ବିରୁଦ୍ଧାଚରଣ କଲାଭଳି କୌଣସି ଆଚରଣ ମୁଁ କରି ନାହିଁ ରୂପସୀ । ତୁମର ମଧୁର ସାନ୍ନିଧ ଲାଭ କରି ବୁଝିପାରୁଛି, ରମଣୀ ଭଳି ସୁନ୍ଦର ଉପଭୋଗ୍ୟ ସଂପଦ ଆଉ ପୃଥିବୀରେ କିଛି ନାହିଁ । ତୁମେ ଅପରୂପା ସୁନ୍ଦରୀ, ଅପରୂପ ତୁମର ଆକର୍ଷଣ ମଧ୍ୟ । ତୁମକୁ ପାଇ ମୁଁ ସଂତୃପ୍ତ ନୁହେଁ । ତୃଷ୍ଣା ମେଣ୍ଟିନି । ଅନନ୍ତକାଳ ଧରି ତୁମ ସଂଗ ପାଇଲେ ମଧ୍ୟ ମୋ କାମନାର ନିବୃତ୍ତି ହେବନି । ଏଇ ମୁହୂର୍ତ୍ତରେ ଆଜି ମନେହେଉଛି, ଜୀବନର ଚରମ ପ୍ରାପ୍ତି ଏବଂ ପରମ ନିବୃତ୍ତି ହେଉଛି - ନାରୀ । ଜୀବନକୁ ଫାଙ୍କି ଦେଇ ଏତେଦିନ ଧରି ବୃଥାରେ ମୁଁ ମୋକ୍ଷ ଖୋଜୁଛି । ଆଜି ତୁମର ଏଇ ଦରତନୁ ସଂସ୍ପର୍ଶରେ ଆସି ଏଇ ନୂତନ ଶିକ୍ଷା ମୁଁ ଲାଭ କଲି । ତୁମେ ହିଁ ମୋର ଧର୍ମ । ମୋ ଜୀବନର ସର୍ବସ୍ୱ । ତୁମକୁ ମୋ ହୃଦୟ ସମର୍ପଣ କରୁଛି । ମୋତେ ଗ୍ରହଣ କରି ଚରିତାର୍ଥ କର ସୁନ୍ଦରୀ ।

ପରାଶରଙ୍କ ଏଇ କଥା ଶୁଣି ଉଦ୍‌ଭ୍ରାନ୍ତ ଏକ ଉତ୍ତେଜନାରେ ସତ୍ୟବତୀର ଛାତି ଥରି ଉଠିଲା । ବାରମ୍ବାର ଶିହରିତ ହେଲା ସର୍ବାଙ୍ଗ । ଆଗରୁ କେବେ ଏଭଳି ହୋଇନଥିଲା । ଏକ ବିଭୋର ତନ୍ମୟତା ତାକୁ ଗ୍ରାସ କରି ବସିଲା । ମୁଗ୍ଧତା, କାମନାର ତୀବ୍ର ଆକର୍ଷଣ । ବୁଦ୍ଧିଭ୍ରଷ୍ଟ ହେଇଗଲା ସତ୍ୟବତୀର । ସବୁ ହିସାବ ଭୁଲି ସେ ଭୁଲ କରି ବସିଲା । ଏକ ଦୀର୍ଘଶ୍ୱାସ ଛାଡ଼ି ଆବେଗମଥିତ ସ୍ୱରରେ କହିଲା- ଋଷିବର, ଆପଣଙ୍କ ପ୍ରାର୍ଥନା ଉପେକ୍ଷା କଲାଭଳି ଶକ୍ତି ମୋର ନାହିଁ । ଆପଣ ମୋତେ ସମ୍ମୋହିତ କରିଛନ୍ତି ।

ସତ୍ୟବତୀ, ନିଛକ ପ୍ରେମ ନିକଟରେ ଧରା ଦେବାକୁ ହିଁ ହୁଏ- କହିଲେ ପରାଶର । ଦୁଇବାହୁରେ ତାକୁ ଛାତି ଉପରକୁ ଟାଣି ନେଲେ । ଉପାସୀ ଦେହ ଏତେଦିନ ପରେ ତା ଅଜାଣତରେ ହିଁ ଦାବି ନେଇ ସଂପୂର୍ଣ୍ଣ ଭାବ ହାଜିର ହେଲା । ଘନଘନ ଦୀର୍ଘଶ୍ୱାସ ପଡ଼ିବାକୁ ଲାଗିଲା । ଚନ୍ଦ୍ରମାର ଆକର୍ଷଣରେ ସତେ ଯେମିତି ଯମୁନା ଉତ୍ତାଳ ହେଇ ଉଠିଲା । ରତିସୁଖର ଉଚ୍ଛ୍ୱାସରେ ସେ ମଧ୍ୟ ମାତିଉଠିଲା ପରାଶରଙ୍କ ସହିତ ।

ତା ପରଠାରୁ ନିଦାରୁଣ ଦୁଃଖ, ଦୁଃସହ ଗ୍ଲାନି ଆଉ ଏକ ଅଜଣା ଆତଙ୍କରେ ଦିନଗୁଡ଼ିକ ବିଭୀଷିକାମୟ ହେଇ ଉଠିଥିଲା । ପେଟ ଭିତରେ ପରାଶରଙ୍କ ଭ୍ରୂଣ ଚନ୍ଦ୍ରକଳା ଭଳି ବଢୁଛି । ସତ୍ୟବତୀର ଛାତିତଳେ ଭୟଙ୍କର ଝଡ଼ । ଚରମ ଅପମାନ ଆଉ ଗ୍ଲାନିର କଳା ଅନ୍ଧାର ଝଡ଼ ।

ଲଜ୍ଜା ଆଉ ପିତାଙ୍କର ସମ୍ମାନ ରକ୍ଷା ପାଇଁ ସତ୍ୟବତୀ କୁଆଡ଼େ ପଳାଇଯିବାକୁ ଚାହିଁଲା । କିନ୍ତୁ ଶେଷ ପର୍ଯ୍ୟନ୍ତ ଦାସରାଜଙ୍କ କାରଣରୁ ସେ କଥା ସମ୍ଭବ ହେଲା ନାହିଁ । ଧରା ପଡ଼ିଗଲା । ଦାସରାଜଙ୍କ ଡାକରେ ସେ ଥମକି ଠିଆ ହେଲା । କିନ୍ତୁ ତାଙ୍କର ବିସ୍ମିତ ବ୍ୟଥିତ ଦୃଷ୍ଟି ସମ୍ମୁଖରେ ତାର ମଥା ନଇଁଗଲା ଲଜ୍ଜା ଏବଂ ଅପମାନ ବୋଧରେ । ଯେଉଁ ନିଷ୍ଠୁର ଦୈତ୍ୟ ତା ଜୀବନର ସମସ୍ତ ଶ୍ରୀସଂପଦକୁ ବିଷମୟ କରି ତୋଳିଲା, ତା କଥା ପିତାଙ୍କୁ ସେ କୋଉ ମୁହଁରେ କହିବ ? ସଂକୋଚ ଓ ଲଜ୍ଜାରେ ସତ୍ୟବତୀ ଗୋଟାପଣେ ଥରୁଥିଲା । ଭାଷାହୀନ ଆଖି ଦୁଇଟି ଲୋତକର ବନ୍ୟାରେ ଭାସୁଥିଲା ।

ଦାସରାଜ ବସିଲା ଗଳାରେ ଡାକିଲେ - 'ସତ୍ୟବତୀ' !

ଏତିକିରେ ତାର ସମସ୍ତ ଶରୀର ଥରିଗଲା, ଶିହରି ଉଠିଲା ସେ । ଭୟରେ ଅପମାନ ଓ ଦୁଃଖରେ ଛାତି ଭିତର ଛଟପଟ ହେବାକୁ ଲାଗିଲା । ସତ୍ୟବତୀ ଭଲଭାବେ ଜାଣିଥିଲା, ଏଇ ମଣିଷଟା ଯେ କୌଣସି ପରିସ୍ଥିତିରେ ମଧ୍ୟ ତାକୁ ତ୍ୟାଗ କରିବନି । ବର୍ତ୍ତମାନ ଜୀବନ ପାଇଁ ଏକାନ୍ତ ନିଶ୍ଚିତ ଆଶ୍ରୟ । ଆଗାମୀ ଦିନଗୁଡ଼ିକରେ ତା ଜୀବନରେ ଯାହା ବି ଘଟୁ ପଛକେ ତାକୁ ସେ ସ୍ୱୀକାର କରିନେବ । କିନ୍ତୁ ତାଙ୍କ ମହାନୁଭବତାର ପରମ ଦାନକୁ ଗ୍ରହଣ କରିବା ଭଳି ମନର ଅବସ୍ଥା ତାର ନାହିଁ । ତଥାପି ତାଙ୍କୁ ହିଁ ଜୀବନର ଏକମାତ୍ର ଅବଲମ୍ବନ ଭାବି ଜାବୁଡ଼ି ଧରିଥିଲା । ଛାତିରେ ମୁହଁ ଲୁଚେଇ ଅବୋଧ ଶିଶୁ ଭଳି କାନ୍ଦିବାକୁ ଲାଗିଲା ସେ । ସ୍ତବ୍ଧ ହେଇ ଠିଆହେଇଥିଲେ ଦାସରାଜ । ତାଙ୍କ ଆଖିରେ ଲୁହ ନ ଥିଲା । କିନ୍ତୁ ଚାହାଣିରେ ଫୁଟି ଉଠୁଥିଲା ବିଜାତୀୟ ମଣିଷ ଉପରେ ତୀବ୍ର ଘୃଣାଭାବ । ସତ୍ୟବତୀକୁ ସାନ୍ତ୍ୱନା ଦେବାପାଇଁ କିଛି ନ ଥିଲା । ତାଙ୍କ ମୁହଁରେ ଆଜି କଳଙ୍କର କାଳିମା ବୋଳି ହେଇଯାଇଛି । ଅଥଚ ପିତା ହେଇ ମଧ୍ୟ ସେ କିଛି କରିପାରୁ ନାହାନ୍ତି । ମୁକୁଳେଇ ପାରୁ ନାହାନ୍ତି ତାକୁ ତାର ଆତ୍ମଗ୍ଲାନିରୁ ଏବଂ କିଛି କରି ନ ପାରିବାର ଅକ୍ଷମତା ତାଙ୍କୁ ନିଦାରୁଣ

କଷ୍ଟ ଦେଉଥିଲା । ନିଜ ଛାତି ଭିତରେ ସତ୍ୟବତୀ, ପିତାଙ୍କର ସେଇ ଅବ୍ୟକ୍ତ ହୃଦୟର ଯନ୍ତ୍ରଣା ଶୁଣିପାରୁଥିଲା ଧୁକ୍ ଧୁକ୍ ଶବ୍ଦ ଭିତର ଦେଇ ।

ଲୁହ ଭିଜା ଆଖିରେ ଆଲୋକିତ ବନଭୂମି ଆଡ଼କୁ ଚାହିଁ ରହିଥିଲା ସତ୍ୟବତୀ । ତାର ସମଗ୍ର ଶରୀର ଏବଂ ମନ ସତେ ଯେମିତି ବିଷର ଜ୍ୱାଳାରେ ଜଳି ଯାଉଥିଲା । ଅସ୍ୱସ୍ତି ଲାଗୁଥିଲା ସମସ୍ତ ଦେହ ମନ । ପାପର ଭାରରେ ଓଜନିଆ ଲାଗୁଥିଲା । ପ୍ରସବ ପରେ ନିଜ ସନ୍ତାନ ଉପରେ ମଧ୍ୟ ତାର କୌଣସି ଅଧିକାର ନାହିଁ । ଏକଥା ମନକୁ ଆସିବା ମାତ୍ରେ ହିଁ ଛାତି ଭିତରୁ କୋହ ମାଡ଼ି ଆସୁଥିଲା ।

ସତ୍ୟବତୀର ନିର୍ବାକ୍ ଆଖି ଦୁଇଟିରେ ଜମାଟ ବାନ୍ଧିଥିବା ଆତଙ୍କର ଛାୟା ଆଡ଼କୁ ନିର୍ନିମେଷ ନୟନରେ ଚାହିଁ ଦାସରାଜ ସ୍ନେହ ମଧୁର କଣ୍ଠରେ ଡାକିଲେ- ସତ୍ୟବତୀ, ମା' ତୁ କୁଆଡ଼େ ଯାଉଛୁ ? କାହା ଭୟରେ ଯାଉଛୁ ?

ଲୁହବୋଳା ଭୀରୁ ଆଖି ଟେକି ସତ୍ୟବତୀ ତାର ପାଳକ ପିତାଙ୍କ ଆଡ଼କୁ ଚାହିଁଲା । କିଛି କହିବାକୁ ଯାଇ କାନ୍ଦଣାରେ କଣ୍ଠରୋଧ ହେଇଆସିଲା । ମୁହୂର୍ତ୍ତେ ନିରବ ରହି ଓଠ କାମୁଡ଼ି କହିଲା- ଏକ ନିର୍ଲଜ ଋଷିଙ୍କ ଲାଳସା ବିଷରେ ମୋ ଦେହ ମନ ବିଷେଇ ଉଠିଛି । ଅଭିଶାପର ଅଙ୍କୁରକୁ ବୋହି ମୁଁ ଚାଲିପାରୁନି ଆଉ । ଦାସରାଜ ଟିକିଏ ଅପ୍ରତିଭ ମୁଖରେ କହିଲେ- ମୁଁ ଜାଣେ ।

ସତ୍ୟବତୀର ଛାତି ଦାଉଁ କରି ଉଠିଲା । କେମିତି ଗୋଟିଏ ଲଜ୍ଜାରେ ଝାଉଁଳି ଗଲା ସେ । ଭୟଙ୍କର ଅସ୍ୱସ୍ତି ଆଉ ଅଜଣା ଆଶଙ୍କାରେ ଚମକିଲା ଭଳି ଆର୍ତ୍ତନାଦ କରି ଉଠିଲା - ପିତା !

ଦାସରାଜ ଅତି କଷ୍ଟରେ ନିଜକୁ ସମ୍ଭାଳି ନେଇ ଧୀର ସ୍ୱରରେ କହିଲେ- ଏଥିରେ ଆତଙ୍କିତ ହେବାର କ'ଣ ଅଛି ? ଭୟ କାହିଁକି ? ଯିଏ ଆସୁଛି ତାକୁ ଆସିବାକୁ ଦେବା ଉଚିତ । କୋଉ ଉଦ୍ଦେଶ୍ୟରେ ତାର ଜନ୍ମ ସେ କଥା କିଏ କହିପାରିବ ? ବିଷଜ୍ୱାଳାରେ ଅହରହ ଜଳୁଛି ଛାତି, ସେଇ ଜ୍ୱାଳାର ଉପଶମ ପାଇଁ କିଛି ଗୋଟାଏ ମାଧ୍ୟମ ଦରକାର । ସନ୍ତାନ ଯେ ସେଇ କାର୍ଯ୍ୟ କରିବା ପାଇଁ ଜନ୍ମ ନେଉନି, କିଏ କହିପାରିବ ?

ସତ୍ୟବତୀ ଦାସରାଜଙ୍କ କଥାର ମର୍ମ ଠିକ ବୁଝି ପାରିନଥିଲା । ଛାତି ଭିତରେ ଅଭିମାନର ଝଡ଼ ମୁଣ୍ଡ ଟେକିଥିଲା । ଅସ୍ଥିର ଭାବେ ସେ ମୁଣ୍ଡ ହଲେଇଲା ଥରେ ଅଧେ । ସେ ଜାଣିପାରୁଥିଲା ଯେ ତାର ନିଃଶ୍ୱାସ ପ୍ରଶ୍ୱାସ କମ୍ପିଉଠୁଛି । ନିଜ ଉପରେ କ୍ରୋଧ ଆସିଲା । ଘୃଣା ଜନ୍ମିଲା । ଅନୁତାପ ଓ ଅନୁଶୋଚନାରେ ବାରବାର ଧିକ୍କାର କଲା ନିଜକୁ । ମୁଣ୍ଡ କିଛି କାମ କରୁନଥିଲା । କେବଳ ଗୋଟାଏ କୋହ ଓ ଛାତି ଭିତରେ ଦଳିଚକଟି ପକାଉଥିଲା । ଆଖି ଭାସି ଯାଉଥିଲା ଲୁହରେ । କୋହ ଭିତରେ କଥାଗୁଡ଼ିକ ଅନୁଚ୍ଚାରିତ, ଅସ୍ପଷ୍ଟ ଓ

ଭଙ୍ଗାଭଙ୍ଗା ଲାଗୁଥିଲା । ସେଇ ଦରଭଙ୍ଗା ବସିଲା ସ୍ୱରରେ କହିଲା- ପିତା ! ସନ୍ତାନ ଯଦି ପୁତ୍ର ହୁଏ, ତା'ହେଲେ ଜନନୀର କୌଣସି ଦାବି ରହିବନି ତା ଉପରେ । ଦ୍ୱାଦଶବର୍ଷ ଶେଷରେ ଋଷି ତାକୁ ନିଜ ଆଶ୍ରମକୁ ନେଇଯିବେ । ସେତେବେଳେ ମୋର କ'ଣ ହେବ ?

ଦାସରାଜ ନୀରବରେ ଠିଆ ହୋଇଥିଲେ ସେତେବେଳେ । ମସ୍ତକର କେଶରାଶି ପବନରେ ଅସ୍ତବ୍ୟସ୍ତ ହେଇ ଉଡୁଥିଲା । ଅନେକ ସମୟ ପରେ ଦୀର୍ଘଶ୍ୱାସ ନେଲେ ସେ ।

ହତାଶିଆ କଣ୍ଠରେ ବିମର୍ଷ ସ୍ୱରରେ କହିଲେ- ଭାବିବା ଛଡ଼ା ଆମମାନଙ୍କର ତ କିଛି କରିବାର ନାହିଁ । କୃଷ୍ଣକାୟ ଅନାର୍ଯ୍ୟ ରମଣୀମାନଙ୍କୁ ଆର୍ଯ୍ୟମାନେ କୌଣସି ଦିନ ଶ୍ରଦ୍ଧା ବା ସମ୍ମାନ କରନ୍ତି ନାହିଁ । ବରଂ ସେମାନେ ଏମାନଙ୍କୁ ଶସ୍ତା ଓ ସହଜଲଭ୍ୟ ବୋଲି ମନେକରନ୍ତି । କୃଷ୍ଣକାୟ ଅନାର୍ଯ୍ୟ ରମଣୀଗଣ ଆର୍ଯ୍ୟ ପୁତ୍ରମାନଙ୍କର ଲାଳସା ଚରିତାର୍ଥର କେବଳ ଗୋଟାଏ ଗୋଟାଏ ଯନ୍ତ୍ର । ଏହି ପାପାଚାରର କୌଣସି ପ୍ରତିକାର ନାହିଁ । ପ୍ରତିରୋଧ ନାହିଁ ବୋଲି ଦିନକୁ ଦିନ ଏହା ବଢ଼ିବାରେ ଲାଗିଛି । ବାହୁବଳ ଓ ଲୋକବଳରେ ଆମେ ସେମାନଙ୍କ ସମକକ୍ଷ ନୋହୁଁ ବୋଲି ନୀରବରେ ସହ୍ୟ କରି ଚାଲିଛୁ । କିନ୍ତୁ ଦୁର୍ବଳ ମଧ୍ୟ କୌଶଳକ୍ରମେ ଜିତାପଟ ହାସଲ କରିପାରେ, ଏକଥା ବର୍ତ୍ତମାନ ଭାବିବାକୁ ହେଉଛି । ଦିନେ ତୋତେ ମୁଁ ଅସ୍ତ୍ର କରି ଏମାନଙ୍କ ବିରୋଧରେ ଲଢ଼ିବି ।

ଦାସରାଜଙ୍କ କଥା ଶୁଣି ସତ୍ୟବତୀ ହଠାତ୍ ଚମକି ଉଠିଲା, ଥରଥର ହୋଇ କମ୍ପିଉଠିଲା ତାର ସର୍ବାଙ୍ଗ । ଦାସରାଜ କିନ୍ତୁ ନିସ୍ପନ୍ଦ ଭାବେ ଠିଆ ହେଇଥିଲେ । ପବନରେ ତାଙ୍କର ଦୀର୍ଘ କେଶରାଶି ଉଡ଼ି ବୁଲୁଥିଲା । ସତ୍ୟବତୀ ଆଡ଼କୁ କିଛି ସମୟ ସେମିତି ଚାହିଁ ରହିଲେ ସେ । ତା'ପରେ କଣ ମନେକଲେ କେଜାଣି ଆଖିବୁଜି ଅନେକ ସମୟ ଧରି ସେହିଭଳି ନିଝୁମ ଅବସ୍ଥାରେ ବସି ରହିଲେ । ମନକୁ ଆହୁରି କଠିଣ ଏବଂ ନିର୍ବିକାର କରିବା ପାଇଁ ବୋଧହୁଏ ଗୋଟାଏ ଅକ୍ଷମ ପ୍ରୟାସ କରୁଥିଲେ । ସ୍ଫୁରିତ ଅଧର କୋଣରେ ଫାଳେ ହିଂସ୍ର ହସ ଫୁଟି ଉଠିଥିଲା । ସ୍ୱଗତୋକ୍ତି କରି କହିଲେ, ଗୋଟାଏ ପ୍ରକାର ଘଟଣାର ପୁନରାବୃତ୍ତି ସେଇ ଜଣକ ଜୀବନରେ କାହିଁକି ଘଟିଲା ? କୋଉ ମହାରହସ୍ୟର ଇଙ୍ଗିତ ଲୁଚିରହିଛି ଏଥିରେ ? ସତରେ କଣ ବିଧାତା ମୋ ଅନ୍ତରର କଥା ଶୁଣିପାରିଛନ୍ତି ? ସତ୍ୟବତୀ, ତୋରି ଗର୍ଭସ୍ଥ ସନ୍ତାନ ମହାକାଳର ପରୱାନା ନେଇ ଆସୁଛି । ଏହି କୃଷ୍ଣକାୟ ଦ୍ୱୀପବାସୀ ଅନାର୍ଯ୍ୟମାନଙ୍କ ଜୀବନରେ ଦୁଃଖ, ଯନ୍ତ୍ରଣା, ଛଳନା ଓ କ୍ଷୋଭର ପ୍ରତିହିଂସା ନେଇ ସେ ଅବତୀର୍ଣ୍ଣ ହେଉଛି । ଏଇ ପୁତ୍ର ପୂର୍ଣ୍ଣ ଅବତାର ।

ସତ୍ୟବତୀର ମୁଣ୍ଡ ଭିତରଟା କିଛି କାମ କରୁନଥିଲା । ସବୁ ଶୂନ୍ୟ ଶୂନ୍ୟ ଲାଗୁଥିଲା । ଭାବିପାରୁନଥିଲା କିଛି । ଚିନ୍ତା କରିପାରୁନଥିଲା । ମୂକ ପାଲଟି ଯାଇଥିଲା ।

ଦାସରାଜ ସତ୍ୟବତୀର ନିର୍ବାକ୍ ଆଖି ଦୁଇଟିକୁ ଚାହିଁ ମୃଦୁ ମୃଦୁ ହସୁଥିଲେ । ସେହି ହସ ଭିତରେ ସବୁଦିନର ଦାସରାଜଙ୍କର ରୂପାନ୍ତରିତ ଘଟିଥିଲା । ଥରେ ଦି'ଥର ଢୋକ ଗିଳିଲେ ସେ । ଗୋଟାଏ ଆବେଗ ତାଙ୍କୁ ଦୁର୍ବଳ କରି ପକାଉଥିଲା । ନିଜର ସେଇ ବିସ୍ମୟକୁ ହଠାତ୍ ଲୁଚେଇବାକୁ ଯାଇ ହସି ହସି କହିଲେ- ଏସବୁ ହେଉଛି ବିଶ୍ୱାସ । ବିଶ୍ୱାସ ଓ ସ୍ୱପ୍ନ ବ୍ୟତୀତ ଏହି ଅସହାୟ ଦୁଃଖୀ ମଣିଷଙ୍କର କ'ଣ ବା ଅଛି ?

ସତ୍ୟବତୀ କ'ଣ ଆଉ ଉତ୍ତର ଦେବ ? ଛାତି ଥରି ଉଠୁଥିଲା । ସେଇ ଥରିଲା ଛାତିରେ ପ୍ରଶ୍ନ କଲା- ମୋତେ ତୁମେ ଖରାପ ଭାବୁ ନାହଁ ତ ?

ଦାସରାଜ ଅତି କଷ୍ଟରେ ଟିକିଏ ହସିବା ପାଇଁ ଚେଷ୍ଟା କଲେ ଯେମିତି । ମୁଣ୍ଡ ହଲାଇ କହିଲେ, ଦୂର୍ ପାଗଳୀଟା ।

ତା'ପରେ, ଦିନେ ଯଥାସମୟରେ ଅସହନୀୟ ଗର୍ଭ ଯନ୍ତ୍ରଣା । ଦାନ୍ତ ଚିପି କଷ୍ଟ ସହ୍ୟକରି ସେ ଜନ୍ମଦେଲା ପୁତ୍ର ଦ୍ୱୈପାୟନକୁ । ଆର୍ଯ୍ୟ ଜାତିର ରକ୍ତ ନେଇ ଅନାର୍ଯ୍ୟ ମା'ର ଗର୍ଭରୁ ନିରାପଦରେ ହିଁ ନିଷ୍କ୍ରାନ୍ତ ହେଇଥିଲା ପୁତ୍ର ସନ୍ତାନଟି । ପୁତ୍ରକୁ ଦେଖି ଦାସରାଜଙ୍କର ଆନନ୍ଦର ସୀମା ନ ଥିଲା । ହେଲେ ସତ୍ୟବତୀର ନିଥର ଶରୀରରେ ଏକପ୍ରକାର ନିର୍ବେଦ ଶୀତଳତା ଛାଇ ଯାଇଥିଲା । ଶୀତ ନୁହେଁ, ତଥାପି କେମିତି ଗୋଟାଏ ଜମାଟବନ୍ଧା ଶକ୍ତ ପଥର ଭଳି ଏକପ୍ରକାର ଅମୋଘ ଶୀତଳତା ତାର ଶରୀରକୁ ଅବଶ କରି ପକେଇଥିଲା । ମୁଣ୍ଡ ଘୂରୁଥିଲା ବାରମ୍ବାର । ଆଖି ଆଗରେ କେତେ କଥା କେତେ ଦୃଶ୍ୟ ଭାସି ଯାଉଥିଲେ । ଅଥଚ ସବୁଗୁଡ଼ାକର ଅର୍ଥ କିଛି ନ ଥିଲା ।

ସତ୍ୟବତୀର ଏହି ଗଭୀର ବିଷଣ୍ଣତାକୁ କିଞ୍ଚିତ ସହଜ ଓ ଉଲ୍ଲସିତ କରିବା ଉଦ୍ଦେଶ୍ୟରେ ଦାସରାଜ ସେଇ କୃଷ୍ଣକାୟ ପୁତ୍ରସନ୍ତାନର ମୁହଁକୁ ଚାହିଁ କହିଲେ, ସତ୍ୟବତୀ, ଏହି ପୁତ୍ର ଏକାନ୍ତ ଭାବେ ତୋର । ତୋରି ଭଳି ଦିଶୁଛି । ତା ବାପ' ଭଳି ନୁହେଁ । ତା ବାପର ରଙ୍ଗ ମଧ୍ୟ ଆଣିନି । ଆମ ଗୋଷ୍ଠୀର ରକ୍ତ ହିଁ ତା ଶରୀରରେ ପ୍ରବାହିତ ହେଇଛି । ଆମ ଭଳି ତା ଶରୀରର ଗଢ଼ଣ । ଏଇକଥା ଜଣେଇ ଦେବା ପାଇଁ ସତେ ଯେମିତି ମୁଗୁନିପଥର ଭଳି ରଙ୍ଗ ନେଇ ଆସିଛି ମୋ ବୁଢ଼ା ବାପ, ରସିକ ନାଗର... ସ୍ୱପ୍ନ ମୋର ସାର୍ଥକ ହୋଇଛି । ଆମର ଏଇ ଦ୍ୱୀପାଞ୍ଚଳରେ ଜନ୍ମ ହେଇଥିବା କଳାକୃଷ୍ଣ ପୁଅର ନାମ ତେଣୁ କୃଷ୍ଣ ଦ୍ୱୈପାୟନ ରହିଲା । ଏଇ ନାମ ତାକୁ କେବେବି ଆମ କଥା, ତା ମା'ର କଥା ଭୁଲିବାକୁ ଦେବ ନାହିଁ ।

ଏତେ ଦୁଃଖ ଭିତରେ ମଧ୍ୟ ସତ୍ୟବତୀର ସାହସ ଟିକିଏ ବଢ଼ିଗଲା । ଆଚମ୍ବିତ ପ୍ରଶ୍ନଟିଏ କଲା ସେ । ଆଚ୍ଛା ପିତା ! ଗୋଟାଏ ପ୍ରଶ୍ନର ଉତ୍ତର ଦେବ ମୋତେ ଆଜି ତମେ ? ସସ୍ନେହରେ ସତ୍ୟବତୀର ମୁହଁକୁ ଚାହିଁ ରହିଲେ ଦାସରାଜ କିଛି ସମୟ ଯାଏ । ଗୋଟାଏ

ସ୍ନିଗ୍ଧ ହସର ଦ୍ୟୁତି ଫୁଟି ଉଠିଲା ମୁହଁକୁ ଉଦ୍‌ଭାସିତ କରି । ସେ ମୁଣ୍ଡ ହଲେଇ କହିଲେ, ନିଶ୍ଚୟ ଉତ୍ତର ଦେବି ମା', ହେଲେ କୋଉ କଥା ତୁ ଶୁଣିବାକୁ ଚାହୁଁଛୁ କହ ।

ମୋର ଏଇ ନାରୀ ଜୀବନକୁ ସାର୍ଥକ କରିବା ପାଇଁ କିଏ ମୋତେ ଏହି ପୃଥିବୀକୁ ଆଣିଥିଲା ? ତାଙ୍କ କଥା ତ ମୋତେ କୌଣସି ଦିନ ମଧ୍ୟ କହି ନାହଁ । ଜାଣିବାକୁ ଦେଇ ନାହଁ କିଏ ମୋର ଅସଲ ପିତାମାତା । କେବଳ ତୁମ କଥାବାର୍ତ୍ତାରୁ ମୁଁ ଯାହା ଅନୁମାନ କରିଛି ମାତ୍ର ।

ଦାସରାଜ ତିଳେ ମାତ୍ର ଦ୍ୱିଧା ନ କରି ଖୁବ୍ ସହଜ କଣ୍ଠରେ କହିଲେ- କିଏ ତୋତେ କଣ କହିଛି ମୁଁ ଜାଣେନା । ତେବେ ଏକଥା ସମସ୍ତେ ଜାଣନ୍ତି ଯେ, ତୁ ମୋର ପାଳିତା କନ୍ୟା । ରାସ୍ତାକଡ଼ରୁ ହୀରା ଖଣ୍ଡେ ଗୋଟେଇ ମୁଁ ଲୁଗାରେ ବାନ୍ଧି ରଖିଛି ଯତ୍ନରେ । ତୋର ମା' ଏଇ ଧୀବରପଲ୍ଲୀର ଝିଅ ଆଦ୍ରିକା । ପିତା ପୁରୁବଂଶୀୟ ଚେଦିରାଜ ଉପଚିର ବସୁ । ଦିନେ ଉପଚିର ବସୁ ମୃଗୟା ନିମନ୍ତେ ଏହି ଧୀବରପଲ୍ଲୀ ଦେଇ ଯାଉଥିଲେ । ପଥରେ ଧୀବରବାଳା ସୁଦର୍ଶନା ଆଦ୍ରିକାକୁ ଦେଖି କାମାସକ୍ତ ହେଇ ପଡ଼ିଲେ । ବଳପୂର୍ବକ ତାକୁ ହରଣ କରି ନେଇଗଲେ ନିଜର ବିଳାସକୁଞ୍ଜକୁ । ତା'ପରେ ସେ ଦିନେ ଧୀବରପଲ୍ଲୀକୁ ଫେରିଆସିଲା ସତ । ହେଲେ ସେତେବେଳକୁ ଆଦ୍ରିକା ଶରୀରରେ ମାତୃତ୍ୱର ଲକ୍ଷଣ ସବୁ ଫୁଟିଉଠିଥିଲା । ହେଲେ ତା ନିଜ ଘରେ ଆଉ ତା ପାଇଁ ସ୍ଥାନ ନ ଥିଲା । ତାକୁ ଆଣି ମୁଁ ମୋରି ଘରେ ସ୍ଥାନ ଦେଇଥିଲି । ତାର ବାପା ଡାକ ମୋ ମନରେ ନିଶା ଧରେଇ ଦେଇଥିଲା । କିନ୍ତୁ ମୁଁ ତାକୁ ଧରି ରଖିପାରିନଥିଲି । ଯମଜ ପୁତ୍ର ଓ କନ୍ୟା ପ୍ରସବ କରି ସେ ପ୍ରାଣତ୍ୟାଗ କରିଥିଲା । ତୁ ସେଇ ଝିଅ, ଯାହାକୁ ମୁଁ ମୋ ବକ୍ଷରେ ଜାବୁଡ଼ି ଧରି ରଖିଥିଲି । ଆଉ ତୋର ଯମଜଭାଇଟି ବଡ଼ ହେଇଯିବା ପରେ ଉପଚିର ବସୁ ଦିନେ ଜୋରକରି ତାକୁ ନେଇଯାଇଥିଲେ । ହତଭାଗୀ ତୋ' ମା' ତୋ ଭାଗ୍ୟରେ ମଧ୍ୟ ସୁଖ ସହିଲା ନାହିଁ ।

ଶୁଣୁ ଶୁଣୁ ସତ୍ୟବତୀର ଦୀର୍ଘଶ୍ୱାସଟିଏ ଛୁଟିଆସିଲା । ଆଖିରେ ଭରିଆସିଲା ଲୁହ । ଦାସରାଜ ମଧ୍ୟ ନିଜ ଆଖି ଲୁହକୁ ଲୁଚେଇବା ପାଇଁ ତରବର ହୋଇ ଘର ଭିତରରୁ ବାହାରକୁ ଚାଲିଗଲେ । ସତ୍ୟବତୀଙ୍କ ଜନନୀ ହୃଦୟ ଦ୍ୱୈପାୟନଙ୍କ ପାଇଁ ଉନ୍ମୁଖ ହେଇଉଠିଲା । କେତେକାଳ ହେଲା କେଜାଣି ସେ ଦ୍ୱୈପାୟନଙ୍କୁ ଦେଖି ନାହାନ୍ତି । ଦ୍ୱୈପାୟନଙ୍କ ବୟସ୍କ ମୁଖକୁ ସେ କଳ୍ପନା କରିପାରୁନଥିଲେ । କେବଳ ଗୋଟିଏ ଅସ୍ପଷ୍ଟ ଛାୟା ତାଙ୍କ ମୁହଁ ସାମନାରେ ଭାସି ଉଠୁଥିଲା । ହଠାତ୍ କାହିଁକି ସତ୍ୟବତୀଙ୍କର ମନେହେଲା, ସବୁ ପିଲାଙ୍କ ଭିତରୁ ସଂସାର ଉଦାସୀନ, ବ୍ରହ୍ମଚାରୀ ଏଇ ପୁଅଟି ପ୍ରତି ତାଙ୍କର ହୃଦୟର ବନ୍ଧନ ଓ ଆକର୍ଷଣ ଟିକିଏ ଅଧିକ, ସ୍ନେହ କିଞ୍ଚିତ୍ ବେଶି । ତାଙ୍କ ସ୍ନେହକାଙ୍ଗାଳ ହୃଦୟ ଏହି ସନ୍ତାନଟିର ଶ୍ରଦ୍ଧା, ସାନ୍ନିଧ୍ୟ ଏବଂ ଭଲପାଇବା ଟିକିଏ ବେଶି ମାତ୍ରାରେ ଚାହେଁ । ସତ୍ୟବତୀ ଏଇ ପ୍ରଥମ କରି ଅନୁଭବ

କଲା ଯେ, ସତରେ ତାର ଜୀବନ କେତେ ରିକ୍ତ, କେତେ ଶୂନ୍ୟ । ତାର ସମସ୍ତ ଜନନୀସତ୍ତା ଏଇ ପୁଅଟିର ସାନ୍ନିଧ୍ୟ ଲାଭ କରିବାକୁ ଆଜି କାଙ୍ଗାଳପ୍ରାୟ ହେଇଉଠିଛି । ପ୍ରତିଟି ମୁହୂର୍ତ୍ତ ତାର ଉତ୍କଣ୍ଠାରେ କଟୁଛି ।

ଦ୍ୱାର ଖୋଲି କକ୍ଷ ଭିତରେ ପ୍ରବେଶ କଲେ ଦ୍ୱୈପାୟନ । ଶ୍ମଶ୍ରୁବିମଣ୍ଡିତ ଜଟା ବଲ୍‌କଳ ପରିହିତ ଦ୍ୱୈପାୟନଙ୍କୁ ଚିହ୍ନିବାରେ କୌଣସି ଅସୁବିଧା ହେଲାନି ସତ୍ୟବତୀଙ୍କର । ସଂଧ୍ୟାର ଅନ୍ଧାର ଭିତରେ ଯେମିତି ମେଞ୍ଚାଏ ସ୍ନିଗ୍ଧ ଆଲୁଅ ବିଞ୍ଚିହେଇ ପଡ଼ିଛି ଦ୍ୱୈପାୟନଙ୍କ ମୁଖମଣ୍ଡଳରେ । ଋଷିସୁଲଭ ଜ୍ଞାନ ଓ ଉପଲବ୍ଧିର ସ୍ନିଗ୍ଧ ମହିମା ମଧ୍ୟ ମିଶିରହିଛି ସେଥିରେ । ବିମୁଗ୍ଧ ସତ୍ୟବତୀର ବିହ୍ୱଳ ଦୃଷ୍ଟି ମାୟାରେ ଆହୁରି ନିବିଡ଼ ହେଇଉଠିଲା । ପଲକହୀନ ବିସ୍ତାରିତ ଚକ୍ଷୁରେ ଦ୍ୱୈପାୟନ ମଧ୍ୟ ଚାହିଁ ରହିଥିଲେ । ତାଙ୍କ ଛାତିରେ ଲକ୍ଷେ ମର୍ଦ୍ଦଳ ବାଜି ଉଠୁଥିଲା ଶବ୍ଦ କରି । ସତ୍ୟବତୀର ଛାତି ତଳେ ମଧ୍ୟ ବହୁବିଧ ବିସ୍ଫୋରଣ ଘଟିଯାଉଥିଲା । ତୀର ଭଳି ଏକ ଗୀତିମୟ ଆବେଗ ଛାତି ଭିତରକୁ ମାଡ଼ିଆସି ଆନ୍ଦୋଳିତ କରିଦେଉଥିଲା ଛାତିକୁ । ହାତ ଦୁଇଟିକୁ ପ୍ରସାରିତ କଲେ ସତ୍ୟବତୀ । ଶିଶୁଭଳି ମା'ଙ୍କର କୋଳ ଉପରେ ଅଜାଡ଼ି ହେଇ ପଡ଼ିଲେ ଦ୍ୱୈପାୟନ । ଆବେଗରେ ଚାପି ଧରିଲେ ସତ୍ୟବତୀ ନିଜ ବକ୍ଷରେ ଦ୍ୱୈପାୟନଙ୍କୁ । ଉଦ୍‌ଗତ ଆନନ୍ଦାଶ୍ରୁରେ ସହସା ସତ୍ୟବତୀର ଆଖି ଝାପ୍‌ସା ହୋଇଗଲା, ବିଗଳିତ ଧାରାରେ ଝରିବାକୁ ଆରମ୍ଭ କଲା ମଧ୍ୟ । ଦ୍ୱୈପାୟନଙ୍କ ଗଣ୍ଡଦେଶରେ ବାରମ୍ବାର ଚୁମ୍ବନ ଆଙ୍କିଦେଲେ ସେ । ସଯତ୍ନରେ କପୋଳଦେଶରୁ ଅବିନ୍ୟସ୍ତ କେଶରାଶିକୁ ସଜାଡ଼ି ଦେଲେ ସେ ଏବଂ କ'ଣ ଯେମିତି ଖୋଜି ବସିଲେ ସେଇ ଲଲାଟ ଦେଶରୁ ? ତା'ପରେ ଗଭୀର ଆତ୍ମତୃପ୍ତିରେ ଗୋଟାଏ ଦୀର୍ଘଶ୍ୱାସ ନେଲେ ସତ୍ୟବତୀ ।

ମା'ଙ୍କର ଏସବୁ କ୍ରିୟାକଳାପ ଦେଖି ଦ୍ୱୈପାୟନ ଟିକିଏ ହସିଲେ । ସ୍ନିଗ୍ଧ କଣ୍ଠରେ କହିଲେ, ପିଲାଦିନେ, ବଡ଼ଭାଇ ଠିକ୍ ଏମିତି ମୋ କପାଳ ତନ୍ନ ତନ୍ନ କରି ଦେଖନ୍ତି ।

ସତ୍ୟବତୀଙ୍କ ମୁଖମଣ୍ଡଳରେ ଚାପା ହସର ଝଲକ, 'ତୋର ମନେଅଛି ?'

ଚପଳତା ପ୍ରକାଶ କରି ଦ୍ୱୈପାୟନ କହିଲେ, 'ମନେ ରହିବନି ପୁଣି ? ପିଲାଦିନର କୌଣସି କଥା ମୁଁ ଭୁଲି ନାହିଁ । କେବେ ଭୁଲିବିନି ମଧ୍ୟ ।'

କ'ଣ ଭୁଲିବୁନି ?

ତୁମେ ଯାହା ଦେଖିଲ ?

ମୁଁ କ'ଣ ଦେଖିଲି ଯେ ?

ତୁମେ ହିଁ ଜାଣ କ'ଣ ଦେଖିଲ । ତେବେ ବଡ଼ଭାଇ ମୋତେ ବାରଣ କରିଛନ୍ତି, 'ଖବରଦାର କାହାକୁ କିଛି କହିବୁ ନାହିଁ । ତୁମକୁ ମଧ୍ୟ କହିବିନି ।'

ସତ୍ୟବତୀ ଏଥର ଟିକିଏ ମ୍ଳାନ ହସି କହିଲା– 'ବେଶ୍ ଠିକ୍ ଅଛି ବାବା; କିନ୍ତୁ ତା' ପର ମୁହୂର୍ତ୍ତରେ ହିଁ ଅଭିମାନର ସମୁଦ୍ର ଉଛୁଳି ଉଠିଲା ସତେକି । କହିଲା, ସମସ୍ତଙ୍କୁ ଅତି ନିଜର ବୋଲି ଭାବିବା ଉଚିତ ନୁହେଁ । ବିଶ୍ୱାସ କରିବା ମଧ୍ୟ ଠିକ୍ ନୁହେଁ ।

ଦ୍ୱୈପାୟନଙ୍କ ଶରୀରରେ ସତେଯେମିତି ବିଦ୍ୟୁତ୍ ଛୁଇଁଗଲା । ନିଃଶ୍ୱାସ ପ୍ରଶ୍ୱାସ ଥରି ଉଠିଲା । ଦୁଇଟି ସନ୍ତାନର ଜନନୀ ସତ୍ୟବତୀ । ହସ୍ତିନାପୁରର ରାଜମହିଷୀ ସେ । ତାଙ୍କର ସମସ୍ତ ସତ୍ତାର ଏକମୁଖୀ ସ୍ରୋତ ଦୁରନ୍ତ ଏକ ଗତି ନେଇ ସେ ଦିଗକୁ ପ୍ରବାହିତ ହେଉଛି । ହତାଶା କରିବାର ଶକ୍ତି ତାଙ୍କର ନାହିଁ ଯେମିତି । ସତ୍ୟବତୀ ଭିତରେ ଭିତରେ ଭାସି ଯାଉଥିଲେ ଏକ ଅମୋଘ ଲକ୍ଷ୍ୟପଥରେ, ନିୟତିର ନିର୍ଦ୍ଦେଶରେ । ଦ୍ୱୈପାୟନଙ୍କ ହୃଦୟ ଯନ୍ତ୍ରଣାରେ ଛଟପଟ କରି ଉଠିଲା ମା'ଙ୍କ କଥା ଭାବୁଭାବୁ । କିନ୍ତୁ ତାଙ୍କ ଭିତରର ବୁଦ୍ଧିମାନ୍ ବିବେକୀ ଓ ପ୍ରଜ୍ଞାବାନ୍ ଋଷିଟି ସତେ ଯେମିତି ତାଙ୍କୁ ସତର୍କ କରାଇଦେଲା । ସତ୍ୟବତୀଙ୍କ ଅଭିମାନଜନିତ ଯନ୍ତ୍ରଣାକୁ ଲାଘବ କରିବା ପାଇଁ ସେ କହିଲେ, 'ମା' ତୁମେ କ'ଣ ସବୁ ବିଶ୍ୱାସ କର ? ରାଜଟୀକା ତ ଅନେକଙ୍କର ଅଛି । ତା' ବୋଲି କ'ଣ ସମସ୍ତେ ରାଜା ହୁଅନ୍ତି ? ନା ରାଜାର ଭାଗ୍ୟ ପା'ନ୍ତି ?

ଦ୍ୱୈପାୟନଙ୍କ ମା' ଡାକରେ ସତ୍ୟବତୀଙ୍କ ମୁଖମଣ୍ଡଳରେ ଏକ ଅଦ୍ଭୁତ ଅପାର୍ଥିବ ଭାବ ଖେଳିଗଲା । ତାଙ୍କ ଆଖି ଦୁଇଟିରେ କି ଗଭୀର ମାୟା । କେତେ କରୁଣା, ଆହୁରି କେତେ କ'ଣ ଭାବ ଛଳ ଛଳେଇ ଉଠିଲା । ମାତୃ ସମ୍ବୋଧନରେ ସହସା ସତ୍ୟବତୀଙ୍କର କଣ ଯେମିତି ହେଇଗଲା । କିଛିକ୍ଷଣ ପର୍ଯ୍ୟନ୍ତ ନିର୍ବାକ୍ ଭାବେ ସେ ତାଙ୍କ ଆଖି ଦୁଇଟିକୁ ଦ୍ୱୈପାୟନଙ୍କ ଉପରେ ନିବଦ୍ଧ କରି ରଖିଥିଲେ । ତା'ପରେ ଏକ ଗଭୀର ତୃପ୍ତି ଆଉ ସୁଖର ଉଲ୍ଲାସରେ ତାଙ୍କ ଭିତରଟା କ୍ରମଶଃ ତରଳି ଯାଉଥିଲା । ଅନେକ ସମୟ ପର୍ଯ୍ୟନ୍ତ ସତ୍ୟବତୀଙ୍କ ପାଟିରୁ କିଛି କଥା ବାହାରି ନ ଥିଲା ।

ମା'ଙ୍କର ଏହି ଭାବାନ୍ତର ଲକ୍ଷ୍ୟକରି ଦ୍ୱୈପାୟନଙ୍କ ଛାତି ଭିତରେ ଧଡ଼୍‌ଧଡ଼୍ ହେଇ କମ୍ପିବାକୁ ଲାଗିଲା । ସେ ବୁଝିପାରୁଥିଲେ ଯେ, ମା' କିଛି କଥା ତାଙ୍କୁ କହିବାକୁ ଚାହୁଁଛନ୍ତି । କିନ୍ତୁ ଏକ ଅପ୍ରତିରୋଧ ସ୍ନେହର ପ୍ଲାବନ ତାଙ୍କୁ ଟାଣି ନେଉଛି । ପରିବେଶଟା ହଠାତ୍ ଓଜନିଆ ଲାଗିବାରୁ ଦ୍ୱୈପାୟନ ଚିନ୍ତିତ ବୋଧକଲେ । ଟିକିଏ ମ୍ଳାନ ହସି କହିଲେ– 'ତୁମର ଏଇ ଗମ୍ଭୀର ଧମ୍‌ଧମ୍ ଭାବଟା ଏ ପର୍ଯ୍ୟନ୍ତ ଗଲାନି । ଏତେ ସବୁ କଣ ଭାବୁଛ କୁହ ତ ! ସତରେ ତୁମେ ଏବେବି ଆଗଭଳି ସରଳ ଓ ନିରୀହ । ଟିକିଏ ବି ବଦଳି ନାହଁ । କହିଲା ଭଳି ତ ସେମିତି କିଛି ଘଟଣା ନୁହେଁ ଏଇଟା । ତୁମେ ବି ଦେଖିଛ ମୋର ନାସିକା ମୂଳରୁ ପ୍ରଶସ୍ତ କପାଳ ଡେଇଁ ଏଇ ଯେଉଁ ମୋଟା ଶିରାଟା ମଥା ପର୍ଯ୍ୟନ୍ତ ସ୍ପର୍ଶ କରିଛି, ତାହା ଆଜି ବି ସେଇଭଳି ସିଧା ଏବଂ ସୁସ୍ପଷ୍ଟ ରହିଛି । ତୁମ ଭାଷାରେ ତାହା ରାଜଟୀକା ।

ନିଜ ବିସ୍ମୟକୁ ମୁହୂର୍ତ୍ତକରେ ଲୁଚାଇବାକୁ ଯାଇ ସତ୍ୟବତୀ ଦ୍ୱୈପାୟନଙ୍କ ମୁଖରେ ହାତ ଚାପି ଉଦ୍‌ବିଗ୍ନ ସ୍ୱରରେ କହିଲେ- 'ପାଟି ବନ୍ଦ କରିଦେ ବାପା, ତୁ କଣ ପାଗଳ ହେଇଗଲୁ ? ଏସବୁ ନେଇ କେବେ କୌତୁକ କରାଯାଏନା । ଶତ୍ରୁର ତ ଅଭାବ ନାହିଁ । କାହା ମନରେ କଣ ଅଛି କିଏ ଜାଣେ ? ସୁଲକ୍ଷଣ ଦେଖି ଅନ୍ୟମାନେ ଈର୍ଷାରେ ଜଳିପୋଡ଼ି ହେଇ ତୋତେ ଖାଇଯିବେ ।

ଦ୍ୱୈପାୟନ କିଛିଟା ପ୍ରଗଲ୍‌ଭ ହେଇ କହିଲେ, 'ବାଜେ କଥା । ମୁଁ ସନ୍ନ୍ୟାସୀ, ସଂସାରର କୌଣସି କଥା ମୋ ଦେହରେ ଲାଗେନା । ତୁମେ କିନ୍ତୁ ଭାଇଙ୍କର ବାରଣ ମାନିଲ ନାହିଁ । ତୁମ ଭୁଲ ଯୋଗୁଁ ମୋର ଆଉ ରାଜା ହେବା ନୋହିଲା । ଯାକୁ ହିଁ ଭାଗ୍ୟ କହନ୍ତି । ସତ୍ୟବତୀ ଏହାକୁ ଥଟ୍ଟା ମଣି ହସିଦେଲେ ଏବଂ ସ୍ନିଗ୍ଧ କଣ୍ଠରେ କହିଲେ- 'ତୁ ରାଜମାତାର ପୁତ୍ର' ।

ଅବଶ୍ୟ, ସେଥିରେ କୌଣସି ଭୁଲ ନାହିଁ ।

ସତ୍ୟବତୀ ସତକୁ ସତ ଟିକିଏ ଅପ୍ରତିଭ ବୋଧ କଲେ । ପ୍ରସଙ୍ଗଟା ତାଙ୍କ ନିକଟରେ ମଧ୍ୟ ଅସ୍ୱସ୍ତିକର ମନେହେଇ ତାଙ୍କ ଭିତରକୁ ଶିହରିତ କଲା । ଉତ୍ତେଜନାରେ ତାଙ୍କର ମୁହଁ ଆଖି ରକ୍ତିମ ହେଇ ଉଠିଲା । କହିଲେ- ପୁତ୍ର ମୁଁ କେବେ ବି ସ୍ୱସ୍ତିରେ ନାହିଁ, ତୃପ୍ତିରେ ନାହିଁ ।

ଥମଥମ ଗମ୍ଭୀର ମୁଖରେ ପ୍ରଶ୍ନକଲେ ଦ୍ୱୈପାୟନ 'କଣ ହେଇଛି ତୁମର' ? ଦ୍ୱୈପାୟନଙ୍କ ଆଖିରେ ଆଖି ରଖି ବିବଶ ହେଇ କିଛିକ୍ଷଣ ସେଇମିତି ବସି ରହିଲେ ସତ୍ୟବତୀ । ଛାତି ଭିତରେ ଭୟ, ଉତ୍କଣ୍ଠା, ଦ୍ୱିଧା, ଆଉ ମୁଣ୍ଡ ଭିତରେ ଆବୁରୁ ଜାବୁରୁ ହଜାରେ ଚିନ୍ତା । କ୍ଷୀଣ କଣ୍ଠରେ ସେ କହିଲେ- ଅନେକ କଥା ମନେପଡୁଛି, ତୁମେ ବର୍ତ୍ତମାନ ପଥଶ୍ରାନ୍ତ । ଯାଅ ଟିକିଏ ବିଶ୍ରାମ କରିବ । ତୁମକୁ ପରେ ଡାକି ପଠେଇବି ।

ଟିକିଏ ଭ୍ରୂକୁଞ୍ଚନ କରି ସତ୍ୟବତୀଙ୍କ ଶ୍ରୀମୟ ମୁହଁଟିକୁ ନିରୀକ୍ଷଣ କଲେ ଦ୍ୱୈପାୟନ । ସୁନ୍ଦର ହସଟିଏ ହସି କହିଲେ, ମୁଁ ତୁମ ନିକଟରେ ହିଁ ରହିବି ଓ ତୁମ ସହିତ କଥାବାର୍ତ୍ତା କରିବି । ତୁମ ମୋର ହଜିଯାଇଥିବା ସଂପର୍କଟା ସେଥିରେ ଗଭୀର ହେଇ ଉଠିବ । ସେତେବେଳେ ମନରେ ଆଉ କୌଣସି ଦ୍ୱିଧା ରହିବନି ।

ସତ୍ୟବତୀଙ୍କ ସମଗ୍ର ଶରୀରରେ ରୋମାଞ୍ଚ ଖେଳିଗଲା । ମନେ ମନେ କହିଉଠିଲେ ଜୀବନର ସଙ୍କଟ ମୁହୂର୍ତ୍ତରେ ସିଦ୍ଧାନ୍ତ ନେବା ଏକ ଜରୁରୀ ବ୍ୟାପାର । ହେଲେ କୌଣସି ଦିନ ଏହି ସିଦ୍ଧାନ୍ତ ମୁଁ ନେଇପାରିନି - କଥାଟା ମନେପଡ଼ିବା ମାତ୍ରେ ନିଜ ଦାୟିତ୍ୱ ପ୍ରତି ସେ ସତର୍କ ହେଇ ଉଠିଲେ । ଦ୍ୱୈପାୟନଙ୍କୁ ଦେଖିଲାବେଳୁ ନିଜ ଭିତରେ ଗୋଟିଏ ଅପୂର୍ବ ସାହସର ସୂଚନା ସେ ପାଇଥିଲେ । କ୍ରମଶଃ ତାଙ୍କର ଦୃଷ୍ଟି ତୀକ୍ଷ୍ଣ ହେଇ ଉଠିଲା । ଏଣିକି

ଆଉ କିଚି ଲଜ୍ଜା ନାହିଁ । ସଂକୋଚ ନାହିଁ । ବରଂ ପ୍ରଚଣ୍ଡ ଗୋଟାଏ ତେଜରେ ଦପ୍ ଦପ୍ କରୁଥିଲା ତାଙ୍କର ଆଖି ଦୁଇଟା ।

କିଛିକ୍ଷଣ ନୀରବ ରହି ସେ କହିଲେ- 'ପୁତ୍ର ସେଇ ଯୋଉ ଚାଲିଗଲୁ, ତାପରେ କୌଣସି ଖବର ହିଁ ରଖିଲୁନି ମା'ର । ଦୁଃଖିନୀ, ଅଭାଗିନୀ ତୋର ଏଇ ମା'ର ଜୀବନରେ କେତେ ଝଡ଼ ବହିଗଲା । କେତେ ଘାତ ପ୍ରତିଘାତ ଆସିଲା ତାର ହିସାବ ନାହିଁ । ମୋ ଜୀବନରେ ସେଇସବୁ ଗୋଟାଏ ଗୋଟାଏ କାହାଣୀ । ସେଇ କାହାଣୀକୁ ମୁଁ ଆଜି ତୋତେ ଶୁଣାଇବା ପାଇଁ ଡାକିଛି । ମୋ ଜୀବନର ସେଇ ଦିଗଟା ସଂପୂର୍ଣ୍ଣ ଅନ୍ଧକାର । ଯାହାର ପିଠିରେ ସୂର୍ଯ୍ୟର ଆଲୋକ ପଡ଼େନା, ଯାହା ମୋତେ ସଦାସର୍ବଦା ସଂକୁଚିତ କରି ରଖିଛି, ସେଇସବୁ କଥା ଆଜି ଶୁଣାଇବାର ବେଳ ଆସିଛି । ସବୁ କଥା ଶୁଣିସାରି ତୁ ଯାହା ସ୍ଥିର କରିବୁ ତାହାହିଁ ହେବ ।

ତା'ପରେ ଧୀରେ ଧୀରେ ସତ୍ୟବତୀ ତାଙ୍କ ନିଜ କାହାଣୀ ଆରମ୍ଭ କଲେ । ଏକରକମ ଖୋଲାଖୋଲି ଭାବରେ, ସ୍ତୀମିତ କଣ୍ଠରେ ସେ କହିଲେ, ଋଷି ପରାଶର ତୋତେ ନେଇ ଚାଲିଗଲା ପରେ ବାସ୍ତବରେ ମୋତେ ଚାରିଆଡ଼ ଅନ୍ଧାର ଦିଶିଥିଲା । ନିଦାରୁଣ ଏକ ମାର୍ମିକ ଯନ୍ତ୍ରଣାରେ ଛାତି ମୋର ଫାଟି ଯାଇଥିଲା । ଶାନ୍ତି ନ ଥିଲା ମନରେ । ଅହରହ ସତେ ଯେମିତି କିଏ ମୋ' ଦେହମନରେ ଛୁଞ୍ଚି ଫୋଡ଼ି ଦେଉଥିଲା ନିର୍ମମ ଭାବେ । ଶାନ୍ତି ଟିକେ ଖୋଜିବା ଆଶାରେ ଦିନେ ସଂଧ୍ୟାବେଳେ ଲିଙ୍ଗରାଜଙ୍କ ମନ୍ଦିରକୁ ଏକୁଟିଆ ଚାଲିଗଲି ।

ଅନ୍ଧକାର ଭିତରେ ବୁଡ଼ି ରହିଥିଲା ମନ୍ଦିରଟି । କେହି ମଣିଷ ନ ଥିଲେ । କାନ୍ଥର ଛୋଟିଆ ଠଣାଟିରେ ପ୍ରଦୀପଟିଏ – ତାର କ୍ଷୀଣ ଦୀପଶିଖା ଆଖିରେ ପଡ଼ିଲା । ନାଟ ମନ୍ଦିର ପାର ହୋଇ ମୁଖ୍ୟ ମନ୍ଦିର ଭିତରକୁ ଯାଉଛି । ଛାୟା ମୂର୍ତ୍ତିଟିଏ ଆଖି ଆଗରେ ସତେକି ଝାପ୍‌ସା ହୋଇ ଯେମିତି ଚହଲିଗଲା । ମୁହୂର୍ତ୍ତକ ପାଇଁ ଠିଆ ହୋଇଗଲି ।

ଅଦ୍ଭୁତ ଏକ କଣ୍ଠସ୍ୱର ମୁଁ ଶୁଣିବାକୁ ପାଇଲି । ହେଲେ ନିରେଖି ଚାହିଁ ମଧ୍ୟ କିଚି ଦେଖିପାରିଲି ନାହିଁ । କାନ୍ଥ ଠଣାରେ ଯେଉଁ ପ୍ରଦୀପ ଜଳୁଥିଲା ସେଇଠୁ ହିଁ ସେଇ ଅଦ୍ଭୁତ କଣ୍ଠସ୍ୱରଟି ଭାସିଆସିଥିଲା । କାନ୍ଥ ସେପାଖରୁ ମୁଁ ଦେଖିବାକୁ ପାଇଲି ପିତାଙ୍କ ମୁହଁ । ତାଙ୍କ ପୁରୁଷ କଣ୍ଠର ଗାମ୍ଭୀର୍ଯ୍ୟ ମନ୍ଦିରର ନିର୍ଜନ ପରିବେଶକୁ ଅଲୌକିକ କରି ଦେଇଥିଲା ବୋଲି ମନେ ହେଉଥିଲା ସେଇ ମୁହୂର୍ତ୍ତରେ । ମୋର ପ୍ରତିଟି ଲୋମକୂପ ଭୟରେ ଟାଙ୍କୁରି ଉଠିଥିଲା । କାନ୍ଥକୁରାରୁ ପ୍ରଦୀପଟି କାଢ଼ି ଆଣି ପିତା ମୋ ମୁହଁ ପାଖରେ ଧରିଲେ । ତାଙ୍କର ମାୟାଚ୍ଛନ୍ନ ହାତର ସ୍ପର୍ଶରେ ମୋ ଶରୀର କଣ୍ଟକିତ ହୋଇ ଉଠିଥିଲା । ସ୍ନେହ ବିଗଳିତ କଣ୍ଠରେ ସେ ଡାକିଲେ- ଗନ୍ଧକାଳି, ମା' ଯୋଜନଗନ୍ଧା ! (ସତ୍ୟବତୀର ଅନ୍ୟ ନାମ) ତୋ ଛାତି ଭିତରେ ଯେଉଁ ନିଦାରୁଣ ଦୁଃଖର ନିଆଁ ଅହରହ ଜଳୁଛି, ତାହା ତୋ ଆଖିଲୁହରେ କେବେବି

ଲିଭିଯିବନି । ପାଷାଣ ଦେବତା ପାଖରେ ମୁଣ୍ଡ କୋଡ଼ିଲେ କେବେ କିଛି ମିଳେନା । ଟିକିଏ ବି ସୁଖ ତୁ ଖୋଜି ପାଇବୁନି । ଧୁକୁଧୁକୁ ଚକ୍ଷୁର ନିଆଁକୁ ନିର୍ବାପିତ କରିବାର କିଏ କେବେ ଶୁଣି ନାହିଁ । ବରଂ ଏଥିରେ ଛାତି ଭିତରଟା ସିନା ଜଳିପୋଡ଼ି ଛାରଖାର ହେଇଯିବ, ନ ହେଲେ ଏଇ କୁହୁଳା ନିଆଁକୁ ଲିଭେଇବାର ସାଧ କାହାର ନାହିଁ । କିନ୍ତୁ, ତୋ ଅନ୍ତଃସ୍ଥଳରେ ଯେଉଁ ହାହାକାରର ବାଜଣା ବାଜୁଛି, ତା ଭିତରେ ରହିଛି ଅନେକ ଅତୃପ୍ତ କାମନା, ବାସନା, ବଞ୍ଚନା ଓ ଲାଞ୍ଛନାର ଇତିହାସ । ଅନ୍ତର ଭିତରେ ସେ ସବୁକୁ ଏକାଠି ସଂହତ କରି ଯଦି ଶକ୍ତି ସୃଷ୍ଟି କରିପାରିବୁ ତା'ହେଲେ ଅବା ଏ ନିଆଁ ଲିଭିବ ! ମନ ଶାନ୍ତ ହେବ ।

ସମ୍ମୋହିତ ଭଳି ମୁଁ ତାଙ୍କର ମୁହଁକୁ ଚାହିଁ ଆଶ୍ଚର୍ଯ୍ୟ ହେଇ ମୁଁ ପ୍ରଶ୍ନକଲି- 'ତା'ହେଲେ ମୋତେ କ'ଣ କରିବାକୁ ହେବ ପିତା ?'

ନିବିଡ଼ ଆଲିଙ୍ଗନ ପାଶରେ ମୋତେ ଆବଦ୍ଧ କରି ପିତା କହିଲେ- 'ମୁଁ ତୋତେ କିଛି କହିବିନି ମା', କହିଲେ ମଧ ତୁ ବିଶ୍ୱାସ କରିପାରିବୁନି । ଏହି ଦେବତାଙ୍କୁ ହିଁ ତୁ କହ, ସେ ହିଁ ତୋର ମନସ୍କାମନା ପୂର୍ଣ୍ଣ କରିବେ । ତା'ହେଲେ ହିଁ ତୁ ତୋ' ମନର ଇଚ୍ଛା କଣ, ନିଜେ ଜାଣିପାରିବୁ ଠିକ୍ ଭାବେ ।

ପିତାଙ୍କ କଥା ଶୁଣି ମୋ ଛାତି ଭିତରଟା ଧୁକ୍‌ପୁକ୍ କରିବାକୁ ଲାଗିଲା । କିଛି କ୍ଷଣ ସ୍ତବ୍ଧ ଭାବରେ ଠିଆ ହୋଇ ରହିଲି । ତା'ପରେ ଏକାନ୍ତ ବାଧ୍ୟ ଓ ଅନୁଗତ କନ୍ୟାଭଳି ମହାଦେବ ଲିଙ୍ଗରାଜଙ୍କ ସମ୍ମୁଖରେ ଆଣ୍ଠୁମାଡ଼ି ବସିପଡ଼ିଲି । ହାତ ଯୋଡ଼ି ପ୍ରାର୍ଥନା କରିବାକୁ ଚାହିଁ ମଧ ପାଟି ଖୋଲି କିଛି କହିପାରିଲି ନାହିଁ । ପୁତ୍ର ! ତୋ ମୁହଁ ସହିତ, ଋଷିବରଙ୍କ ମୁହଁ ମୋର ମନେପଡ଼ିଗଲା । ମୋର ଜନନୀ ଆଦ୍ରିକା ଏବଂ ବ୍ୟଭିଚାରୀ ପିତା ଉପଚିରବସୁଙ୍କର ଏକ କାଳ୍ପନିକ ଛବି ମୋ ଆଖି ଆଗରେ ଭାସିଉଠିଲା । ସଦ୍ୟଜାତ ଗୋଟିଏ ଅନାଥଶିଶୁର ବିକଳ କାନ୍ଦଣା ମୋ କାନରେ ବାଜିଲା । ତୁହାଇ ତୁହାଇ । ଭିତରେ ଭିତରେ ମୋ ଧୈର୍ଯ୍ୟବନ୍ଧଟା ଭାଙ୍ଗିଯାଉଥିଲା । ଯେଉଁ ଆବେଗଟା ପରାଶରଙ୍କ ପତ୍ନୀ ଓ ପ୍ରିୟା ନାମକ ସୀମା ଭିତରେ ଏତେକାଳ ଧରି ଆବଦ୍ଧ ଥିଲା, ତାହା ଆଉ ରହିଲା ନାହିଁ । ମନେହେଲା, ମୁଁ ଓ ମୋର ଜନନୀ ଆଦ୍ରିକା ଅନାର୍ଯ୍ୟ ଏବଂ ସେମାନେ ଆର୍ଯ୍ୟ ।

ହଠାତ୍ ଏ ପ୍ରକାରର ଅନୁଭୂତିରେ ମୁଁ ନିଜେ ହିଁ ଚମକି ପଡ଼ିଲି । କ୍ଷଣିକ ପାଇଁ ମୋ ମନୋରାଜ୍ୟରେ କୋଉଠି ଯେମିତି ବଡ଼ ଗୋଟିଏ କ'ଣ ଘଟିଗଲା । ସେଥିରେ ହିଁ ମନଟା ତିକ୍ତ ଆଉ ବିରୂପ ହେଇଉଠିଲା । ପ୍ରାର୍ଥନାରେ ମନ ସଂଯୋଗ କରିପାରିଲି ନାହିଁ । ଆର୍ଯ୍ୟମାନଙ୍କର ଅନିଷ୍ଟ ଚିନ୍ତାର ଏକ କାଳ୍ପନିକ ଦୃଶ୍ୟ ଆଖି ଆଗରେ ନାଚି ଉଠିଲା ଜଳ ଜଳ ହେଇ । ପିତାଙ୍କ ଉଦ୍ଦେଶ୍ୟ ବୁଝିବାରେ ଆଉକିଛି ଅସୁବିଧା ନ ଥିଲା । ଦୁଃଖକଷ୍ଟ, ବଞ୍ଚନା ମଣିଷକୁ କେବେହେଲେ ସୁସ୍ଥ ରଖେ ନାହିଁ । ବିରୂପ ଅନ୍ତର ସଦାସର୍ବଦା ମଣିଷର ମନ୍ଦ ହିଁ

ଚାହେଁ । ସେତେବେଳେ ସେଇ ବିରୂପ ଅନ୍ତର ଭିତରେ ଯେଉଁ ତେଜ ଓ ଶକ୍ତିର ସୃଷ୍ଟି ହୁଏ, ତାରି ଭିତରୁ ଜନ୍ମ ନିଏ ଆଉ ଗୋଟିଏ ନୂତନ ସତ୍ତା । ସେହି ବିଦ୍ରୋହୀ ସତ୍ତା ହିଁ ଅଶୁଭ, ଅତ୍ୟାଚାରୀ ଶକ୍ତିର ଧ୍ୱଂସ ଚାହେଁ ।

ଅଚାନକ ମୋ' ମଥା ଉପରେ ପିତାଙ୍କର ଅଭୟ ହାତର ସ୍ପର୍ଶ ଅନୁଭବ କଲି । ମୋର ସମଗ୍ର ଶରୀର ଝିମ୍ ଝିମ୍ କରିଉଠିଲା । ଚମକି ପଡ଼ି ଚାହିଁଲି ପିତାଙ୍କ ଆଡ଼କୁ । ପିତାଙ୍କର ତୀକ୍ଷ୍ଣ ଅନୁସନ୍ଧାନୀ ଦୃଷ୍ଟି ମୋ ମୁହଁ ଭିତରୁ ସତେ ଯେମିତି କ'ଣ ଖୋଜି ବୁଲୁଥିଲା ଅନେକ ସମୟ ପର୍ଯ୍ୟନ୍ତ । କିଛିକ୍ଷଣ ପରେ ଗମ୍ଭୀର ଗଳାରେ ସେ କହିଲେ- ପ୍ରାର୍ଥନା ମାନେ ମନସଂଯୋଗ । ଦେବତାଙ୍କୁ ସମ୍ମୁଖରେ ରଖି ମନର ଗୋପନ ଇଚ୍ଛାକୁ ଏକାନ୍ତରେ ଆମେ ନିବେଦନ କରିଥାଉଁ । ପ୍ରତିକାର ପାଇଁ ପ୍ରାର୍ଥନା କରି ଉଦ୍ଦେଶ୍ୟ ସିଦ୍ଧି ପାଇଁ ତାଙ୍କର କରୁଣା ଚାହିଁଥାଉ । ତୁ କୋଉ କରୁଣା ପ୍ରାର୍ଥନା କଲୁ ଯୋଜନଗନ୍ଧା ?

ପିତାଙ୍କ ପ୍ରଶ୍ନ ଶୁଣି ମୋର ସମସ୍ତ ଦେହ ମନରେ ଭୟାର୍ତ୍ତ ଶିହରଣ ଖେଳିଗଲା । ବିମୂଢ଼ଙ୍କ ଭଳି ବିହ୍ୱଳ ଦୃଷ୍ଟିରେ ତାଙ୍କ ଆଡ଼କୁ ଚାହିଁରହିଲି । ପିତା ଏମିତି ବିପଦଜ୍ଜନକ ଭାବେ ମୋ ଭିତରଟାକୁ ଆକ୍ରମଣ କଲେ ଯେ, ମୁଁ ନିଜେ ହିଁ ଧରାପଡ଼ିଗଲି ଖୁବ୍ ସହଜରେ । ମୋର ଅନୁଭୂତି, ଉପଲବ୍ଧିର ପରିବର୍ତ୍ତନ ମୋ ମୁହଁ ଆଉ ଆଖିରେ ଗଭୀର ଭାବେ ଫୁଟି ଉଠିଥିଲା । ମୋର ବୁଦ୍ଧିବୃତ୍ତି ସଜାଗ ଥିଲା । ମୁଁ ଚିନ୍ତା କରିପାରୁଥିଲି । ବେଶ୍ ବୁଝିପାରୁଥିଲି ଯେ, ମୋ ଜୀବନରେ କିଛି ଗୋଟାଏ ଘଟିବାକୁ ଯାଉଛି ଅଥବା ଘଟିଚାଲିଛି । ମୋର କିଂକର୍ତ୍ତବ୍ୟବିମୂଢ଼ତା କେବଳ ତାର ଭୂମିକା ମାତ୍ର ।

ମୋତେ ନିରବ ରହିବା ଦେଖି ପିତା ମୃଦୁ ହସି କୁଣ୍ଠିତ ଗଳାରେ କହିଲେ, ମନର ସବୁକଥା କୁହାଯାଇପାରେନା । କହିବା ଉଚିତ ନୁହେଁ ମଧ୍ୟ । ହେଲେ ତୋ ମନର କଥାକୁ ମୁଁ ଜାଣିପାରିଛି । ଗୋଟେ କଥା ମନଦେଇ ଶୁଣ, ମନେରଖ ମା' ଭବିଷ୍ୟତକୁ ତୁ କିମ୍ବା ମୁଁ କେହି ବି କୌଣସି ରୂପ ଦେଇପାରିବାନି । କିନ୍ତୁ ତୋ' ମୋ' ଉପରେ ଯାହା କିଛି ଘଟିଗଲା ତାର ପ୍ରତିକ୍ରିୟା ହେଉଛି ଭବିଷ୍ୟତ । କାରଣ ଏହାହିଁ ହେଲା ନିୟମ ଏବଂ ଏହା ଗୋଟିଏ ଅଦୃଶ୍ୟ ଶକ୍ତି ଦ୍ୱାରା ନିୟନ୍ତ୍ରିତ । ଅଦୃଷ୍ଟ ହିଁ ତୋତେ ତାର କର୍ମପଥକୁ ଆଜି ଟାଣିନେଉଛି । ତୁ ଆଜି ତୋର ଇଚ୍ଛାମତେ ଚାଲିବାକୁ ଚାହିଁଲେ ବି ଚାଲିପାରିବୁନି । ତୋ କାର୍ଯ୍ୟର ଫଳଶ୍ରୁତିରେ ତୋର ବ୍ୟର୍ଥତା ଅଥବା ବିଜୟ ଲେଖା ହେଇ ଆସିବ । ଏହା ନିର୍ଭର କରୁଛି ତୋ ହୃଦୟର ପବିତ୍ରତା ଓ ନିଷ୍ଠା ଉପରେ । ଦ୍ୱୈପାୟନକୁ ମହାକାଳ ହରଣ କରି ନେଇଛି ପରାଶରଙ୍କ ମାଧ୍ୟମରେ । ତୋ ଭାଗ୍ୟରେ ଥରେ ଯାହା ଲେଖା ହେଇଯାଇଛି ତାହା ଆଉ ବଦଳିବାର ନୁହେଁ ।

ତା ପରବର୍ତ୍ତୀ କଥାଗୁଡ଼ିକ ସତ୍ୟବତୀ କିଛି ଆଉ କହିଲା ନାହିଁ । କିନ୍ତୁ ମନ ଭିତରେ ସେ ସବୁ ଝଂକୃତ ହେଇ ବାଜି ଉଠିଲା । ଗନ୍ଧକାଳୀ (ଯୋଜନଗନ୍ଧା) ତୁ ମହାକାଳର ଯଜ୍ଞରେ ଏକ ସମିଧ ମାତ୍ର । ମୁଁ ଇନ୍ଧନ ଏବଂ ଦ୍ୱୈପାୟନ ହେଉଛି ବିଧାତାର କର୍ମକାଣ୍ଡରେ ଜଣେ ଋତ୍ୱିକ । ଏହି ତିନିଜଣଙ୍କ ମାଧ୍ୟମରେ ମହାକାଳ ତାର ପ୍ରତିଶୋଧ ନେବ ! ପ୍ରତିଶୋଧ ନେବ ଆର୍ଯ୍ୟ ଓ ଅନାର୍ଯ୍ୟମାନଙ୍କର ବିଦ୍ୱେଷର, ଘୃଣାର । ମୋ' ଗଣନା ଯଦି ଠିକ୍ ହୁଏ, ଯଦି ଭବିଷ୍ୟବାଣୀ ମିଥ୍ୟା ନ ହୁଏ ତେବେ କୃଷ୍ଣଦ୍ୱୈପାୟନ ହେବ ମହାଧ୍ୱଂସର ମହାନାୟକ ।

କିଛି ସମୟ ପାଇଁ ସତ୍ୟବତୀ ନିରବ ରହିଥିଲେ । ତା'ପରେ କେତେଥର ଢୋକଗିଳି ପୁଣି କହିଲେ 'ବିସ୍ମୟରେ ମୁଁ ସ୍ତବ୍ଧ ହେଇଯାଇଥିଲି । ମୋ ଆଖି ଦୁଇଟି କ୍ରମଶଃ ବିସ୍ତାରିତ ହେଇ ଉଠିଲା । ଡରି ଡରି କହିଲି 'ମୋର କାହିଁକି ଭୟ ହେଉଛି ।'

ପ୍ରତ୍ୟୁତ୍ତରରେ ପିତା କହିଥିଲେ 'ଏଥିରେ ଭୟ କରିବାର କ'ଣ ଅଛି ମା' ? ତୋର ଆଖି ଏମିତି ଦାଉଦାଉ ହେଇ ଜଳିଉଠୁଛି କାହିଁକି ? ତୋ ଆଖିର ଏଇ ବହ୍ନି କୋଉଥିପାଇଁ ?

ଭିତରର ଭୟ ଆଉ ଉତ୍ତେଜନାରେ ମୋର ସର୍ବାଙ୍ଗ ସେତେବେଳକୁ ଥରଥର ହେଇ କମ୍ପି ଉଠୁଥିଲା । ଭୟରେ ହାତପାଦ ଝୋଲା ମାରି ଅଚଳ ହେଇଗଲା ଯେମିତି । ହେଲେ ମାନସିକ ସ୍ତରରେ ମୁଁ ଶକ୍ତ ହୋଇଯାଉଥିଲି । କମ୍ପିତ କଣ୍ଠରେ ପ୍ରଶ୍ନ କଲି: ତୁମର କଥା ମୁଁ ବୁଝିପାରୁନି, ମୋର ସବୁ କିମିତି ଗଣ୍ଡଗୋଳ ହେଇଯାଉଛି ।

ପିତା ଏଥରକ କପାଳରେ ହାତ ଦେଇ ହତାଶ ଭଙ୍ଗୀରେ କହିଲେ, ତା ତ ନିଶ୍ଚୟ ମା' । ତୋର ବୁଝିବାର ବୟସ ହିଁ ହେଇନି । ସମୟ ଆସିଲେ ନିଜେ ତୁ ସବୁ କଥା ବୁଝିପାରିବୁ । ଆଜି ପ୍ରାର୍ଥନା ସମୟରେ ନିଜ ମନକଥା ତୁ ନିଜେ ତ ଜାଣିପାରିଛୁ । ଶୁଭ ଓ ମଙ୍ଗଳ କାମନା ପରିବର୍ତ୍ତେ ଅଶୁଭ ଓ ଅନିଷ୍ଟ ଚିନ୍ତା ହେଇଛି ତୋ ମନରେ । କାହିଁକି ? ଏ ପ୍ରଶ୍ନ କେବେ କରିଛୁ ନିଜକୁ ? କ୍ଷୋଭ, ଦୁଃଖ, ଅଭିମାନ, ଅପମାନର ଯନ୍ତ୍ରଣା ଆଉ ବଞ୍ଚନାରୁ ହିଁ ମନ ଭିତରେ ଜାଗ୍ରତ ହେଇଛି ପ୍ରତିକାରର ଇଚ୍ଛା, ପ୍ରତିରୋଧର ସ୍ୱପ୍ନ । ଏଇ ଇଚ୍ଛା ଆଉ ସ୍ୱପ୍ନ ସବୁରି ଭିତରେ ବଳବତ୍ତର ହେଇଛି । ଏସବୁ ଦେଖି ଶୁଣି ମନେ ହେଉଛି ଆମମାନଙ୍କର ମୁକ୍ତି ଏଥର ଆସନ୍ନପ୍ରାୟ । ଆମ ରକ୍ତରେ ମଧ୍ୟ ତାର କଳସଂଗୀତ ବାଜିଉଠୁଛି... ମୁଁ ଶୁଣିପାରୁଛି ।

ଗୋଟାଏ ଦୁରନ୍ତ ଅସ୍ଥିରତା ଭିତରେ ମୁଁ ଛଟପଟ ହେଉଥିଲି ସେତେବେଳକୁ । ଓଠକୁ କାମୁଡ଼ି ଧରି ଭାବିଲି । ତା'ପରେ କହିଲି : ପିତା ପୁତ୍ର ଦ୍ୱୈପାୟନର ଦୁଃସହ ଶୂନ୍ୟତାକୁ ତୁମେ ସହ୍ୟ କରିପାରୁନ । ଭିତରେ ଭିତରେ ତୁମେ ଜଳୁଛ; ସେଇ ଦୃଶ୍ୟ ମୁଁ ଦେଖିପାରୁନି । ତୁମ ମନ ଅଶାନ୍ତ । ଉତ୍ତେଜନାରେ ତୁମେ ପ୍ରମତ୍ତ, ଅସ୍ଥିର, ଉଦ୍‌ଭ୍ରାନ୍ତ । ପିତା ! ତୁମେ ଆଜି ମୋଟେ ପ୍ରକୃତିସ୍ଥ ନୁହଁ । ପ୍ରଗଲ୍‌ଭତା ତୁମକୁ ମାଡ଼ି ବସିଛି ।

କିନ୍ତୁ ପିତା ନିଜ ସ୍ୱରରେ ପ୍ରତିବାଦ କରି କହିଲେ, ନା, ମୋଟେ ନୁହେଁ । ପ୍ରାଚୀନ ଦେବଗଣଙ୍କ ଆଦେଶରେ ରାଜ୍ୟର ଅଧିପତି ହେଇ ମଧ୍ୟ ମୁଁ ନିଃସନ୍ତାନ ଥିଲି । ତା'ପରେ ଦିନେ ଦେବତାଙ୍କ ସୃଷ୍ଟ ବିଚିତ୍ର ଏକ ଛଳନାରେ ମୁଁ ବାନ୍ଧି ହେଇଗଲି । ନିଦରେ ଶୋଇଲେ ମୁଁ ପ୍ରାୟତଃ ଗୋଟାଏ ହିଁ ସ୍ୱପ୍ନ ଦେଖେ । 'ପାଳିତା କନ୍ୟା- ମୋ ମୁକ୍ତିର ତରବାରି ଧ୍ୱଂସ କରୁଛି ଆର୍ଯ୍ୟମାନଙ୍କୁ ଏବଂ ଆର୍ଯ୍ୟମାନେ ତାର ତେଜ ନିକଟରେ ନିଷ୍ପ୍ରଭ ହେଇଯାଉଛନ୍ତି ।'

କଥାଟା କହିପକେଇ ସତ୍ୟବତୀ ଜିଭ କାମୁଡ଼ି ପକେଇଲେ । ପୁତ୍ର ଦ୍ୱୈପାୟନ ଗୋଟାଏ କୋଣରେ ଆଡ଼େଇ ଠିଆ ହେଇ ଅନ୍ଧାର ଭିତରେ ଯମୁନା ଆଡ଼କୁ ଚାହିଁଥିଲେ । କୂଳରେ ବାଡ଼େଇ ହେଇ ପାଣି ଭାଙ୍ଗିବାର ଶବ୍ଦ ଅବିରାମ ଭାବେ କାନରେ ଆସି ବାଜୁଥିଲା । ଦ୍ୱୈପାୟନଙ୍କ ଉଦାସ ମାନସିକତାକୁ କୌଣସି ପ୍ରକାରେ ନ ଭାଙ୍ଗି ପୂର୍ବୋକ୍ତ ପ୍ରସଙ୍ଗ ଉତ୍‌ଥାପନ କରି ପୁଣି କହିବାକୁ ଲାଗିଲେ... । କହିଲି, ପିତା ! ଚମକପ୍ରଦ ବିସ୍ମୟର ଏକ ଆର୍ତ୍ତସ୍ୱର, ଯେମିତି ମୋ ଗଳା ଦେଇ ବାହାରିଗଲା ।

ଦାସରାଜ ମୋ ମଥାରେ ତାଙ୍କର ହାତ ରଖିଲେ । ଖୁବ୍ ଉତ୍ତେଜିତ ମନେ ହେଉଥିଲେ ସେ । ହେଲେ ତାଙ୍କ ଆଖି ଦୁଇଟି କରୁଣା ଓ ମାୟାରେ କେତେ ଯେ ଗଭୀର ଆଉ ଛଳଛଳ ଦିଶୁଥିଲା ! ଧୀରେ ଧୀରେ ସେ କହିଲେ- ଦୁଃଖ କଣ ସାମାନ୍ୟ ବସ୍ତୁଟିଏ ? ଦୁଃଖ ମଣିଷକୁ ଶକ୍ତି ଦିଏ । ବଳବୀର୍ଯ୍ୟ ଯୋଗାଏ । ଯାହା ଭିତରେ ଏଇ ତେଜ ଅଛି ସେଇ ମଣିଷ ହିଁ ଈଶ୍ୱରଙ୍କ ଆଶୀର୍ବାଦରେ ଧନ୍ୟ ।

କହୁ କହୁ ସତ୍ୟବତୀ ଛାତିର ବାମପଟେ ଗୋଟାଏ ଅଜଣା ଯନ୍ତ୍ରଣା ଅନୁଭବ କଲେ । କେମିତି ଗୋଟାଏ କ୍ଳାନ୍ତିରେ ସେ ଅବସନ୍ନ ଓ ଶ୍ରାନ୍ତବୋଧ କରୁଥିଲେ । ତା'ପରର କଥା କହିବାକୁ ଯାଇ ସେ ଲଜ୍ଜା ଓ ସଂକୋଚରେ ବୁଡ଼ିଗଲେ ।

॥ ତିନି ॥

ମୁଗ୍ଧ ବିଭୋର ଦ୍ୱୈପାୟନ ବିସ୍ମୟରେ ଅବାକ୍ ହୋଇ ବାହାରର ବିଶାଳ ପୃଥିବୀ ଆଡ଼େ ନିର୍ନିଶେଷ ନୟନରେ ଚାହିଁରହିଥିଲେ । ମା'ଙ୍କ ପାଟିରୁ ସଦ୍ୟ ଶୁଣିଥିବା ଘଟଣାର ବିଷଣ୍ଡ ସୂତ୍ରଟିକୁ ତାଙ୍କ ଚାରିପଟର ପରିବେଶ ଭିତରୁ ଖୋଜିବାକୁ ଲାଗିଲେ ଯେମିତି ।

ନିସ୍ତବ୍ଧତା ପରିବେଶଟିକୁ ଆହୁରି ଗଭୀରତର କରିତୋଳିଥିଲା । ଜନନୀଙ୍କର ଅନ୍ତରରୁ ନିଃସୃତ ହେଇଥିବା ଗଭୀରତମ ପ୍ରଦେଶର କଥାଗୁଡ଼ିକ ସତେ ଯେମିତି ପବନ ଭିତରେ ସେ ଶୁଣିପାରୁଥିଲେ । ଗୋଟିଏ ଗଭୀର ଦୀର୍ଘଶ୍ୱାସ ପକାଇ ଉପରକୁ ଦୃଷ୍ଟି ତୋଳି ପ୍ରଶ୍ନକଲେ ଦ୍ୱୈପାୟନ । 'ଏଇଥିପାଇଁ କଣ ମୋତେ ମନେ ପକେଇଲ ମା' ?'

ଅଚାନକ ବୁଦ୍ଧିବଣା ହେଇଗଲା ଭଳି ମୁହୂର୍ତ୍ତେ ନିରବ ରହିଗଲେ ସତ୍ୟବତୀ । ତାଙ୍କ ଭିତରୁ ନିଃଶବ୍ଦରେ ସତେକି ଆର୍ତ୍ତନାଦଟିଏ ଛୁଟି ଆସିଲା । ହଠାତ୍ ପାଟିରୁ ବାହାରି ଗଲା, 'ନା, ନା କୃଷ୍ଣ, ହସ୍ତିନାପୁରର ରାଜପ୍ରାସାଦ ମଧ୍ୟ ମୋ ଜୀବନର ଏକ ଅଭିଶାପ । କୋଉ ଆଶା ନେଇ, କି ମାୟାରେ ମୁଁ ଏଇ ପ୍ରାସାଦକୁ ଆବୋରି ବସିଛି ତୁ କହିପାରିବୁ ? କେବଳ ତୋରି ପାଇଁ । ତୋରି ପାଇଁ ମୋର ଏଇ ଅଦ୍ଭୁତ ସ୍ନେହ, ଭଲପାଇବା ଆଉ ମୋହ ନେଇ କେତେକାଳ ଏଇମିତି ଅପେକ୍ଷା କରିବି ? 'କାହିଁକି ମା' ?

ଈଶ୍ୱର ଜାଣନ୍ତି । କେତେ କ'ଣ ଘଟଣା ଘଟିଗଲା ମୋ' ଜୀବନରେ । କିଏ ଜାଣେ ବିଧାତା ମୋ' ଦେଇ ତାର କୋଉ ଇଚ୍ଛା, କି ଉଦ୍ଦେଶ୍ୟ ପୂରଣ କରିବାକୁ ଚାହୁଁଛି । ଏତେ ଦୁଃଖ କଷ୍ଟ ଗ୍ଲାନି ମୋତେ କାହିଁକି ଭୋଗ କରିବାକୁ ପଡୁଛି ? ତୋତେ ନେଇ ତ ମୁଁ ବେଶ୍ ସୁଖରେ ହିଁ ଥିଲି । ମୋର ସେଇ ସୁଖଟିକୁ ଦସ୍ୟୁ ଭଳି ଛଡ଼େଇ ନେଇଗଲେ । ଓଲଟପାଲଟ ହେଇଗଲା ମୋ ଜୀବନ । ମୁଁ ହେଲି ରାଜମହିଷୀ । ସେଇଟା ଯେ ମୋ'ପାଇଁ କେତେ ବଡ଼ ଶାସ୍ତି ଥିଲା ସେ କଥା ଯଦି ଜାଣିପାରନ୍ତୁ ?

ଖୁବ୍ ଚିନ୍ତିତ ଭାବେ ସତ୍ୟବତୀ ଦୁଇ ହାତର ଯୋଡ଼ ଉପରେ ମୁହଁ ରଖି ଶୂନ୍ୟଦୃଷ୍ଟିରେ ଚାହିଁ ରହିଲେ ସାମ୍‌ନାକୁ । ସ୍ମୃତିରେ ଭାରାକ୍ରାନ୍ତ ଆଖି ଦୁଇଟି । ଅନେକ ଦିନ ପୂର୍ବର

ଦୃଶ୍ୟଟିଏ ଦେଖୁଥିଲେ ସେ । ଅବଶ୍ୟ କିଛି ସମୟ ଲାଗିଲା ମନ ଭିତରେ ତାକୁ ସବୁ ଏକାଠି କରିବାକୁ ।

ଗୁଣୁଗୁଣୁ ସ୍ୱରରେ ସେଦିନ ସତ୍ୟବତୀ ଏକୁଟିଆ ଫେରୁଥିଲା ବନପଥରେ । ଶାଢ଼ିର ଅଞ୍ଚଳ ଏବଂ କେଶରାଶି ପବନରେ ଉଡୁଥିଲା ଉତ୍ତଳା ହେଇ । ହାତରେ ଥିଲା ଆଞ୍ଜୁଳାଏ ହେବ ଜୁଇ ଆଉ ଚାମେଲୀ ଫୁଲ । ପବନରେ ତାର ସୁଗନ୍ଧ ଭରି ରହିଥିଲା । ମୃଗୟା ସାରି ସେଇ ପଥ ଦେଇ ଫେରୁଥିଲେ ହସ୍ତିନାର ଅଧିପତି ଶାନ୍ତନୁ । ନିରବ ବନଭୂମିରେ ଗୀତର ସୁର ଭରି ରହିଥିଲା ଯେମିତି । ଫୁଲର ମିଠା ମିଠା ଗନ୍ଧରେ ମୁଗ୍ଧ ହେଇ ସେ ଠିଆ ହେଇପଡ଼ିଲେ । ଏଇଭଳି ପରିବେଶ ଭିତରେ ସେ ଏକଥା ଆଶା କରି ନ ଥିଲେ । ସେଥିପାଇଁ ତାଙ୍କର କୌତୂହଳ ବଢ଼ିଲା । କ୍ରମେ ସୁର ଆଉ ଗନ୍ଧ ନିକଟତର ହେଲା । ଟିକିଏ ଆଡୁଆଳରେ ରହି ଶାନ୍ତନୁଙ୍କ ସନ୍ଧାନୀ ଦୁଇଆଖି ବନପଥ ଆଡ଼କୁ ଚାହିଁ ରହିଥିଲା ।

ବନ୍ୟ ଖୁସିର ଉଦ୍ଦାମ ଆନନ୍ଦରେ ଆତ୍ମହରା ହୋଇ ସତ୍ୟବତୀ ଝରଣା ଭଳି ନାଚି ନାଚି ଆସୁଥିଲା । ତାର ମୁଖର ମୁଖରେ ସହଜ ସରଳ ହସର ଆଭା ଝଲସିଉଠୁଥିଲା ।

ଶାନ୍ତନୁ ଅଶ୍ୱ ନେଇ ତୁରନ୍ତ ତାର ପଥ ଓଗାଳି ଠିଆ ହେଇପଡ଼ିଲେ । ହଠାତ୍ ସାମ୍ନାରେ ଅଶ୍ୱ ଦେଖି ସତ୍ୟବତୀ ମଧ ଠିଆ ହେଇଗଲା । ବିସ୍ମିତ ଅଥଚ ମୁଗ୍ଧ ଦୃଷ୍ଟିରେ ସତ୍ୟବତୀକୁ ଦେଖିବାକୁ ଲାଗିଲେ ଶାନ୍ତନୁ । ଆଖିରେ ତାଙ୍କର ତୀକ୍ଷ୍ଣତା ।

ଶେଷ ସୂର୍ଯ୍ୟଙ୍କର ସୁନେଲି କିରଣ ସତ୍ୟବତୀର ମୁହଁ ଉପରେ ବିଞ୍ଚିହେଇ ପଡ଼ିଥିଲା । ସେତିକିରେ ହିଁ ତାର ଭରା ଯୌବନର ଗରିମା ଉତୁରି ପଡୁଥିଲା । ସ୍ୱର୍ଣ୍ଣାଭ ଗୋଧୂଳିର ଆଭାରେ ଶ୍ୟାମାଙ୍ଗିନୀ କନ୍ୟାର ମୁଖଶ୍ରୀ ଆହୁରି ସୁନ୍ଦର ସତେଜ ଆଉ ଶାନ୍ତ ମନେ ହେଉଥିଲା । ସ୍ନିଗ୍ଧ ତଥା କମନୀୟତାରେ ଭରି ଉଠୁଥିଲା ତାର ସାମଗ୍ରିକ ରୂପଶ୍ରୀ । ଶାନ୍ତନୁ ଅଶ୍ୱପୃଷ୍ଠରେ ବସି ଚୁପ୍‌ଚାପ୍ ସେଇ ନିର୍ବାକ୍ ରହସ୍ୟମୟ ବନବାଳା ଆଡ଼କୁ ଚାହିଁ ରହିଥିଲେ । ଏତେ ବୟସରେ ମଧ ତାଙ୍କର ରୂପପିପାସୁ ମନ କୌଣସି ସୀମାହୀନ ବିଶ୍ୱର ସୌନ୍ଦର୍ଯ୍ୟମୟ ଆକାଶରେ ପ୍ରଜାପତି ଭଳି ଡେଣା ମେଲାଇ ନିଜକୁ ହଜେଇ ଦେବାକୁ ଚାହୁଁଥିଲା ।

ନିଜ ଅଜାଣତରେ ଶିହରି ଉଠିଲା ସତ୍ୟବତୀ । ଅଶ୍ୱାରୂଢ଼ ବ୍ୟକ୍ତିଙ୍କ ଦୁଇ ନିରବ ଚକ୍ଷୁରେ ଏ କି ପ୍ରକାର ଆକୁଳତା ? ଅନ୍ଧାର ନଇଁ ଆସୁଥିବା ବନଭୂମିର ପାହାଡ଼ ଆଉ ଗଭୀର ନଦୀର ଅତଳ ଜଳ ଭଳି ରହସ୍ୟମୟ ଦିଶୁଛି ସେହି ଚାହାଣି । ସେଇ ନିରବ ଭାଷାର ଅର୍ଥ ସତ୍ୟବତୀ ଠିକ୍ ଜାଣେ । ଗୋଟାଏ ଅଜଣା ଆନନ୍ଦର ଗଭୀର ସ୍ୱାଦରେ ମନ ତାର ଭରି ଉଠୁଥିଲା । ମନ ହେଲା ସ୍ମିତହସରେ ତାର ଜବାବ ଦେବ । କିନ୍ତୁ ଭୟ ହେଲା ଜବାବ ଦେବାକୁ । ଅବଚେତନ ମନ ଭିତରେ ନିରବରେ କେମିତି ଗୋଟାଏ ଆତଙ୍କ ଖେଳିଗଲା । ମୋହ ଭଙ୍ଗ ହେଲା ତାର । ଭୀରୁ ଭଳି ଅଶ୍ୱାରୋହୀଙ୍କ ଆଡ଼କୁ କିଛି ସମୟ

ଚାହିଁ କର୍କଶ ଓ କଠିଣ ସ୍ୱରରେ କହିଲା, ମହାତ୍ମନ୍ ! ଆପଣ ବୟସ୍କ । ଏଭଳି ଭାବରେ ମୋର ପଥ ଓଗାଳି ଠିଆ ହେବାଟା ଆପଣଙ୍କୁ ଶୋଭା ଦିଶୁନି ମୋତେ । କୃଷ୍ଣକାୟା ଅନାର୍ଯ୍ୟ ରମଣୀମାନେ କ'ଣ ଆପଣମାନଙ୍କର ଲାଳସାର ବସ୍ତୁ ? ଆମ୍ଭେ ସବୁ କଣ ଏଡ଼େ ସହଜଲଭ୍ୟ ? ଆମର କ'ଣ କିଛି ସଂଭ୍ରମତା ନାହିଁ ? ଆମ୍ଭେମାନେ ମଧ୍ୟ ଆପଣଙ୍କ କୁଳର ରମଣୀମାନଙ୍କ ଭଳି ରକ୍ତମାଂସର ମଣିଷ । ଆମର ମଧ୍ୟ ହୃଦୟ, ମନ, ପ୍ରେମ ଆଉ ସମାଜ ଅଛି । କିନ୍ତୁ ଆପଣମାନେ ଆମ ଇଜ୍ଜତ ସହିତ ଖେଳି କୁଳର ଗୌରବ ଏବଂ ପରିବାରର ମର୍ଯ୍ୟାଦାକୁ କଳଙ୍କିତ କରନ୍ତି । ଆପଣମାନଙ୍କଠାରୁ ଟିକିଏ ମଣିଷପଣିଆ ଆଶା କରିବା କ'ଣ ଆମ ପାଇଁ ବେଶି କିଛି ହୋଇଯିବ ?

ଶାନ୍ତନୁ ନିର୍ବାକ୍ । ମନ ଭିତରେ ଝଡ଼ର ସୂତ୍ରପାତ ହେଉଥିଲା । ନିଜକୁ ପ୍ରକାଶ କରିବାପାଇଁ ଭାଷା ନ ଥିଲା ଶାନ୍ତନୁଙ୍କର । କିନ୍ତୁ ଆଖିର ତାରାରେ ଫୁଟି ଉଠୁଥିଲା ଗୋଟାଏ ନିରବ ଆକୁତି । ସତ୍ୟବତୀ ତାଙ୍କ ଜୀବନର ଗୋଟାଏ ପରମ ଆନନ୍ଦମୟ ସ୍ପର୍ଶକୁ ମନେ ପକେଇ ଦେଉଥିଲା । ମନେପଡ଼ିଲା ଗଙ୍ଗା କଥା । ହେଲେ ଆଜି ତ ସେ ସବୁ କେଉଁ ଦୂର ଆକାଶର ଜ୍ୟୋତିଷ୍କ ଭଳି ଆହୁରି ଦୂରରେ ହଜିଯାଇଛି । ଆଉ ସେ ଫେରିବନି ତାଙ୍କ ଜୀବନକୁ ଆଲୋକିତ କରିବାକୁ । ତାଙ୍କ ସ୍ୱପ୍ନର ପୃଥିବୀ ହଜିଯାଇଛି । କିନ୍ତୁ ଯେଉଁ ଝିଅଟି ଆଖିରେ ଲୁହ ଭରି ସମସ୍ତ ମଣିଷ ହୃଦୟର ଦାବିକୁ ନିର୍ବିଚାରରେ ଜଣେଇଦେଲା... ତା'କଥା ଭାବିଲାବେଳକୁ ଗୋଟାଏ ନୂତନ ଆବେଗ, ଅଭିନବ ଅନୁଭୂତିରେ ରଂଜିତ ହେଇ ଉଠିଲା ମନଟା ।

ଗୋଟାଏ ଅସ୍ୱସ୍ତିକର ସ୍ତବ୍‌ଧତାକୁ ପାରି ହେବାପାଇଁ ଶାନ୍ତନୁ ଅଶ୍ୱପୃଷ୍ଠରୁ ଅବତରଣ କଲେ । "ବାଳା, ତୁମ ଘର କେଉଁଠି ? ଏହି ପଲ୍ଲୀରେ କୋଉଠି ରୁହ ? କିଏ ତୁମ ପିତା ? ମୋତେ ନେଇଯିବ କି ତାଙ୍କ ନିକଟକୁ ? ମୁଁ ହସ୍ତିନାପୁରାଧିପତି ଶାନ୍ତନୁ ।"

ଏକଥା ଶୁଣୁ ଶୁଣୁ ସତ୍ୟବତୀ ଚମକି ପଡ଼ିଲା । ତଥାପି ତାର କୌତୂହଳୀ ଆଖି ଆଉ ମୁହଁରେ ହସର ଆଭା ଉକୁଟି ଉଠିଲା ମୁହୂର୍ତ୍ତକ ପାଇଁ । ସଙ୍ଗେ ସଙ୍ଗେ ନିଜ ସନ୍ଧାନୀ ବୁଦ୍ଧିର ଆଲୁଅ ପକାଇ ସତ୍ୟବତୀ ଅନୁମାନ କରିପାରିଲା ଶାନ୍ତନୁଙ୍କର ତା ପିତାଙ୍କ ନିକଟକୁ ଯିବାର ଅଭିପ୍ରାୟଟା । କିଛି ମାତ୍ରାରେ ଅସ୍ୱସ୍ତି ଆଉ ଆନନ୍ଦର ଗୋଟାଏ ମିଶାମିଶି ଅନୁଭୂତିରେ ଫେଣ୍ଟି ହୋଇ ବାଟ ଚାଲୁଥିଲା ସତ୍ୟବତୀ । ଚାଲୁ ଚାଲୁ ଶାନ୍ତନୁଙ୍କର ସୁନ୍ଦର ଢଳଢଳ ମୁଖ ଆଉ ଉଜ୍ଜ୍ୱଳ ଆଖି ଦୁଇଟିକୁ ଚାହିଁ ପ୍ରତିଟି ମୁହୂର୍ତ୍ତରେ କିଛି ଗୋଟାଏ ଯେମିତି କାମନା କରୁଛି ନିଜ ଭିତରେ, ସେ କଥା ସେ ଅନୁଭବ କରୁଥିଲା ଏବଂ ବିଜୟିନୀର ସୁଖାନୁଭୂତିରେ ହୃଦୟ ତାର ଉବୁଟୁବୁ ହେଇଯାଉଥିଲା ମଧ୍ୟ । ଶାନ୍ତନୁ କିଛିଟା ଅପ୍ରତିଭ ଭଙ୍ଗୀରେ ଦାସରାଜଙ୍କ କକ୍ଷରେ ପ୍ରବେଶ କଲେ । ମୁହଁରେ ହସର ଛିଟା ।

ବିସ୍ମୟକୁ ହଠାତ୍ ଲୁଚେଇ ରଖି ଦାସରାଜ ହସ ହସ ମୁଖରେ ଶାନ୍ତନୁଙ୍କୁ ସ୍ୱାଗତ କଲେ । ବହୁ ସୌଭାଗ୍ୟ ଯେ, ଆଜି ହସ୍ତିନାପୁରାଧିପତି ଶାନ୍ତନୁ ମୋର ଏଇ କୁଡ଼ିଆରେ ପଦାର୍ପଣ କରିଛନ୍ତି । ତାଙ୍କ ପଦସ୍ପର୍ଶରେ ମୋ କୁଡ଼ିଆ ଆଜି ଧନ୍ୟ ହେଲା । ରାଜନ୍ ! ଆପଣଙ୍କର ଏହି ଅଯାଚିତ ଅନୁଗ୍ରହର କାରଣ ଅବଗତ ହେଲେ ଅଧୀନ ସାଧ୍ୟାନୁସାରେ ତାହା ପୂରଣ କରିବାକୁ ଯତ୍ନବାନ୍ ହେବ ।

ଦାସରାଜଙ୍କ ଆପ୍ୟାୟନରେ ଶାନ୍ତନୁ ଖୁସି ହେଲେ । ଏକ ମନୋରମ ଆସନରେ ଉପବିଷ୍ଟ ହେଲେ ସେ । ତାଙ୍କ ମୁଖରେ ବିନୟ ସହିତ ମୃଦୁହାସ ପ୍ରକଟ ହେଲା । ଟିକିଏ ସଙ୍କୁଚିତ ହେଇ କହିଲେ, ଏଭଳି ସୌଜନ୍ୟ ଏବଂ ବିନୟ ଭାବ ପ୍ରକାଶ କରି ମୋତେ ଲଜ୍ଜିତ କରନ୍ତୁ ନାହିଁ । ଆମେ ଉଭୟେ ଭିନ୍ନ ଭିନ୍ନ ରାଜ୍ୟର ନରପତି । ସମ୍ମାନରେ, ଗୌରବରେ, ମର୍ଯ୍ୟାଦାରେ କେହି କାହାଠାରୁ ନ୍ୟୂନ ନୁହେଁ ।

ମୃଦୁ ହସି ଦାସରାଜ କହିଲେ- ବିନୟ, ଦୀନତା ଅତିଥି ସେବାର ଅନ୍ୟତମ ଅଙ୍ଗ । ଏହାକୁ ବାଦ ଦେଇ ଅତିଥି ସେବାର ଷୋଳକଳା ପୂର୍ଣ୍ଣ ହୁଏନା । ଅତିଥି ମଧ୍ୟ ସନ୍ତୁଷ୍ଟ ହୁଅନ୍ତି ନାହିଁ ।

ଆର୍ଯ୍ୟ ରାଜାମାନଙ୍କ ଉପରେ ଦାସରାଜ ମୋଟେ ସନ୍ତୁଷ୍ଟ ନ ଥିଲେ । ସେମାନଙ୍କ ପାଇଁ ଟିକିଏ ହେଲେ ଶ୍ରଦ୍ଧା, ଅନୁରାଗ କିମ୍ବା ସ୍ନେହ ନ ଥିଲା । ସେମାନଙ୍କର ସମସ୍ତ କାର୍ଯ୍ୟକଳାପକୁ ସେ ସଂଦେହ ଚକ୍ଷୁରେ ଦେଖୁଥିଲେ । ଶାନ୍ତନୁଙ୍କ ଆଗମନର ପଶ୍ଚାତ୍‌ରେ ସେଭଳି କିଛି ଉଦ୍ଦେଶ୍ୟ ଥିବା ଦାସରାଜ ଅନୁମାନ କରିପାରିଥିଲେ । ତେବେ ଲୋକଟି ସୁପୁରୁଷ । ଲମ୍ବା ଚଉଡ଼ା, ଗୌରବର୍ଣ୍ଣ । ଆଖିର ଦୃଷ୍ଟି ନିରୀହ ଏବଂ ମୁଖର ଭାବ ଅତିଶୟ ବିନୟୀ ।

ଦାସରାଜଙ୍କ କଥା ଶୁଣି ଶାନ୍ତନୁ ଗଳା ସଫାକରି କହିଲେ, ମହାଶୟଙ୍କ ନିକଟକୁ ଗୋଟିଏ ବିଶେଷ ପ୍ରାର୍ଥନା ନେଇ ଆସିଛି । ଅନୁମତି ଦେଲେ ନିବେଦନ କରନ୍ତି ।

ନିର୍ବିକାର ଭାବେ ଦାସରାଜ କହିଲେ- 'କୁହନ୍ତୁ ।'

ଶାନ୍ତନୁଙ୍କ ଛାତି ଭିତରଟା ହଠାତ୍ ଉଠ୍‌ପଡ଼ ହେବାକୁ ଲାଗିଲା । ପ୍ରଥମେ କେଇ ମୁହୂର୍ତ୍ତ ସେ କିଛି ବି କଥା କହିପାରିଲେ ନାହିଁ । ତା'ପରେ ଧୀରେ ଧୀରେ କହିଲେ, 'ଆପଣଙ୍କ କନ୍ୟାର ରୂପ ଓ ବ୍ୟକ୍ତିତ୍ୱ ମୋତେ ମୁଗ୍ଧ କରିଛି । ମୋ' ହୃଦୟ ଏହି କନ୍ୟାର ସଙ୍ଗସୁଖ ଲାଭର ଆକାଂକ୍ଷାରେ ଚଳଚଞ୍ଚଳ ହେଇଉଠିଛି । ଆପଣ ଅନୁଗ୍ରହ କରି ଏହି କନ୍ୟା ସହିତ ମୋର ବିବାହରେ ସମ୍ମତି ପ୍ରଦାନ କରି ମୋତେ କୃତାର୍ଥ କରନ୍ତୁ ।

ଦାସରାଜ ଭ୍ରୂକୁଞ୍ଚିତ କରି ଶାନ୍ତନୁଙ୍କ ଆଡ଼କୁ କିଛି ସମୟ ଚାହିଁରହିଲେ । ନିଜ ଅଭ୍ୟନ୍ତରର ଗଭୀର କ୍ଷତଗୁଡ଼ିକ ପୁଣିଥରେ ମନେପଡ଼ି ସତେଜ ହୋଇ ଉଠିଲେ । ଅନେକ

କଥା ମନ ଭିତରେ ଭିଡ଼ ଜମେଇ ଠିଆ ହେଲେ । ଅତୀତକୁ ବିସ୍ମରିଯିବା ମଣିଷର ସ୍ୱଭାବ ନୁହେଁ । ଅତୀତର ଶିକ୍ଷା ଓ ଅଭିଜ୍ଞତା ଦେଇ ହିଁ ତାର ବର୍ତ୍ତମାନର ଚିନ୍ତା । ଉପଚିରବସୁ, ପରାଶର କେହି ବି ସତ୍ୟବତୀ କି ଆଦ୍ରିକାକୁ ପତ୍ନୀର ମର୍ଯ୍ୟାଦା ଦେଇ ନାହାନ୍ତି । ମାନବିକ କର୍ତ୍ତବ୍ୟଟିକକ ମଧ୍ୟ ସଂପନ୍ନ କରି ନାହାନ୍ତି । ସେମାନଙ୍କର କୌମାର୍ଯ୍ୟ ହରଣ କରିଛନ୍ତି ସତ, ହେଲେ ଦାୟିତ୍ୱ ବହନ କରି ନାହାନ୍ତି । ଅସହାୟ ଅବସ୍ଥା ଭିତରେ ନିକ୍ଷେପ କରି ସେମାନଙ୍କ ନାରୀତ୍ୱର ଅବମାନନା କରିଛନ୍ତି । ମାତୃହୀନା ଦୁଃଖିନୀ ଝିଅଟା କେବଳ କୁଳରେ ଲାଗିଯାଉଛି ଭାବି ଦାସରାଜଙ୍କ ମନରେ କିଞ୍ଚିତ୍ ସ୍ୱସ୍ତି ଓ ଶାନ୍ତି ଆସୁଥିଲା; କିନ୍ତୁ ଏଇ ଇଚ୍ଛା ଓ ସୁଖ ବେଶି ସମୟ ସ୍ଥାୟୀ ହୋଇ ରହିଲା ନାହିଁ । ଆର୍ଯ୍ୟ ବିଦ୍ୱେଷର ଧକ୍କାଟା ତାଙ୍କ ଦେହମନକୁ ଅଥୟ କରି ପକାଇଲା । କୌଣସି ଏକ ଅଙ୍ଗକୁ ଦେହଠାରୁ ବିଚ୍ଛିନ୍ନ କରିଦେଲେ ମଣିଷ ଯେଭଳି ହତଭମ୍ବ ଓ ଯନ୍ତ୍ରଣାରେ କାତର ହେଇଉଠେ, ଠିକ୍ ସେଇଭଳି ଗୋଟାଏ ବିସ୍ମୟବୋଧ ଓ ସଙ୍କଟ ଭିତରେ ତାଙ୍କ ଚିତ୍ତଭୂମି ଭାରାକ୍ରାନ୍ତ ହୋଇଉଠିଲା । ମୋହ କଟିଗଲେ ଏହି ବିବାହବନ୍ଧନ ଯେ ଶିଥିଳ ହେଇଯିବ, କିଛି ବିଚିତ୍ର ନୁହେଁ । ସେତେବେଳେ ଦେବୀର ଆସନରୁ ଟାଣିଆଣି ଧୂଳିମାଟିର ରାଜରାସ୍ତା ଉପରେ ଠିଆ କରିଦେବେ । ଯେଉଁ ଘୃଣା, ବିଦ୍ୱେଷ, ଅବଜ୍ଞାର ନିଶାରେ ଆର୍ଯ୍ୟମାନେ ଅନାର୍ଯ୍ୟମାନଙ୍କୁ ଚିରକାଳ ଧରି ଅବହେଳା କରିଆସିଛନ୍ତି, ସେମାନଙ୍କର ସୁଖଦୁଃଖ ମନୋବେଦନା ଆଡ଼କୁ ମୋଟେ ହିଁ ଦୃକ୍‌ପାତ କରି ନାହାନ୍ତି; ସେଇ ଘଟଣା ଯେ ପୁନରପି ପୁନରାବୃତ୍ତି ନ ହେବ, ତାହା କିଏ କହିବ ? ସୁତରାଂ ଶାନ୍ତନୁଙ୍କ ଆର୍ଯ୍ୟ ରକ୍ତରେ ମଧ୍ୟ ସେଇ ସଂସ୍କାର ଓ ବିଦ୍ୱେଷ ରହିଛି । ସେହି ଦୃଷ୍ଟିରୁ ଏହି ପ୍ରସ୍ତାବରେ ସହସା ସମ୍ମତି ପ୍ରଦାନ କରିବାରେ କିଛି ସମସ୍ୟା ସୃଷ୍ଟି ହେଲା ଦାସରାଜଙ୍କର । ନାରୀର ଭାଗ୍ୟ ତ ଜୁଆଖେଳ ଭଳି । ଅବଶ୍ୟ ଏହି ପ୍ରକାର ପଦକ୍ଷେପ ସବୁ ପିତାଙ୍କୁ କନ୍ୟାର ବିବାହ ସମୟରେ ନେବାକୁ ପଡ଼ିଥାଏ । ପିତାମାତାଙ୍କର କିଛିଟା ନିର୍ଭୁଲ ନିର୍ବାଚନ ଏବଂ କିଛି ମାତ୍ରାରେ କନ୍ୟାର ଭାଗ୍ୟ – ଉଭୟ ମିଶି କନ୍ୟାର ବିବାହିତ ଜୀବନର ଭବିତବ୍ୟ । ତଥାପି ସତ୍ୟବତୀର ମଙ୍ଗଳପାଇଁ, ସୁଖପାଇଁ ତାଙ୍କର କିଛି କରିବାର ଅଛି ନିଶ୍ଚୟ । ଶାନ୍ତନୁଙ୍କ ପ୍ରସ୍ତାବରେ ରାଜି ହେବାକୁ ଗଲେ ତାର ସମସ୍ୟା ଓ ସଙ୍କଟର ମୂଳକୁ ଆରମ୍ଭରୁ ହିଁ କାଟି ଫିଙ୍ଗିଦେବା ଆବଶ୍ୟକ । କିନ୍ତୁ ଅସୁବିଧା ଉପୁଜିଲା ତାଙ୍କର ବୀର୍ଯ୍ୟବାନ୍ ପୁତ୍ର ଦେବବ୍ରତଙ୍କୁ ନେଇ । ବିଶୁଦ୍ଧ ଆର୍ଯ୍ୟ ରକ୍ତ ତାଙ୍କ ଧମନୀରେ ପ୍ରବାହିତ । ଏତଦ୍‌ବ୍ୟତୀତ ସେ ଏକାଧାରରେ ବୀର, ଦୃଢ଼ଚେତା ଏବଂ ଜିତେନ୍ଦ୍ରିୟ ମଧ୍ୟ । ସପତ୍ନୀର ଏହି ପୁତ୍ରଟି ହିଁ ସତ୍ୟବତୀ ପାଇଁ କଣ୍ଟାସଦୃଶ । ଏହି କଣ୍ଟାକୁ ଯଦି ଦାସରାଜ ଉତ୍ପାଟନ କରି ନ ପାରିବେ, ତା'ହେଲେ ଅନ୍ତତଃ ଅକାମି ତ କରିଦେବା ଉଚିତ ହେବ । ସେଇ କଥା ସେ ଭାବିଲେ । କିନ୍ତୁ ସେହି କଠିଣ କାର୍ଯ୍ୟଟି କିଭଳି କରାଯାଇପାରିବ, ତାଙ୍କୁ କିଛି ବୁଦ୍ଧିବାଟ ଦିଶୁନଥିଲା ।

ଦେବବ୍ରତ ଶାନ୍ତନୁଙ୍କର ପ୍ରିୟ ପୁତ୍ର । ହସ୍ତିନାପୁରର ଯୁବରାଜ । ଶାନ୍ତନୁଙ୍କ ମୃତ୍ୟୁ ପରେ ସେ ହେବେ ଶାସକ । ସତ୍ୟବତୀ ଏବଂ ତାର ସନ୍ତାନମାନଙ୍କର କୌଣସି ଅଧିକାର ରହିବନି ସେଇ ରାଜ୍ୟ କିମ୍ବା ସିଂହାସନ ଉପରେ । କ୍ଷମତା ଓ କର୍ତ୍ତୃତ୍ୱ ବ୍ୟତୀତ କାହାର କୌଣସି ଗୌରବ ନ ଥାଏ । ରାଜଅନ୍ତଃପୁରରେ ଅନାର୍ଯ୍ୟା ସତ୍ୟବତୀର ଗୌରବ, ମର୍ଯ୍ୟାଦା ଓ କର୍ତ୍ତୃତ୍ୱ ତଥା ଅଧିକାରକୁ ଆଖି ଆଗରେ ରଖି ହିଁ ଯାହାକିଛି ପଦକ୍ଷେପ ଗ୍ରହଣ କରିବାକୁ ହେବ । ଅନ୍ୟଥା ରାଜାଙ୍କର ଆଉ ଅନ୍ୟ ପାଞ୍ଚଜଣ ସାଧାରଣ ସ୍ତ୍ରୀ ଭଳି ତାର ଦିନଗୁଡ଼ିକ ଅନାଦର ଓ ଅନୁଗ୍ରହ ଭିତରେ ହିଁ କଟିବ ।

ଦାସରାଜଙ୍କର ମୁଣ୍ଡ ଭିତରଟା ଝିମ୍‌ଝିମ୍ କରିବାକୁ ଲାଗିଲା । ହେଲେ ସେ ମୁହୂର୍ତ୍ତେ ଭାବିଲେ । ଗୋଟାଏ ବିଖ୍ୟାତ ଆର୍ଯ୍ୟବଂଶର ରାଜମହିଷୀ ହେବ ସତ୍ୟବତୀ, ଏଇଟା ତ କିଛି କମ୍ କଥା ନୁହେଁ । ଶାନ୍ତନୁ ତା'ଠାରୁ ଅବଶ୍ୟ ଅନେକ ବଡ଼ ବୟସରେ । ସେ ତାଙ୍କର ପୁଅର ସମବୟସୀ ହେବ । ତେବେବି ସେ ରାଜା । ଆଉ ବୃଦ୍ଧ ରାଜାର ତରୁଣୀ ଭାର୍ଯ୍ୟାମାନେ, ସେଇଟା ଗୋଟାଏ ବିରାଟ ସମସ୍ୟା । ଦାସରାଜ ନିଜ ଅଜାଣତରେ ହିଁ ଟିକିଏ ହସିଦେଲେ । ମନେ ମନେ ଭାବିଲେ, ସ୍ୱପ୍ନ ! ସ୍ୱପ୍ନ ଛଡ଼ା ଏଇ ଜୀବନରେ ମଣିଷର ଆଉ ଅଛି ବା କ'ଣ ? ମନ ସ୍ଥିର କରିନେଲେ ଦାସରାଜ । ବେଶ୍ କିଛି ସମୟ ନିରବ ରହିବା ପରେ... ସଶବ୍ଦରେ ଗୋଟିଏ ଲମ୍ବା ଦୀର୍ଘଶ୍ୱାସ ପକାଇଲେ ସେ ।

ଚମକି ଉଠିଲେ ଶାନ୍ତନୁ । କହିଲେ, ଦାସରାଜ ! ସନ୍ତାନଠାରୁ ବଳି ପ୍ରିୟ ଓ ଆପଣାର ଆଉ କିଛି ହେଇପାରେନା । ଯାହାର ଶରୀରର ଗନ୍ଧ, ସ୍ପର୍ଶ, ମୋହ, ପିତା ମନରେ ଐଶ୍ୱର୍ଯ୍ୟ ଭଳି ଲାଗି ରହିଥାଏ, ତା'ଠାରୁ ବିଚ୍ଛିନ୍ନ ହେବାର କଥା ଶୁଣିଲେ ମଣିଷ ହତଭମ୍ବ ହୋଇଯାଏ, ଠିକ୍ ସେମିତି ଗୋଟାଏ ବିସ୍ମୟବୋଧ ଆପଣଙ୍କୁ ଆଛନ୍ନ କରି ରଖିଛି ।

ଦାସରାଜଙ୍କ ମୁହଁରେ ବିଷାଦିତ ମଳିନ ହସଟିଏ ଫୁଟିଉଠିଲା । ସେ କହିଲେ, ଆପଣଙ୍କ କଥା ଶୁଣି ମୋର ଉଦ୍‌ବେଗ, ଉତ୍କଣ୍ଠା ଓ ଭୟ ଦୂର ହେଇଯାଇଛି । ଆପଣଙ୍କ ସହିତ ମୋ କନ୍ୟାର ବିବାହ ଦେବାରେ ମୋର କୌଣସି ଅମତ ନାହିଁ । ଆପଣଙ୍କ ଜୀବଦ୍ଦଶାରେ ମୋର କନ୍ୟା ଯେ ପରମ ଯତ୍ନ ଓ ଆଦରରେ ରହିବ ଏଥିରେ ମୋର ସଂଦେହ ନାହିଁ । ହେଲେ, ଆପଣଙ୍କର ତ ବୟସ ହେଇଯାଇଛି । ସେହି ସମୟରେ ସତ୍ୟବତୀର ଅବସ୍ଥା କ'ଣ ହେବ, ସେ' କଥା ଭାବିଲା ବେଳକୁ ମୋର ମନ ବିଚଳିତ ହେଇଯାଉଛି । ପିତାର ଏହି ଉତ୍କଣ୍ଠା ଦୂର କରିପାରିଲେ, ଏଇ ବିବାହରେ କୌଣସି ପ୍ରତିବନ୍ଧକ ରହିବନି । କଥାଟା ଶେଷକରି ଦାସରାଜ ଥରେ ଶାନ୍ତନୁଙ୍କ ଆଡ଼କୁ ଚାହିଁ ଦୃଷ୍ଟି ଫେରେଇ ନେଲେ । ଘୃଣାରେ ? ଶ୍ରଦ୍ଧାରେ ? ପ୍ରତିହିଂସାରେ ? କିଏ ଜାଣେ ? କିନ୍ତୁ ସେହି ଚାହାଣିର ତୀରଟା ଠିକ୍ ସ୍ଥାନରେ ଯାଇ ବିନ୍ଧିଲା ଶାନ୍ତନୁଙ୍କ ମନରେ ? ନା ଶରୀରରେ ? ସେତେବେଳେ

ପୁଲକିତ ଆବେଗରେ ଶାନ୍ତନୁଙ୍କ ସମଗ୍ର ଶରୀର ଥରଥର ହୋଇ କମ୍ପିଉଠିଲା; ଏକ ଅପାର୍ଥିବ ମୁଗ୍ଧତାର ଭାବ ନଇଁଆସିଲା ଆଖି ଉପରକୁ । ଗଭୀର ଆବେଗରେ ମଗ୍ନ ହୋଇ ଯାଉଥିଲା ଆଖି ଦୁଇଟି । ଭିତରେ ଏକ ଶିହରିତ ଆନନ୍ଦର ଉଜ୍ଜୀବକ ସ୍ପର୍ଶ, ଯାହା ମୁହଁ ଆଉ ଆଖିକୁ ଉଜ୍ଜ୍ୱଳ କରି ଦେଉଥିଲା । ସେ କହିଲେ ଆପଣଙ୍କ ଅଭିଳାଷ ପୂରଣରେ କୌଣସି ବାଧା ମୁଁ ରଖିବି ନାହିଁ । ଶାନ୍ତନୁଙ୍କର ସମସ୍ତ ସତ୍ତାର ଏକମୁଖୀ ସ୍ରୋତ ଦୁରନ୍ତ କେଉଁ ଗୋଟିଏ ଦିଗକୁ ନେଇ ଯାଉଥିଲା ତାଙ୍କୁ । ସେ ଭାସି ଯାଉଥିଲେ ସେଇ ଅମୋଘ ଲକ୍ଷ୍ୟ ଆଡ଼କୁ ନିୟତିର ନିର୍ଦ୍ଦେଶରେ ।

ଦାସରାଜଙ୍କ ଅଧରରେ ଚତୁର ହସ । ବିନା ଭୂମିକାରେ କହିଲେ- ମହାରାଜ, ଏହି କନ୍ୟା ଗର୍ଭରେ ଯେଉଁ ପୁତ୍ରସନ୍ତାନ ଜନ୍ମିବ, ଆପଣଙ୍କ ଅବର୍ତ୍ତମାନରେ ସେଇ ହେବ ହସ୍ତିନାପୁରର ରାଜା । ନ୍ୟାୟତଃ, ଧର୍ମତଃ ସତ୍ୟବତୀର ପୁତ୍ର ଯଦି ସିଂହାସନ ପାଏ, ତା'ହେଲେହିଁ ଏହି ବିବାହ ସମ୍ଭବ ହେବ ।

ଦାସରାଜଙ୍କର ଆଚମକା କଥା ଶୁଣି ଶାନ୍ତନୁଙ୍କ ଭିତରଟା ଭୟଙ୍କର ଭାବେ ଦୋହଲିଗଲା । ଛାତି ଭିତରର ଧୁକ୍‌ଧୁକ୍‌ଟା ତୀବ୍ର ଭାବେ ଆହୁରି ବଢ଼ିଗଲା । ତୀବ୍ର ଗୋଟାଏ ଅପମାନ ବୋଧ ଏବଂ ହତାଶାରେ ଛାତି ଭିତର ଫୋଡ଼ି ହେଇଗଲା । ଦାସରାଜ ତାଙ୍କ ଅଧିକାର ବାହାରେ ଏଭଳି ଏକ କଠୋର ସର୍ତ୍ତ ରଖିପାରନ୍ତି, ଏକଥା ସେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । କିନ୍ତୁ କେମିତି ସବୁ ଗୋଳମାଳ ହେଇଯାଉଥିଲା ।

ଯୁବରାଜ ପଦରେ ଦେବବ୍ରତର ଅଭିଷେକ ଅନେକ ଦିନ ଆଗରୁ ହିଁ ସଂପନ୍ନ ହୋଇସାରିଥିଲା । ଏକମାତ୍ର ପ୍ରିୟ ପୁତ୍ରକୁ ତାର ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ କରିବେ ସେ କେଉଁ କାରଣରୁ ? ଲୋକେ କ'ଣ କହିବେ ତାଙ୍କୁ ? ନିଜ ବିବେକକୁ ସେ କେମିତି ବୁଝେଇବେ ? ସହସା ମନେପଡ଼ିଗଲା ରାଜା ଦଶରଥଙ୍କର କଥା । ରୂପମୁଗ୍ଧ ଦଶରଥ କିନ୍ତୁ କେକୟ ରାଜ୍ୟର ଅନୁରୂପ ସର୍ତ୍ତରେ କେବେ ଭୟ କରିନଥିଲେ । ତାଙ୍କର ଲୁବ୍ଧ ଅନ୍ତର କ୍ଳେଶକୁ ଗ୍ରହଣ କଲା ସମୟରେ ସର୍ତ୍ତର ଭଲମନ୍ଦ ଦିଗକୁ ବିଚାର କରି ନ ଥିଲା କିମ୍ବା ଦ୍ୱିଧାଗ୍ରସ୍ତ ହେଇ ନ ଥିଲା । ସାହସୀ ଉଦ୍ୟୋଗୀ ପୁରୁଷ ଦଶରଥଙ୍କୁ ଏଇ ସର୍ତ୍ତ ତୁଚ୍ଛ ମନେ ହେଇଥିଲା । ଭବିଷ୍ୟତର କଥା ଭାବି ସେ କେବେ ଅଟକି ଯାଇ ନ ଥିଲେ । ସେଇ ମୁହୂର୍ତ୍ତରେ ନିଜ ମନ ରଖିବା ବ୍ୟତୀତ ଆଉ କୌଣସି ସତ୍‌କର୍ମ ଅଛି ବୋଲି ତାଙ୍କର ମନେ ହେଇନଥିଲା । ଦଶରଥଙ୍କ ସହିତ ତଫାତ୍‌ଟା ଶାନ୍ତନୁ ସହସା ଦେଖିବାକୁ ପାଇଲେ । ତାଙ୍କ ଭିତରର ବୁଦ୍ଧିମାନ୍ ଓ ବିବେଚକ ପିତାଟି ତାଙ୍କୁ ସାବଧାନ କରାଇଦେଲା । ଏହି ଝିଅଟିକୁ ବିବାହ କଲେ କୁଳ ଭାଙ୍ଗିବ, ମର୍ଯ୍ୟାଦା ନଷ୍ଟ ହେବ । ଦେବବ୍ରତଙ୍କୁ କୋଉଠି ସ୍ଥାନ ମିଳିବନି । ଇଏ ନିଷିଦ୍ଧ ଫଳ । ନିଷିଦ୍ଧ ଫଳ ଆଡ଼କୁ ହାତ ବଢ଼ାଅ ନାହିଁ ।

ନିଷିଦ୍ଧ ଫଳ କ'ଣ ସତ୍ୟବତୀ ? କଥାଟା ମନ ଭିତରେ ଝଂକୃତ ହେବାକୁ ଲାଗିଲା ଶାନ୍ତନୁଙ୍କର । କିନ୍ତୁ ସତ୍ୟବତୀ ନିଷିଦ୍ଧ ଫଳ ହେବାକୁ ଯିବ କାହିଁକି ? ଝିଅଟି ସତରେ କେତେ ସୁନ୍ଦର ! କି ନିଷ୍ପାପ ତାର ଚାହାଣି । କେଡ଼େ ସହଜ, ସରଳ ଆଉ ସ୍ୱଚ୍ଛ । ଅଫୁରନ୍ତା ତେଜ ଆଉ ପୂରନ୍ତ ଯୌବନରେ ଭରପୂର ତାର ଜୀବନ । ସତ୍ୟବତୀକୁ ଦେଖିଲା ମାତ୍ରେ ହିଁ ସେ ବୁଝିପାରିଛନ୍ତି; ଲାଳସାର ଖାଦ୍ୟ ସେ ନୁହେଁ । ଆକାଂକ୍ଷାର ଅମୃତ । ସେ କେବେବି ବ୍ୟର୍ଥତାର ଅଙ୍ଗାର ହୋଇ ନ ପାରେ, ପୂର୍ଣ୍ଣତାର ଶିଖାଟିଏ । ପ୍ରତିହିଂସାର ପ୍ରତୀକ ସେ ନୁହେଁ, ଆନନ୍ଦସ୍ୱରୂପା ସେ । ଏଇ ସତ୍ୟବତୀକୁ ସାଥିରେ ନ ନେଇ ତାଙ୍କୁ ଫେରିଯିବାକୁ ହେବ ? କଥାଟା ଭାବିଲା ମାତ୍ରେ ଛାତି ଭିତରଟା ଦଳିଚକଟି ହୋଇଉଠିଲା ।

କିଛିକ୍ଷଣ ନିରବରେ ଶାନ୍ତନୁ ଆଖିକୁ ଦାସରାଜଙ୍କ ଉପରେ ନିବଦ୍ଧ କରି ରଖିଲେ । ତା'ପରେ ଦୃଷ୍ଟି ଫେରେଇନେଇ ଖୁବ୍ ଚାପା ଗଳାରେ କହିଲେ, ଆପଣଙ୍କ ପ୍ରସ୍ତାବ ବଡ଼ କଠିଣ । ପୁତ୍ର ଦେବବ୍ରତ ଜ୍ୟେଷ୍ଠ । ହସ୍ତିନାପୁରର ଯୁବରାଜ ସେ । ପିତା ହୋଇ ଆପଣା ପୁତ୍ରକୁ ସିଂହାସନର ଅଧିକାରରୁ ଅନ୍ୟାୟ ଭାବେ ବଞ୍ଚିତ କଲେ ଅଧର୍ମ ହେବ ।

ମହାରାଜ ! ମୋର ଏଇ ସର୍ତ୍ତର କୌଣସି ବିକଳ୍ପ ନାହିଁ ।

ଦାସରାଜ, ଆପଣ ବି ତ ଜଣେ ପିତା । ପିତାର ହୃଦୟ ନେଇ ଥରେ ଉପଲବ୍ଧି କରନ୍ତୁ ତ... ।

ପାଳକପିତାର ଦାୟିତ୍ୱ ଅନେକ ବେଶି ମହାରାଜ । ଅପରାଧ ମାର୍ଜନା କରିବେ । ଆର୍ଯ୍ୟ ନରପତିମାନେ ସାଧାରଣତଃ କାମାନ୍ଧ ହୋଇ ଅନାର୍ଯ୍ୟ ରମଣୀମାନଙ୍କୁ ବିବାହ କରନ୍ତି । ପରେ ସେମାନଙ୍କୁ ରକ୍ଷିତା ଭଳି ପ୍ରମୋଦ କକ୍ଷରେ ଜୀବନ କଟେଇବାକୁ ପଡ଼େ । ନାମ, ପରିଚୟ କିଛି ନ ଥାଏ ସେମାନଙ୍କର । ଗୋତ୍ରହୀନ ଏକ ମାନବକୁଳ । ସେମାନେ କେବଳ ରାଜାଙ୍କର ଦାସଦାସୀ ହୁଅନ୍ତି । ସୈନିକର କାର୍ଯ୍ୟ କରନ୍ତି । ସତ୍ୟବତୀର ଅନୁରୂପ ଅନାଦର ଅଥବା ଅପମାନ ମୁଁ ସହ୍ୟ କରିପାରିବି ନାହିଁ । ରାଣୀର ଗୌରବ ଓ ମର୍ଯ୍ୟାଦା ଅକ୍ଷୁଣ୍ଣ ରହିବ, ଯଦି ତାର ଗର୍ଭଜାତ ସନ୍ତାନ ରାଜା ହେବ । ଅନେକ ବିବେଚନା ପୂର୍ବକ ମୁଁ ଏଇ ସର୍ତ୍ତ ଆରୋପ କରିଛି । ମୋତେ ଭୁଲ ବୁଝିବେନି ମହାରାଜ ।

ଅସ୍ଫୁଟ ଶବ୍ଦ କରି ଶାନ୍ତନୁ କହିଲେ, ଅଗ୍ରଜକୁ ବଞ୍ଚିତ କରି ଅନୁଜକୁ ଅଗ୍ରାଧିକାର ଦେବା ପାରିବାରିକ ନିୟମ ନୁହେଁ । ଆତ୍ମସୁଖ ପାଇଁ ଏହି ପାରିବାରିକ ପ୍ରଥାକୁ ଭାଙ୍ଗିପାରିବି ନାହିଁ ।

ଦାସରାଜ କ୍ରୋଧରେ ଦପ୍‌କରି ଜଳି ଉଠିଲେ । ବଜ୍ରଗମ୍ଭୀର ସ୍ୱରରେ କ୍ରୋଧରେ କମ୍ପି କମ୍ପି କହିଲେ- 'ମୁଁ ମଧ୍ୟ ଆପଣଙ୍କର ମୋହଜନିତ ସ୍ୱାଦକୁ ମେଣ୍ଟାଇବା ପାଇଁ କନ୍ୟାକୁ ମୋର ଅର୍ପଣ କରିପାରିବି ନାହିଁ । ନିଶା କଟିଗଲେ ଆପଣ ମଧ୍ୟ ଅନ୍ୟ ଆର୍ଯ୍ୟ ନରପତିଙ୍କ

ଭଳି ତାକୁ ଆବର୍ଜନା କୁଣ୍ଡରେ ନିକ୍ଷେପ କରିବେ ନାହିଁ, ତାର ପ୍ରତିଶ୍ରୁତି କାହିଁ ? କିଭଳି ମୁଁ ଆପଣଙ୍କୁ ବିଶ୍ୱାସ କରିବି ?

ଦାସରାଜ ! ମୁଁ ପ୍ରାର୍ଥୀ ହେଇ ଆସିଛି ବୋଲି କ'ଣ ମୋ ପାଇଁ ଏଇଭଳି କଟୂକ୍ତି ?

ନା, ମହାରାଜ ! ମୁଁ ମଧ୍ୟ ପିତା । ପିତାର କାର୍ଯ୍ୟ ହେଲା କନ୍ୟାର ଭବିଷ୍ୟତ ନିରାପତ୍ତା ପ୍ରତି ଦୃଷ୍ଟି ଦେବା । ମୁଁ ସେଇ କର୍ତ୍ତବ୍ୟ ମାତ୍ର କରିଛି । ହସ୍ତିନାପୁରାଧିପତିଙ୍କୁ ଏଠି ସ୍ମରଣ କରାଇଦେବା ପାଇଁ ନିବେଦନ କରୁଛି ମାତ୍ର । ମୋର ଏହି ପ୍ରାର୍ଥନା ଖୁବ୍ ସାମାନ୍ୟ । ଏଥିରେ କୌଣସି ଅଧର୍ମ ନାହିଁ । ଏଇ ସାମାନ୍ୟ ଅଧର୍ମ ତ ମହାରାଜ ନିଜ ଜୀବନରେ ମଧ୍ୟ କରିଛନ୍ତି । ଆପଣ ନିଜେ ମଧ୍ୟ ପିତାଙ୍କର ପ୍ରଥମ ସନ୍ତାନ ନ ଥିଲେ । ଅନ୍ୟାୟ ଭାବେ ଜ୍ୟେଷ୍ଠଙ୍କୁ ରାଜ୍ୟ ଓ ରାଜସିଂହାସନରୁ ବଞ୍ଚିତ କରି ରାଜା ହେଇଥିଲେ । ଆଉ ସେଇ ପାପ ଫଳରେ ଆପଣଙ୍କ ରାଜ୍ୟରେ ବାରବର୍ଷ ଧରି ବୃଷ୍ଟି ହେଇନଥିଲା । ଏସବୁ କଥା ତ ମହାରାଜଙ୍କର ଭୁଲିଯିବା ଉଚିତ ନୁହେଁ । ଆପଣଙ୍କ କ୍ଷେତ୍ରରେ ଯାହା ସମ୍ଭବ ହେଇପାରିଲା, ସତ୍ୟବତୀର ଗର୍ଭଜାତ ସନ୍ତାନ କ୍ଷେତ୍ରରେ ତାହା କିଭଳି ଅସମ୍ଭବ ହେବ ? ଓ କାହିଁକି ?

ଶାନ୍ତନୁ କଥା ଖୋଜି ପାଇଲେ ନାହିଁ । ଗୋଟାଏ ବିଷଣ୍ଣତା ତାଙ୍କର ସମଗ୍ର ମନକୁ ଆଚ୍ଛନ୍ନ କରି ବସିଲା । ହତଭମ୍ବ ହୋଇ ସେ କିଛିକ୍ଷଣ ବସି ରହିଲେ । ତା'ପରେ ଦୀର୍ଘଶ୍ୱାସଟିଏ ପକାଇ କହିଲେ, ନିର୍ଭୁଲ ବିଚାର ଉପରେ ପ୍ରତିଷ୍ଠିତ ଏଇ ଯୁକ୍ତି । ନିଜ ମନକୁ ସ୍ଥିର କରିବା ପୂର୍ବରୁ ପୁତ୍ର ଦେବବ୍ରତ ସହିତ ଥରେ ପରାମର୍ଶ କରିବା ଉଚିତ ହେବ ବୋଲି ଭାବୁଛି ।

ଶାନ୍ତନୁଙ୍କ କଥା ଶୁଣି ଦାସରାଜ ଟିକିଏ ମୁରୁକି ହସିଲେ । କହିଲେ, ତା'ତ ନିଶ୍ଚୟ ଠିକ୍ କଥା । ତାପରେ ହିଁ ବିଷଣ୍ଣ ମନ ନେଇ ଶାନ୍ତନୁ ହସ୍ତିନାପୁର ଫେରିଯାଇଥିଲେ ।

ଦୁଇଦିନ ପରେ ଏକ ଚମକପ୍ରଦ ଘଟଣା ଘଟିଲା । କଥାଟା ବିସ୍ମୟକର ଥିଲା ନିଶ୍ଚୟ । ଶାନ୍ତନୁ ପୁତ୍ର ଦେବବ୍ରତ ନିଜେ ଉପସ୍ଥିତ ହେଲେ ଯାଇ ଧୀବର ପଲ୍ଲୀରେ । ଆତିଥେୟର କୌଣସି ତ୍ରୁଟି କରିନଥିଲେ ଧୀବର ରାଜ । ଘଟଣାର ଭଲମନ୍ଦ ଅନୁମାନ କରିପାରିନଥିଲେ କିନ୍ତୁ ଦାସରାଜ । ତେବେ କିଛି ଗୋଟାଏ ଗୁରୁତର ଘଟିଯାଇଛି, ଏତକ ଅନୁମାନ କରିପାରିଲେ ଦେବବ୍ରତଙ୍କ ଆଗମନରୁ । ପ୍ରାଥମିକ ଆଳାପ ପର୍ବ ଶେଷ ହେଲା । ଦେବବ୍ରତ ଅକୁଣ୍ଠ ଚିତ୍ତରେ କହିଲେ : ଧୀବରରାଜ, ଜନନୀ ସତ୍ୟବତୀଙ୍କୁ ହସ୍ତିନାପୁର ନେଇଯିବା ପାଇଁ ମୁଁ ଆସିଛି । ପିତା କିଛି ନ କହିଲେ ମଧ୍ୟ, ଆପଣଙ୍କ ସର୍ତ୍ତ ମୁଁ ସ୍ୱୀକାର କରୁଛି । ମୋ' ଜୀବଦ୍ଦଶାରେ କେବେହେଲେ ମୁଁ ସିଂହାସନରେ ବସିବି ନାହିଁ । ଆପଣଙ୍କ ସମ୍ମୁଖରେ ଯୁବରାଜର ଏଇ ଉଷ୍ଣିଷ ଓ ପରିଚ୍ଛଦ ମୁଁ ତ୍ୟାଗ କରୁଛି । ଏଥର ମୋତେ ମୋ ଜନନୀଙ୍କୁ ନେଇଯିବା ପାଇଁ ଅନୁମତି ପ୍ରଦାନ କରନ୍ତୁ ।

ଦେବବ୍ରତଙ୍କ କଥା ଶୁଣି ଦାସରାଜ ଅବାକ୍ ହେଇଗଲେ । କିନ୍ତୁ ନିଶ୍ଚିତ ହେଇ ପାରିଲେନି । ତତ୍‌କ୍ଷଣାତ୍ ଗୋଟାଏ ସଂଦେହ ମନରେ ଜାତ ହେଲା । ଗୋଟାଏ ଆଶଙ୍କାର ତୀର ତାଙ୍କ ମର୍ମ ଭିତରେ ତୀବ୍ର ଭାବେ ବିଦ୍ଧ ହୋଇଗଲା । ଦେବବ୍ରତ ସିଂହାସନର ଅଧିକାର ତ୍ୟାଗ କଲେ ମଧ୍ୟ ସତ୍ୟବତୀର ପୁତ୍ରମାନେ ଯେ ତାର ଅଧିକାରୀ ହେବେ, ସେଥିରେ ତ କୌଣସି ନିଶ୍ଚିତତା ନାହିଁ । ଅତଏବ ସିଂହାସନ ନିଷ୍କଣ୍ଟକ କରିବାକୁ ହେଲେ ଦେବବ୍ରତଙ୍କୁ ଆହୁରି ଗୋଟାଏ ସର୍ତ୍ତ ପାଳନ କରିବାକୁ ହେବ । ମନେ ମନେ ସର୍ତ୍ତର ଗୋଟାଏ ବୟାନ ସେ ପ୍ରସ୍ତୁତ କଲେ ।

ସତ୍ୟବତୀ ଅନ୍ୟ ଗୋଟାଏ କକ୍ଷରେ ସ୍ତବ୍‌ଧ ଭାବେ ଠିଆ ହୋଇଥିଲା । ପ୍ରତ୍ୟେକ କଥା ତାକୁ ଶୁଣାଯାଉଥିଲା ଓ ତା ମନ ଭିତରେ ଝଡ଼ ସୃଷ୍ଟି ହେଉଥିଲା । ଚରମ ଗ୍ଲାନିର କଳା-ଅନ୍ଧାର-ଝଡ଼ । ଆଲୋକିତ ବନାନୀ ଆଡ଼କୁ ଲୁହଭିଜା ଦୃଷ୍ଟିରେ ଚାହିଁ ରହିଥିଲା ସତ୍ୟବତୀ ।

ଦାସରାଜଙ୍କ ମୁହଁରେ ହସ, ଆଖିରେ କପଟତା ଭରି ରହିଥିଲା । ତାଙ୍କର ସର୍ବାଙ୍ଗରେ ମଧ୍ୟ ଅସ୍ପଷ୍ଟ ଏବଂ ଅନିର୍ଦ୍ଦିଷ୍ଟ ଏକ ପ୍ରତିଶୋଧର ସ୍ପୃହା ଫୁଟିଉଠୁଥିଲା । ବାରମ୍ବାର ସେ ଶିହରି ଉଠୁଥିଲେ । ମନେହେଲା, ସତେ ଯେମିତି ବିଧାତା ଉଚିତ ସମୟରେ ମୁଣ୍ଡ ଭିତରେ ବୁଦ୍ଧି ଜୁଟାଇ ଦେଲେ । ଏଭଳି କୌଣସି ସିଦ୍ଧାନ୍ତ କିମ୍ବା କଳ୍ପନା ତାଙ୍କ ମନରେ ଆଗରୁ କିଛି ନ ଥିଲା । ନିରବ ବି ସ୍ୱାଭାବିକ କଥା । ଘଟଣାର ଆକସ୍ମିକତାରେ ସବୁ କିମିତି ଆଶ୍ଚର୍ଯ୍ୟ ଭାବେ ହିଁ ଘଟିଗଲା । ଏହି ବିବାହରେ ହୁଏତ ଈଶ୍ୱରଙ୍କ ଇଚ୍ଛା ଥିଲା । ଆର୍ଯ୍ୟ-ଅନାର୍ଯ୍ୟ ସଂଘାତର ଏକ ଭୟଙ୍କର ବୈରାନଳ ପ୍ରଜ୍ୱଳିତ କରିବାକୁ ଯେମିତି ବିଧାତା ସତ୍ୟବତୀର ରୂପସଂଭାରରେ ଗୋଟାଏ ପରେ ଗୋଟାଏ ସର୍ତ୍ତର ସମ୍ମୋହନ ସୃଷ୍ଟି କରିଥିଲେ । ଏହି ଅବୋଧ୍ୟ ରହସ୍ୟମୟ ଉପଲବ୍‌ଧିର ଯଦିଓ କୌଣସି ମାନେ ନାହିଁ, ତଥାପି ଛାତି ଭିତରଟା କେମିତି ଗୋଟାଏ ହେଇଯାଇଥିଲା । ଥରକୁ ଥର ମନେ ହେଉଥିଲା, ଯେମିତି କିଛି ଗୋଟାଏ ବଡ଼ ଧରଣର ଘଟଣା ଘଟିବ ।

ଦାସରାଜ ଅବିଶ୍ୱାସର ଆଖିରେ ଦେବବ୍ରତଙ୍କ ଆଡ଼କୁ କିଛି ସମୟ ଚାହିଁ କହିଲେ, ନୂଆ ମା'ଙ୍କୁ ନେବାପାଇଁ ଆସିଛ, ଖୁବ୍ ଆନନ୍ଦର କଥା । କିନ୍ତୁ ଏଥିରେ ଗୋଟିଏ ଜଟିଳତା ଦେଖାଦେଇଛି । କିଛି ମନେ କରିବ ନାହିଁ । ଖୋଲାଖୋଲି ଭାବେ କଥାଟା ଖୋଲି କହୁଛି । ତୁମ ଉପରେ ମୋର ପୂରାପୂରି ବିଶ୍ୱାସ ଅଛି । କଥା ଦେଇ କଥା ନ ରଖିବା ଭଳି ପୁଅ ତୁମେ ନୁହଁ । ତେବେ ସବୁଦିନ ତ ଏମିତି ଯୁବକ ହେଇ ରହିବନି ? ତୁମର ମଧ୍ୟ ପୁଅଝିଅର ସଂସାର ହେବ । ଜ୍ୟେଷ୍ଠପୁତ୍ରର ସନ୍ତାନ ହିଁ ସିଂହାସନର ଉତ୍ତରାଧିକାରୀ ହେବା ପାରିବାରିକ ପ୍ରଥା । ସେତେବେଳେ ତୁମ ପୁଅ ପାଇଁ ତୁମର ଏଇ ପ୍ରତିଶ୍ରୁତି ମନେ ରହିବନି କିମ୍ବା କାର୍ଯ୍ୟକାରୀ ହେବନି । ସିଂହାସନରେ ସତ୍ୟବତୀର ପୁତ୍ରର ଅଧିକାରକୁ ଆହୁରି ଅଧିକ ସୁନିଶ୍ଚିତ କରିବାକୁ ହେଲେ କ'ଣ କରିବା ଉଚିତ ବୋଲି ତୁମେ ମନେକରୁଛ ?

ଦାସରାଜଙ୍କ କଥା ଶୁଣି ଅବାକ୍ ହୋଇଗଲେ ଦେବବ୍ରତ । ଖୁବ୍ ଭଦ୍ରଗଳାରେ କହିଲେ, ଦାସରାଜ, ଆପଣଙ୍କ କନ୍ୟାର ରୂପ, ଗୁଣ ଓ ତେଜରେ ମୁଗ୍ଧ ମୋର ପିତା, ତାଙ୍କର ଆହାର ନିଦ୍ରା ତ୍ୟାଗ କରିଛନ୍ତି । ତାଙ୍କର ଅଭିଳାଷ ଓ ବାସନା ପୂରଣ ପଥରେ ମୁଁ ହେଉଛି ପ୍ରତିବନ୍ଧକ । ପୁତ୍ର ହୋଇ ପିତାଙ୍କର ସେଇ ଦୁର୍ବିଷହ ଦୁଃଖ ଓ ବେଦନାର ଅବସାନ ପାଇଁ ମୁଁ ମୋର ସ୍ୱାର୍ଥକୁ ବଳି ଦେଇପାରେ । ପିତାଙ୍କର ସୁଖ, ଆନନ୍ଦ ଓ ଇଚ୍ଛାକୁ ଚରିତାର୍ଥ କରିବା ପାଇଁ ଯିଏ ନିଜର ଯୌବରାଜ୍ୟ ଓ ସିଂହାସନକୁ ଜୀର୍ଣ୍ଣବସ୍ତ୍ର ଭଳି ତ୍ୟାଗ କରିପାରିଲା, ତା ନିକଟରେ ଆପଣଙ୍କର ଏଇ ଦ୍ୱିତୀୟ ସର୍ତ୍ତ ମଧ୍ୟ ଅତି ତୁଚ୍ଛ ଓ ସାମାନ୍ୟ । ମୁଁ ପ୍ରତିଜ୍ଞା କରୁଛି, ଏଇ ଜୀବନରେ କେବେ ମଧ୍ୟ ପତ୍ନୀ ଗ୍ରହଣ କରିବି ନାହିଁ ।

ଖୁସିରେ ଫାଟିପଡ଼ିଲେ ଦାସରାଜ । ବାସ୍ତବିକ୍, ତୁମେ ମହାନ୍ । ତୁମ ମହାନୁଭବତାର କୌଣସି ତୁଳନା ନାହିଁ ।

ଦେବବ୍ରତଙ୍କ ଶୁଦ୍ଧ ଅଭିମାନ ଦାସରାଜଙ୍କ କଥା ଶୁଣି ଆହୁରି ଫାଟି ପଡ଼ିଲା । ତଥାପି ଦୀର୍ଘଶ୍ୱାସ ତୋଳି ଭଦ୍ର ଆଉ ଶାଳୀନ କଣ୍ଠରେ କହିଲେ, ଦାସରାଜ, ଶେଷ ସର୍ତ୍ତଟି ଆରୋପ କରି ମୋ ମନର ସଂଦେହ, ସଂଶୟକୁ କେବଳ ବଢ଼େଇଦେଲେ ଆପଣ । ସର୍ତ୍ତ ଭିତରେ ଆପଣଙ୍କର ଉଦ୍ଦେଶ୍ୟ ସ୍ପଷ୍ଟ ହେଇଉଠିଛି । ଏହି ବିବାହରେ ଆର୍ଯ୍ୟ-ଅନାର୍ଯ୍ୟର ରାଜନୈତିକ ବିରୋଧ ପ୍ରତିଫଳିତ ହେଇଛି । ଆର୍ଯ୍ୟମାନଙ୍କର ଆଧିପତ୍ୟକୁ ମୂଳପୋଛ କରି ଅନାର୍ଯ୍ୟ ସଂସ୍କୃତିର ଭାବଧାରାକୁ ପ୍ରତିଷ୍ଠିତ କରିବାର ଏଇ ସୁଚତୁର କୌଶଳ ଅତୀତରେ କେକୟରାଜ ଅଶ୍ୱପତି ମଧ୍ୟ କରିଥିଲେ ଦଶରଥଙ୍କ ସହିତ ।

ହେଁ ହେଁ କରି ହସିଉଠିଲେ ଦାସରାଜ । ତା'ପରେ କହିଲେ, ଯୁବରାଜ, କିଏ ଅଧିକାର ଦିଏନା, ଯିଏ କାଢ଼ି ନେବାର କୌଶଳ ଜାଣେ, ଅଧିକାରଟା ତାର । ଦିନେ ଏ ଦେଶରେ ଆର୍ଯ୍ୟମାନେ ଏଭଳି ଭାବରେ ଆମ ସରଳତା ଏବଂ ଆନୁଗତ୍ୟର ସୁଯୋଗ ନେଇ ବୋକା ବନେଇ ଆମର ସର୍ବସ୍ୱ ହରଣ କରି ନେଇଥିଲେ । ଆର୍ଯ୍ୟମାନଙ୍କୁ ବିଶ୍ୱାସ କରି ଅନାର୍ଯ୍ୟମାନେ ଠକି ହେଇଛନ୍ତି । ସେଇମାନଙ୍କର କୌଶଳକୁ ଯଦି ଆମେ ହତିଆର ଭାବେ ଗ୍ରହଣ କରୁ ତାହେଲେ ଆମକୁ କାହିଁକି ଦୋଷୀ ବୋଲି କହିବ ? କିନ୍ତୁ ଏସବୁ ତ ତର୍କର କଥା, ଯୁକ୍ତି । କଥାକୁ କଥା । କଥାକୁ ନେଇ ମୁଁ ଖେଳିବାକୁ ଚାହେଁନା । ପ୍ରକୃତରେ କହିବାକୁ ଗଲେ ଏଇଟା ହେଲା ଜଣେ ଉଦ୍‌ବିଗ୍ନ ପିତାର କିଛି ଉତ୍କଣ୍ଠା ଓ ଭବିଷ୍ୟତ୍ ପାଇଁ ସାବଧାନତା । କିନ୍ତୁ ଯେଉଁ ଦୃଷ୍ଟିରେ ତୁମେ ଘଟଣାଟିକୁ ଦେଖି ବିଚାର କଲ, ସେଥିରେ ଆତ୍ମିକ ସଂପର୍କ କିଛି ମାତ୍ରାରେ ତିକ୍ତ ହେଇ ଉଠିଲା ।

ଦେବବ୍ରତଙ୍କ ମୁହଁ ନିମିଷକରେ କଳା ପଡ଼ିଗଲା । ଲଜ୍ଜା ଆଉ ଅନୁତାପରେ ସେ ଦାସରାଜଙ୍କ ମୁହଁକୁ ଆଖି ଉଠେଇ ଚାହିଁ ପାରିଲେ ନାହିଁ । ଭିତରେ ଭିତରେ ଗୋଟିଏ ଗଭୀର ଅବସାଦ ମାଡ଼ିବସିଲା ।

ସ୍ୱଚ୍ଛ ପର୍ଦ୍ଦାର ଆଢୁଆଳରେ ସତ୍ୟବତୀ ଦେବବ୍ରତଙ୍କୁ ଚାହିଁଥିଲା । ଦେବଦୂତ ଭଳି ସ୍ନିଗ୍ଧ ସୁକୁମାର ମୁଖଶ୍ରୀର ପବିତ୍ରତା ଦେଖି ତା ଛାତି ପୂରି ଉଠୁଥିଲା । ପିତୃଭକ୍ତି ଦେବବ୍ରତଙ୍କ ଜୀବନର ଶ୍ରେଷ୍ଠ ଆଦର୍ଶ; ତାହା ଏଇମାତ୍ର ସାମାନ୍ୟ ଘଟଣାରୁ ସ୍ପଷ୍ଟ ଭାବେ ଅନୁଭବ କରିପାରିଲା ସତ୍ୟବତୀ । ଆଶ୍ଚର୍ଯ୍ୟ ଏକ ଉଲ୍ଲାସ ଏବଂ ସୁଖାନୁଭୂତିରେ ତାର ଅଭ୍ୟନ୍ତର ଜୁଡୁବୁଡୁ ହେଇଯାଉଥିଲା । ଆଉ କୌଣସି ଭାବନା ନ ଥିଲା ତା ଭିତରେ । ଯଦିଓ ଆଖିକୋଣରୁ ଲୁହର ଦାଗ ଲିଭିନଥିଲା; ତଥାପି ପୂରନ୍ତ ଏକ ମୁଗ୍ଧତା ନେଇ ସେ ପର୍ଦ୍ଦା ଆଡ଼େଇ ଅଚାନକ ଦେବବ୍ରତଙ୍କ ସମ୍ମୁଖକୁ ଆସି ଠିଆ ହେଇପଡ଼ିଲା ।

ଦେବବ୍ରତ ନିରବରେ ଥମଥମ ମୁହଁରେ ଚାହିଁରହିଥିଲେ । ଆଖିରେ ତାଙ୍କର ବିସ୍ମୟ । ମୁଖମଣ୍ଡଳରେ ମୁଗ୍ଧତାର ଭାବ ।

ସ୍ୱପ୍ନାତୁର ଆଖିରେ ସତ୍ୟବତୀ କିଛି ସମୟ ଚାହିଁରହିଲା ଦେବବ୍ରତଙ୍କ ମୁହଁକୁ । ଦେବବ୍ରତଙ୍କ ଭିତରେ ସେ ଶାନ୍ତନୁଙ୍କୁ ଦେଖୁଥିଲା । ପିତାଙ୍କର ସ୍ୱଭାବ, ଗୁଣ, ଚରିତ୍ର ଓ ବ୍ୟକ୍ତିତ୍ୱ ସନ୍ତାନ ଭିତରେ ସତରେ ପ୍ରତିଫଳିତ ହୁଏ । ସୁତରାଂ ଦେବବ୍ରତଙ୍କ ବ୍ୟକ୍ତିତ୍ୱର ସୌନ୍ଦର୍ଯ୍ୟ, ଔଦାର୍ଯ୍ୟ ଓ ଐଶ୍ୱର୍ଯ୍ୟ ଭିତରେ ଶାନ୍ତନୁ ହିଁ ଅଛନ୍ତି । ଶାନ୍ତନୁଙ୍କ ବାହ୍ୟରୂପ-ମୁଗ୍ଧତା, କାମାନ୍ଧତା ନେଇ ତା'ମନରେ କିଛିଟା ଦୁଃଶ୍ଚିନ୍ତା ଥିଲା; କିନ୍ତୁ ଦେବବ୍ରତଙ୍କୁ ଦେଖି ସେଇ ସଂଦେହ ତାର କଟିଗଲା । ଦେବବ୍ରତଙ୍କ ଭିତରେ ବ୍ୟାଖ୍ୟାର ଅତୀତ କିଛି ସେ ଦେଖିବାକୁ ପାଇଲା । ସତ୍ୟବତୀର ଦେହ ମନ ସତକୁ ସତ ଆନନ୍ଦ ଓ ଖୁସିରେ ବୁଡ଼ି ଯାଉଥିଲା । ଦୁଃସାହସୀ ସ୍ୱପ୍ନଟିଏ ହଠାତ୍ ଭାସି ଉଠିଲା ଆଖି ଆଗରେ । ନିଃସଂକୋଚରେ ସ୍ମିତ ହସି ମୃଦୁ କଣ୍ଠରେ କହିଲା- ପୁତ୍ର, ଆଉ ଦ୍ୱିଧା କାହିଁକି ? ମୁଁ ସତ୍ୟବତୀ; ତୁମର ଜନନୀ । ହସ୍ତିନାପୁର ଯିବା ପାଇଁ ପ୍ରସ୍ତୁତ ହେଇ ଠିଆ ହେଇଛି । କିନ୍ତୁ ତୁମ କଥା ହିଁ ସରୁନି ଏ ଯାଏ । ସେଥିପାଇଁ ମୁଁ ନିଜେ ଚାଲିଆସିଲି । ସନ୍ତାନ ନିକଟରେ ମା'ର ତ କିଛି ଲଜ୍ଜା ନାହିଁ । ଏତିକି କହି ନିରବ ରହିଲେ ସତ୍ୟବତୀ ।

ଦ୍ୱୈପାୟନ ସମ୍ମୋହିତ ମୁଗ୍ଧ ଆଖିରେ ଜନନୀଙ୍କ ମୁଖମଣ୍ଡଳକୁ ଚାହିଁରହିଲେ । କିଛିକ୍ଷଣ ନିରବ ରହିବା ପରେ ସେ କହିଲେ, ମା' ତୁମ ମନର ସମସ୍ତ ତାର ସତ୍ୟର ସୁରରେ ବନ୍ଧା ହେଇଛି । ତୁମେ ଯଥାର୍ଥରେ ସତ୍ୟବତୀ । ତୁମ କଥା ଭିତରେ ମୁଁ ଦେଖିଛି ମା' ତୁମ ମୁହଁକୁ; ଆଉ ସେହିଠାରେ ଅଛି ମୋ ଜୀବନର ସକଳ ଧ୍ୟାନ ଧାରଣା ଏବଂ ଶ୍ରଦ୍ଧା, ପ୍ରେମ । ମୁଁ ଆଉ କିଛି ଅଧିକା କିମ୍ବା କାହାକୁ ତୁମଠାରୁ ବଡ଼ ହେବାକୁ ଦେବି ନାହିଁ । ସମଗ୍ର ଛାତି ଭିତରଟା କେବଳ ଭଲ ପାଇବାର ସମୁଦ୍ର ।

x x x

ସେ'ଦିନର ରାତ୍ରି ଦ୍ୱୈପାୟନଙ୍କ ଜୀବନର ସବୁଠାରୁ ସୁନ୍ଦର ଓ ଆଶ୍ଚର୍ଯ୍ୟମୟ ରାତ୍ରି ଥିଲା । କୃଷ୍ଣପକ୍ଷର ମ୍ଳାନ ଜହ୍ନର ଜ୍ୟୋସ୍ନାଲୋକରେ ହସ୍ତିନାପୁରର ବାଟଘାଟ ସତେ ଯେମିତି ଏକ ସ୍ୱପ୍ନପୁରୀରେ ପରିଣତ ହେଇଥିଲା । ବାରଣ୍ଡାରେ ଠିଆ ହେଇ ସେ ଦେଖୁଥିଲେ ଖଣ୍ଡ ଖଣ୍ଡ ମେଘମାନଙ୍କର ଅସୀମାଲୋକ ଉଦ୍ଦେଶ୍ୟରେ ଯାତ୍ରା ଉତ୍ସବକୁ ।

ମଧ୍ୟ ଆକାଶରେ କାଳପୁରୁଷ ଯେମିତି ଗୋଟା ଆକାଶ ବୁକୁରେ ପାଦଦେଇ ଛାତି ଫୁଲାଇ ଠିଆ ହେଇଛି ରଙ୍ଗ ଦେହି ଭଙ୍ଗୀରେ । ଦ୍ୱୈପାୟନଙ୍କ ଛାତି ଭିତରଟା ଶିରଶିରେଇ ଉଠିଲା । ସେଇ ତାରାମଣ୍ଡଳ ମଧ୍ୟରୁ ସେ କ'ଣ ଯେମିତି ଖୋଜିବାକୁ ଲାଗିଲେ । ଯେଉଁ ତାରାମାନଙ୍କ ସମନ୍ୱୟରେ ଏଇ କାଳପୁରୁଷର ଆକୃତି, ସେମାନେ ତ ମିଛ ନୁହନ୍ତି । ସେମାନଙ୍କ ପାଦତଳେ ସବୁଠୁ ବେଶି ଉଜ୍ଜ୍ୱଳ ହେଇ ଯିଏ ଜଳୁଛି, ସେଇ ନକ୍ଷତ୍ରଟିର ନାମ ଲୁବ୍‌ଧକ । ସିଏ ମଧ୍ୟ ସତ୍ୟ । ଜ୍ୟୋତିର୍ମୟ ସତ୍ୟ ।

ଏହି ନିଶିଥ ରାତ୍ରିରେ ଏକା ଏକା ଚୁପ୍‌ଚାପ୍ ଖୋଲା ଆକାଶ ତଳେ ବସି ମନକୁ ମନ କଳ୍ପନା କରି ଉପଭୋଗ କରିବାକୁ ଖୁବ୍ ଭଲ ଲାଗୁଥିଲା ଦ୍ୱୈପାୟନଙ୍କୁ । ଏକ ଆଶ୍ଚର୍ଯ୍ୟ ଆନନ୍ଦରେ ଦେହମନ ଭରି ଉଠୁଥିଲା । ହଠାତ୍ ଦ୍ୱୈପାୟନଙ୍କର ମନେହେଲା, ସେ ନିଜେ ଯେମିତି କାଳପୁରୁଷ ହେଇଯାଇଛନ୍ତି । ତାଙ୍କର ନକ୍ଷତ୍ରର ଧନୁଶର, କମରରେ ତାରାର ତରବାରି, ମସ୍ତକରେ ଉଜ୍ଜ୍ୱଳ ତାରା ଦାଉ ଦାଉ ହେଇ ଜଳୁଛି । ସେଇଟା ତାଙ୍କର ରାଜଟୀକା ।

ନିଜ ଭାବନାରେ ତନ୍ମୟ ହେଇ ଦ୍ୱୈପାୟନ କାଳପୁରୁଷ ଆଡ଼କୁ ଚାହିଁ ଯୋଡ଼ହସ୍ତ ହୋଇ ଠିଆ ହେଲେ । ପ୍ରାର୍ଥନା କରିବାକୁ ଚାହିଁଲେ, ହେଲେ କ'ଣ ପ୍ରାର୍ଥନା କରିବେ ? ସେଇ କଥା ଭାବିଲା ବେଳକୁ ହଠାତ୍ ତାଙ୍କ କାନରେ ମଣିଷର କଣ୍ଠସ୍ୱର ଶୁଭିଲା । ବାହାରେ ପବନର ସାଇଁ ସାଇଁ ଶବ୍ଦ ବ୍ୟତୀତ ଆଉ କିଛି ଶୁଭୁ ନ ଥିଲା । ତେବେ ମଣିଷର ଏଇ କଣ୍ଠସ୍ୱର କ'ଣ ଶୂନ୍ୟଲୋକରୁ ଭାସି ଆସୁଛି ? ଏଇଟା କଣ ତା'ହେଲେ ନିଜ ଅଭ୍ୟନ୍ତରର କଥା ? ଯେଉଁଠି ସବୁ ପହୁଁଚେ, ସବୁ ଜମା ହୁଏ- ସେଇ ମନର ଭଣ୍ଡାର ଘରୁ ଉଠି ଭାସି ଆସୁଛି ?

ଦ୍ୱୈପାୟନ ଶୂନ୍ୟ ଆଖିରେ ଆକାଶ ଆଡ଼କୁ ଚାହିଁଲେ । ଧାରଣାଟା ଏମିତି କିଛି ସ୍ୱଚ୍ଛ ନୁହେଁ । ଅସ୍ପଷ୍ଟ । କୁହେଳି ଭିତରୁ ଗୋଟି ଗୋଟି ହୋଇ ସ୍ପଷ୍ଟ ହେଇ ଉଠୁଥିଲା କ୍ରମଶଃ । ମନ ଭିତରେ ଗଢ଼ି ହେଉଥିଲା ତାର ରୂପ । ମୁଣ୍ଡ ଭିତରଟାକୁ କ୍ରମଶଃ ଆକ୍ରାନ୍ତ କରି ପକାଉଥିଲା ।

ମନର କୌଣସି ଏକ ସୁଡ଼ଙ୍ଗ ପଥ ଧରି ଆଗେଇ ଚାଲୁ ଚାଲୁ ଦ୍ୱୈପାୟନଙ୍କ ମନରେ ତମସା ତୀରବର୍ତ୍ତୀ ପିତାଙ୍କର ସେଇ ତପୋବନର ଛବି ଭାସିଉଠୁଥିଲା – ତାକୁ ସେ ନିଜ

ଅନୁଭୂତି ଦେଇ ବୁଝିବା ପାଇଁ ଚେଷ୍ଟା କରୁଥିଲେ । ଫୁଲ ଉପରେ ଆଲୋକ ପଡ଼ିଲେ, ଫୁଲର ସବୁ ପାଖୁଡ଼ା ଗୋଟି ଗୋଟି ହୋଇ ଖୋଲିବସେ, ସେ କଥା କଣ ସେ ଜାଣିପାରେ ? ଫୁଲ କଣ ଜାଣିପାରେ ଫଳ ଧରିବାର ନିର୍ଦ୍ଦେଶ, କୋଉଠୁ ଆସୁଛି ତାର ଅଲକ୍ଷରେ ? ସେ ସବୁ କଥା ଗଭୀର ଭାବେ ଭାବିବାକୁ ଯାଇ ତପୋବନର ସ୍ମୃତି ଆଉ ଅଭିଜ୍ଞତା ସୂତ୍ରରୁ ଲବ୍ଧ ବିଚିତ୍ର ଗୁଡ଼ିଏ ଘଟଣାବଳୀ ଭାସିଉଠିଲା ମାନସପଟରେ । ଭଲ ମନ୍ଦର ବିଚାର କରୁକରୁ ଥରିଉଠିଲା ଛାତି ଭିତରଟା ।

ଆଶ୍ରମରେ... ପ୍ରଥମଦିନର ସ୍ମୃତି କେବଳ ନୁହେଁ, ସମସ୍ତ ଘଟଣା ତାଙ୍କର ମନେଅଛି । ତେବେ ପ୍ରଥମଦିନର ଘଟଣାଟା ତାଙ୍କୁ ସତର୍କ ଏବଂ ସାବଧାନ କରାଇ ଦେଇଥିଲା । ବାଳକ ହେଲେ ମଧ୍ୟ ସେଦିନ ଦ୍ୱୈପାୟନ ବୁଝିପାରିଥିଲେ ଯେ, ଏଇଠି ତାଙ୍କୁ ସାବଧାନରେ ରହିବାକୁ ହେବ । ଆଶ୍ରମରେ ସେ ସଙ୍ଗୀହୀନ, ଏକା । ଏଠି ତାଙ୍କ ଚାରିପାଖରେ ଯେଉଁମାନେ ଅଛନ୍ତି ସେମାନେ କେହି ସଜ୍ଜନ ନୁହନ୍ତି କି ବଂଧୁ ନୁହନ୍ତି । ସେମାନଙ୍କ ସହିତ ହୁଏତ କୌଣସି ଦିନ ପ୍ରୀତିପୂର୍ଣ୍ଣ ସଂପର୍କ ଗଢ଼ି ଉଠିବ ନାହିଁ । କାର୍ଯ୍ୟତଃ ତାହାହିଁ ହେଇଥିଲା । ସେ'ଦିନର ଅଭିଜ୍ଞତା ଦ୍ୱୈପାୟନଙ୍କ ସମଗ୍ର ମନକୁ ଟାଣି ନେଉଥିଲା । ଅତୀତକୁ କେନ୍ଦ୍ର କରି ସମସ୍ତ ଚିନ୍ତା ଗୁଡ଼େଇ ତୁଡ଼େଇ ହେଇ ଉଠୁଥିଲା କ୍ରମଶଃ ।

ଆଶ୍ରମରେ ପାଦ ଦେଉ ଦେଉ ଗୋଟିଏ ମିଠା ମିଠା ଗନ୍ଧ ଭାସି ଆସିଲା । ସମଗ୍ର ତପୋବନକୁ ଆଚ୍ଛନ୍ନ କରି ରଖିଥିଲା ସେଇ ଫୁଲର ସୁଗନ୍ଧ, ଚନ୍ଦନର ସୁବାସ । ପବନ ଥିଲା ଗନ୍ଧବହ । ନଦୀର ବୁକୁ ଉପରୁ ବହି ଆସୁଥିବା ଝିରି ଝିରି ଶୀତଳ ସ୍ନିଗ୍ଧ ପବନ ଯେମିତି ଦ୍ୱୈପାୟନଙ୍କ ଶରୀରର ସମସ୍ତ କ୍ଳାନ୍ତି ଓ ଅବସାଦକୁ ଦୂର କରିଦେଲା । ମଧ୍ୟାହ୍ନର ଆଲୁଅ ଭରା ବନଭୂମିରେ ଯେମିତି ଭରି ରହିଥିଲା ସଂଗୀତର ମୂର୍ଚ୍ଛନା । ରାଶି ରାଶି ଫୁଲର ଶୋଭା, ରଙ୍ଗବେରଙ୍ଗ ପ୍ରଜାପତି, ରକମ ରକମର ପକ୍ଷୀଙ୍କ କୋଳାହଳ । ମୟୂରର ନୃତ୍ୟ ଦ୍ୱୈପାୟନଙ୍କ ଅବଚେତନ ମନରେ କେମିତି ଗୋଟାଏ ନିରବ ଭଲପାଇବାର (ଆକର୍ଷଣ) ଭାବ ଅଙ୍କୁରିତ ହେଇଥିଲା । ଯାଉ ଯାଉ ମନେହେଲା ପ୍ରଶାନ୍ତ, ନିର୍ଜନ ଏଇ ତପୋବନ ପ୍ରକୃତି ତା ରୂପରାଜ୍ୟର ରସ ଆଉ ରଂଗର ପସରା ଖୋଲି ସତେ ଯେମିତି ଧ୍ୟାନସ୍ଥ ହେଇ ବସିଛି, କୌଣସି ଏକ ଅପହଞ୍ଚ, ଅଧରା ଅମରାବତୀର ସାଧନାରେ ।

ପିତାଙ୍କ କୁଟୀର ସମ୍ମୁଖରେ ଠିଆ ହେବା ସଂଗେ ସଂଗେ ଚାରିପଟେ ଘେରି ରହିଥିବା ଛୋଟବଡ଼ ଅନ୍ୟାନ୍ୟ ଆଶ୍ରମମାନଙ୍କରୁ ଦଳଦଳ ହୋଇ ବାଳକମାନେ ଛୁଟିଆସିଲେ । ପିତା ସେମାନଙ୍କ ସହିତ ପରିଚୟ କରେଇ ଦେଇ କହିଲେ, କୃଷ୍ଣ, ଏମାନେ ତୋର ସତୀର୍ଥ, ବନ୍ଧୁ ଓ ସହପାଠୀ । ଏମାନଙ୍କ ସହିତ ତୁ ଗୋଟିଏ କୁଟୀରରେ ରହିବୁ ।

ଦ୍ୱୈପାୟନ ସ୍ମିତ ହସି ମୁଣ୍ଡ ଟୁଙ୍ଗାରିଲେ । କିନ୍ତୁ ସେମାନଙ୍କ ସହିତ କଥାବାର୍ତ୍ତା ଆଳାପ କରି ପାରିନଥିଲେ । ଅପରିଚିତ ହେତୁ ଗୋଟିଏ ଦ୍ୱିଧା, ସଂକୋଚ ଆଉ ଦୂର୍ ଦୂର୍ ଭାବ ତାଙ୍କ ଭିତରେ ପ୍ରାଚୀର ଭଳି ଠିଆ ହୋଇଥିଲା ।

ଦ୍ୱୈପାୟନଙ୍କୁ ଘେରି ଆଶ୍ରମ ବାଳକମାନଙ୍କ ଭିତରେ କୌତୂହଳର ଅନ୍ତ ନ ଥିଲା । ସେମାନେ ଏମିତି ଭାବ ଦେଖେଇଲେ ଯେ, ସତେ ଯେମିତି ଆଗରୁ କେବେ ଏଭଳି ମଣିଷ ଦେଖି ନ ଥିଲେ । ଆଶ୍ରମରେ ସେ ଏକମାତ୍ର କୃଷ୍ଣବର୍ଣ୍ଣର ଏବଂ କଦାକାର ଥିଲେ ।

ଆଶ୍ରମର ଶିକ୍ଷାର୍ଥୀଗଣ ପ୍ରାୟ ସମସ୍ତେ ଥିଲେ ଶ୍ୱେତାଙ୍ଗ ଆର୍ଯ୍ୟ ସନ୍ତାନ । ହଠାତ୍ ନବାଗତ କୃଷ୍ଣାଙ୍ଗ ଶିକ୍ଷାର୍ଥୀଟି ସେମାନଙ୍କ କିଶୋର ମନ ଭିତରେ ଗୋଟାଏ ବିଚିତ୍ର ଝଡ଼ ସୃଷ୍ଟି କଲା । ଏତେଦିନ ଧରି ସେମାନଙ୍କର ଧାରଣା ଥିଲା ଯେ, କେବଳ ଆର୍ଯ୍ୟମାନେ ହିଁ ବେଦବିଦ୍ୟାର ଅଧିକାରୀ । କୌଣସି କୃଷ୍ଣକାୟର ଏହି ଅଧିକାର ନାହିଁ । ତଥାପି ଏହି କୃଷ୍ଣକାୟ ଅନାର୍ଯ୍ୟ ପ୍ରତି ଆଚାର୍ଯ୍ୟଙ୍କର କୃପା ଓ କରୁଣା ଏତେ ମାତ୍ରାରେ କାହିଁକି ବଳି ପଡୁଛି, ତାର ରହସ୍ୟଭେଦ କରିବା ପାଇଁ ସେମାନେ ସମର୍ଥ ନ ଥିଲେ । ମନ ଭିତରେ କୌତୂହଳ ଏବଂ ଅସଂଖ୍ୟ ଆବୁରୁଜାବୁରୁ ଜିଜ୍ଞାସା ପୁଞ୍ଜୀଭୂତ ହେବାକୁ ଲାଗିଲା । ଜଣେ ଦି'ଜଣ ସାହସୀ ତରୁଣ ତାପସଙ୍କ ଠାରୁ ଦ୍ୱୈପାୟନଙ୍କୁ କଟୁ ମନ୍ତବ୍ୟ ମଧ୍ୟ ଶୁଣିବାକୁ ପଡ଼ିଥିଲା । 'ଏଇ କଳାଭୂତଟାକୁ ଆଶ୍ରମକୁ ଆଣିବାର ମାନେ କ'ଣ ? ଆମର ତ କୌଣସି କାର୍ଯ୍ୟରେ ଲାଗିବନି' ।

'ଆଶ୍ରମର କୌଣସି ନୂଆ' ସେଇ ଦାସର ଆବଶ୍ୟକତା ଥିବ ହୁଏତ । ଆଗରୁ ତ କେବେ ଆଶ୍ରମରେ ଅନାର୍ଯ୍ୟଙ୍କର ଦେଖା ନ ଥିଲା । ଏମାନେ ପାପୀ, ନରାଧମ । ଏମାନଙ୍କୁ ଛୁଇଁଲେ ସବୁ ଅପବିତ୍ର ହେଇଯାଏ । ଏହା ଜାଣି ମଧ୍ୟ 'ବାବା, ତା ଶରୀର କି ଦୁର୍ଗନ୍ଧ । ପାଖରେ ଠିଆ ହେବାକୁ ଭଲ ଲାଗୁନି' ।

'ଏଇ ଚୁପ୍ । ଆଚାର୍ଯ୍ୟ ପରାଶରଙ୍କ ପୁତ୍ର ସେ ।'

'ୟାକୁ କିଏ ଆଚାର୍ଯ୍ୟଙ୍କ ପୁତ୍ର କହିବ ?'

'ସତ କଥା । ଚେହେରାର ସାମଞ୍ଜସ୍ୟ କିଛି ନାହିଁ । ଜଣେ ଆକାଶର ଜହ୍ନ ତ ଆଉ ଜଣେ ମାଙ୍କଡ଼ ।'

'ହେଲା, ଆମର ଭୂତ ଦେଖା ବେଶ୍ ହେଲା । ଚାଲ ଏଥର କୁଟୀରକୁ ଯିବା ।'

ଦ୍ୱୈପାୟନଙ୍କ ସମଗ୍ର ଦେହ ମନ ଅପମାନର ଜ୍ୱାଳାରେ ଜଳିବାକୁ ଲାଗିଲା । ଆଲୋଚନା କଲା ଭଳି (ଜିନିଷଟିଏ) ମାଧ୍ୟମଟିଏ ପାଇଗଲେ ହିଁ ପିଲାମାନେ ତାକୁ ନେଇ ଲେମ୍ବୁକୁ ଦଳିଚକଟି ପିତା କରି ଫୋପାଡ଼ି ଦେଲା ଭଳି ଫୋପାଡ଼ି ଦିଅନ୍ତି, ତେବେ ଯାଇ ମନ ତାଙ୍କର ଶାନ୍ତ ହୁଏ । ଏଇ କ୍ଷେତ୍ରରେ ମଧ୍ୟ ସେମାନେ ସେଇଆ କଲେ । ଶାନ୍ତ ଓ

ପବିତ୍ର ତପୋବନରେ ଗଛପତ୍ରର ଫାଙ୍କ ଦେଇ ସାୟାହ୍ନର ନରମ ସୂର୍ଯ୍ୟକିରଣ ତାଙ୍କ ଉପରେ ଆସି ପଡ଼ିଲା । ଭୂମି ଉପରେ ନିପତିତ ସେଇ ତିଳ ତଣ୍ଡୁଳିତ ଛାୟା ସୃଷ୍ଟି କରୁଥିଲା ଏକ ମନୋମୁଗ୍ଧକାରୀ ଜନବାକ୍ୟ । ଦୁଇ ଆଖିର ନିରବ ଚାହାଣିରେ ଦ୍ୱୈପାୟନ ଏଇ ଛାଇ ଆଲୁଅର ମାୟାକୁ ଅନୁସରଣ କରୁଥିଲେ । ଦ୍ୱୈପାୟନଙ୍କ ମନର ସମସ୍ତ ମାଧୁର୍ଯ୍ୟ କ୍ରମଶଃ ଉଭେଇ ଯାଇଥିଲା ସତୀର୍ଥ ବଂଧୁମାନଙ୍କର ନିର୍ମମ ସମାଲୋଚନାର ଭୟଙ୍କର ଉତ୍ତାପରେ । ମନ ତିକ୍ତ ହେଇ ଉଠିଥିଲା । ନିଜ ଯନ୍ତ୍ରଣାକୁ, ଦୁଃଖକୁ ପ୍ରକାଶ କରିବା ଭଳି ଭାଷା ନ ଥିଲା ତାଙ୍କ ପାଖରେ । ମକ୍ଟି ହେଇଯାଉଥିଲା ଛାତି ଭିତରଟା । ଗୋଟାଏ ରୁନ୍ଧିଲା ଯନ୍ତ୍ରଣାର କୋହ ଉଠିଆସିଲା ଛାତି ଭିତରୁ ।

କୁଟୀର ଅଭ୍ୟନ୍ତରରୁ ପରାଶର ଦ୍ୱୈପାୟନଙ୍କ ମେଘ ଢାଙ୍କି ହେଇଥିବା ତାରା ଭଳି, ଥମଥମ କରୁଥିବା ମୁହଁଟାକୁ ଦେଖିପାରିଥିଲେ । ସାୟାହ୍ନର ପବନରେ ତାର ଅସ୍ଫୁଟ, ଭାଷାହୀନ କାନ୍ଦଣାର ସ୍ୱର ମଧ୍ୟ ହୁଏତ ଶୁଣିପାରିଥିଲେ । ନିରବରେ ସ୍ନେହର ସ୍ପର୍ଶ ଟିକିଏ ଦେବା ଉଦ୍ଦେଶ୍ୟରେ କୁଟୀର ଭିତରୁ ବାହାରି ଆସିଲେ ସେ । କହିଲେ, ପୁତ୍ର, ଜୀବନକୁ ସହ୍ୟ କରିବାର ସଂଯମତା ହିଁ ଋଷିର ସବୁଠାରୁ ବଡ଼ ସଂପଦ । ଋଷିମାନେ କେବଳ ସହ୍ୟ କରନ୍ତି ତା ନୁହେଁ, ଶ୍ରଦ୍ଧା ଓ ପ୍ରେମରେ ଏଇ ଶାନ୍ତ ଜୀବନରେ ମାଧୁର୍ଯ୍ୟର ସଂଧାନ ଆଣି ଦିଅନ୍ତି, ଆଣି ଦିଅନ୍ତି ଅନ୍ତରଭରା ଭଲ ପାଇବାର ପ୍ରଶାନ୍ତି । ତୁମେ ତ ମୋର ପୁତ୍ର । ଏତକ କରିପାରିବନି ?

ଦ୍ୱୈପାୟନଙ୍କ ଦେହମନରେ ଶିହରଣ ଖେଳିଗଲା । ତୃପ୍ତିର ଆବେଗରେ ବୁଜି ହେଇଗଲା ଆଖିପତା । ବନଭୂମିର ସ୍ନିଗ୍ଧ ନମ୍ର କିରଣ, ତମସାର ମୃଦୁ କଳଧ୍ୱନି, ପବନର ମୃଦୁ ହିଲ୍ଲୋଳ, ପତ୍ରର ମର୍ମର ଧ୍ୱନି, ପ୍ରଜାପତିର ରଂଗ ତାଙ୍କୁ ଆନମନା କରି ତୋଳିଲା । ସବୁ ଦୁଃଖ ଯନ୍ତ୍ରଣାର ଜ୍ୱାଳା ନିମିଷକରେ ଦୂର ହେଇଗଲା । କିନ୍ତୁ ଛାତି ଭିତରେ ଛାତିଏ ଅଭିମାନର ସମୁଦ୍ର । ଗଭୀର ସ୍ୱରରେ କହିଲେ ସେ : ପିତା, ଫୁଟିବା ପୂର୍ବରୁ ଫୁଲକଢ଼ଟି ଯଦି କୀଟଦ୍ରଷ୍ଟ ହୁଏ ତେବେ ଫୁଟିବାର ପ୍ରକୃତ ଆନନ୍ଦଟା ମାଟିରେ ମିଶିଯାଏ । ବିକାଶର ଅପମୃତ୍ୟୁ ଘଟେ ।

ପରାଶରଙ୍କ ଅଧରରେ ସ୍ମିତହସର ରେଖାଟିଏ ଫୁଟିଉଠିଲା । କହିଲେ, ପୁତ୍ର, ପାହାଡ଼ୀ ଝରଣାର ଗତିପଥକୁ କୌଣସି ଉପଲଖଣ୍ଡ କେବେହେଲେ ବାଧା ଦେଇପାରିବ ? ବିକାଶର ଅଗ୍ରଗତି କୌଣସି ଉପଲଖଣ୍ଡରେ ବାଧା ପାଇ କେବେ ଅଟକିଯାଏନା । ତାର ଚଲାପଥକୁ କେବଳ କଲ୍ଲୋଳିତ କରେ । ବାଧା ଅଛି ଜାଣି ମଧ୍ୟ ଯଦି ମନପ୍ରାଣ ତୁମର ନାଚି ଉଠିବନି, ତା'ହେଲେ ମୁଁ କାହିଁକି ତୁମକୁ ଏଠାକୁ ଆଣିଲି ? କୋଉ ଆଶା ନେଇ ?

ପରାଶର କେଉଁ ଆଶାରେ ଆଣିଥିଲେ, କେବେବି ସେକଥା ତାଙ୍କୁ କହି ନାହାନ୍ତି । ଦ୍ୱୈପାୟନ ମଧ୍ୟ ଜାଣିବାକୁ କୌଣସି ଦିନ ଚେଷ୍ଟା କରି ନାହାନ୍ତି । ତେବେ ତପୋବନରେ ରହିବା ଭିତରେ ସେ ଅନୁଭବ କରିଛନ୍ତି ଯେ, ପରାଶରଙ୍କ ପୁତ୍ର ହେଇ ମଧ୍ୟ ସେ ଖାଣ୍ଟି ଆର୍ଯ୍ୟ ହେଇପାରି ନାହାନ୍ତି । ସମ୍ଭବତଃ ତାଙ୍କର ଏହି ଗାତ୍ରବର୍ଣ୍ଣ ଏବଂ ଆକୃତି ହିଁ ତାଙ୍କୁ ଆର୍ଯ୍ୟ ହେବାରେ ପ୍ରତିବନ୍ଧକ ସୃଷ୍ଟି କରିଛି । ଆଚାର୍ଯ୍ୟ, ମୁନିରଷିଗଣ ତାଙ୍କ ସ୍ନେହ ଦୃଷ୍ଟିରେ କେବେ ଦେଖି ନାହାନ୍ତି । ବରଂ ସେମାନଙ୍କ ଭିତରେ ଏକ ଅଦ୍ଭୁତ ପ୍ରତିକ୍ରିୟା ସୃଷ୍ଟି ହେଇଥିବାର ସେ ଲକ୍ଷ୍ୟ କରିଛନ୍ତି । ପ୍ରତ୍ୟେକ ଦିନ ପ୍ରାତଃ ପ୍ରଣାମ କରିବାକୁ ଗଲାବେଳେ ଆଚାର୍ଯ୍ୟଗଣ କିପରି ସଂକୁଚିତ ଓ କୁଣ୍ଠିତ ପ୍ରାୟ ହେଇଯାଆନ୍ତି । ମୁହଁ ଖୋଲି କିଛି ନ କହିଲେ ମଧ୍ୟ ଅନେକେ ପୁନର୍ବାର ସ୍ନାନ କରି ଶୁଚି ହୁଅନ୍ତି ।

ଆଚାର୍ଯ୍ୟମାନଙ୍କର ଏତାଦୃଶ ଶୁଚିବାୟଗ୍ରସ୍ତତା ଦେଖିବାକୁ ମଜା ଲାଗେ ଦ୍ୱୈପାୟନଙ୍କୁ । ସେମାନଙ୍କ ଭିତରର ଏହି ଘୃଣା ପୋଷଣ ନିମିତ୍ତ ପ୍ରତ୍ୟେକ ଦିନ କିଛି ନା କିଛି ଦୁର୍ଭୋଗ ଭୋଗ କରିବାକୁ ହୁଏ ତାଙ୍କୁ । ଏହି ଘୃଣା ବିଦ୍ୱେଷ ପ୍ରତ୍ୟେକଙ୍କ ଭିତରେ ବ୍ୟାଧି ଭଳି ରହି ଆସିଥିଲା । ଘୃଣାର କାରଣ, ତାଙ୍କ ଦେହର ବର୍ଣ୍ଣ କଳା । ଏହି ଘୃଣା ହିଁ ଦିନେ ତାଙ୍କ ଭିତରର ନିଦକୁ ଭାଙ୍ଗି ଦେଇଥିଲା ଏବଂ ଜୀବନକୁ ଦେଖିବାର ଆଉ ଦେଖେଇବାର କୌଶଳ ସେ ଶିଖିଲେ ।

କାହିଁ ତାଙ୍କର ତ ଏପରି କେବେ ଘୃଣା ହୁଏନି । ଆର୍ଯ୍ୟମାନଙ୍କର ତା'ହେଲେ କାହିଁକି ହୁଏ ? ସଭ୍ୟ ଆର୍ଯ୍ୟମାନେ ଭାବନ୍ତି ଯେ, ସେଇମାନେ ହିଁ ଏ ଦେଶର ପ୍ରଭୁ ଏବଂ ଏ ଦେଶର ଆଦିବାସୀ ଅନାର୍ଯ୍ୟମାନେ ହେଲେ ତଳସ୍ତରର ଜୀବ । ବର୍ବର, ପାପୀ ନରାଧମ । ପଶୁ କହିଲେ ଚଳେ । ସେମାନଙ୍କୁ ଦବେଇ ରଖିବା ପାଇଁ ଶକ୍ତିଶାଳୀ ଆର୍ଯ୍ୟମାନେ ସର୍ବାଗ୍ରେ ସେମାନଙ୍କର ସଂସ୍କୃତି, ସଭ୍ୟତା, ଐତିହ୍ୟ, ଦୃଷ୍ଟି ଏବଂ ଇତିହାସ ଧ୍ୱଂସ କରିଦେଇଛନ୍ତି । ଅତୀତକୁ ଦୂରେଇ ଅନାର୍ଯ୍ୟମାନେ ମଧ୍ୟ ନିଜର ପରିଚୟ ଭୁଲିଯାଇଛନ୍ତି ଯେ, ସେମାନେ ମଧ୍ୟ ମଣିଷ । ସେମାନେ ହେଲେ ଅଶ୍ଳୀଳ, ଅସଭ୍ୟ, ବର୍ବର ଅରଣ୍ୟାଚାରୀ । ନିକୃଷ୍ଟ ଧରଣର ପ୍ରାଣୀଙ୍କ ସମତୁଲ । ଏ ପ୍ରକାର ବିଚାରବୋଧ ହିଁ ସେମାନଙ୍କୁ ସଙ୍କୁଚିତ କରି ରଖିଛି । କଳା ବୋଲି ସେମାନେ ଘୃଣାର ପାତ୍ର । ଅନାର୍ଯ୍ୟମାନେ ସେମାନଙ୍କ ଅଧିକାର ଭୁଲି ଆର୍ଯ୍ୟମାନଙ୍କର ଅନୁଗତ ଦାସ ହେଇ ରହିଛନ୍ତି । ଆର୍ଯ୍ୟମାନଙ୍କର କୃପାଧନ୍ୟ ହୋଇ ରହିବା ପାଇଁ ସେମାନେ ବଂଶ-ପରଂପରାକ୍ରମରେ ବୋଝ ବୋଝ ଅପମାନ, ଲାଞ୍ଛନା, ବଞ୍ଚନାକୁ ସହ୍ୟ କରି ଚାଲିଛନ୍ତି । ଏମିତିକି ତରୁଣ ଆର୍ଯ୍ୟ ସନ୍ତାନମାନେ ମଧ୍ୟ ଏମାନଙ୍କୁ ମଣିଷ ବୋଲି ଭାବନ୍ତି ନାହିଁ । ଅଥଚ ଗୋଟିଏ ଦେଶରେ ପ୍ରତିବେଶୀ ଭଳି ସେମାନେ ବସବାସ କରି ଆସିଛନ୍ତି । ତଥାପି ସେମାନଙ୍କ ସଂପର୍କରେ କୌଣସି ଆତ୍ମୀୟତା ନାହିଁ, କୌତୂହଳ ନାହିଁ,

ଆଗ୍ରହ ନାହିଁ କି ସହାନୁଭୂତି ନାହିଁ । ବରଂ କିଛି କୁତ୍ସିତ, ଆପତ୍ତିକର ଧାରଣାକୁ ପୋଷଣ କରି ରଖିଛନ୍ତି ନିଜ ଭିତରେ । କେବଳ ତାହା ନୁହେଁ, ପରବର୍ତ୍ତୀ ଆର୍ଯ୍ୟ ବଂଶଧରମାନଙ୍କର ମନରେ ଘୃଣାର ବିଷ ଢାଳି ଦେଇଛନ୍ତି । ଏହି ତପୋବନକୁ ନ ଆସିଥିଲେ କୃଷ୍ଣଦ୍ୱୈପାୟନ ଏକଥା ବୁଝି ପାରିନଥାନ୍ତେ । ଘୃଣା ଆଉ ଅବଜ୍ଞାର ରୂପ କି ଭୟଙ୍କର ଯନ୍ତ୍ରଣାଦାୟକ ସେକଥା ସେ ମର୍ମେ ମର୍ମେ ଅନୁଭବ କରିଛନ୍ତି । ନିଜକୁ ଆପ୍ରାଣ ମୁକ୍ତ ରଖି, ଅଭିମାନ ତ୍ୟାଗ କରି ଦ୍ୱୈପାୟନ ଆର୍ଯ୍ୟ ଋଷି ଓ ପଣ୍ଡିତମାନଙ୍କୁ ବୁଝାଇବାର ପ୍ରୟାସ କରି କହିଲେ, କୌଣସି ସଂସ୍କାର, ବିଶ୍ୱାସ, ପ୍ରଥା କିମ୍ବା ଆଚାର ମଣିଷଠାରୁ କେବେହେଲେ ବଡ଼ ନୁହେଁ । ଗୋତ୍ର ବା ଜାତି ଯାହା ବି ହେଉ ମଣିଷର ସୁଖଦୁଃଖ, ବେଦନା, ଯାତନା ତା ଉପରେ କେବେ ନିର୍ଭର କରେନା । ତେବେ ଏଇ ବୋଧଗୁଡ଼ିକ ମଣିଷର ସରଳ, ସୁନ୍ଦର ଜୀବନରେ ସମସ୍ୟା ସୃଷ୍ଟି କରିଥାଏ, ଅନ୍ତର ଭିତରେ ଘୃଣା ବିଦ୍ୱେଷର ବିଷମଞ୍ଜି ବପନ କରି ଚାଲିଥାଏ । ମଣିଷକୁ ଅମଣିଷ ଓ ହିଂସ୍ର କରି ତୋଳେ । ମନୁଷ୍ୟତ୍ୱ ନଷ୍ଟ ହୁଏ ମଣିଷର । ବୁଦ୍ଧି, ବିବେକ, ବିବେଚନା ଶକ୍ତି ଲୋପ ପାଏ । ମଣିଷ ମଣିଷ ହେଇ ରହେନା । ବେଦୋକ୍ତ ଧରାବନ୍ଧା ପଥ ତ୍ୟାଗ କରି ଧର୍ମସୂତ୍ରର ନିର୍ଦ୍ଦିଷ୍ଟ ମତ ପରିତ୍ୟାଗ କରି ମଣିଷର କଲ୍ୟାଣ ଓ ମଙ୍ଗଳ ପାଇଁ ସେ ନୂତନ ପଥର ସଂଧାନ ଦେଲେ । ସବୁ ରୀତିନୀତିକୁ ଏକାଠି କରି ନୂତନ ଏକ ସଂହିତା ରଚନା କଲେ ।

ହେଲେ କାଳ କାଳର ସଂଚିତ ବିଶ୍ୱାସ ଓ ସଂସ୍କାରକୁ ରାତାରାତି ବଦଳେଇ ଦେଇପାରିଲେ ନାହିଁ ଦ୍ୱୈପାୟନ । ଋଷିମାନେ ତାଙ୍କର ନିନ୍ଦାରେ ଶତମୁଖ ହେଇପଡ଼ିଲେ । ଅନାର୍ଯ୍ୟ ବୋଲି ତିରସ୍କାର କଲେ, ଧିକ୍କାର କଲେ ।

ମଣିଷ ଗଭୀର ଭାବେ ଅପମାନିତ ହେଲେ ଭିତରଟା ସେଇ ଉତ୍ତାପରେ ଶୁଖିଯାଏ । ମମତାହୀନ, ନିଷ୍ଠୁର ହେଇଉଠେ ହୃଦୟ । ଦ୍ୱୈପାୟନଙ୍କ ଆଖିରେ ସେଇଭଳି ଭାବ ଫୁଟିଉଠିଲା । ଆଖି ଦୁଇଟି ସତେ ଯେପରି କ୍ରୋଧାଗ୍ନିରେ ଜଳି ଉଠିଲା ଅହରହ । ନିଜଆଡୁ ସେ ଦିନେ ପରାଶରଙ୍କୁ କହିଲେ, ପିତା, ମୋ ଶରୀରରେ ଆର୍ଯ୍ୟରକ୍ତ ଥିଲେ ମଧ ନିଜର ରକ୍ତ ଓ ରୂପ ନିକଟରେ ମୁଁ ବନ୍ଦୀ । ଆର୍ଯ୍ୟମାନଙ୍କୁ ତ ଦେଖିଲି । ଆର୍ଯ୍ୟ ହେଇଥିଲେ ମୋର ବା କ'ଣ ଲାଭ ହେଇଥାନ୍ତା ? ଆର୍ଯ୍ୟତ୍ୱ ମୁଁ ଚାହେଁନା । ଆର୍ଯ୍ୟମାନଙ୍କୁ ଦେଖିଶୁଣି ମୋ ଭିତରଟା ଉତ୍‌କ୍ଷିପ୍ତ ହେଇଉଠିଛି । ମୋ ଭିତରେ ମୁଁ ତାକୁ ତ୍ୟାଗ କରିବାପାଇଁ ନିଶ୍ଚିତ ମୋ ସଂହିତାରେ ସେଇମାନେ ହିଁ ଆର୍ଯ୍ୟ - ଯେଉଁମାନେ ଶିକ୍ଷିତ, ସଭ୍ୟ, ସଂସ୍କୃତିବାନ୍, ଭଦ୍ର, ରୁଚିଶୀଳ, ଉଦାର ଏବଂ ଉନ୍ନତ ମନର ମଣିଷ - ସିଏ ଯେଉଁ ଜାତିର, କୁଳର ହେଇଥାଉ ନା କାହିଁକି ? ଋଷିମାନଙ୍କର ଅମାର୍ଜିତ ଅସଂସ୍କୃତ ଆଚରଣ କେବେହେଲେ ଆର୍ଯ୍ୟଙ୍କର ହେଇପାରେନା । ଏମାନେ ନିଜେ ହିଁ ତ ଅସଭ୍ୟ, ଅନାର୍ଯ୍ୟ । ପରାଶର ଟିକିଏ ହସିଲେ ।

କହିଲେ, ବହୁକାଳ ଧରି ରହି ଆସିଥିବା ଆର୍ଯ୍ୟ ଅନାର୍ଯ୍ୟ ଧାରଣା ଉପରେ ଖୁବ୍ ଜୋର ଆଘାତ କରିଛୁ । ଏମିତି ହେବ ବୋଲି ମୁଁ ଜାଣିଥିଲି । ମଣିଷର ମହାଶକ୍ତିର ବି ଗୋଟାଏ ସୀମା ଅଛି । ସେଇ ସୀମାର ବନ୍ଧ ଯେତେବେଳେ ଭାଙ୍ଗିଯାଏ, ସେତେବେଳେ ଜାଣିବ, ମଣିଷର ଦୁର୍ଦ୍ଦିନ ଘନେଇ ଆସୁଛି । ବଞ୍ଚିତ ସ୍ନେହର ଏ ପ୍ରକାର ପରିଣାମରେ ତ କିଛି ସୌନ୍ଦର୍ଯ୍ୟ ନାହିଁ । ଆର୍ଯ୍ୟମାନଙ୍କର ବିଶ୍ୱାସରେ, ଅହଂରେ ଶିବ ନାହିଁ କି ସୁନ୍ଦର ନାହିଁ । ସୌନ୍ଦର୍ଯ୍ୟ ବ୍ୟତୀତ ସତ୍ୟର ରୂପ ଯେ ଭୟଙ୍କର । ପ୍ରେମ ଭିତରେ ଯଦି ସୌନ୍ଦର୍ଯ୍ୟ ବୋଲି କିଛି ନ ରହେ ତା'ହେଲେ କ'ଣ ହେବ ? ହାଁ-କରି ଚାହିଁ ରହିଥିବା ସେଇ ପ୍ରଶ୍ନବାଚୀ ଆଡ଼କୁ ଦେଖି ମୁଁ ମହାକାଳର ସେଇ ନିଷ୍ଠୁର ହସ ଶୁଣିପାରୁଛି ପୁତ୍ର ।

ହଠାତ୍ ଗୋଟିଏ କଳାପେଚାର କର୍କଶ ସ୍ୱର ରାତ୍ରିର ନିସ୍ତବ୍ଧତାକୁ ବିଦ୍ଧ କଲା । କୌଣସି ଗୃହସ୍ଥର ଘର ଭିତରେ ଚିଁଚିଁରେଇ କାନ୍ଦି ଉଠିଲା କାହାର ଶିଶୁଟିଏ । ଦ୍ୱୈପାୟନଙ୍କ ତନ୍ମୟତା ଭାଙ୍ଗିଗଲା । ହତାଶାର ଦୀର୍ଘଶ୍ୱାସରେ ରାତ୍ରିର ପବନ ଭାରାକ୍ରାନ୍ତ ହେଇଉଠିଲା । ମନ ଭିତରେ ଝଡ଼ ।

ନିସ୍ତବ୍ଧ ରାତ୍ରିର ଅନ୍ତହୀନ ପ୍ରଶାନ୍ତି ତାଙ୍କ ପାଇଁ ଆଜି ନିଦାରୁଣ ବେଦନାଜଡ଼ିତ ଅପମାନର, ଦୁଃସହ ଗ୍ଲାନିର ଏକ ସ୍ମୃତିକୁ ଜାଗ୍ରତ କରି ତୋଳୁଥିଲା ଏବଂ ତାରି ଭିତରେ ତାଙ୍କ ଜୀବନର ସମସ୍ତ ଶ୍ରୀ, ସୌନ୍ଦର୍ଯ୍ୟ କୁଆଡ଼େ ଉଭେଇ ଯାଉଥିଲା ।

ଭୀଷଣ କ୍ଳାନ୍ତ ଆଉ ଅବସନ୍ନ ଲାଗିଲା ତାଙ୍କୁ । ସେ ଆଉ ଅଧିକ ସମୟ ବାରଣ୍ଡାରେ ଠିଆ ହେଇପାରିଲେ ନାହିଁ । ଘର ଭିତରକୁ ଯାଇ ଆଲୁଅ ଲିଭାଇ ଶୋଇ ପଡ଼ିଲେ ।

ମନେ ମନେ ହିସାବ କଲେ ରାତି ପାହିବାକୁ ଆଉ କେତେ ସମୟ ବାକି ଅଛି ?

॥ ଓଁ ହରି ॥

ହସ୍ତିନାପୁର ସିଂହାସନର ଉତ୍ତରାଧିକାରୀ ନେଇ ଏକ ଦାରୁଣ ସଂକଟ ଉପସ୍ଥିତ ହେଲା । ଅଥଚ ଏଭଳି ଏକ ପରିସ୍ଥିତି ଯେ ଦିନେ ଉପୁଜିବ ସେକଥା ସତ୍ୟବତୀ ତାଙ୍କର ଦୁଇ ପୁତ୍ର ଜନ୍ମ ହେବାର ଅନେକ ପରେ ମଧ୍ୟ କେବେ କଳ୍ପନା କରିନଥିଲେ । ଜ୍ୟେଷ୍ଠପୁତ୍ର ଚିତ୍ରାଙ୍ଗଦ ଗନ୍ଧର୍ବମାନଙ୍କ ସହିତ ଯୁଦ୍ଧ କରି ନିହତ ହେଲେ । ତା'ପରେ ସିଂହାସନରେ ଅଭିଷିକ୍ତ ହେଲେ କନିଷ୍ଠ ପୁତ୍ର ବିଚିତ୍ରବୀର୍ଯ୍ୟ । କାଶୀ ରାଜକନ୍ୟା ଅମ୍ବିକା ଓ ଅମ୍ବାଳିକାର ପାଣି ଗ୍ରହଣ କରିବାର ଅଳ୍ପ ଦିନ ପରେ କ୍ଷୟରୋଗଗ୍ରସ୍ତ ହୋଇ ପ୍ରାଣତ୍ୟାଗ କଲେ ସେ । ପ୍ରଖ୍ୟାତ କୁରୁବଂଶର ଏକମାତ୍ର ବଂଶଧର ଗଙ୍ଗାପୁତ୍ର ଦେବବ୍ରତ ହିଁ ଜୀବିତ ଥିଲେ ।

ବିଧାତା ବଡ଼ ରସିକ । ଗୋଟାଏ ହାତରେ ସେ ଦିଅନ୍ତି ଯେମିତି ଅନ୍ୟ ହାତରେ ସେ ନିଅନ୍ତି ବି ସେମିତି । ଏହି କଥା ଭାବୁ ଭାବୁ ସତ୍ୟବତୀ ଜମା ଖର୍ଚ୍ଚର ଏକ ହିସାବ ପ୍ରସ୍ତୁତ କଲେ ମନେମନେ । ଯୋଗ ବିଯୋଗ କରି ମଧ୍ୟ ସଂତୃପ୍ତ ହେଲା ଭଳି କିଛି ଖୋଜି ପାଇପାଇଲେନି ସେଥିରୁ ।

ମନ ଦୁଃସହ ଦୁଃଖ ଓ ହତାଶାରେ ଭାଙ୍ଗି ପଡ଼ିଲା । ଦାରୁଣ ଶୋକ ଭିତରେ ସତ୍ୟବତୀ ବୁଝିପାରିଥିଲେ ଯେ, ତାଙ୍କ ଛାତି ଭିତରେ ଯେଉଁ ନିଆଁ ଆଜିଯାଏ ପ୍ରଜ୍ୱଳିତ ହେଇ ଆସିଥିଲା, ଦୁଇ ପୁତ୍ରଙ୍କର ଅକାଳ ମୃତ୍ୟୁରେ ସେଇଟା ଦପ୍‌କରି ଲିଭିଗଲା । କୌଣସି ପ୍ରକାରେ ତାକୁ ଆଉ ପ୍ରଜ୍ୱଳିତ କରିପାରୁନଥିଲେ ସେ । ଭିତରେ ଭିତରେ ଭୀଷଣ ଅବସନ୍ନ ଆଉ କ୍ଳାନ୍ତି ବୋଧ କରୁଥିଲେ । ବିଧାତା ନିଶ୍ଚୟ ବିରୂପ । ଅଦୃଷ୍ଟ ହିଁ ଛଳନା କରିଛି ତାଙ୍କ ସହିତ । ନ ହେଲେ ଦୁଇ ଦୁଇଟା ଯୁବକ ପୁତ୍ରର ପ୍ରାଣ ନିଃଶେଷ ହେଇଥାନ୍ତା କାହିଁକି ? ଆଶାର ମୁକୁଳ ଫୁଟିବା ପୂର୍ବରୁ ଝରି ପଡ଼ିଥାନ୍ତା ବା କାହିଁକି ?

ଭବିଷ୍ୟତର କୌଣସି ସୁସ୍ପଷ୍ଟ ଛବି ସତ୍ୟବତୀଙ୍କ ଆଖିରେ ଫୁଟି ଉଠୁନଥିଲା । କିନ୍ତୁ ମନ ଭିତରେ ଦାସରାଜଙ୍କ କଥାଗୁଡ଼ିକ ଉତ୍ତେଜନାର ଢେଉ ତୋଳି ତାଙ୍କୁ ଅସ୍ଥିର କରି ପକାଉଥିଲେ । ନିର୍ଜନରେ ବସି ବସି କିଛି ଗୋଟାଏ ବଡ଼କଥା ସେ ଅନୁଭବ କରିପାରିଥିଲେ ।

ସତେ ଯେମିତି ସତ୍ୟବତୀ ନିଜ ଛାତିର ଶ୍ୱାସପ୍ରଶ୍ୱାସ ଭିତରେ ଅନୁଭବ କରୁଥିଲେ ନିଜ ଦେଶ, ନିଜ ଜାତିର କୃଷ୍ଣକାୟ ମଣିଷମାନଙ୍କର ଚାପା ଦୀର୍ଘଶ୍ୱାସକୁ । ତାଙ୍କର ମନେପଡ଼ିଲା, ସେ ଅନାର୍ଯ୍ୟମାନଙ୍କ ପାଇଁ ସମର୍ପିତ । ଆର୍ଯ୍ୟବଂଶ ଭିତରେ ରହି ତାଙ୍କୁ ସ୍ୱଜାତି ପାଇଁ କିଛି କରିବାକୁ ହେବ । ହଠାତ୍ ଏଇ ମହାନ୍ ଉପଲବ୍ଧିଟା ତାଙ୍କ ଶରୀରରେ ଶୂଳ ଭଳି ବିଦ୍ଧ କଲା । ନିଜ ଭାବନାରେ ସେ ଆନମନା ହେଇଗଲେ । ସନ୍ତାନହୀନା ପୁତ୍ରବଧୂମାନଙ୍କ ଗର୍ଭରେ ସେ ଏକ ନୂତନ ପ୍ରଜାତି ସୃଷ୍ଟି କରିବାର କଥା ଚିନ୍ତା କଲେ । ଯେଉଁମାନଙ୍କ ଆର୍ଯ୍ୟତ୍ୱର ଖୋଳପା ଭାଙ୍ଗି, ସଂକୀର୍ଣ୍ଣମନା ମତଲବି ଓ ସ୍ୱାର୍ଥସର୍ବସ୍ୱ ବସ୍ତୁବାଦୀ ପ୍ରତିଷ୍ଠାନର ତପୋବନକୁ ଭାଙ୍ଗିରୁଜି ଦେବ । ଘୃଣା ବିଦ୍ୱେଷରୁ ନିଜକୁ ମୁକ୍ତ କରି ଏକ ସ୍ୱାଧୀନ ମୁକ୍ତ ମାନବ ସମାଜର ପ୍ରତିଷ୍ଠା ପାଇଁ ନିଜର ବୋଲି ଚାଖଣ୍ଡେ ଜମି ଅକ୍ତିଆର କରିପାରିବ । ଯୋଉଟା ହେବ ସେମାନଙ୍କର ବାସଭୂମି । କଷ୍ଟ ନ କଲେ, ଦୁଃଖ ନ ସହିଲେ ତ କିଛି କେବେ ମିଳେନା । ବୋଧହୁଏ ସେଥିପାଇଁ ପ୍ରାଚୀନପନ୍ଥୀ ଏଇ ପରିବାରଟିର ବୁନିଆଦି ଭାଙ୍ଗିବାକୁ ବିଧାତା ନିଜେ ହିଁ ଆୟୋଜନ କଲେ । ସତ୍ୟବତୀଙ୍କର ହଠାତ୍ ମନେହେଲା, ମେଘମୁକ୍ତ ଆକାଶ ବାଟେ ବିଧାତା ନିର୍ନିମେଷ ନୟନରେ ତାଙ୍କ ଆଡ଼କୁ ଚାହିଁ ରହିଛନ୍ତି । ଏମିତି ଛାତିଭିତରୁ ପୁଞ୍ଜୀଭୂତ ଅପମାନ ସବୁ ଦଳବଳ ହେଇ ଉଠିଆସନ୍ତି କାହିଁକି ? କାହିଁକି ? ମୁଁ କ'ଣ ଏମିତି ଭୁଲ କରିଛି ଯେ, ମୋତେ ଏଭଳି ଦଣ୍ଡ ସହ୍ୟ କରିବାକୁ ହେଉଛି ?

କଳ୍ପନା ବେଶି ବାଟ ଆଗେଇପାରେନା । ତଥାପି, ପିପାସିତ ଅନୁଭୂତିର ରନ୍ଧ୍ରେ ରନ୍ଧ୍ରେ ସେ ଅନୁଭବ କରୁଥିଲେ ଏକ ଦୁରନ୍ତ ଝଡ଼ର ଆଗମନୀ ସୂଚନା । ସେଇ ଝଡ଼ ପୃଥିବୀର ଫମ୍ପା ବିଶ୍ୱାସ ଓ ଅସ୍ତିତ୍ୱଗୁଡ଼ିକୁ ଉଡ଼େଇ ନେଇଯିବା ପାଇଁ ସତେ ଯେମିତି ତାଙ୍କ ଗୃହ ଅଭ୍ୟନ୍ତରରେ ପ୍ରବେଶ କରିଛି । ତାଙ୍କ ସତ୍ତା ବର୍ତ୍ତମାନ ଦ୍ୱିଧାଖଣ୍ଡିତ । ବିବାହ ପୂର୍ବରୁ ଯେଉଁ ଜୀବନ ଥିଲା ତାହା ଖଣ୍ଡିତ ମାତ୍ର । ଶାନ୍ତନୁଙ୍କ ସଂଗେ ବିବାହ ପରେ ତାଙ୍କର ଦ୍ୱିତୀୟ ଜନ୍ମ ହେଲା ଏବଂ ଏହା ଥିଲା ଏକ ପରିପୂର୍ଣ୍ଣ ନୂତନ ଜୀବନ । ଆଗର ଜୀବନଠାରୁ ସଂପୂର୍ଣ୍ଣ ପୃଥକ୍ । ଦ୍ୱିତୀୟ ପର୍ବର ଏଇ ଜୀବନର ବିକାଶ ପୂର୍ବରୁ ଯେଉଁ ଦାରୁଣ ବିପର୍ଯ୍ୟୟ ଘଟିଗଲା ସେଇ ଶୋକ, ଦୁଃଖ, ହତାଶା ଓ ଯନ୍ତ୍ରଣା ତାଙ୍କୁ ସମୂଳେ ଉତ୍ପାଟିତ କରିଦେବ ବୋଲି ମନେ ହେଉଥିଲା । କିନ୍ତୁ ଦ୍ୱୈପାୟନ ହସ୍ତିନାପୁରରେ ପାଦ ଦେବା ପରେ ସବୁ କିମିତି ବଦଳିଗଲା, ଆଉ ମନେ ପଡ଼ିଲାନି ସେସବୁ କଥା ତାଙ୍କର । ବରଂ ମନେହେଲା, ସେ କେବଳ ପୁଅଝିଅ ଜନ୍ମ କରି ସଂସାର ସଜେଇବା ପାଇଁ ଜନ୍ମ ହେଇ ନାହାନ୍ତି– ଏଇ କଥା ବୁଝେଇ ଦେବାପାଇଁ ହିଁ ବିଧାତା ତାଙ୍କୁ ମୃତ୍ୟୁଭଳି ଏତେ ବଡ଼ ଦୁଃଖର ପ୍ରଚଣ୍ଡ ଆଘାତ ଦେଲେ । ବଡ଼ ଦୁଃଖ ନ ପାଇଲେ କଣ ବଡ଼ କିଛି ଲାଭ କରିହୁଏ ? ବିପର୍ଯ୍ୟୟ ତାଙ୍କ ଜୀବନରେ ଯେଉଁ ବାର୍ତ୍ତା

ନେଇ ଆସିଲା, ତାହା ସଂସାର ବିମୁଖତା କିମ୍ବା ଅନିତ୍ୟ ଚିନ୍ତା ନୁହେଁ, ବରଂ ତାହା ଥିଲା ଏକ ବୃହତ୍ତର ଦାୟିତ୍ୱ ଓ କର୍ତ୍ତବ୍ୟ ପାଇଁ ଆହ୍ୱାନ । ମୃତ୍ୟୁ କେବଳ ସେଇ ରହସ୍ୟର ଆବରଣ ଖୋଲି ଦେଇ ତା ଉପରେ ସ୍ୱର୍ଗୀୟ ଆଲୋକ ପକାଇ ଦେଖାଇ ଦେଲା । ଏକ ବୃହତ୍ତର ପୃଥିବୀର ଛବିକୁ ମେଲି ଧରିଲା ତାଙ୍କ ସମ୍ମୁଖରେ । ଅବଶ୍ୟ ଦୀର୍ଘ ସମୟ ପାଇଁ ଏଭଳି ଚିନ୍ତା ସ୍ଥାୟୀ ହେଇ ପାରୁନଥିଲା, ବୁଦ୍‌ବୁଦ ଭଳି ମିଳାଇ ଯାଉଥିଲା ମନଭିତରେ । ସତ୍ୟବତୀଙ୍କ ସମସ୍ତ ଚିନ୍ତା ଭିତରେ ଗୋଟିଏ ଭାବନା ହିଁ କାମ କରୁଥିଲା । କଣ କଲେ ସ୍ୱାମୀଙ୍କ ବଂଶରକ୍ଷା ହେଇପାରିବ ?

ସମସ୍ୟାର ସମାଧାନ କରିବାକୁ ଯାଇ ସେ ଦେବବ୍ରତଙ୍କ କଥା ଭାବିଲେ । କିନ୍ତୁ ଦେବବ୍ରତ ଦାର ପରିଗ୍ରହଣ କରିବେ ନାହିଁ ବୋଲି ପ୍ରତିଜ୍ଞାବଦ୍ଧ । ତଥାପି ତାଙ୍କୁ ବହୁପ୍ରକାରେ ଅନୁନୟ କଲେ ସତ୍ୟବତୀ । କିନ୍ତୁ ଦେବବ୍ରତ ଅଟଳ ରହିଲେ ତାଙ୍କ ପ୍ରତିଜ୍ଞାରେ । ଉଦ୍ଭୂତ ଅବସ୍ଥାର ପରିପ୍ରେକ୍ଷୀରେ ପୂର୍ବୋକ୍ତ ପ୍ରତିଶ୍ରୁତି ସହିତ ବିବାହ କରି ବଂଶରକ୍ଷା କରିବା ସହିତ ତାର କୌଣସି ସଂପର୍କ ନାହିଁ - ଏଇ କଥା ସତ୍ୟବତୀ ତାଙ୍କୁ ବୁଝାଇବା ସତ୍ତ୍ୱେ ମଧ୍ୟ ବିବାହ କରିବା ପାଇଁ ରାଜି କରାଇପାରିନଥିଲେ ଦେବବ୍ରତଙ୍କୁ । ଫଳରେ ସଂକଟର ସମାଧାନ ହେଇପାରିଲା ନାହିଁ ।

ସମାଧାନର ପଥ ଖୋଜିବାକୁ ଯାଇ ସତ୍ୟବତୀ ରାଜପୁରୋହିତ ଏବଂ ପଣ୍ଡିତବର୍ଗଙ୍କର ପରାମର୍ଶ ଚାହିଁଲେ । ମନ୍ତ୍ରଣାକକ୍ଷରେ ସମସ୍ତେ ଏକମତ ହୋଇ ଜଣାଇଲେ ଯେ, ଲୋକାନ୍ତରିତ ବିଚିତ୍ରବୀର୍ଯ୍ୟଙ୍କ ସନ୍ତାନହୀନ ଯୌବନବତୀ ମହିଷୀଦ୍ୱୟଙ୍କ ଗର୍ଭରେ ଯଦି କ୍ଷେତ୍ରଜ ପୁତ୍ର ଉତ୍ପାଦନ କରାଇ ଏଇ ବଂଶକୁ ରକ୍ଷା କରାଯାଇପାରିବ ।

କ୍ଷେତ୍ରଜ ପୁତ୍ର ସଂପୂର୍ଣ୍ଣ ଶାସ୍ତ୍ରସମ୍ମତ ଓ ସମାଜ ଅନୁମୋଦିତ । ବହୁ ଶାସ୍ତ୍ରକଥା ଉଲ୍ଲେଖ କରି କ୍ଷେତ୍ରଜ ପୁତ୍ର ଉତ୍ପାଦନର ବିଶୁଦ୍ଧତା ସଂପର୍କରେ ସମସ୍ତେ ନିଜନିଜ ବକ୍ତବ୍ୟ ପ୍ରଦାନ କଲେ । ତେବେ ପରିବାରର ବିଶୁଦ୍ଧତା ରକ୍ଷା ପାଇଁ ଏହି ବଂଶର ମାତାପିତାଙ୍କ ଔରସଜାତ ଯେକୌଣସି ପୁରୁଷ ହେଲେ ମଧ୍ୟ ବାଞ୍ଛନୀୟ ।

ଏହି ସିଦ୍ଧାନ୍ତ ପରେ ସତ୍ୟବତୀଙ୍କ ମୁଣ୍ଡରୁ ଅନେକ ଦୁଃଶ୍ଚିନ୍ତାର ପାହାଡ଼ ଓହ୍ଲେଇ ଗଲା ସତ, ତଥାପି ସଂକଟ ଘୁଞ୍ଚିବାର ପଥ ଏତେଟା ସହଜ ନ ଥିଲା । ମନର ଉତ୍କଣ୍ଠା ଓ ଦ୍ୱିଧା ଗୁଡ଼େଇ ତୁଡ଼େଇ ହୋଇ ଆହୁରି ଅନେକ ଚିନ୍ତା କ୍ରମଶଃ ଅଡୁଆ ହେବାକୁ ଲାଗିଲା । ଶାନ୍ତିରେ ସେ ଟିକିଏ ଚିନ୍ତା କରିପାରୁ ନ ଥିଲେ । ଛାତି ଭିତରଟା ହଠାତ୍ ଥରି ଉଠୁଥିଲା । ଦେହ ରୋମାଞ୍ଚିତ ହେଲା । ଦ୍ୱୈପାୟନଙ୍କ ଶ୍ମଶ୍ରୁଳ ଢଳଢଳ କଳାମୁହଁଟି ସତ୍ୟବତୀଙ୍କ ଆଖିରେ ଯେମିତି ସୁନ୍ଦର ଶ୍ରୀମୟ ହେଇ ଉଦ୍‌ଭାସିତ ହୋଇଉଠିଲା । ମନେ ମନେ ସେ ହସିଉଠିଲେ । ସମ୍ଭବତଃ ଅନ୍ତରର ଆନନ୍ଦ ଓ ଉତ୍କଣ୍ଠାକୁ ସମ୍ଭାଳିବାକୁ ଯାଇ ସେ ସ୍ୱଗତୋକ୍ତି କଲେ, ଅଦୃଷ୍ଟ !

ଅଦୃଷ୍ଟ !! ଛାତି ଭିତରୁ କଥାଟା ପ୍ରଶ୍ୱାସ ସହିତ ବାହାରି ଆସି ବିପୁଳ ପୃଥିବୀର ଆହୁରି ନାନା ପ୍ରକାର ଶବ୍ଦ ସହିତ ମିଶି ହଜିଗଲା ।

ଠିକ୍ ସେହି ମୁହୂର୍ତ୍ତରେ କାହାର ଦରଜାରେ ଅନୁଚ୍ଚ କଣ୍ଠରେ ଗଳା ଖଙ୍କାରିବାର ଶବ୍ଦ ସେ ଶୁଣିବାକୁ ପାଇଲେ । କବାଟରେ ମୃଦୁ କରାଘାତ । ତାପରେ ହିଁ ସେ ଯାଇ କବାଟଟା ଖୋଲି ଦେଲେ । ଦ୍ୱାରବନ୍ଧ ସେପାଖରେ ଠିଆ ହେଇଥିଲେ ଦେବବ୍ରତ ।

କବାଟ ଖୋଲିବା ମାତ୍ରେ, ଦ୍ୱାରବନ୍ଧ ସେପାଖରେ ଠିଆ ହେଇ ପ୍ରଶ୍ନକଲେ ଦେବବ୍ରତ– ମୋତେ ଡକାଇ ପଠେଇଥିଲ ?

ମୃଦୁକଣ୍ଠରେ ଦେବବ୍ରତଙ୍କୁ ଘର ଭିତରକୁ ଡାକିନେଲେ ସତ୍ୟବତୀ- ଆସ ବାବା, ଆସ । କଥା ଅଛି ।

କିଛିକ୍ଷଣ ପାଇଁ ସତ୍ୟବତୀ ଦେବବ୍ରତଙ୍କ ମୁହଁକୁ ଚାହିଁ ରହିଲେ ଏବଂ ମନକୁ ମନ ମୁଣ୍ଡ ହଲାଇଲେ । ତା'ପରେ ମୃଦୁକଣ୍ଠରେ କହିଲେ, ମୁଁ ଗୋଟାଏ କଥା ବୁଝିପାରୁନି, ଜାଣିଛ ? କଣ ?

ଚୂଡ଼ାନ୍ତ ସିଦ୍ଧାନ୍ତ ନେବା ପୂର୍ବରୁ ସତ୍ୟବତୀ ଦେବବ୍ରତଙ୍କ ସହିତ ବିଚାର ପରାମର୍ଶ କରିବାପାଇଁ ସ୍ଥିର କରି ଡାକିଥିଲେ । ଭୀଷ୍ମ ଭଗ୍ନୀସ୍ଥାନୀୟା ଭ୍ରାତୃବଧୂଙ୍କ ଗର୍ଭରେ କ୍ଷେତ୍ରଜ ପୁତ୍ର ଉତ୍ପାଦନ ପାଇଁ କେବେ ବି ରାଜି ହେବେ ନାହିଁ - ଏକଥା ଜାଣିଥିଲେ ସତ୍ୟବତୀ । ତଥାପି ତାଙ୍କ ଉପରେ ସେ ଏଭଳି ଚାପ ପକେଇଲେ, ଯୋଉଥିରେ ଭୀଷ୍ମ ନିଜେ ଦ୍ୱୈପାୟନଙ୍କ ନାମ ପ୍ରସ୍ତାବ କରିବାକୁ ବାଧ ହେବେ । କିନ୍ତୁ ତାଙ୍କ ମନର କଥାକୁ ଭୀଷ୍ମଙ୍କୁ ଜଣାଇବାକୁ ନ ଦେଇ କୃତ୍ରିମ ଛଳନା କରି କହିଲେ, 'ତୁମେ ବୁଝିବାକୁ ଚେଷ୍ଟାକର ଥରେ । ତୁମେ ଆଉ ମୁଁ ବଞ୍ଚି ଥାଉଁ ଥାଉଁ ଯଦି ଏତେବଡ଼ ଗୋଟାଏ ପ୍ରାଚୀନ ବଂଶ, ବଂଶଧର ଅଭାବରେ ଲୋପ ପାଇ ବସେ, ତାର ସ୍ରୋତଧାର ଶୁଖିଯାଏ, ତା'ହେଲେ ଲୋକେ କ'ଣ କହିବେ ? ପିତୃଗଣଙ୍କ ନିକଟରେ ଆମେ କି କୈଫିୟତ ଦେବା ? ତୁମେ ଏଇ ବଂଶର ସନ୍ତାନ । ତୁମର କ'ଣ କିଛି ଦାୟିତ୍ୱ ନାହିଁ ?

ଭ୍ରୂକୁଟି କଲେ ଦେବବ୍ରତ । ପ୍ରଶ୍ନଗୁଡ଼ାକ ତାଙ୍କୁ ସନ୍ତୁଷ୍ଟ କରିନଥିଲା । ଟିକିଏ ବିରକ୍ତି ପ୍ରକାଶ କରି କହିଲେ, ଏସବୁ ଜଟିଳ ପ୍ରଶ୍ନର ଉତ୍ତର ମୁଁ ଜାଣେନା ।

ସତ୍ୟବତୀଙ୍କ କଣ୍ଠସ୍ୱରରେ ଟିକିଏ ଦରଦ ପ୍ରକାଶ ପାଇଲା । ହାତ ମୁଠାମୁଠା ହେଇ ଯାଇଥିଲା । ଟିକିଏ କ୍ଷୁଣ୍ଣ କଣ୍ଠରେ କହିଲେ, ତୁମେ ଜାଣିଶୁଣି ମୋ ପ୍ରଶ୍ନର ଉତ୍ତର ଏଡ଼େଇ ଯାଉଛ । ମୁଁ ଜାଣେ; ମୋତେ ନେଇ ଯେତେକ ଅସୁବିଧା । ପିତା ଦାସରାଜ ତୁମ ନିକଟରେ ଚିର ଅପରାଧୀ କରି ଦେଇଛନ୍ତି ମୋତେ । ସମଗ୍ର ଜୀବନଟାରେ ହୁଏତ ତାର ପ୍ରାୟଶ୍ଚିତ୍ତ ହୋଇପାରିବନି ।

ଏମିତି କଥା କୁହ ନାହିଁ ମା', ବେଶ୍ ଗମ୍ଭୀର ସ୍ୱରରେ କହିଲେ ଦେବବ୍ରତ । ତାଙ୍କ ଚକ୍ଷୁର ଦୃଷ୍ଟି ପ୍ରଖର ଥିଲା ।

ସତ୍ୟବତୀ ଅତ୍ୟନ୍ତ କରୁଣ ଭାବେ ଦୀର୍ଘଶ୍ୱାସ ତ୍ୟାଗ କଲେ । 'ନା, ସେ କଥା ତ ଉଠେଇପାରୁନି । ହେଲେ ମୋର ମନେହେଉଛି, ତୁମ ନିକଟରେ ଏ ସମସ୍ତ ଘଟଣା ଏକ ପ୍ରକାର ମାନଅପମାନର ପ୍ରଶ୍ନ ହେଇ ଉଠିଛି ।

ତୁମେ ଦୟାକରି ନିରବ ରହିବ ।

ସତ୍ୟବତୀଙ୍କର ପୁଣି ଏକ ଦୀର୍ଘଶ୍ୱାସ ଛୁଟିଆସିଲା । କହିଲେ, ଦେବବ୍ରତ ଦିନେ ତୁମେ ଓ ମୁଁ ଦୁହେଁ ଅଦୃଷ୍ଟର ଦୁଇଟି ଅଲଗା ଅଲଗା ଖୁଣ୍ଟ ଥିଲେ । ଦୁଇ ଦେଶର ଦୁଇ ରାଜାଙ୍କ ଭିତରେ ଜିଦିବାଦର ଖେଳ ଚାଲିଥିଲା । ଗୋଟି ଚଲେଇଲେ (ଚାଳିଲେ) ତ କିଏ ଜିତିବ, କିଏ ହାରିବ । ଏଥିରେ ଦାସରାଜଙ୍କର ଜିତାପଟ ହେଲା । କିନ୍ତୁ ତୁମେ ଆଉ ମୁଁ ଦୁଇଟି ଖୁଣ୍ଟ ଭଳି ଯିଏ ଯାହା ସ୍ଥାନରେ ଠିଆହେଇ ରହିଗଲେ । ଦୁହେଁ କେତେ ନିକଟରେ, ପାଖାପାଖି ଏବଂ ମୁହାଁମୁହିଁ ଠିଆ ହେଇରହିଛେ ଆଜିବି । ତଥାପି ଆମେ କେହି ନିଜ ନିଜ ଛକପାଲିର ସୀମାକୁ ଭାଙ୍ଗିପାରୁନେ । କେହି କାହାର ଦୁଃଖ ଯନ୍ତ୍ରଣାରେ ବ୍ୟଥା ବେଦନାରେ ସମଭାଗୀ ହେଇପାରୁ ନାହୁଁ । ଆମେ ପ୍ରତ୍ୟେକେ ନିଜ ନିଜ ସ୍ଥାନରେ ନିଜ ଅସ୍ତିତ୍ୱ ନେଇ ଠିଆ ହେଇରହିଛେ । ଅଥଚ ମଜାକଥା ହେଲା, ଏଇ ଖେଳରେ ତୁମର ହେଉ କି ମୋର ହେଉ ଖେଳ ପ୍ରତି ଆକର୍ଷଣ, ଚମତ୍କାରିତା ଏବଂ ପ୍ରୟୋଜନ ଶେଷ ହେଇଯାଇଛି । କାହାର କିଛି ଗୁରୁତ୍ୱ ନାହିଁ । ସ୍ୱାର୍ଥଭଙ୍ଗର ଭୟ କିମ୍ବା ପ୍ରତିଶ୍ରୁତି ଭଙ୍ଗର ଆଶଙ୍କା ମଧ୍ୟ ଆଉ ନାହିଁ । ତଥାପି ସେଇ ପଶାପାଲିର ଗୋଟି ହେଇ ଠିଆ ହେଇଛେ ଆମେ ।

ଦେବବ୍ରତ କହିଲା ଭଳି କିଛି କଥା ଖୋଜି ପାଉନଥିଲେ । ଛାତି ଥରେଇ ଦୀର୍ଘ ଶ୍ୱାସ ଛୁଟିଆସିଲା । ହଠାତ୍ ଯନ୍ତ୍ରଣାକୁ ନିଜ ଭିତରେ ଲୁଚାଇବାକୁ ଯାଇ ସେ ଟିକିଏ ହସିଦେଲେ । କହିଲେ, ଭଲକଥା କହୁଛ ତ ତୁମେ, ଏମିତିକା ସବୁ ଆଜେବାଜେ କଥା ଭାବି ନିଜେ ତ କଷ୍ଟ ପାଉଛ, ମୋତେ ବି ଯନ୍ତ୍ରଣା ଦେଉଛ ।

ଥମଥମ ଓଜନିଆ ଗଳାରେ ସତ୍ୟବତୀ କହିଲେ- ଜାଣେନା, ତେବେ ମୁଁ ବୁଝିପାରୁଛି ଯେ, ତୁମ ମନ ଗୋଟାଏ ଠାଁରେ ଅଟକି ଯାଇଛି ଏବଂ ବହୁ ପ୍ରକାର ସଂସ୍କାର ମନ ଭିତରେ ତା କାମ କରିଚାଲିଛି ।

ହସିଲେ ଦେବବ୍ରତ । କହିଲେ, ମୂଳ କଥା ହେଲା, ତୁମେ ମୋତେ ବହୁତ ଭଲପାଅ, ସ୍ନେହ କର । ସବୁବେଳେ ମୋରି ପାଇଁ ଚିନ୍ତା କର । ବୋଧହୁଏ ସେଇଥିପାଇଁ ଏସବୁ କଥା ମନଭିତରକୁ ଆସେ । କିନ୍ତୁ ମୋର ଏତେ ସମୟ କାହିଁ ଏସବୁ ଭାବିବାକୁ ? 'କଠିଣ ଶକ୍ତ ପୁରୁଷମାନଙ୍କ ହୃଦୟରେ କୋମଳତା ବୋଲି କିଛି ନାହିଁ, ସ୍ନେହ ଶ୍ରଦ୍ଧା ବି ନାହିଁ ?' 'ଠିକ୍ ଜାଣି ?' ଦେବବ୍ରତଙ୍କ କଣ୍ଠରେ ସ୍ପଷ୍ଟ ଉଦାସୀନତାର ସ୍ପର୍ଶ ।

ସତ୍ୟବତୀ ମୁହଁରେ ଦୁଃଶ୍ଚିନ୍ତାର ଗଭୀର ରେଖା । ଅସହାୟ କଣ୍ଠରେ ସେ କହିଲେ, 'ଦେବବ୍ରତ, ସନ୍ତାନର କର୍ତ୍ତବ୍ୟ କିଛି କରିପାରୁନ ବୋଲି ନିଜ ଭିତରେ ନିଜକୁ ଦୋଷୀ ମନେକରୁଛ ନା ? ମଣିଷ ନିଜ ବଂଶଧାରା ମଧ୍ୟରେ ବଞ୍ଚିରୁହେ, ବିବାହ ନ କରି ମଧ୍ୟ ସେଇ କାମ ତୁମେ କରିପାରିବ । ବିଚିତ୍ରବୀର୍ଯ୍ୟଙ୍କ ପତ୍ନୀମାନେ ଅଛନ୍ତି । ମୋର ଇଚ୍ଛା ତୁମେ ତୁମ ଭ୍ରାତୃବଧୂମାନଙ୍କ ଗର୍ଭରେ କ୍ଷେତ୍ରଜ ପୁତ୍ର ଉତ୍ପନ୍ନ କରି ବଂଶରକ୍ଷା କର ।

ଦେବବ୍ରତଙ୍କ କଣ୍ଠ ଦେଇ ଗୋଟିଏ ଆର୍ତ୍ତଚିତ୍କାର ବାହାରି ଆସିଲା-ଜନନୀ ! ମୁଖମଣ୍ଡଳ ଲଜ୍ଜାରେ ଲାଲ ପଡ଼ିଗଲା । ଶ୍ୱାସ କ୍ରମଶଃ ପ୍ରଳୟଙ୍କର ଏବଂ ଗରମ ହେଇଉଠିଲା । ଅନ୍ତର ଭିତରେ ଏକ ତୀବ୍ର ଅପମାନବୋଧର ଜ୍ୱାଳାରେ ଛଟପଟ କରିଉଠିଲା । ସେ ଆହୁରି ଅନେକ କିଛି ଅନୁଭବ କରୁଥିଲେ । ଦାନ୍ତରେ ଦାନ୍ତ ଚିପି, ନିଜର କ୍ରୋଧକୁ ସମ୍ବରଣ କଲେ ଦେବବ୍ରତ । ସେଥିପାଇଁ କିଛି ସମୟ ପର୍ଯ୍ୟନ୍ତ ସେ କିଛି କଥା କହିପାରିଲେ ନାହିଁ । ସେଥିରେ କଣ ଅଛି ? ଏହି ସନ୍ତାନ ତୁମର ଔରସଜାତ ହେଲେ ମଧ୍ୟ ବିଚିତ୍ରବୀର୍ଯ୍ୟଙ୍କ ସନ୍ତାନ ନାମରେ ପରିଚୟ ପାଇବେ ସେମାନେ । ଏହାଦ୍ୱାରା ବଂଶରକ୍ଷା ହେବ ଏବଂ ତୁମର ପ୍ରତିଶ୍ରୁତି ମଧ୍ୟ ପାଳନ ହେବ ।

ମଣିଷ ଗଭୀର ଭାବେ ଅପମାନିତ ହେଲେ, ଭିତରର ନିଆଁରେ ନିଜେ ସେ ଜଳି ପୋଡ଼ିଯାଏ, ନିଆଁରେ ଦାଉଦାଉ ହେଇ ଜଳିପୋଡ଼ି ଉଠେ ଦେହମୁହଁ । ସତ୍ୟବତୀଙ୍କ କଥା ଶୁଣି ଦେବବ୍ରତଙ୍କ ଦେହ ମୁହଁ ସେଇଭଳି ବୋଧ ହେଲା । ଆଖିଦୁଇଟି ପାଗଳଙ୍କ ଭଳି ଉଦ୍‌ଭ୍ରାନ୍ତ ଦିଶିଲା । କଣ୍ଠରେ ଘୃଣାର ଭାବ ଫୁଟେଇ ସେ କହିଲେ, ଛି, ଛି, ଜନନୀ, ଭଗିନୀ ଜ୍ଞାନରେ ଯେଉଁମାନଙ୍କୁ ମୁଁ ସ୍ନେହ କରେ, ଯେଉଁମାନେ ମୋତେ ଜ୍ୟେଷ୍ଠର ସମ୍ମାନ ଦେଇ ପୂଜା କରନ୍ତି, ସେମାନଙ୍କୁ ନେଇ ଏଭଳି କୁତ୍ସିତ ସଂପର୍କର ଚିନ୍ତା ତୁମେ କରିପାରିଲ କିମିତି ?

ହଠାତ୍ ବିଷଣ୍ଣ ହେଇଗଲେ ସତ୍ୟବତୀ । କିନ୍ତୁ କଣ୍ଠରେ ଦୃଢ଼ତା ଫୁଟେଇ କହିଲେ, 'ପୁତ୍ର, ଏହା ମୋର ଆଦେଶ ।'

ପୁତ୍ର ହୋଇ, ଜନନୀର ଆଦେଶ ପାଳନ ନ କରିପାରିବାର ଅକ୍ଷମତା, ଲଜ୍ଜା ଆଉ ଗ୍ଲାନି ଯେ କେତେ ମର୍ମାନ୍ତିକ ସେ କଥା ଯଦି ତୁମେ ଜାଣିପାରନ୍ତେ, ତା'ହେଲେ ମୋ'ଉପରେ ଅଯଥା ଅତ୍ୟାଚାର କରିପାରି ନ ଥାନ୍ତ ।

ସତ୍ୟବତୀ ଲଜ୍ଜିତ ହେଲେ ।

ଜନନୀଙ୍କର ସଙ୍କୁଚିତ, ଲଜ୍ଜିତ, ବିଷଣ୍ଣ କରୁଣ ମୁଖମଣ୍ଡଳକୁ ଲକ୍ଷ୍ୟ କରି ଦେବବ୍ରତଙ୍କ ଅନ୍ତର ଆତ୍ମାଧିକ୍କାରରେ ପରିପୂର୍ଣ୍ଣ ହେଇଗଲା । କିନ୍ତୁ ଯଥାଶୀଘ୍ର ନିଜକୁ ସେ ସଂଯତ କରିନେଲେ । ତା'ପରେ ସେ ଅବୋଧ ବାଳକ ଭଳି ଅକପଟ ସ୍ୱରରେ କହିଲେ, ତୁମେ

ମୋତେ ଗଭୀର ଭାବେ ସ୍ନେହ କର ବୋଲି ଏଇ ଯନ୍ତ୍ରଣା ମଧ୍ୟ ଅନୁଭବ କରୁଛ । ଏହି ବଂଶର ମହିଷୀ ହୋଇ ତୁମେ ଇତିହାସର ଧାରାବାହିକତାକୁ ବଂଶର ଉତ୍ତରାଧିକାରୀ ମାଧ୍ୟମରେ ଆପ୍ରାଣ ଧରି ରଖିବାକୁ ଚାହୁଁଛ । ଏଥିରେ ତୁମର କୌଣସି ଅନ୍ୟାୟ ବା ଅପରାଧ ନାହିଁ । ପ୍ରକୃତି ଜଗତରେ ମଧ୍ୟ ଏଇ ଏକା ନିୟମ ଚାଲିଆସିଛି । ପ୍ରକୃତିର ନିୟମରେ ଗଛରେ ଫୁଲ ଫୁଟେ, ଭ୍ରମର ଆସେ, ଫଳ ଫଳେ, ବୀଜ ହୁଏ ଏବଂ ବଂଶଧାରା ରକ୍ଷା ପାଏ । ମଣିଷ ମଧ୍ୟ ପ୍ରକୃତିର ବଶ । ବଂଶରକ୍ଷା ତାର ସ୍ୱଭାବ । କୁରୁବଂଶକୁ ଅକ୍ଷୁଣ୍ଣ ରଖିବା ପାଇଁ ଯେଉଁ ପ୍ରସ୍ତାବ ତୁମେ ଆଗତ କରିଛ, ସେଥିରେ ମୋର ମଧ୍ୟ ସମ୍ମତ ଅଛି । କିନ୍ତୁ ମୋ' ବ୍ୟତୀତ ତୁମର ଆହୁରି ବି ଜଣେ ଗର୍ଭଜାତ ପୁତ୍ର ଅଛି । ଭ୍ରାତା ଦ୍ୱୈପାୟନଙ୍କୁ ତୁମେ ଏଇ କାର୍ଯ୍ୟରେ ନିୟୋଗ କର । ତାଙ୍କଠାରୁ ବଳି ଯୋଗ୍ୟ ବ୍ୟକ୍ତି ଆଉ କିଏ ଅଛି ?

ଏଥର ସତ୍ୟବତୀ ସ୍ୱସ୍ତିରେ ଗୋଟିଏ ନିଃଶ୍ୱାସ ନେଲେ । କହିଲେ, ପ୍ରତିଜ୍ଞା ପାଳନରେ ତୁମେ ଅତ୍ୟନ୍ତ ଭୀଷଣ । ମୋର ଆଉ କିଛି କହିବା ପାଇଁ ବାଟ ନାହିଁ । ତୁମେ ଯେତେବେଳେ ନିଜର ଅକ୍ଷମତା ପ୍ରକାଶ କଲ, ସେତେବେଳେ ତୁମ କଥାନୁଯାୟୀ ତାଙ୍କୁ ହିଁ ସନ୍ଧାନ କରିବାକୁ ପଡ଼ିବ ।

ଧୀରେ ଧୀରେ ଦ୍ୱୈପାୟନ ପାହାଚ ଦେଇ ଉଠିଆସିଲେ । ଆସିବା ବାଟରେ ଜଣେ ଦି'ଜଣ ଦାସଦାସୀଙ୍କ ସହିତ ମୁହାଁମୁହିଁ ଭେଟ ହେଇଗଲା । ସେମାନଙ୍କ ସହିତ ଆଖିରେ ଆଖି ମଧ୍ୟ ମିଶିଥିଲା । ପ୍ରତ୍ୟେକେ କୌତୂହଳୀ ହୋଇ ଅବାକ୍ ଆଖିରେ ଚାହିଁଥିଲେ । କେହି ବାଧା ଦେଇନଥିଲେ । ପ୍ରଶ୍ନ କରି ନ ଥିଲେ କିମ୍ବା ଅଭିବାଦନ ମଧ୍ୟ କରିନଥିଲେ । କେବଳ ବଲବଲ କରି ଚାହିଁଥିଲେ । ସେମାନେ ହୁଏତ ବୁଝିପାରିଥିଲେ ଯେ, ସେ ଏଇ ଘରର କେହି ନୁହନ୍ତି । କେବଳ ଜଣେ ଅପରିଚିତ ଆଗନ୍ତୁକ ମାତ୍ର ।

ଜନନୀଙ୍କ କକ୍ଷଦ୍ୱାର ସମ୍ମୁଖରେ ମୁହୂର୍ତ୍ତେ ଠିଆ ହେଇପଡ଼ିଲେ ଦ୍ୱୈପାୟନ । ଘର ଭିତରକୁ ପଶିଗଲା ବେଳକୁ ତାଙ୍କର କେମିତି ଟିକିଏ ଦ୍ୱିଧା ହେଲା । ଅସ୍ୱସ୍ତି ଏବଂ ସଂକୋଚ ଲାଗିଲା । ଜନନୀ ସତ୍ୟବତୀ ତାଙ୍କୁ ଅକସ୍ମାତ୍ ଏଭଳି ସ୍ମରଣ କଲେ କାହିଁକି ? ଦ୍ୱୈପାୟନ ବୁଝିପାରୁନଥିଲେ କିଛି ସେ ସଂପର୍କରେ କୌଣସି ଇଙ୍ଗିତ ମଧ୍ୟ ସେ ପାଇ ନାହାନ୍ତି । କିନ୍ତୁ ମନ ଭିତରେ କିଛି ଗୋଟାଏ ବଡ଼ ଧରଣର ଘଟିବାର ସୂଚନା ପାଉଥିଲେ ସେ ।

ଗୋଟାଏ ଅବ୍ୟକ୍ତ ଅନୁଭୂତିର ଉଜ୍ଜୀବକ ସ୍ପର୍ଶ ତାଙ୍କ ଭଳି ବ୍ରହ୍ମଚାରୀଙ୍କ ଅନ୍ତଃକରଣକୁ ମଧ୍ୟ ବ୍ୟାକୁଳ କରି ଦେଉଥିଲା । ଏକ ଅପ୍ରତିରୋଧ ଆନ୍ଦୋଳନରେ ଆନ୍ଦୋଳିତ ହେଇଉଠୁଥିଲା ଛାତି । ଗୋଟାଏ ଆଚ୍ଛନ୍ନ ଭାବର ବିଭୋରତା ଭିତରୁ ଉଠି ଜନନୀଙ୍କ ଦ୍ୱାର ସମ୍ମୁଖରେ ଠିଆ ହୋଇ ଡାକିଲେ- 'ମା' !

ସେଇମିତି ଆଚ୍ଛନ୍ନ ଗଳାରେ ଉତ୍ତର ଦେଲେ ସତ୍ୟବତୀ- 'ଆସ, ଭିତରକୁ ଆସ ।' ଅପଲକ ଚକ୍ଷୁରେ ଦ୍ୱୈପାୟନଙ୍କ ଆସିବା ବାଟକୁ ଚାହିଁରହିଲେ ସେ । ହାତବଢ଼େଇ କାଷ୍ଠାସନଟିଏ ତାଙ୍କ ଆଡ଼କୁ ଟାଣି ବସିବାପାଇଁ ଇଙ୍ଗିତ କଲେ । ତା'ପରେ କେଇଟା ମୁହୂର୍ତ୍ତ କଟିଗଲା ନିରବରେ । ପ୍ରଥମେ ଦ୍ୱୈପାୟନ ହିଁ ଇତସ୍ତତଃ ହୋଇ କଥା ଆରମ୍ଭ କଲେ, 'ଜନନୀ, କେଉଁ ଉଦ୍ଦେଶ୍ୟରେ ମୋତେ ସ୍ମରଣ କଲେ, କହିଲେନି ତ । ତୁମ ଆଦେଶର ଅପେକ୍ଷାରେ ଅଛି ମୁଁ, କୁହ ମୋତେ କ'ଣ କରିବାକୁ ହେବ ?

ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଥିଲେ ସତ୍ୟବତୀ । ସେଇ ଆଖିର ଦୃଷ୍ଟି ଏଇ ବୟସରେ ମଧ୍ୟ କେତେ ଗଭୀର । କି ତୀକ୍ଷ୍ଣ ଚେହେରା । ଦାସରାଜଙ୍କ ଆଖି ସେ'ଦିନ କିଛି ଭୁଲ ଦେଖି ନ ଥିଲା । ଏଇ ପୁତ୍ର ଭବିଷ୍ୟତରେ ଖୁବ୍ ବଡ଼ ଜଣେ ହେବ । ସତ୍ୟବତୀଙ୍କ ଶରୀରରେ ରୋମାଞ୍ଚ ଖେଳିଗଲା । ନିର୍ବିକାର ଚିତ୍ତରେ ସେ କହିଲେ, 'କୃଷ୍ଣ, ଏହାକୁ ଆଦେଶ ବୋଲି ଭାବ ନାହିଁ । କୁହ ଭିକ୍ଷା ବୋଲି । ପ୍ରାର୍ଥନା ବୋଲି ଭାବ ।'

ଦ୍ୱୈପାୟନଙ୍କ ଅଧରରେ ଚାପା ହସ । ବିନୀତ ସ୍ୱରରେ ସେ କହିଲେ, 'ପୁତ୍ର ନିକଟରେ ଜନନୀର କୌଣସି ଭିକ୍ଷା ପ୍ରାର୍ଥନା ଥାଏ ନାହିଁ ମା', ଥାଏ କେବଳ ଆଦେଶ ।'

ଦ୍ୱୈପାୟନଙ୍କ କଥା ଶୁଣି ସତ୍ୟବତୀଙ୍କ ଦେହମନରେ ଆନନ୍ଦର ଫଲ୍‌ଗୁ ଖେଳିଗଲା । ଦୁରୁଦୁରୁ ଛାତିରେ ହତାଶ କଣ୍ଠରେ ସେ କହିଲେ, 'ବତ୍ସ ! ମୁଁ ଆଜି ବିପନ୍ନ । ମହାସଂକଟରେ ପଡ଼ି ମୁଁ ତୁମର ଶରଣାପନ୍ନ ହୋଇଛି । ଆଜି ପୁତ୍ରମାନଙ୍କ ମଧ୍ୟରେ ଏକମାତ୍ର ତୁମେ ହିଁ ଅଛ । ତୁମେ ମୋର ଆଶ୍ରୟ । ଶେଷ ସମ୍ବଳ ମୋର । ତୁମ ସମ୍ମତି ଉପରେ ନିର୍ଭର କରୁଛି ମୋର ଇହକାଳ ଓ ପରକାଳ । କୁହ ରକ୍ଷା କରିବ ?

ଦ୍ୱୈପାୟନଙ୍କ ମୁଖରେ ଚଟୁଳ ହସ ଫୁଟିଉଠିଲା । ଆଖିରେ କୌତୁକ ଖେଳେଇ କହିଲେ, କୁହ ମା' ।

ସଲଜ୍ଜ ମୁଖରେ ସତ୍ୟବତୀ ଟିକିଏ ଗମ୍ଭୀର ଭାବେ କହିଲେ, 'ପୁତ୍ର ! ତୁମକୁ ସବୁକଥା ମୁଁ ଖୋଲି କହିଛି, ନୂଆ କିଛି ତ ନାହିଁ କହିବା ପାଇଁ । ତେବେ ମଝିରେ ମଝିରେ ମୁଁ ନିଜକୁ ପ୍ରଶ୍ନ କରେ- ମୁଁ କିଏ ? ତୁମେ କିଏ ? କୋଉ ଉଦ୍ଦେଶ୍ୟରେ ଆମର ଜନ୍ମ ? ଆମ ଦେଇ ଈଶ୍ୱର କୋଉ କାର୍ଯ୍ୟ ତାଙ୍କର ସଂପନ୍ନ କରିବାକୁ ଚାହାନ୍ତି ? ଆମେ ଉଭୟେ ତ ଜାରଜ ସନ୍ତାନ । ମାନବ ସମାଜର କୌଣସି କର୍ମରେ ଆମେ ଲାଗିପାରିବାନି ? ତଥାପି ବିଧାତା ଆମ ହାତ ଦେଇ ପୂଜା ପାଇଁ ଯେମିତି ବ୍ୟାକୁଳ । କାହିଁକି ଜାଣ ? ଅଭିଶପ୍ତ ଜାରଜ ସନ୍ତାନମାନଙ୍କ ଦ୍ୱାରା ସେ ଏକ ତୃତୀୟ ପୃଥିବୀ ଗଢ଼ିବାକୁ ଚାହାନ୍ତି । ଆଜନ୍ମ ବ୍ରହ୍ମଚାରୀ କୃଷ୍ଣଦ୍ୱୈପାୟନଙ୍କୁ ବିଧାତା ତାଙ୍କର ପୌରୋହିତ୍ୟ ଦେଇଛନ୍ତି । ତାଙ୍କ କାର୍ଯ୍ୟ ସେ କରେଇବେ । ତୁମେ ଆଉ ମୁଁ ନିମିତ୍ତ ମାତ୍ର । ବିଧାତାଙ୍କ ହାତରେ ଦୁଇଟି ଖେଳଗୋଟି । ଛକପାଲି ଭିତରେ ବନ୍ଦୀ ହେଇଥିବା ଦୁଇଟି ମଣିଷ ।

ମାତଃ, ତୁମର ବକ୍ତବ୍ୟ ପରିଷ୍କାର କରି ସ୍ପଷ୍ଟ ଭାବେ କୁହ । ମୋତେ ସଂଶୟରେ ରଖ ନାହିଁ । ମୋ ଚାରିପଟେ ଏ କିପ୍ରକାର ଜାଲ ?

ପୁତ୍ର ! ତୁମେ କୁରୁବଂଶର କେହି ନୁହଁ । ତଥାପି ଇତିହାସର ଅନିବାର୍ଯ୍ୟ କାରଣରୁ ଆଜି ତୁମକୁ ହିଁ ତାର ସବୁଠାରୁ ବେଶି ପ୍ରୟୋଜନ । ତୁମର ଦୁଇ ସହୋଦର ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟଙ୍କ ଅକାଳ ମୃତ୍ୟୁ ପରେ କୁରୁବଂଶ ଲୁପ୍ତ ହେବାକୁ ଯାଉଛି । ଭୀଷ୍ମ ପରିଣୟବଦ୍ଧ ନ ହେବା ପାଇଁ ପ୍ରତିଜ୍ଞାବଦ୍ଧ । ଏଇ ଅବସ୍ଥାରେ ତୁମେ ହିଁ ମୋର ସନ୍ତାନ ରୂପେ ଏଇ ବଂଶର କୀର୍ତ୍ତି ରକ୍ଷା କରିପାରିବ । ବିଚିତ୍ରବୀର୍ଯ୍ୟଙ୍କର ଦୁଇ ପତ୍ନୀଙ୍କ ଗର୍ଭରେ ପୁତ୍ର ଉତ୍ପାଦନ କରି କୁରୁବଂଶକୁ ରକ୍ଷା କର । ଏହାହିଁ ମୋର ଆଦେଶ । ବିନା ବାକ୍ୟ ବ୍ୟୟରେ ତୁମ୍ଭେ ଆଦେଶ ପାଳନ କରି ମୋତେ ସନ୍ତୁଷ୍ଟ କର । ତୁମର ସମ୍ମତି ଲାଭ କଲେ ମୁଁ ବଧୂମାନଙ୍କୁ ପ୍ରସ୍ତୁତ ରହିବା ପାଇଁ କହିବି ।

ଦ୍ୱୈପାୟନଙ୍କ ଲଲାଟରେ ଚିନ୍ତା ରେଖାବଳୀ ଆହୁରି ଗଭୀର ଓ କୁଞ୍ଚିତ ହେଲା । କଣ କରିବେ ସ୍ଥିର କରିବା ପାଇଁ କ୍ରମାଗତ ତାଙ୍କର ନିଷ୍ପତ୍ତି ଡେରି ହେବାକୁ ଲାଗିଲା । ବାତାୟନ ପଥ ଦେଇ ସେ ଆକାଶକୁ ଚାହିଁଲେ, ଦେଖିଲେ ଭେଳା ଭେଳା ହେଇ ମେଘ ସବୁ ଭାସି ଚାଲିଛନ୍ତି । ଗୋଟିଏ ମେଘଖଣ୍ଡ ଆଉ ଗୋଟିଏ ମେଘଖଣ୍ଡକୁ ଆକର୍ଷଣ କରୁଛି । ଚାଲୁ ଚାଲୁ ଆଲିଙ୍ଗନବଦ୍ଧ ହେଉଛନ୍ତି । ପୁଣି ପରକ୍ଷଣରେ ଆଗେଇଥିବା ମେଘଖଣ୍ଡ ପଶ୍ଚାଦ୍‌ବର୍ତ୍ତୀ ମେଘର ଆକର୍ଷଣରୁ ନିଜକୁ ମୁକ୍ତ କରି ପଳାୟନ କରିବାର ଖେଳରେ ମାତି ଉଠିଛି । ପଶ୍ଚାଦ୍‌ବର୍ତ୍ତୀ ମେଘ ସବୁବେଳେ ବାହୁ ପ୍ରସାରଣ କରି ତାକୁ ଯେମିତି ନିବିଡ଼ ବନ୍ଧନରେ ବାନ୍ଧି ରଖିବାକୁ ଚାହୁଁଛି । ଧରାଧରି ଲୁଚକାଳି ଖେଳରେ ମଝିମଝିରେ ସେମାନେ ପରସ୍ପର ପରସ୍ପରକୁ ନିବିଡ଼ ଆଲିଙ୍ଗନ ପାଶରେ ବାନ୍ଧି ରଖୁଛନ୍ତି । କିଛି ସମୟ ବନ୍ଧନରେ ବାନ୍ଧି ହେବା ପରେ ପୁଣି ଛଡ଼ାଛଡ଼ି । ସେମାନଙ୍କର ସେଇ ଲୋମହର୍ଷକ ଶିହରଣଜନିତ ଉଜ୍ଜୀବକ ସ୍ପର୍ଶ ଆକାଶର ଛାତିରେ ବିଦ୍ୟୁତ୍ ହୋଇ ଝଲସି ଉଠିଲା । କି ଅସାଧାରଣ ଅଦ୍ଭୁତ ଏଇ ରତିବିଳାସ ! ଦ୍ୱୈପାୟନ ଚେତନା ଆବିଷ୍ଟ ହୋଇଗଲେ । ଆଖିରେ କେମିତି ଗୋଟାଏ ତନ୍ମୟତାର ଭାବ ସଂଚାର ହେଲା । ସର୍ବାଙ୍ଗରେ ଏକପ୍ରକାର ରହସ୍ୟମୟ ଆକର୍ଷଣର ଇଙ୍ଗିତ ।

ମନ ସ୍ଥିର କରିନେଲେ ଦ୍ୱୈପାୟନ । ସତ୍ୟବତୀ ବିସ୍ମିତ ଦୃଷ୍ଟିରେ ଚାହିଁରହିଥିଲେ । ଦ୍ୱୈପାୟନଙ୍କ ଅଙ୍ଗପ୍ରତ୍ୟଙ୍ଗରେ ଭୋଗର ଲକ୍ଷଣ ସବୁ ସ୍ପଷ୍ଟ ହେଇ ଉଠୁଥିଲେ କ୍ରମଶଃ । ଦ୍ୱୈପାୟନ ଜନନୀଙ୍କ ମୁହଁକୁ ଭଲକରି ଚାହିଁପାରିଲେ ନାହିଁ । ଅବନତ ଶିରରେ କମ୍ପିତ କଣ୍ଠରେ କହିଲେ– 'ତୁମର ଅଭିଳାଷ ମୁଁ ନିଶ୍ଚୟ ପୂରଣ କରିବି ।' କଥାଟାକୁ କୌଣସି ରକମ ଶେଷକରି ଖୁବ୍ ଦ୍ରୁତ ଗତିରେ ଦ୍ୱୈପାୟନ ଘର ଭିତରୁ ବାହାରିଆସି ପାହାଚ ଦେଇ ତରତରରେ ତଳକୁ ଓହ୍ଲେଇ ଯାଇଥିଲେ ।

ନିଜ କକ୍ଷରେ ଦ୍ୱୈପାୟନ ଏକୁଟିଆ ବସି ବସି ଘଟଣାଗୁଡ଼ିକର ତର୍ଜମା କରିବାକୁ ଲାଗିଲେ । ରକ୍ତର କଳଧ୍ୱନି ବାସ୍ତବିକ୍ ବଡ଼ ଉତ୍ତରୋଳ । ପ୍ରତିଟି ରକ୍ତକୋଷରେ ଅଗ୍ନିର ପ୍ରବାହ । ଛାତି ଭିତରେ ମଧ୍ୟ ଇୟେ କି ପ୍ରକାର ଜ୍ୱଳନ ଘନେଇ ଉଠୁଛି ? ଏ କଣ ଦେହମନର ଯୌବନୋଚିତ ଦାବି ଏବଂ ବଂଚନା, କୌଣସି ଅବ୍ୟକ୍ତ କ୍ଷୁଧାର ଜ୍ୱାଳାମୟ ରୂପ ? ଅଥବା ତାଙ୍କ ନିଜ ଭିତରର ନିଭୃତ ଆକ୍ରୋଶ ଅପମାନର ଏହି ନିଆଁ ରାଜମହିଷୀ ସତ୍ୟବତୀଙ୍କ ବଂଶରକ୍ଷାର ଦାୟିତ୍ୱରୂପକ ପବନ ଲାଗି ହୁତୁ ହୁତୁ ହେଇ ଜଳି ଉଠୁଛି ?

ଘର ଭିତରର ଛାୟାଲୋକରେ କିଛିକ୍ଷଣ ବସି ରହିଲେ ଦ୍ୱୈପାୟନ । ଆର୍ଯ୍ୟମାନଙ୍କର କେତେ ନିନ୍ଦା ଅପମାନ, ଘୃଣା ବିଦ୍ୱେଷ, ଲାଞ୍ଛନା ଅବିଚାର ଓ ଅବହେଳାକୁ ମାତା ଓ ପୁତ୍ର ଭୋଗ କରି ଆସିଛନ୍ତି । ଖଣ୍ଡ ଖଣ୍ଡ ମେଘ ଭଳି ସେଇ ସବୁ ଚିତ୍ର ଆଖି ଆଗରେ ଭାସିଯାଉଥିଲା, ଅଟକୁ ନ ଥିଲା, ରେଖାପାତ ମଧ୍ୟ କରୁନଥିଲା । ଏଣୁତେଣୁ ହଜାରେ ଭାବନାରେ ମନ ହୃଦୟ ଦ୍ରବୀଭୂତ ହେଇଯାଉଥିଲା କ୍ରମଶଃ, ଶରୀର ନାଚି ଉଠୁଥିଲା ଅଜଣା ମିଳନର ସୁଖ ଆଶାରେ । ଛାତି ଭିତରେ କିଛି ଆନନ୍ଦ, କିଛି ଭୟ, କିଛିଟା ଶିହରଣ ଖେଳିଯାଉଥିଲା ସେ ଜାଣିପାରୁଥିଲେ । ଯଦିଓ ଏ ପ୍ରକାର ଅନୁଭୂତି ତାଙ୍କ ପାଇଁ ସଂପୂର୍ଣ୍ଣ ନୂଆ ଏବଂ ଅନାସ୍ୱାଦିତ ଓ ଅସ୍ୱାଭାବିକ ମଧ୍ୟ ।

ଅଧୀର ଆଗ୍ରହରେ ମିଳନର ପ୍ରତୀକ୍ଷା କରିବାକୁ ଲାଗିଲେ କୃଷ୍ଣଦ୍ୱୈପାୟନ । ଯେତେବେଳେ ବି ସେ ଏକଥା ଭାବୁଥିଲେ ତାଙ୍କ ଛାତି ଭିତରଟା ଆବେଗରେ ଉଚ୍ଛୁଳି ଉଠୁଥିଲା । ଅମ୍ବିକା, ଅମ୍ବାଳିକା ନାମକୁ ସେ ବାରମ୍ବାର ଉଚ୍ଚାରଣ କରିବାକୁ ଲାଗିଲେ । ରକ୍ତରେ ତଡ଼ିତ୍ ପ୍ରବାହିତ ହେଲା । ଆଶ୍ଚର୍ଯ୍ୟ ହେଲେ ଋଷି ଦ୍ୱୈପାୟନ । ସଂଯମର ଶାନ୍ତ ରକ୍ତସ୍ରୋତ ପ୍ରଚଣ୍ଡ ଭାବରେ ଧକ୍କା ଖାଇ କଳରବ ସୃଷ୍ଟି କରୁଥିଲେ ଦେହ ଭିତରେ ଜଣେ ସାଧାରଣ ଗୃହୀ ଭଳି । ଏଥିରେ କୌଣସି ପ୍ରଭେଦ ନ ଥିଲା ।

ସଂଧ୍ୟାର ଅନ୍ଧକାର ଘନୀଭୂତ ହେଇ ଆସିବା ସଂଗେ ସଂଗେ ମନ ଆହୁରି ଅସ୍ଥିର ହୋଇଉଠୁଥିଲା । ପୁଷ୍ପମାଲ୍ୟ ସଜ୍ଜିତ କକ୍ଷ ଅଗୁରୁଚନ୍ଦନର ସୁଗନ୍ଧରେ ସୁରଭିତ । ଦୀପଶିଖାର ସ୍ତିମିତ ଆଲୋକ ଅନ୍ଧକାର କକ୍ଷରେ ଏକ ସ୍ୱପ୍ନାଲୋକ ସୃଷ୍ଟି କରୁଥିଲା । ଅଧୀର ମନରେ ବ୍ୟାକୁଳହୃଦୟା ରାଜବଧୂ ବିବିଧ ରତ୍ନାଳଂକାରରେ ବିଭୂଷିତା ହୋଇ ସ୍ୱର୍ଣ୍ଣ ପଲଙ୍କ ଉପରେ ପ୍ରତୀକ୍ଷା କରିଥିଲେ । ଦୀପାଳିର ସ୍ନିଗ୍ଧ ଆଲୋକର ରେଖାଟିଏ ଆସି ପଡ଼ିଲା ଅମ୍ବିକାଙ୍କ ଚନ୍ଦନଚର୍ଚ୍ଚିତ ଅନିନ୍ଦ୍ୟ ସୁନ୍ଦର ମୁଖମଣ୍ଡଳ ଉପରେ । କଜ୍ଜ୍ୱଳିତ ଆଖିକୋଣରେ ମିଳନର ଶର ନିକ୍ଷେପ ପାଇଁ ଆୟୋଜନ । ଅଧରରେ କନ୍ଦର୍ପର ବିଶ୍ୱ ବିଜୟୀ ମୋହନ ହସ । ମୁଖାରବିନ୍ଦରେ ଫୁଟିଉଠିଥିଲା ମିଳନର ଦୁର୍ବାର ବାସନା ।

ଧୀରେ ଧୀରେ ଦ୍ୱାର ଉନ୍ମୁକ୍ତ କଲେ ଦ୍ୱୈପାୟନ । ତାଙ୍କର ଉଜ୍ଜ୍ୱଳ ଆଖିର ସତୃଷ୍ଣ କୌତୂହଳୀ ଦୃଷ୍ଟି ଯାଇ ନିବଦ୍ଧ ହେଲା ଅମ୍ବିକାଙ୍କ ନୟନକୋଣରେ । ରତ୍ନାଭରଣଯୁକ୍ତ ଅମ୍ବିକା ପଲଙ୍କ ଉପରେ ଉପବିଷ୍ଟା । ତାର କ୍ରୀଡ଼ାବନତ ଭାବଟି ଖୁବ୍ ଭଲ ଲାଗିଲା ଦ୍ୱୈପାୟନଙ୍କୁ । ଶ୍ୱେତାଙ୍ଗିନୀ ଆର୍ଯ୍ୟରମଣୀର ଅପରୂପ ଲାବଣ୍ୟ ଓ ସୌନ୍ଦର୍ଯ୍ୟ ମୁଗ୍ଧ କଲା ବ୍ରହ୍ମଚାରୀ ଋଷିଙ୍କୁ । ମନେ ମନେ କହିଲେ ସେ, ଏତେ ସୁନ୍ଦର ଅମ୍ବିକା ! କେଇଟି ମୁହୂର୍ତ୍ତର ବିଭ୍ରମ, ସମ୍ମୋହିତ ହେଲେ ସେ ।

ମୃଦୁମଧୁର କଣ୍ଠରେ ଡାକିଲେ ସେ, ଅମ୍ବିକା ! ତୁମେ ସତରେ କେତେ ସୁନ୍ଦର ! ତୁମର ଭୁବନମୋହିନୀ ରୂପ, ସୁଠାମ ତନୁଶ୍ରୀ ଦେଖି ମୁଁ ଅଭିଭୂତ ହେଇଛି । ତୁମେ ମୋତେ ମୋହାଚ୍ଛନ୍ନ କରିଛ ।

ଆକସ୍ମିକ ରୂପର ପ୍ରଶଂସାରେ ଅମ୍ବିକାଙ୍କ ସମଗ୍ର ଶରୀର କମ୍ପିଉଠିଲା । ଶରୀର ଭିତରେ ବିଦ୍ୟୁତ୍‌ର ମୃଦୁ ତରଙ୍ଗ ଖେଳିଯାଉଥିଲା ଧୀରେ ଧୀରେ । ଆନନ୍ଦର ଅପୂର୍ବ ଶିହରଣ । ଅକାରଣ ଲଜ୍ଜାରେ ସେ ବିବ୍ରତ ବୋଧ କଲେ । କିଛି କ୍ଷଣ ବାକ୍‌ଶୂନ୍ୟ ହୋଇ ଆନତ ନୟନରେ କିଛି ଶୁଣିବାପାଇଁ ଉଚ୍ଛନ୍ନ ହେଇଉଠୁଥିଲେ । ତାଙ୍କ ଠିଆ ହେବାର ଭଙ୍ଗୀରେ ଗୋଟିଏ ନିରବ ପ୍ରାର୍ଥନାର ଭାବ ଉକୁଟି ଉଠୁଥିଲା । ପ୍ରତିଟି ମୁହୂର୍ତ୍ତ ପ୍ରତୀକ୍ଷା କରୁଥିଲେ ଅମ୍ବିକା ଦ୍ୱୈପାୟନଙ୍କ ମଧୁର ନିବିଡ଼ ଆଲିଙ୍ଗନକୁ । ଯେଉଁ ଆଲିଙ୍ଗନର ନିବିଡ଼ତାରେ ତାଙ୍କର ଶ୍ୱାସରୁଦ୍ଧ ହେଇଯିବ । ଭାଙ୍ଗିରୁଜି ଚୂର୍‌ମାର୍ ହୋଇଯିବେ ସେ ।

ସ୍ତବ୍ଧତା ଭିତରେ କଟିଗଲା କିଛି ମୁହୂର୍ତ୍ତ ।

ଅମ୍ବିକାଙ୍କ ମନ ଦ୍ୱୈପାୟନଙ୍କୁ ଦେଖିବାପାଇଁ ଛଟପଟ କରୁଥିଲା । ତ୍ରସ୍ତା ହରିଣୀ ଭଳି ସେ ଦ୍ୱୈପାୟନଙ୍କ ମୁହଁକୁ ଦେଖିବାପାଇଁ ତାଙ୍କର ଚକିତ ବିହ୍ୱଳ ଦୃଷ୍ଟିକୁ ଧୀରେ ଧୀରେ ଉପରକୁ ଟୋକିଲେ ।

ପ୍ରଦୀପର ଆଲୁଅ ପଡ଼ିଥିଲା ଦ୍ୱୈପାୟନଙ୍କ ମୁଖରେ । ମସ୍ତକୋପରି ପିଙ୍ଗଳଜଟା, ଶ୍ମଶ୍ରୁସମ୍ବଳିତ ମୁଖ, ରକ୍ତଜବା ସମ ଦୁଇଟି ଆଖି, ମେଦବହୁଳ ବପୁ, ପ୍ରସ୍ତରଭଳି ଗାତ୍ରବର୍ଣ୍ଣ- ଶିହରି ଉଠିଲେ ଅମ୍ବିକା । କ'ଣ ସେ ଦେଖୁଛନ୍ତି ! କମ୍ପିଉଠିଲା ଛାତି । ଅମ୍ବିକାଙ୍କ ସବୁ ସ୍ୱପ୍ନ, ଆବେଗ ଓ କଳ୍ପନା ମୁହୂର୍ତ୍ତକରେ ଉଡ଼ିଗଲା କର୍ପୂର ଭଳି । ସ୍ୱପ୍ନ ଭଙ୍ଗର ଯନ୍ତ୍ରଣାରେ ସେ ଆର୍ତ୍ତନାଦ କରିଉଠିଲେ । ଓଃ ! କି ଭୟଙ୍କର । କି ଭୀଷଣ, ମୁଁ ଯେ ଆଖିରେ ଚାହିଁପାରୁନି । ଅମ୍ବିକା ଦୁଇ ହାତରେ ଆଖିକୁ ଢାଙ୍କି କାନ୍ଦିବାକୁ ଲାଗିଲେ । ଦୌଡ଼ିଗଲେ ରୁଦ୍ଧଦ୍ୱାର ଆଡ଼କୁ । ପାଟି କରିବାର ଉପାୟ ନାହିଁ । କରାଘାତ କରିବା ବିପଜ୍ଜନକ । ସେଇଠୁ ଫେରିଆସି ପୁଣି ଲୋଟିପଡ଼ିଲେ ବିଛଣା ଉପରେ । ଶିଶୁଟିଏ ଭଳି କୁହୁଳି କୁହୁଳି କାନ୍ଦିବାକୁ ଲାଗିଲେ । ବାରମ୍ବାର ମୁଣ୍ଡ ହଲାଇ କହିବାକୁ ଲାଗିଲେ, ନା, ନା, ଏହା ଭୀଷଣ

ଅନ୍ୟାୟ । ହେ ଈଶ୍ୱର ! ତୁମେ ଏ କି ଶାସ୍ତି ଦେଲ ? ଏତେ କୁତ୍ସିତ, ଏତେ ଭୟଙ୍କର ଅନାର୍ଯ୍ୟ ଦସ୍ୟୁଟିକୁ ମୁଁ ବରଣ କରିବି କିମିତି ? ମୋତେ ଏତେ କଠିନ ପରୀକ୍ଷା ଭିତରକୁ ନିକ୍ଷେପ କଲ କାହିଁକି ପ୍ରଭୁ ?

ଦ୍ୱୈପାୟନ ବଜ୍ରାହତ ଭଳି ଠିଆହୋଇ ଦୃଶ୍ୟକୁ ଦେଖୁଥିଲେ । ଘଟଣାର ଆକସ୍ମିକତାରେ ସେ ହତଭମ୍ବ ହେଇ ପଡ଼ିଲେ । ବୁଦ୍ଧିବଣା ହେଇଗଲା । କିଛି ସମୟ ପର୍ଯ୍ୟନ୍ତ ସେ ହୁଏତ ମଣିଷ ହେଇ ନ ଥିଲେ । ପଥର ହେଇ ଯାଇଥିଲେ । ତାପରେ ମୁହୂର୍ତ୍ତେ ଠିଆ ହେଇ ସମ୍ଭବତଃ ପରିସ୍ଥିତିକୁ କଳନା କରିନେଲେ । ଟିକିଏ ହସିଲେ, ଅମଳିନ, ସରଳ ହସ । ଚିକ୍‌ମିକ୍ ଦନ୍ତପନ୍ତିର ଉଜ୍ଜ୍ୱଳତା ଭିତରେ ତାଙ୍କ ହୃଦୟର ବାଣୀ ପ୍ରକାଶ ପାଇଲା । କହିଲେ- ଏମିତି ହେଲେ କଣ ହେବ ? ମୁଁ ତ ସନ୍ନ୍ୟାସୀ ମଣିଷ । ଅଘରୀ, ସଂସାରଛଡ଼ା ଗୋଷ୍ଠୀର । ନାରୀମାନେ ମୋତେ କାହିଁକି ପସନ୍ଦ କରିବେ ? ମୋର ମଧ୍ୟ ନାରୀମାନଙ୍କ ପ୍ରତି କୌଣସି ଆକର୍ଷଣ ନାହିଁ କି ଆଗ୍ରହ ନାହିଁ । ମୋତେ ନାରୀମାନେ ଆଡ଼େଇ ଚାଲନ୍ତି । ମୁଁ ମଧ୍ୟ ସେମାନଙ୍କୁ ଆଡ଼େଇ ଚାଲେ । ହେଲେ ଜଣେ ନାରୀ ମୋ ଉପରେ ଆଖି ପକେଇଛି । ତାର ଆଚରଣ ଦେଖି ହିଁ ଜାଣିପାରିଛି ମୁଁ...

ଫଁ କରି ରାଗିଗଲା ଅମ୍ବିକା । ଥରି ଥରି ଭଙ୍ଗା ଗଳାରେ କହିଲେ- ଚୁପ୍‌କର ଅନାର୍ଯ୍ୟ, ବର୍ବର । ମୁଁ ତୁମକୁ ଘୃଣା କରେ । ବାମନ ହୋଇ ତୁମେ ଚନ୍ଦ୍ରକୁ ହାତ ବଢ଼େଇଛ ।

ଦ୍ୱୈପାୟନ କଥା ଖୋଜି ପାଇଲେନି । ଭାବିପାରିଲେନି କ'ଣ କରିବେ । ସ୍ତବ୍ଧ ଭାବେ ଠିଆହୋଇ ରହିଲେ କକ୍ଷ ଭିତରେ । ଅପମାନରେ, ଲଜ୍ଜାରେ ମୁଣ୍ଡ ଟେକିପାରୁନଥିଲେ । ମନ ଭିତରେ ଅଶାନ୍ତ ଝଡ଼ ତୋଫାନ ।

ଅନେକ ସମୟ ପର୍ଯ୍ୟନ୍ତ କାନ୍ଦିଲେ ଅମ୍ବିକା । କଣ୍ଠରୁଦ୍ଧ ହେଲା, କଥା ଆଉ ସ୍ଫୁରିଲା ନାହିଁ କୋହ ହେତୁ । ସେତେବେଳେ ଦ୍ୱୈପାୟନ ତାଙ୍କ ଉପରକୁ ଝୁଙ୍କି ପଡ଼ି ବିଷଣ୍ଣ ଗଳାରେ କହିଲେ, ଶୁଣ ସୁନ୍ଦରୀ, ମହତ୍ କର୍ତ୍ତବ୍ୟ ପାଳନ ଅର୍ଥରେ ମୁଁ ନିଯୁକ୍ତ । ଫେରିଗଲେ ମାତୃ ଆଦେଶ ଲଙ୍ଘନ ହେବ । ତୁମେ ମଧ୍ୟ କର୍ତ୍ତବ୍ୟଭ୍ରଷ୍ଟ ହେବ ।

ଏକଥା ଶୁଣି ଚମକି ଉଠିଲେ ଅମ୍ବିକା । ଆଖିରେ କ୍ରୋଧାଗ୍ନି କଣ୍ଠରେ ଉତ୍ତାପ ରଖି କହିଲେ- କର୍ତ୍ତବ୍ୟ କ'ଣ ଏତେ ନିଷ୍ଠୁର ? ଦେହମନର ନିର୍ବାଚନ ବି ସେ ମାନିବେନି ? ମନ ନ ଚାହିଁଲେ ମଧ୍ୟ ଇଚ୍ଛା ବିରୋଧରେ ଅପ୍ରିୟ କାର୍ଯ୍ୟ କରିବାକୁ ହେବ ? କର୍ତ୍ତବ୍ୟ ପାଳନ ସହିତ ଅନ୍ତରର କଣ କିଛି ସଂପର୍କ ନାହିଁ ? ମୁଁ ସେହି ପୁରୁଷ ଚାହେଁ, ଯିଏ ମୋର ପ୍ରତିଟି ଅଙ୍ଗରେ ଆବେଶ ତୋଳି ଦେଇପାରିବ । ବିହ୍ୱଳତା ଆଣି ଦେଇପାରିବ । ମୋର ସମଗ୍ର ମନକୁ ଅବଶ କରିଦେବ । ଦେହ ଓ ମନ ନିବେଦନ ପାଇଁ ମୋର ସମସ୍ତ ସତ୍ତା କାଙ୍ଗାଳପ୍ରାୟ ହୋଇଉଠିବେ । ହେଲେ ତୁମର ଏଇ ଭୟଙ୍କର, କଦର୍ଯ୍ୟ ବର୍ବର ରୂପ

ଭିତରେ ସେଇ ସ୍ୱପ୍ନ କାହିଁ ? ତୁମର ଏଇ କଦାକାର ଶରୀର ଆଡ଼କୁ ମୁଁ ବେଶିକ୍ଷଣ ଚାହିଁ ରହିପାରୁନି । ମୋ ସମ୍ମୁଖରୁ ଦୟାକରି ତୁମେ ଦୂର ହେଇଯାଅ । ତୁମକୁ ବରଣ କରିବା ଅପେକ୍ଷା ମୋ ପାଇଁ ମରଣ ଶ୍ରେୟସ୍କର ।

ଦ୍ୱୈପାୟନ ସ୍ତମ୍ଭିତ । ଅନେକ କ୍ଷଣପର୍ଯ୍ୟନ୍ତ ବାକ୍ୟ ସ୍ଫୁରିଲା ନାହିଁ । ଛିଡ଼ାହୋଇ ରହିଲେ ଗୁମ୍ ହେଇ । ଲଜ୍ଜା ଓ ଆତ୍ମଗ୍ଲାନିରେ କାନମୁଣ୍ଡା ଝାଇଁ ଝାଇଁ କରୁଥିଲା । ନିଜ ଅଜାଣତରେ ଅସ୍ଫୁଟ ଶବ୍ଦଟିଏ ବାହାରି ଆସିଲା ତାଙ୍କ ମୁହଁରୁ । ହେଲେ କାହାରିକୁ ଶୁଭିଲାନି । ଭାଷା ନ ଥିଲା ସେଥିରେ । ଥିଲା କେବଳ ମନ ହୃଦୟର ତୀବ୍ର ଯନ୍ତ୍ରଣା ।

ଅମ୍ବିକା କକ୍ଷ ଭିତରେ ଠିଆହୋଇ ଦ୍ୱୈପାୟନଙ୍କର ଲଜ୍ଜା ଓ ଘୃଣା ଆସିଲା ନିଜ ଉପରେ । ତିକ୍ତ ହେଇଗଲା ମନ । କୌଣସି ଆକର୍ଷଣ ନ ଥିଲା ଆଉ । ଭଲ ପାଇବାର ଆବେଗ ଓ ଅନୁଭୂତିଗୁଡ଼ିକ ଶୁଖି କାଠ ହେଇଯାଇଥିଲା । ବ୍ୟଥିତ ଓ ବିମର୍ଷ ଦ୍ୱୈପାୟନ ଉଠି ଠିଆ ହେଲେ । ଯେମିତି ନିଶାସକ୍ତ ଆଚ୍ଛନ୍ନ ଅବସ୍ଥା ଭିତରେ ହିଁ ସେ ଶୁଣିପାରିଲେ ଜନନୀଙ୍କ କଣ୍ଠସ୍ୱର - ପୁତ୍ର ! କୁରୁବଂଶର ଲିଭନ୍ତ ଦୀପକୁ ପ୍ରଜ୍ୱଳିତ କରିବା ପାଇଁ ତୁମେ ପ୍ରତିଶ୍ରୁତିବଦ୍ଧ । ଯେତେ ବଡ଼ ଘଟଣା ଘଟୁ ପଛେ ପ୍ରତିଶ୍ରୁତିଭ୍ରଷ୍ଟ ହୁଅନା । ମନେରଖ ବିଧାତା ତୁମ ଦେଇ ଏକ ନୂତନ ପ୍ରଜାତି ସୃଷ୍ଟି କରିବାକୁ ଚାହୁଁଛନ୍ତି କୁରୁବଂଶ ଭିତରେ । ଏଇ ଜାରଜ ସନ୍ତାନମାନେ ହେବେ ଦିନେ ମହାଭାରତର ନାୟକ । ଏମାନେ ସୃଷ୍ଟି କରିବେ ଇତିହାସ । ତାର ବୀଜ ତୁମକୁ ରୋପଣ କରିବାକୁ ହେବ ।

ଏତେ ସମୟ ଧରି ଯେଉଁ କୌତୂହଳହୀନ ନିର୍ବିକାରତ୍ୱ ତାଙ୍କ ଭିତରେ ରାଜୁତି କରୁଥିଲା ତାହା କଟିଗଲା । ଅମ୍ବିକା ଯଥାର୍ଥରେ ସୁନ୍ଦରୀ, ପରିପୂର୍ଣ୍ଣା ଯୁବତୀ । ତାର ଯୌବନୋଚିତ ଆକର୍ଷଣ ଦୁରନ୍ତ । ତାର ଅଙ୍ଗବାସ ତଳେ ଲୁଚି ରହିଛି ଅଫୁରନ୍ତ ଯୌବନ ତରଙ୍ଗ । ଦ୍ୱୈପାୟନଙ୍କ ମନରେ ନାନାବିଧ ମିଶ୍ର ଅନୁଭୂତିର ପ୍ରତିକ୍ରିୟା ସୃଷ୍ଟି କଲା । ରକ୍ତରେ ଖେଳିଗଲା ବିଦ୍ୟୁତ୍‌ର ତରଙ୍ଗ । ଶରୀର କ୍ରମଶଃ କଠିଣ ହେଇଉଠିଲା । କେମିତି ଗୋଟାଏ ଉଦ୍‌ଭ୍ରାନ୍ତ ଆକ୍ରୋଶରେ ଛାତି କମ୍ପିବାକୁ ଲାଗିଲା । ବାରମ୍ବାର ଶିହରିତ ହେଲା ସର୍ବାଙ୍ଗ । ଆଗରୁ ଏଭଳି କେବେ ହେଇନଥିଲା । ଭିତରେ ଭିତରେ ଉତ୍ତେଜନାର ଏକ ଅପ୍ରତିରୋଧ ଆନ୍ଦୋଳନ ସମଗ୍ର ଶରୀରରେ ଦାମାମା ଭଳି ବାଜି ଉଠିଲା । ଆଚମକା ଦ୍ୱୈପାୟନ ହାତ ବଢ଼େଇ ଅମ୍ବିକାଙ୍କ ଶାୟିତ ଶରୀରକୁ ଧରି ଭିଡ଼ିଆଣିଲେ ନିଜ ଛାତି ଉପରକୁ । ନିଷ୍ପେଷିତ କଲେ ତାଙ୍କୁ । କେଇଟି ମୁହୂର୍ତ୍ତର ବିଭ୍ରମ, ସମ୍ମୋହନୀ ଅବସ୍ଥା, ପ୍ରଳୟ ।

ଅମ୍ବିକାଙ୍କ କଣ୍ଠଦେଶରୁ ଆର୍ତ୍ତ ମିନତି : ଓଃ ମା'...

ଦ୍ୱୈପାୟନ ଅତ୍ୟନ୍ତ ପରିଶ୍ରାନ୍ତ ଓ କ୍ଲାନ୍ତ ମନେହେଲେ । ଘନଘନ ଶ୍ୱାସ ଛାଡୁଥିଲେ । ଛାତିର ଗତି ତୀବ୍ର ହେଇଯାଇଥିଲା । ଅମ୍ବିକା ତାଙ୍କର ସମସ୍ତ ଶକ୍ତି ଖଟେଇ ଦ୍ୱୈପାୟନଙ୍କୁ

ଦେହ ଉପରକୁ ହଟେଇ ତଳକୁ ପକାଇ ଦେଲେ । ବସ୍ତ୍ର ସମ୍ବରଣ କରୁ କରୁ କହିଲେ, ପଶୁ... ଜାନୁଆର ।

ଯେତେବେଳେ ଆର୍ଯ୍ୟ ଅନାର୍ଯ୍ୟ ଘୃଣାର କୂଟ ସଂଦେହ ଅବଶେଷରେ ସତ ହେବାକୁ ଗଲା, ସେତେବେଳେ ଦ୍ୱୈପାୟନଙ୍କ ଅନ୍ତରରେ ସତକୁ ସତ ବିଜାତୀୟ ଘୃଣା, ବିଦ୍ୱେଷ, କ୍ରୋଧ ଏବଂ ପ୍ରବଳ ପ୍ରତିହିଂସା ପୁଞ୍ଜୀଭୂତ ହେବାକୁ ଲାଗିଲା । ସେଇ କ୍ରୋଧରେ ତାଙ୍କର ସମଗ୍ର ଶରୀର ଜଳିଉଠିଲା । ଜଳନ୍ତା ନିଆଁ ଭଳି ଦାଉ ଦାଉ କଲା ମୁହଁଟା । ଏତେବଡ଼ ଅପମାନ, ଆତ୍ମଗ୍ଲାନି, ଜୀବନରେ ସେ କେବେ ଭୋଗି ନ ଥିଲେ । କିନ୍ତୁ କେଇ ମୁହୂର୍ତ୍ତ ପୂର୍ବରୁ ଯେଉଁ ନିଦାରୁଣ ଘଟଣାଟିଏ ଘଟିଗଲା ସେଥିରେ ତାଙ୍କ ମନ ସତକୁ ସତ ପିତା ହେଇଗଲା ।

ଗଭୀର ରାତି ପର୍ଯ୍ୟନ୍ତ ଦ୍ୱୈପାୟନଙ୍କର ନିଦ ହେଲା ନାହିଁ । ମୁଣ୍ଡ ଭିତରେ ଧିକ୍ ଧିକ୍ ହେଇ ସତେ ଯେମିତି ନିଆଁ ଜଳୁଥିଲା । ନିଜକୁ ଧିକ୍କାରିଲେ ସେ ଏବଂ ଚତୁଃପାର୍ଶ୍ୱର କଳୁଷିତ ପରିବେଶ ଉପରେ କ୍ରୋଧ ଓ ବିଦ୍ୱେଷ ତାଙ୍କୁ ପାଗଳ କରି ଦେଉଥିଲା । ତେବେ କଣ ସେ ପ୍ରତିଶୋଧ ନେବାକୁ ଚାହାନ୍ତି ? ଉପଚିରବସୁ ମାତାମହୀ ଆଦ୍ରିକାଙ୍କୁ ଅପମାନିତ କରିଛନ୍ତି । ପିତା ପରାଶର ମାତା ସତ୍ୟବତୀଙ୍କୁ ଏବଂ ଅମ୍ବିକା ତାଙ୍କୁ ଅପମାନିତ କରିଛନ୍ତି । ଏହା ଭିତରେ କଣ ଅଦୃଶ୍ୟ କୌଣସି ଯୋଗସୂତ୍ର ଅଛି ? ଯଦି ଅଛି, କଣ ସେଇ ସୂତ୍ରଟା ? ତିନି ପୁରୁଷ ଧରି ଗୋଟିଏ ବଂଶଧାରା ଶ୍ୱେତାଙ୍ଗମାନଙ୍କର ଘୃଣା, ଅବହେଳା, ଅନାଦର, ଲାଞ୍ଛନା ଓ ଅପମାନର ଶିକାର ହେଉଛନ୍ତି କାହିଁକି ? ମଣିଷର ଅମଙ୍ଗଳ କାମନା ଅଭିଶାପର ରୂପ ନେଇ ତାଙ୍କରି ମାଧ୍ୟମରେ ସେଇ ପ୍ରତିଶୋଧ ନେବାକୁ ଚାହେଁ ?

ନଚେତ୍ ଯେଉଁ ଚିନ୍ତା କେବେବି ତାଙ୍କ ମନରେ ଉଠିନି, ଅକସ୍ମାତ୍ ତାହା ମନର ଅଭ୍ୟନ୍ତରରେ ଦାବାନଳ ହେଇ ଜଳିଉଠିଲା କାହିଁକି ? ଅମ୍ବିକା ସହିତ ମିଳନ ପ୍ରସ୍ତାବରେ ସେ ଭିନ୍ନ ଏକ ସ୍ୱପ୍ନ ଦେଖିଥିଲେ । ବାସ୍ତବରେ ସେଇ ସ୍ୱପ୍ନ ଭାଙ୍ଗିରୁଜି ଚୂରମାର୍ କରିଦେଲା ଅମ୍ବିକା ।

ଏଥିରେ କାଳର ପ୍ରତିଶୋଧ ସ୍ପୃହା ହୁଏତ ପ୍ରଚ୍ଛନ୍ନ ଥାଇପାରେ । ଦ୍ୱୈପାୟନଙ୍କୁ ନିଜ ଆୟତରେ ରଖି ସେଇ ପ୍ରତିଶୋଧର ସ୍ପୃହାକୁ କାର୍ଯ୍ୟକାରୀ କରିବାପାଇଁ କଣ କାଳ ଚାହୁଁଛି ? ଛାତି ଭିତରୁ ପୁଞ୍ଜୀଭୂତ ଅଭିମାନ ଛଟପଟ ହୋଇ ବାହାରି ଆସିଲା ଦୀର୍ଘଶ୍ୱାସଟିଏ ହେଇ ।

ଆର୍ଯ୍ୟମାନେ କୌଣସି ଦିନ ତାଙ୍କୁ ଭଲ ଆଖିରେ ଦେଖି ନାହାନ୍ତି । ଅସାଧାରଣ ମେଧା ଆଉ ପାଣ୍ଡିତ୍ୟ ଦ୍ୱାରା ହିଁ ସେ ସେଇ ମର୍ଯ୍ୟାଦା, ସମ୍ମାନ ଆଉ ଗୌରବକୁ ଅଧିକାର କରିଛନ୍ତି । ନିଜର ମହତ୍ତ୍ୱ ଓ ଶ୍ରେଷ୍ଠତ୍ୱର ଜୋରରେ ସେ ବ୍ରାହ୍ମଣ ଏବଂ ଋଷି ହେଇଛନ୍ତି । ବାସ୍ତବରେ ଏ ସବୁକୁ ନେଇ ସେ ଭୁଲିଯାଇଥିଲେ ଆଉ ସବୁ । କିନ୍ତୁ ପ୍ରକୃତରେ ସେ ଭୋଳା

ନୁହନ୍ତି । ମନନ, ଅଧ୍ୟୟନର ଛାୟା ଦେଇ ଛାତି ଭିତରର ସେଇ କୁହୁଳା ନିଆଁକୁ ଶୀତଳ କରି ରଖିଛନ୍ତି ମାତ୍ର ! ଆଜି ସେଇଥିରେ ଅମ୍ବିକାର ପ୍ରତ୍ୟାଖ୍ୟାନଜନିତ ଛିଲିକାଏ ଅପମାନ କୁଟାଖିଅ ଭଳି କାମ କରିଛି, ଜଳିଉଠିଛି ହୁତୁହୁତୁ ହୋଇ ।

ନିୟତି କୋଉ ଛିଦ୍ର ପଥରେ ଆସି ପ୍ରବେଶ କରେ, ମଣିଷର ସାଧ ନାହିଁ ତାକୁ ଜାଣିବାର । ତାଙ୍କ କ୍ଷେତ୍ରରେ ଅମ୍ବିକା ହିଁ ନିୟତି ରୂପରେ ନିଷ୍ଠୁର ପ୍ରତ୍ୟାଖ୍ୟାନ ଆଉ ଅପମାନର ମର୍ମାନ୍ତିକ ଯନ୍ତ୍ରଣାର ରନ୍ଧ୍ର ଦେଇ ପ୍ରବେଶ କରିଛି । ଦ୍ୱୈପାୟନ ଅମ୍ବିକାର ଏଇ ଦୁର୍ବ୍ୟବହାରକୁ କ୍ଷମା କରିପାରିଲେ ନାହିଁ । ବାରମ୍ବାର ମନେ ମନେ କହିଲେ- କର୍ମର ଫଳ ଅବଶ୍ୟ ତାକୁ ଭୋଗ କରିବାକୁ ହେବ ।

ଏସବୁ କଥା ଭାବୁ ଭାବୁ ମୁହୂର୍ତ୍ତକରେ ଦ୍ୱୈପାୟନ ଅନୁଭବ କରିପାରିଲେ ଯେ, ତାଙ୍କର ତାଳୁରୁ ତଳିପା ଯାଏ ରାଗ, ଘୃଣା ଓ ପ୍ରତିହିଂସାରେ ଜଳୁଛି । ସେ କିଛି ସଠିକ୍ ଭାବେ ଚିନ୍ତା କରିପାରୁ ନାହାନ୍ତି । କଣ କଲେ, କି ଉପାୟରେ ଅମ୍ବିକା ଜବତ ହେବ, ତା ଅପମାନର ନିଆଁ ଲିଭିବ । ଘୃଣା ଆଉ ନିଷ୍ଠୁର ପ୍ରତ୍ୟାଖ୍ୟାନର କି ଶାସ୍ତି ଦିଆଯାଇପାରେ ? ତାର ରୂପର ଗର୍ବ ଏବଂ ତେଜର ଧ୍ୱଂସ ହେବ କିପରି - ସେ କଥା ଭାବିଲା ବେଳକୁ ତାଙ୍କର ବୁଦ୍ଧି ସ୍ଥୁରୁ ନ ଥିଲା, ପ୍ରତିହିଂସା ଚରିତାର୍ଥ କରିବା ପାଇଁ ଦ୍ୱୈପାୟନ ଋଷିରୁ ଜଣେ ସାଧାରଣ ମଣିଷର ସ୍ତରକୁ ଓହ୍ଲେଇ ଆସିଲେ ।

ନିଜ ମନର ପ୍ରତିକ୍ରିୟାକୁ ସେ କାହାକୁ ଜାଣିବାକୁ ଦେଇନଥିଲେ । ମୁଣ୍ଡକୁ ଥଣ୍ଡା କରି ଶାନ୍ତ ଗଳାରେ ସତ୍ୟବତୀଙ୍କ କୌତୂହଳୀ ପ୍ରଶ୍ନର ପ୍ରତ୍ୟୁତ୍ତରରେ ସେ କହିଲେ- "ଏଇ ସନ୍ତାନ ସିଂହାସନର ଅଭିପ୍ରେତ ନୁହେଁ ମା', ବରଂ ଧ୍ୱଂସର ଝଡ଼ ହିଁ ହେବ ।"

ସତ୍ୟବତୀ ଉଦ୍‌ବିଗ୍ନ ସ୍ୱରରେ କହିଲେ- ମୁଁ ଜାଣିବାକୁ ଚାହେଁ, ଏ ପ୍ରକାର ଧାରଣା ତୁମର କାହିଁକି ହେଲା ?

ଏ ଧାରଣା ମୋର ନୁହେଁ ମାତା । ଏହା ଭାଗ୍ୟଲିପି, ବିଧାତାର ଇଚ୍ଛା । ଅମ୍ବିକାର କୃତକର୍ମର ଅପରାଧରୁ ଏକ ଅଭିଶପ୍ତ ପୁତ୍ର ଜନ୍ମଗ୍ରହଣ କରିବ । ରାଜକାର୍ଯ୍ୟ ତାଙ୍କୁ ଦେଇ ଚଳେଇବା କଷ୍ଟକର ହେବ ।

ସତ୍ୟବତୀ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ତାଙ୍କ ଆଖିରେ ଯୁଗପତ୍ ବିସ୍ମୟ ଓ ଆତଙ୍କର ଚିହ୍ନ ଫୁଟିଉଠିଲା । ଉଦ୍ବେଗ ଓ ଉତ୍କଣ୍ଠାରେ କଣ୍ଠସ୍ୱର ତାଙ୍କର ଅସ୍ୱାଭାବିକ ଶୁଭିଲା । ଅସ୍ଫୁଟ ସ୍ୱରରେ ସେ କହିଲେ- ହଠାତ୍ ତୁମର ଏ ପ୍ରକାର ଧାରଣା ଜନ୍ମିଲା କାହିଁକି ?

ଦ୍ୱୈପାୟନ ନିଜ ଅଭିସନ୍ଧିକୁ ନ ଜଣେଇ ଶାନ୍ତ ଭାବରେ ହସି ହସି କହିଲେ, ଏଇ ଘରର ପବନରେ ତୁମେ ମଣିଷ ମନର ଭାବକୁ ଆଘ୍ରାଣ କରିପାରିବ ଚାହିଁଲେ । ଅବଶ୍ୟ ଏଥିପାଇଁ ଗଭୀର ଅନୁଭୂତିର ଉପଲବ୍ଧି ଏବଂ ବିଚକ୍ଷଣତା ଆବଶ୍ୟକ ।

ସତ୍ୟବତୀ ରହସ୍ୟଭେଦ କରିବା ପାଇଁ ବିଚଳିତ ସ୍ୱରରେ କହିଲେ, ମୁଁ ଏ ସବୁ ଅଦ୍ଭୁତ ଅର୍ଥ ଥିବା କଥା କିଛି ବୁଝିବାପାଇଁ ଚାହୁଁନି । ଅସଲ କଥାଟା ତୁମେ କୁହ । ଦ୍ୱୈପାୟନଙ୍କ ଦୁଇ ଆଖିରେ ଜୀବନକୁ ଦେଖିବାର କୌତୁକ ଓ ବିସ୍ମୟ । କହିଲେ- 'ମୁଁ ତ ସେଇ କଥାଟି କହିବା ପାଇଁ ଚେଷ୍ଟା କରୁଛି; ଏଇ ଧାରଣାଟିକୁ ମହାକାଳ ହିଁ ମନଭିତରେ ଲୁଚେଇ ରଖିଛି । କିନ୍ତୁ ସେଇ କଥା ଯେ ନିର୍ଭୁଲ, ଏକଥା ତ କହିପାରିବିନି । କେବଳ ଅନୁମାନ କରାଯାଇପାରେ । ତାକୁ ମୁଁ କେମିତି ବିଶ୍ୱାସଯୋଗ୍ୟ କରିପାରିବି ? କେବଳ ଏତିକି ଜାଣିରଖ, ଏଇ ଶିଶୁ ଭୂମିଷ୍ଠ ହେବା ସଂଗେ ସଂଗେ ପରିତ୍ୟାଗ କଲେ ପୁରୁବଂଶର ଅନ୍ତତଃ କଲ୍ୟାଣ ହେବ । ଅନ୍ୟଥା ଏହି ବିଷଫଳରୁ ଯେଉଁସବୁ ବିଷବୃକ୍ଷ ଜନ୍ମିବ, ସେଇମାନେ ହିଁ ପୃଥିବୀର ଧ୍ୱଂସକୁ ଡାକି ଆଣିବେ । ବହୁ ରକ୍ତପାତ ଘଟିବ ପୃଥିବୀରେ ।

ସତ୍ୟବତୀଙ୍କ ଅନ୍ତର ଭିତର ହାଉ ହାଉ ହେଇ କାନ୍ଦିବାକୁ ଲାଗିଲା । ଅବଶ୍ୟ ଭୟରେ କାନ୍ଦିବାପାଇଁ ଭୁଲିଯାଇଥିଲେ ସେ । ଦିଗ୍‌ଭ୍ରାନ୍ତଙ୍କ ଭଳି ଜଳଜଳ ହେଇ ଚାହିଁ ରହିଲେ ସେ ଅନେକ କ୍ଷଣ ପର୍ଯ୍ୟନ୍ତ ।

ଜନନୀଙ୍କ ଅନ୍ତରରେ ଅମ୍ବିକାର ସନ୍ତାନ ପାଇଁ ଉତ୍କଟ ବିଦ୍ୱେଷର ଭାବ ସୃଷ୍ଟି କରିବାରେ ଅନୁକୂଳ ବ୍ୟବସ୍ଥା ତିଆରି କରିପାରିଥିବାର ଅନୁମାନ ଲଗାଇ ପାରିଲେ ଦ୍ୱୈପାୟନ - ସତ୍ୟବତୀଙ୍କ ଅଶାନ୍ତ ଓ ଅତୃପ୍ତ ମୁହଁକୁ ଲକ୍ଷ୍ୟ କରି । ଅମ୍ବିକାକୁ ଆୟତ୍ତ କରିବାର ପ୍ରଥମ ପର୍ଯ୍ୟାୟର କାର୍ଯ୍ୟ ଚମତ୍କାର ଭାବେ ସମ୍ପନ୍ନ କରିପାରିଥିବାରୁ ତୃପ୍ତିରେ ତାଙ୍କ ମନ ହୃଦୟ ଭରିଉଠିଲା । ସତ୍ୟବତୀ କିନ୍ତୁ ଅନୁଭବ କରିପାରୁଥିଲେ ଯେ, ତାଙ୍କ ସମଗ୍ର ଶରୀର କ୍ରମଶଃ ହିମଶୀତଳ ହେଇଯାଉଛି । ସେ ଥରି ଉଠୁଛନ୍ତି । ଅନେକ ସମୟ ପରେ ଗଭୀର ଦୀର୍ଘ ଶ୍ୱାସଟିଏ ପକାଇ କହିଲେ- ଅନେକ ବର୍ଷ ତଳେ ଦିନେ ପିତା ମୋତେ କହିଥିଲେ- ମୁଁ କୁଆଡ଼େ ମହାକାଳକୁ ଗର୍ଭରେ ଧାରଣ କରିବି ଏବଂ ତା'ପରେ ଦିନେ ସେ ଆସି ସୁଧମୂଳ ସହିତ ତାଙ୍କର ପାଉଣା ଆଦାୟ କରିନେବେ । କ୍ରମଶଃ ପରିସ୍ଥିତି ଜଟିଳ ହେଇପଡୁଛି ଦିନକୁ ଦିନ । ଚାରିଆଡ଼େ କେବଳ ଅଶୁଭ, ଅମଙ୍ଗଳର ସଂକେତ ଦିଶୁଛି । ଭାରି ଭୟ ହେଉଛି ମୋର ।

ଏଥର ଦ୍ୱୈପାୟନ ଟିକିଏ ସ୍ମିତ ହସିଲେ । ମାଦକଭରା ଏକ ଅଦ୍ଭୁତ ହସ । ସତ୍ୟବତୀଙ୍କ ପାଦତଳର ମାଟି କମ୍ପିଉଠୁଥିଲା । ସତେ ଯେମିତି ଭୂମିକମ୍ପ ହେଲା । ପ୍ରଳୟ ଘଟିଲା । ଛାତି ଉଠପଡ଼ ହେଲା ।

ଦ୍ୱୈପାୟନଙ୍କ ସହାୟ ଥିଲେ ବିଧାତା । ଅମ୍ବିକା ପୁତ୍ର ଅନ୍ଧ ହେଇ ଭୂମିଷ୍ଠ ହେଲା । କାକତାଳିକ ଭାବେ ଦ୍ୱୈପାୟନଙ୍କ ସଂଶୟ ଏବଂ ଆଶଙ୍କା ଅକ୍ଷରେ ଅକ୍ଷରେ ସତ୍ୟ ପ୍ରମାଣିତ ହେଲା । ଅନ୍ଧପୁତ୍ର ସତକୁ ସତ ସିଂହାସନ ପାଇଁ ଅଯୋଗ୍ୟ । ଦୃଷ୍ଟିହୀନ ସନ୍ତାନ ପରିବାର

ପାଇଁ ଗୋଟାଏ ବୋଝ । ଅନ୍ୟର ଅନୁଗ୍ରହ, କରୁଣା, ଦୟା, ସମବେଦନା ନେଇ ଅସହାୟ ଭାବେ ବଞ୍ଚି ରହିବାକୁ ହେଉଥାଏ । ଏହାଠାରୁ ବଳି ଅଭିଶାପ ତାଙ୍କ ଜୀବନରେ ଆଉ କ'ଣ ଅଛି ? ରାଜକାର୍ଯ୍ୟ ସଂପାଦନ କିମ୍ବା ଶାସନ ପରିଚାଳନା କୌଣସି ଦିନ ହିଁ ତା ଦ୍ୱାରା ସମ୍ଭବପର ନୁହେଁ । ପୁତ୍ରର ଭବିଷ୍ୟତ ଚିନ୍ତା କରି ଅମ୍ବିକା ଉଦ୍‌ବିଗ୍ନ ହୋଇପଡ଼ିଲେ । ଋଷିଙ୍କର ଭବିଷ୍ୟବାଣୀ ଓ ଆଶଙ୍କା ସ୍ମରଣ କରି ମନେ ମନେ ଭୀତତ୍ରସ୍ତ ହୋଇପଡ଼ିଲେ ସେ ।

କୁରୁବଂଶ ତାର ବଂଶଧର ପାଇଲା ସତ, କିନ୍ତୁ ସିଂହାସନ ଏବଂ ରାଜ୍ୟର ଉତ୍ତରାଧିକାର ଅର୍ପଣ କରିବାର ଯୋଗ୍ୟତା ତାର ନ ଥିଲା । — ଏହାହିଁ ସତ୍ୟବତୀ ଓ ଅମ୍ବିକା ତଥା ଭୀଷ୍ମଙ୍କର ଦୁଃଶ୍ଚିନ୍ତାର କାରଣ ଥିଲା । ସୁସ୍ଥ ଏବଂ ବୀର୍ଯ୍ୟବାନ୍ ସନ୍ତାନର ଆଶାରେ ସତ୍ୟବତୀ ପୁଣିଥରେ ଦ୍ୱୈପାୟନଙ୍କ ଶରଣାପନ୍ନ ହେଲେ ।

ଅବାକ୍ ହେଲେ ଦ୍ୱୈପାୟନ । କୁରୁବଂଶର ସେ କେହି ନୁହନ୍ତି । ତଥାପି ଅଦୃଷ୍ଟ ତାଙ୍କୁ ଚୁମ୍ବକ ଭଳି ଆକର୍ଷଣ କରୁଛି । ଅନୁକୂଳ ଘଟଣା ପ୍ରବାହ ଯେମିତି ଦ୍ରୁତ ଗତିରେ ତାଙ୍କୁ ପରିବାର ଭିତରକୁ ଟାଣି ଆଣୁଛି । କାହାର ଏ ଆକର୍ଷଣ ? ମହାକାଳର ? ସମସ୍ତଙ୍କୁ ତ କାଳ କେବଳ ଆକର୍ଷଣ କରେ । ତାଙ୍କୁ ବି କଲା । ଦ୍ୱୈପାୟନ ନିଜେ ମଧ ଜାଣି ନ ଥିଲେ ଯେ, ବିଧାତା ପୁରୁଷ ତାଙ୍କ ଦେଇ କଣ କରିବାକୁ ଚାହାନ୍ତି ।

ତେବେ ଏତିକି ବୁଝିପାରୁଥିଲେ ଯେ, ସେ କାଳ ପ୍ରେରିତ । ଅମ୍ବିକାର ଅପମାନ ତାଙ୍କ ଭିତରେ ସୁପ୍ତ ପ୍ରତିହିଂସା ଓ ଲୁପ୍ତ ଭଜୁଥିବା ତେଜକୁ ଜାଗ୍ରତ କରିବାର ଉପଲକ୍ଷ ମାତ୍ର । ନିଦ୍ରିତ ପୁରୁଷ ସିଂହର ନିଦ୍ରା ଭାଙ୍ଗିବା ପାଇଁ ଅମ୍ବିକା କେବଳ ଗୋଟିଏ ଉପକରଣ । ତା'ଉପରେ କ୍ରୋଧ, ପ୍ରତିହିଂସାକୁ ଚରିତାର୍ଥ କରିବା ପାଇଁ ତାଙ୍କୁ ଆଉ ବିଶେଷ କିଛି ଭାବିଚିନ୍ତି ଅଗ୍ରସର ହେବାକୁ ପଡ଼ିବନି । କେତେବେଳେ କଣ କରାଯିବା ଉଚିତ ହେବ ସେ ସବୁର ଆୟୋଜନ କାଳ ଯେମିତି ଆଗରୁ ସାଇତି ରଖିଛି । ସେ କେବଳ ନିମିତ୍ତ । ମହାକାଳର ରୂପକାର । ଦ୍ୱୈପାୟନ ବିସ୍ମୟରେ ନିଜକୁ ପ୍ରଶ୍ନ କଲେ- ଏ କାହାର ଭାଗ୍ୟଲିପି ? ତାଙ୍କର ନା ଅମ୍ବିକାର ? ନା ଦୁହିଁଙ୍କର ??

ଦେହ ଓ ମନରେ ମିଳନର ପରିତୃପ୍ତି ଓ ଆନନ୍ଦ ନେଇ ଅମ୍ବାଳିକାଙ୍କ କକ୍ଷରୁ ନିଷ୍କ୍ରାନ୍ତ ହେଲେ ଦ୍ୱୈପାୟନ । ବହିର୍ଦ୍ୱାରରେ ସତ୍ୟବତୀ ତାଙ୍କର ପ୍ରତୀକ୍ଷା କରିଥିଲେ । ମନରେ ଭୟ, ଛାତିରେ ସଂଶୟ । ଲଜ୍ଜାଜନିତ ଭୀରୁତାରେ କଥା ବାହାରୁନଥିଲା । କପୋଳଦେଶରେ ସ୍ୱେଦବିନ୍ଦୁ ଫୁଟିଉଠିଲା । ମୃଦୁ ଉତ୍ତେଜନାରେ କଣ୍ଠ ଥରି ଉଠିଥିଲା । କିଛି ସମୟ ନିରବ ରହିଲା ପରେ ଦ୍ୱିଧା କଟେଇ ଅସ୍ଫୁଟ ସ୍ୱରରେ ଉଚ୍ଚାରଣ କଲେ ସତ୍ୟବତୀ- ପୁତ୍ର !!

ଦ୍ୱୈପାୟନଙ୍କ ଓଠରେ ଅର୍ଥପୂର୍ଣ୍ଣ ନିରବ ହସ । ମୁଖମଣ୍ଡଳରେ ପରିତୃପ୍ତିର ସୁଖ ।

ଅମ୍ବାଳିକା ଯଥାସମୟରେ ପରମ ସୁନ୍ଦର ପୁତ୍ର ପ୍ରସବ କଲେ । କିନ୍ତୁ ପୁତ୍ରଟି ଜନ୍ମ ସମୟରୁ ଦୁର୍ବଳ ଓ କୃଶକାୟ ଦିଶୁଥିଲା । ରୁଗ୍ଣ, ଅତ୍ୟନ୍ତ ଶାନ୍ତ ଓ ନିରୀହ ମନେହେଉଥିଲା । କୌଣସିଥିରେ ଉତ୍ସାହ, ଆଗ୍ରହ କିମ୍ବା କୌତୂହଳୀ ନ ଥିଲା । କିଛି ମଧ ତାଙ୍କୁ ଉଦ୍ଦୀପିତ କରୁନଥିଲା । ତାର ସେଇ ନିସ୍ତେଜ ଭାବ ସତ୍ୟବତୀଙ୍କୁ ପୁଣି ଦୁଃଶ୍ଚିନ୍ତାଗ୍ରସ୍ତ କରି ତୋଳିଲା । ଏଭଳି ସନ୍ତାନ ଉପରେ କୋଉ ଭରସାରେ ସେ ନିର୍ଭର କରିବେ ।

ଦ୍ୱିଧା ଓ ଶଙ୍କାରୁ ପୁଣିଥରେ ନିଜକୁ ମୁକ୍ତ କରିବା ପାଇଁ ଦ୍ୱୈପାୟନଙ୍କୁ ଆହୁରି ଥରେ ଆହ୍ୱାନ କରିବା କଥା ଚିନ୍ତା କଲେ ସତ୍ୟବତୀ । ଏହାକୁ ମିଶାଇ ତିନିଥର ଦ୍ୱୈପାୟନ ହସ୍ତିନାପୁରକୁ ଆସିଥିଲେ ।

ନିଜେ ଦ୍ୱୈପାୟନ ଅବାକ୍ ହେଲେ । ନିଜ ପାଖରେ ତାଙ୍କର ପ୍ରଶ୍ନ : ଇତିହାସର କୋଉ ପ୍ରୟୋଜନ ପାଇଁ ତାଙ୍କୁ ବାରମ୍ବାର ହସ୍ତିନାପୁର ଆସିବା ପାଇଁ ପଡୁଛି ? ପୁରୁବଂଶ ସହିତ ତାଙ୍କର - ଅଦୃଷ୍ଟ କେଉଁ ରହସ୍ୟ ସୂତ୍ରରେ ବନ୍ଧା ? – କିଛି ଉତ୍ତର ମିଳେନା । ଗୋଳମାଳିଆ ହେଇ ହଜାରେ ପ୍ରଶ୍ନ ତାଙ୍କ ମୁଣ୍ଡକୁ ଭାରାକ୍ରାନ୍ତ କରି ପକାଏ । ଅକସ୍ମାତ୍ ଅନ୍ତରର ଗଭୀରତମ ପ୍ରଦେଶରୁ ପ୍ରଶ୍ନଟିଏ ଉଠିଆସିଲା । ବୋଧହୁଏ କୌଣସି ରାଜନୈତିକ ଉଦ୍ଦେଶ୍ୟ ରଖି ଜନନୀ ସତ୍ୟବତୀ ତାଙ୍କୁ ବାରମ୍ବାର ସ୍ମରଣ କରିଛନ୍ତି । ଏହା ଫଳରେ ତାଙ୍କର ହସ୍ତିନାପୁର ଆସିବାଯିବା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଉଠିଛି । ହସ୍ତିନାପୁରର ରାଜନୀତିରେ ତାଙ୍କର ବ୍ୟକ୍ତିତ୍ୱ ଓ ଉପସ୍ଥିତିକୁ ସତ୍ୟବତୀ ବିଶିଷ୍ଟ କରି ତୋଳିଛନ୍ତି । କାରଣ ରାଜଅନ୍ତଃପୁରରେ ନିଜ ରାଜନୈତିକ କ୍ଷମତାକୁ କେନ୍ଦ୍ରୀଭୂତ କରିବା ନିମନ୍ତେ ଖୁବ୍ ନିକଟତମ କେହି ଜଣେ ନିର୍ଭରଯୋଗ୍ୟ ବିଶିଷ୍ଟ ବ୍ୟକ୍ତିର ପ୍ରୟୋଜନତାକୁ ଅନୁଭବ କରିଛନ୍ତି ଜନନୀ । ତେଣୁ ତାଙ୍କୁ ହିଁ ଆଖି ଆଗରେ ରଖି ନିଜ ଦୁର୍ବଳତାକୁ ଢାଙ୍କି ରଖିବାପାଇଁ ପରିବାର ଭିତରେ ତାଙ୍କର ଗୁରୁତ୍ୱକୁ ବଢ଼େଇ ଦେଇଛନ୍ତି ଏବଂ ଖୁବ୍ ଗୋପନରେ ସୁଚତୁର ଭାବେ ରାଜନୀତିର ପୁରୋଭାଗକୁ ଟାଣି ଆଣୁଛନ୍ତି ଧୀରେ ଧୀରେ ।

ଦ୍ୱୈପାୟନ ଜାଣନ୍ତି, ହସ୍ତିନାପୁରର ରାଜଅନ୍ତଃପୁରରେ ତାଙ୍କର ବାରମ୍ବାର ଆଗମନ ପ୍ରକ୍ରିୟାକୁ ନେଇ ଚର୍ଚ୍ଚା ଆରମ୍ଭ ହେଇଛି । ଅମ୍ବିକା ତାଙ୍କ ଆଗମନକୁ ରାଜନୈତିକ ଉଦ୍ଦେଶ୍ୟ ପ୍ରଣୋଦିତ ଏବଂ କୌଣସି ଏକ ଚକ୍ରାନ୍ତର ପୂର୍ବାଭାସ ବୋଲି ସଂଦେହ ପ୍ରକାଶ କରିଛନ୍ତି । ଭୀଷ୍ମଙ୍କୁ ସତ୍ୟବତୀଙ୍କ ସଂପର୍କରେ ସତର୍କ ଏବଂ ସାବଧାନ କରିଦେବା ପାଇଁ କହିଛନ୍ତି ଯେ- ସତ୍ୟବତୀଙ୍କ ଉଦ୍ଦେଶ୍ୟ ଭଲ ନୁହେଁ । ସେ ପୁରୁବଂଶର ଭଲ ଚାହାନ୍ତି ନାହିଁ, ଚାହିଁପାରିବେ ନାହିଁ । କ୍ଷେତ୍ରଜ ପୁତ୍ର ଉତ୍ପାଦନ ନେଇ ତାଙ୍କର ଏହି ଅତିରିକ୍ତ ଦେଖେଇପଣ ବାସ୍ତବିକ୍ ସଂଦେହଜନକ । ପ୍ରକୃତପକ୍ଷେ ଭୀଷ୍ମଙ୍କ ଉପରେ ତାଙ୍କର ଅବିଶ୍ୱାସ । ସେ ନାମକୁମାତ୍ର ରାଣୀ । ରାଜ୍ୟ ପରିଚାଳନାର ସବୁତକ କ୍ଷମତା ଭୀଷ୍ମଙ୍କ ହାତରେ । ଭୀଷ୍ମଙ୍କ ସହିତ

ଦ୍ୱୈପାୟନଙ୍କର ମଧ୍ୟ ଏହି ରାଜ୍ୟ ଉପରେ ଯେମିତି କିଛି ଅଧିକାର ରୁହେ ସେଥିପାଇଁ କ୍ଷେତ୍ରଜ ସନ୍ତାନ ଉତ୍ପାଦନ ଏକ ଛଳନା ମାତ୍ର । ପ୍ରକୃତରେ ସତ୍ୟବତୀ ପୁରୁବଂଶକୁ ଅନାର୍ଯ୍ୟ ବଂଶର ରକ୍ଷକ ଭାବେ ଗଢ଼ି ତୋଳିବାକୁ ଯାଉଛନ୍ତି । ଭାରତର ଆର୍ଯ୍ୟ ରାଜନ୍ୟବର୍ଗଙ୍କ ବିରୋଧରେ ଅସ୍ତ୍ରଧାରଣ କରିବା ଅନାର୍ଯ୍ୟମାନଙ୍କ ପକ୍ଷରେ ଆଦୌ ସମ୍ଭବପର ନୁହେଁ । ଦାସରାଜ ସେଇ କଥା ହୃଦୟଙ୍ଗମ କରି ସର୍ତ୍ତ ସାପେକ୍ଷ ସତ୍ୟବତୀଙ୍କୁ ପ୍ରୟାତ ମହାରାଜ ଶାନ୍ତନୁଙ୍କ ସହିତ ବିବାହ ଦେଇଥିଲେ । କିନ୍ତୁ ହସ୍ତିନାପୁରର ଅଦୃଷ୍ଟ ମନ୍ଦ । ବିଧାତା ସତ୍ୟବତୀଙ୍କୁ ସହାୟ ହେଲେ । ତେଣୁ ହିଁ ପୁତ୍ର ବିଚିତ୍ରବୀର୍ଯ୍ୟଙ୍କ ମୃତ୍ୟୁରେ ଦୁଃଖଶୋକରେ ଭାଙ୍ଗି ନ ପଡ଼ି ବଂଶରକ୍ଷା ନାଁରେ କାନୀନପୁତ୍ରକୁ ଏଇ ପରିବାରରେ ଅନ୍ତର୍ଭୁକ୍ତ କରିଛନ୍ତି । ରାଜନୀତିରେ ଶାନ୍ତନୁ ପୁତ୍ରଙ୍କ ପ୍ରଭାବ ପ୍ରତିପତ୍ତିରୁ ସିଂହାସନକୁ ମୁକ୍ତ ରଖିବା ଉଦ୍ଦେଶ୍ୟରେ ସତ୍ୟବତୀ ପରିବାର ଅଭ୍ୟନ୍ତରରେ ତାଙ୍କ ଶକ୍ତିକୁ ବୃଦ୍ଧି କରିଛନ୍ତି ଏବଂ ଦ୍ୱୈପାୟନ ତାଙ୍କର ସେଇ ପ୍ରୟୋଜନର ଅସଲ ଚାବିକାଠି ।

ଅମ୍ବିକାର କ୍ଷୁରଧାର ସଦୃଶ ରାଜନୈତିକ ବୁଦ୍ଧି ଦ୍ୱୈପାୟନଙ୍କୁ ଚମକୃତ କଲା । ହଠାତ୍ ସେ ଏକ ଅଦ୍ଭୁତ ହସ ହସିଲେ । ବାସ୍ତବରେ ଅମ୍ବିକା ତାଙ୍କ ସହିତ ଭୀଷ୍ମଙ୍କର ଗୋଟାଏ ସଂଘାତ ସୃଷ୍ଟି କରିବା ପାଇଁ ଚାହୁଁଛି । ସତ୍ୟବତୀଙ୍କୁ ଭୀଷ୍ମଙ୍କ ଆଖିରେ ନ୍ୟୂନ କରିବାପାଇଁ ଏହା ତାର ଆଉ ଏକ ଉଦ୍ଦେଶ୍ୟ । ପ୍ରକୃତପକ୍ଷେ ସଂଘର୍ଷଟା ଅମ୍ବିକା ସହିତ ତାଙ୍କ ନିଜର ଏକାନ୍ତଭାବେ । କିନ୍ତୁ ଅମ୍ବିକା ମନର ଅଭ୍ୟନ୍ତରରେ ଯେଉଁ ଝଡ଼ ଉଠିଛି- ସେଇ ସର୍ବନାଶୀ ଝଡ଼ ସବୁ କିଛିକୁ ଧ୍ୱସ୍ତବିଧ୍ୱସ୍ତ କରିଦେବାପାଇଁ ବଦ୍ଧପରିକର । ତାଙ୍କର ଅଙ୍କଶାୟିନୀ ହେବାର ପ୍ରତିଶୋଧ ନେଇ ଏକ ଘୃଣ୍ୟ ରାଜନୀତି ଭିତରକୁ ସେ ଓହ୍ଲେଇ ଆସିଛି । ତାଙ୍କୁ ଜବତ୍ ଏବଂ ଅପମାନିତ କରିବା ପାଇଁ ପାରିବାରିକ ମଧୁର ସଂପର୍କକୁ ମଧ୍ୟ ସେ ତିକ୍ତ କରିଦେବାକୁ ଚାହେଁ । ତଥାପି ଘଟଣା ଭିତରେ କିଛି ସତ୍ୟାସତ୍ୟକୁ ଦେଖିବାକୁ ପାଇଥିଲେ ଦ୍ୱୈପାୟନ ।

ଜନନୀଙ୍କ ଭିତରେ ଗୋଟାଏ ଅସହାୟ ଅସ୍ଥିର ଭାବକୁ ସେ ଲକ୍ଷ୍ୟ କରିଛନ୍ତି । ମନ ଭିତରର ସେଭଳି ଗୋଟାଏ ଭାବନାର ସ୍ୱାକ୍ଷର ଅନେକବାର ବ୍ୟକ୍ତ ହୋଇପଡ଼ିଛି କଥାବାର୍ତ୍ତା ଛଳରେ । ଜନନୀ ତାଙ୍କୁ ଦୁଇ ପ୍ରକାରେ ଚାହାଁନ୍ତି । ପ୍ରଥମତଃ ପୁରୁବଂଶର ଆଗାମୀ ବଂଶଧରର ସେ ହେବେ ଜନକ । ଦ୍ୱିତୀୟତଃ, ରାଜପୁରୀରେ ସତ୍ୟବତୀ ଯେ ଆଉ ଏକୁଟିଆ ନୁହନ୍ତି, କଥାଟା ଅନ୍ୟମାନଙ୍କୁ ଜଣାଇଦେବା । ଦୁର୍ଦ୍ଦିନରେ ତାଙ୍କ ନିକଟରେ ଠିଆ ହେବାଭଳି ଜଣେ ଅସାଧାରଣ ମଣିଷ ଅଛି, ଯାହାକୁ ସମଗ୍ର ଭାରତବର୍ଷ ଜାଣେ । କୁରୁମାନଙ୍କ ଶତ୍ରୁରାଜ୍ୟ ପାଞ୍ଚାଳ ଏବଂ ଯାଦବ ରାଜ୍ୟଗୁଡ଼ିକ ସହିତ ତାର ସଂଯୋଗ, ସଦ୍‌ଭାବ ଏବଂ ହୃଦ୍ୟତା ତାଙ୍କ ଭଳି ମଣିଷକୁ ଯେ କୌଣସି ପରିସ୍ଥିତିରେ ସ୍ମରଣ କଲା ମାତ୍ରେ ପାଇ ହେବ- ଏଭଳି ଗୋଟିଏ ଧାରଣା ସୃଷ୍ଟି ହୋଇଛି ହସ୍ତିନାପୁର ରାଜନୀତିରେ ।

କ୍ଷେତ୍ରଜପୁତ୍ର ଉତ୍ପାଦନ ଘଟଣାଟି ଯେ ଜନନୀଙ୍କର ଏକ ରାଜନୈତିକ ଚାଲ, ଅମ୍ବିକାର କୂଟ ସଂଦେହ ଭିତରୁ ସେ ଅନୁମାନ କରିପାରିଛନ୍ତି । ବଂଶରକ୍ଷା ନାଁରେ ଭୀଷ୍ମ ଏବଂ ଅନ୍ୟାନ୍ୟ ରାଜକର୍ମଚାରୀଙ୍କ ଆଖିରେ ଧୂଳି ଦେଇ ଛାତି ଫୁଲେଇ ସତ୍ୟବତୀ ଯେଭଳି ସ୍ୱାର୍ଥରକ୍ଷା ପାଇଁ ଅନୁକୂଳ କାର୍ଯ୍ୟ କରିଛନ୍ତି ଅମ୍ବିକା ଆଖିରେ ତାହା ସ୍ପଷ୍ଟ ଭାବେ ଦ୍ୱୈପାୟନ ଦେଖିବାକୁ ପାଇଛନ୍ତି । ବର୍ତ୍ତମାନ ତାଙ୍କୁ ବାରମ୍ବାର ଆମନ୍ତ୍ରଣ କରିବାର ରହସ୍ୟକୁ କିଛି ମାତ୍ରାରେ ବୁଝିପାରିଲେ ସେ । ଗୋଟିଏ ରାଜବଂଶକୁ ସମୂଳେ ପୋଛିଦେଇ ତା'ସ୍ଥାନରେ ଆଉ ଗୋଟିଏ ଗୋଷ୍ଠୀକୁ ଚୁପ୍‌ଚାପ୍ ସ୍ଥାନାନ୍ତରିତ କରି ରାଜନୈତିକ କ୍ଷମତାର ହାତ ବଦଳାଇବାର ଏଇ ଚମତ୍କାର କୌଶଳଟି ଜନନୀଙ୍କର ବିଭ୍ରାନ୍ତି ସୃଷ୍ଟିର ଏକ ଚତୁର କୃତିତ୍ୱରୁ ହିଁ ସମ୍ଭବ ହେଲା । ଚତୁର ଭୀଷ୍ମ ମଧ୍ୟ ଜନନୀଙ୍କର ଏଇ ନିଃଶବ୍ଦ କାର୍ଯ୍ୟକଳାପ ଭିତରେ ସଂଦେହର କୌଣସି ଚିହ୍ନବର୍ଣ୍ଣ ଖୋଜି ପାଇନଥିଲେ; ବରଂ ଅମ୍ବିକାର କଥାଶୁଣି ଭୀଷ୍ମଙ୍କର ଓଲଟି ମନେହେଲା ଅମ୍ବିକା ତାର ଦ୍ୱୈପାୟନଙ୍କ ପ୍ରତି ନାପସନ୍ଦ ଭାବକୁ, ସତ୍ୟବତୀଙ୍କ ବିରୋଧରେ ଅପପ୍ରଚାର କାର୍ଯ୍ୟରେ ଲଗାଇଛି । ଅକସ୍ମାତ୍ ଗୋଟାଏ ଅଦ୍ଭୁତ ହସରେ ତାଙ୍କ ଅଧର ବିସ୍ତାରିତ ହେଇଉଠିଲା । ମନେହେଲା ଏଇ ହସ ତାଙ୍କର ନୁହେଁ, ବିଧାତାଙ୍କର । ଭୀଷ୍ମଙ୍କ ଅଦୃଷ୍ଟ ଯେମିତି ତାଙ୍କ ଅଧରରେ ହସିଉଠିଲା ।

ଦ୍ୱୈପାୟନ ଯେମିତି ତୃତୀୟ ନେତ୍ରରେ ସୁଦୂର ଭବିଷ୍ୟତ୍‌କୁ ଦେଖିଲେ । ଭୀଷ୍ମଙ୍କର ଦ୍ୱିଧା-ସଂକୋଚ-ସଂଶୟ-ଅବିଶ୍ୱାସର ଛିଦ୍ର ଦେଇ ମହାକାଳ ଏକ ଭିନ୍ନ ଇତିହାସ ସୃଷ୍ଟି କରିବା ପାଇଁ ନିଃଶବ୍ଦରେ ଗୋପନ ଭାବେ ପଦାର୍ପଣ କଲା... ସଂଘର୍ଷର କ୍ଷେତ୍ରଟା ତାଙ୍କର ଓ ଅମ୍ବିକାର ତଟଭୂମିକୁ କ୍ରମଶଃ ପ୍ରସାରିତ ହୋଇ ଏକ ବୃହତ୍ ଜଟିଳ ରାଜନୈତିକ ଘୂର୍ଣ୍ଣି ଭିତରେ କେନ୍ଦ୍ରୀଭୂତ ହେବାକୁ ଯାଉଛି....

ଶେଷ ଶୀତର କଅଁଳ ଖରା ସତେ ଯେମିତି ଗୋଟାଏ ଝିମାଝିମା ନିଶାର ମାଦକତା ବିଞ୍ଚି ଦେଇଛି ଚାରିଆଡ଼େ । ତାର ଚୁମ୍ବକରେ ଦ୍ୱୈପାୟନଙ୍କୁ ମଧ୍ୟ ଟାଣି ରଖିଛି । ପାଇନ୍ ଦେବଦାରୁର ଛାଇ ଓ ତା' ଚାରିପାଖ ବୃକ୍ଷଲତାର ଫାଙ୍କରେ ଦିଶୁଥିବା ସଫେଦ ଧଳା ଚାଦର ଭଳି ଟାଣଖରା ତାଙ୍କୁ ଏକ ଅଦ୍ଭୁତ ପୁରୁଷର ସ୍ୱପ୍ନ ଦେଖାଉଥିଲା - ସେ ପୁରୁଷ ସାଧାରଣ ନୁହେଁ, ଅପାପବିଦ୍ଧ, ଦୁର୍ଦ୍ଧର୍ଷ, ସାହସୀ, ବିଶ୍ୱବିଜୟୀ ପୁରୁଷ । ହୁଏତ ସେଇ ମଣିଷଟି ପ୍ରତ୍ୟେକ ମଣିଷର ସ୍ୱପ୍ନ ଭିତରେ ବାସ କରେ । ତଥାପି ପ୍ରତ୍ୟେକ ପ୍ରତୀକ୍ଷା କରନ୍ତି ତାଙ୍କ ପାଇଁ । ଦ୍ୱୈପାୟନଙ୍କ ଭିତରେ ସେଇ ମଣିଷଟିର ଉଦ୍‌ବୋଧନ ପାଇଁ ଜନନୀ ସତ୍ୟବତୀଙ୍କର ମଧ୍ୟ ପ୍ରତୀକ୍ଷା କରିବା ବ୍ୟତୀତ ଅନ୍ୟ ଉପାୟ ଆଉ କ'ଣ ଥିଲା ?

ଅନେକ ସମୟ ଧରି ବାତାୟନ ନିକଟରେ ଅନ୍ୟମନସ୍କ ଭାବେ ବସି ରହିଥିଲେ ଦ୍ୱୈପାୟନ । ଖୁଟ୍-କରି ଗୋଟାଏ ଶବ୍ଦ ହେଲା... ଚମକି ଉଠିଲେ ସେ । ମନକୁ ମନ

ହସିବାକୁ ଯାଇ ଅଟକିଗଲେ । ତଡ଼ିତ୍‌ପଦରେ କକ୍ଷ ଭିତରେ ପ୍ରବେଶ କରି ସତ୍ୟବତୀ ଦ୍ୱାର ବନ୍ଦକରି ଅର୍ଗଳି ଲଗାଇ ଦେଲେ । ଜନନୀଙ୍କୁ ଏଭଳି ସାବଧାନ ହେବା ଦେଖି ଦ୍ୱୈପାୟନଙ୍କର ବିସ୍ମୟର ସୀମା ରହିଲା ନାହିଁ ।

ଅସ୍ଥିର ଭାବେ ସତ୍ୟବତୀ ଥରେ ଦ୍ୱୈପାୟନଙ୍କ ମୁହଁକୁ ଚାହିଁଲେ ଏବଂ ଚିନ୍ତାକଲା ଭଳି କିଛି ସମୟ ଠିଆ ହେଇ ରହିଲେ । ତାପରେ ନିରବତା ଭଙ୍ଗ କରି କହିଲେ, କୃଷ୍ଣ ! ମୋର ଅଶାନ୍ତ ମନର ସମସ୍ତ କଥା ଗୋଟେଇ ଗାଟେଇ କହିବା ସମ୍ଭବପର ହେଉନି । କହିପାରିଥିଲେ ହୁଏତ ସବୁଠୁ ବେଶି ଖୁସି ହେଇପାରନ୍ତି । କିନ୍ତୁ... ଅଟକି ଗଲେ ସେ ଏତିକି କହି । ତାପରେ ଦି'ଥର ଢୋକ ଗିଳି କହିଲେ- ଦୁଇ ଦୁଇଟି ପୁତ୍ର ସନ୍ତାନ ହେଲେ । ସେମାନେ କିନ୍ତୁ ଯେଭଳି ହେବା ଉଚିତ ଥିଲା, ସେଭଳି ହେଲେ ନାହିଁ । ଭାବି ଭାବି ମୁଁ ଅଥୟ ହେଇଗଲିଣି । ବର୍ତ୍ତମାନ, ଯାହାହେଲେ ସବୁକିଛି ଠିକ୍ ଓ ନିରୁପଦ୍ରବ ହେବ, ସେମିତି କିଛି ଗୋଟାଏ ତୁମେ କର । ତୁମ ବ୍ୟତୀତ ଆଉ କାହାଦ୍ୱାରା ଏ କାର୍ଯ୍ୟ ସମ୍ଭବପର ନୁହେଁ ।

— କିନ୍ତୁ ତୁମେ ମୋତେ ବାରମ୍ବାର କାହିଁକି ଚାହୁଁଛ ମା' । ମୁଁ ସନ୍ନ୍ୟାସୀ ।

— ମୁଁ ତୁମକୁ ତୁମ ଆତ୍ମଜ ଭିତରେ ଖୋଜୁଛି ପୁତ୍ର । ଯିଏ ତୁମେ... ସେ କିନ୍ତୁ ତୁମ ଶରୀର ଭିତରେ ନାହିଁ । 'ସେ' ଅଛି ଆଉ ଏକ ଦ୍ୱିତୀୟ ସତ୍ତା ଭିତରେ । ଯିଏ ତୁମେ ନୁହଁ ଅଥଚ ତୁମର ପ୍ରତିରୂପ, ମୁଁ ତାର ସନ୍ଧାନ ପାଇଛି । ସେ ରହିବ ସମସ୍ତଙ୍କ ଭିତରେ ଆଉ ତୁମେ ରହିବ ବାହାରେ... ପ୍ରଚ୍ଛନ୍ନ ଭାବରେ ।

ସତ୍ୟବତୀ ଦ୍ୱୈପାୟନଙ୍କ ଆଖିରେ ନିଜର ନିବିଡ଼ ଦୃଷ୍ଟି ମିଳାଇ ଚାହିଁ ରହିଲେ ବିସ୍ଫାରିତ ନେତ୍ରରେ ।

ମୁଣ୍ଡ ହଲାଇ ଦ୍ୱୈପାୟନ କହିଲେ- ମୁଁ କିଛି ବୁଝିପାରୁନି ମା' । ମୋ ମୁଣ୍ଡ ଭିତରେ କିଛି ପଶୁନି ଏସବୁ ।

କୃଷ୍ଣ ! ରାଜକାର୍ଯ୍ୟ ସଂପାଦନା, ପରିଚାଳନା ଏବଂ ରକ୍ଷଣାବେକ୍ଷଣ ପାଇଁ ଆହୁରି ସୁସ୍ଥ, ସ୍ୱାସ୍ଥ୍ୟବାନ୍, ବୀର୍ଯ୍ୟବାନ୍, ଯୋଗ୍ୟତାସଂପନ୍ନ ପୁତ୍ର ଆବଶ୍ୟକ । ମୁଁ ଧୃତରାଷ୍ଟ୍ର ଏବଂ ପାଣ୍ଡୁ ଉପରେ କୌଣସି ଭରସା କରିପାରୁନି । ଧୃତରାଷ୍ଟ୍ର ଅନ୍ଧ ଏବଂ ପାଣ୍ଡୁ କ୍ଷୀଣକାୟ, କୃଶ । କେତେବେଳେ ଅଛି କେତେବେଳେ ନାହିଁ । ସେଇ ଦୃଷ୍ଟିରୁ କହୁଥିଲି ତୁମେ ଦ୍ୱିତୀୟବାର ଅମ୍ବିକାକୁ ଗ୍ରହଣ କର ।

ଭୂତ ଦେଖିଲା ଭଳି ଆତଙ୍କରେ ଶିହରି ଉଠିଲେ ଦ୍ୱୈପାୟନ । କହିଲେ, ଅସମ୍ଭବ । ତାଠାରୁ ପୁଣିଥରେ ଅପମାନିତ ହେବା ଅଥବା ଅପ୍ରୀତିକର କିଛି ଗୋଟାଏ ଘଟୁ- ମୁଁ ମୋଟେ ଚାହେଁନା ।

ଦ୍ୱୈପାୟନଙ୍କ ଏଭଳି ତେଜୋମୟ ବ୍ୟକ୍ତିତ୍ୱ ଏବଂ ଚେହେରାର ରୂପାନ୍ତର ସତ୍ୟବତୀ କେବେ ଦେଖିନଥିଲେ । ମୁହୂର୍ତ୍ତକ ପାଇଁ ସେ ହତଭମ୍ବ ପାଲଟିଗଲେ । ଶାନ୍ତ ନିରୀହ ପୁତ୍ର ଭିତରୁ ହିଂସ୍ର ବିଷାକ୍ତ ସର୍ପଟିଏ ଫଣା ଉତ୍ତୋଳନ କରି ବାହାରିଆସିଛି । ଅବାକ୍ ହେଇଗଲେ ସତ୍ୟବତୀ । ଚାହିଁରହିଲେ ଆଶ୍ଚର୍ଯ୍ୟ ହୋଇ ।

ସତ୍ୟବତୀଙ୍କ ହାତ ଦ୍ୱୈପାୟନଙ୍କ ମଥା ସ୍ପର୍ଶ କଲା । ଅତ୍ୟନ୍ତ କୋମଳ ଏକାନ୍ତ ସ୍ନେହମୟ ସ୍ପର୍ଶ । ସମଗ୍ର ଶରୀର କମ୍ପି ଉଠିଲା ଦ୍ୱୈପାୟନଙ୍କର । ସତ୍ୟବତୀ ତାଙ୍କ ହାତ ଭିତରେ ଅନୁଭବ କରୁଥିଲେ ସେଇ କମ୍ପନକୁ । ମୁହୂର୍ତ୍ତକର ନିରବତା ପରେ ଧୀର ସ୍ୱରରେ କହିଲେ, ପୁତ୍ର କୃଷ୍ଣ ! ତୁମ ପାଇଁ ମୋର ଅନେକ ଚିନ୍ତା । ବିଶାଳ ପୃଥିବୀ ତୁମକୁ ତା ଆଡ଼କୁ ଟାଣିନେବ । କେତେଆଡୁ କେତେ କାମ, ତୁମେ ସଂଶ୍ଳିଷ୍ଟ ହେଇଯିବ ତା'ଭିତରେ । ମୁଁ ନ ଥିବି ସେତେବେଳକୁ । ତେଣୁ ତୁମପାଇଁ ଗୋଟାଏ ସୁରକ୍ଷିତ ନୀଡ଼ ରଚନା କରିଦେବାପାଇଁ ମୁଁ ଚାହେଁ । ଯାହା ହେବ ତୁମର ନିଜସ୍ୱ ଅଧିକାରଭୁକ୍ତ କ୍ଷେତ୍ର । ଅମ୍ବିକା ତୁମକୁ ସେଇ ନୀଡ଼ ରଚନା କରିବାରେ ସାହାଯ୍ୟ କରିବ ନାହିଁ ମୁଁ ଜାଣେ । ତଥାପି ତୁମକୁ ମୁଁ ତା ଗୃହକୁ ପ୍ରେରଣ କରୁଛି । ଏହା ମଧ୍ୟ ଜାଣେ କୌଣସି ପ୍ରତିକୂଳ ପରିସ୍ଥିତିରେ ତୁମେ ପଡ଼ିବନି । କାହିଁକି ଜାଣ ? ଅମ୍ବିକା ତାର ଶୂଦ୍ରାଣୀ ଦାସୀକୁ ହିଁ ନିୟୋଗ କରିବ, ତା' ପରିବର୍ତ୍ତେ । ଅବିମିଶ୍ର ଅନାର୍ଯ୍ୟ ରକ୍ତର ସେଇ ଆତ୍ମଜଟି ତୁମ ଭବିଷ୍ୟତ୍ ସ୍ୱପ୍ନର ଅବଲମ୍ବନ, ଆଶ୍ରୟ ହେବ ।

କେମିତି ବିଭ୍ରାନ୍ତ ହେଇପଡ଼ିଲେ ଦ୍ୱୈପାୟନ । ମନ୍ତ୍ରମୁଗ୍ଧ ଭଳି ଚାହିଁରହିଲେ ସତ୍ୟବତୀଙ୍କ ମୁଖମଣ୍ଡଳକୁ । ଭିତରେ ଭିତରେ ଯେଉଁ ଶକ୍ତ ଭୂମି ତିଆରି ହେଇ ଆସୁଥିଲା, ତାହା ପୁଣି ବନ୍ୟାଜଳରେ କାଦୁଅମାଟି ପାଲଟିଗଲା । ଖସଡ଼ା । ଭୀଷଣ ଖସଡ଼ା । ତା ଉପରେ ଦମ୍ଭରେ ଠିଆ ହେଇପାରୁନଥିଲେ ଦ୍ୱୈପାୟନ ।

ପାଦ୍ୟ ଅର୍ଘ୍ୟର ଥାଳି ନେଇ ଯିଏ ସମ୍ମୁଖରେ ଠିଆ ହେଇଥିଲା, ସେ ଅମ୍ବିକା ନୁହେଁ, ଅମ୍ବିକାର ସୁନ୍ଦରୀ ରୂପସୀ ଆଉ ଜଣେ ଶୂଦ୍ରାଣୀ ଦାସୀ । ବିସ୍ମୟର ପରିସୀମା ରହିଲାନି ଦ୍ୱୈପାୟନଙ୍କର । ଅମ୍ବିକାର ନିଷ୍ଠୁର ପ୍ରତ୍ୟାଖ୍ୟାନ କ୍ଷଣିକ ପାଇଁ ହେଲେ ମଧ୍ୟ ତାଙ୍କ ଅନ୍ତରକୁ ଭୟଙ୍କର ଭାବେ ବିଦ୍ଧ କଲା । ଆର୍ଯ୍ୟର ତେଜ, ଅହଂକାର, ଘୃଣା, ବର୍ଣ୍ଣବିଦ୍ୱେଷ, ଦ୍ୱୈପାୟନଙ୍କ ଛାତି ଭିତରେ ନିଆଁ ଜାଳି ଦେଇଥିଲା । ତାଙ୍କର ସମସ୍ତ ଶରୀରର ଶିରାପ୍ରଶିରାରେ ଯେମିତି ଉତ୍ତପ୍ତ ଲାର୍ଭା ପ୍ରବାହିତ ହେବାକୁ ଲାଗିଲା ।

ଶୂଦ୍ରାଣୀ ଦାସୀର ଭକ୍ତିପୂତ ବିନମ୍ର ସେବାରେ ଦ୍ୱୈପାୟନଙ୍କ ଶରୀରର ସମସ୍ତ ଉତ୍ତାପ ଶୀତଳ ପଡ଼ିଗଲା । ଦେହ ସତେକି ବର୍ଷା ଜଳରେ ସିକ୍ତ ହେଇଉଠିଲା । ଏକ ରହସ୍ୟମୟ ଆନନ୍ଦର ଏଭଳି ଏକ ଅଦ୍ଭୁତ ଅନୁଭୂତିର ସ୍ୱାଦ ସେ ଆଗରୁ କେବେ ଅନୁଭବ କରିନଥିଲେ ?

କି ଆଶ୍ଚର୍ଯ୍ୟ ସ୍ନେହ ଶାରୀରିକ ସୁଖାନୁଭୂତି ! ଛାତିରେ ତାଙ୍କର ଝରଣାର କଲ୍ଲୋଳ । ରକ୍ତରେ ତୋଫାନ୍‌ର ସୂଚନା । କୋଉଠୁ ଯେ ଗଳିତ ଲାର୍ଭା ଗଡ଼ି ଆସିଲା ଛାତି ଭିତରକୁ କେଜାଣି । ନିଃଶ୍ୱାସ ପ୍ରଶ୍ୱାସ ଖର ହେଲା । ଗରମ ଲାଗିଲା ଦେହମନ । ବ୍ରହ୍ମଚର୍ଯ୍ୟର କଠୋରତା ଭିତରେ ଯାକୁ ସେ କେବେ ଫେରେଇ ଦେଇପାରିବେନି ରିକ୍ତ କରି ବରଂ ନିଜର ସମସ୍ତ ସତ୍ତା ଦେଇ ତାକୁ ଅନୁଭବ କରିବେ । ତାଙ୍କ ରୂପ ଆଉ ଗାତ୍ରବର୍ଣ୍ଣ ସଂପର୍କରେ କୌଣସି ଦ୍ୱିଧା ନାହିଁ ଏଠି – ଏକ ଅନାବିଳ ଆନନ୍ଦବୋଧ ମଧ୍ୟରେ ଅବଗାହନ କଲେ ଦ୍ୱୈପାୟନ ।

ମୁଗ୍ଧ ଦୃଷ୍ଟିରେ ଶୂଦ୍ରାଣୀର ପଦ୍ମଭଳି ସ୍ନିଗ୍ଧ ମନୋରମ ଆଖିଦୁଇଟିକୁ ଚାହିଁ ଅବାକ୍ ହୋଇଗଲେ ସେ । କି ଅପରୂପ ମଧୁର ଦୃଷ୍ଟି ସତରେ !

ସମସ୍ତ ପ୍ରାଣମନ ନିବେଦନ କରି ଶୂଦ୍ରାଣୀ ଯେମିତି ତାଙ୍କୁ ପ୍ରାର୍ଥନା କରୁଥିଲା । ଦ୍ୱୈପାୟନଙ୍କ ଭିତରଟା ଆଶା ଆଉ ଆନନ୍ଦର ଉଲ୍ଲାସରେ ଶିହରିତ ହେଲା । ଶରୀରରେ ଏକ ଅପ୍ରତିରୋଧ ଆନ୍ଦୋଳନ ତାଙ୍କୁ ଅସ୍ଥିର କରି ପକାଉଥିଲା । ପବନ ମୁହଁରେ ବିପନ୍ନ ପତ୍ରଟିଏ ଭଳି ସେ ଉତ୍ତେଜନାରେ ଥରି ଉଠୁଥିଲେ । ଦୁଇ ହାତ ପ୍ରସାରିତ କରି ଛାତି ଉପରକୁ ଟାଣିନେଲେ ସେ । ସର୍ବାଙ୍ଗରେ ତାକୁ ଅନୁଭବ କଲେ । ମନ ଭିତରେ ବି ତାର ସ୍ପର୍ଶ ଲାଗିଲା । ଅଧରରେ ଅଧର ରଖିଲେ ଦ୍ୱୈପାୟନ । ଅନାବୃତ୍ତ ବୁକୁ ଉପରେ ମୁହଁ ରଖି ନିଶ୍ଚିନ୍ତ ହେଲେ ସେ । ଶରୀର ଶିଥିଳ ହୋଇ ଆସୁଥିଲା । ଶୂଦ୍ରାଣୀ କେଶର ସୁଗନ୍ଧିତ ସୁରଭିରେ ନିଃଶ୍ୱାସ ତାଙ୍କର ଭରି ଉଠୁଥିଲା । ମଧୁର ସ୍ପର୍ଶରେ ଓଷ୍ଠାଧର ଖୋଲିଗଲା । ପାଗଳ ହୋଇ ଉଠିଲା ଉଭୟ ଦେହ ମନ । ସତେଯେମିତି ଗୀତର ସୁମଧୁର ଶାଶ୍ୱତ ଝଙ୍କାର ତୋଳୁଥିଲା ତାର ସର୍ବାଙ୍ଗ । ଅନନ୍ତ ସମୟ ପଡ଼ିଗଲା ଏମିତି । ଦ୍ୱୈପାୟନଙ୍କ ଶରୀରରେ ଘୁଙ୍ଗୁରର ଶବ୍ଦ ଶୁଣିବାକୁ ପାଇଲେ । ନାଚିଉଠିଲେ ସର୍ବାଙ୍ଗ ଚାରିପଟେ ତାଙ୍କର ପ୍ରଜାପତିମାନେ । ଡେଣା ମେଲିଦେଲେ ଉଡ଼ିବା ପାଇଁ । ଶୂଦ୍ରାଣୀର ଶରୀର ଯେମିତି ଅନନ୍ତ ଆକାଶ । ମନ ଜ୍ୟୋସ୍ନାଭଳି । ଦ୍ୱୈପାୟନ ସେହି ଜ୍ୟୋସ୍ନାପାନ କରି ଅନନ୍ତ ଆକାଶର ଗଙ୍ଗାରେ ଭାସିବାକୁ ଲାଗିଲେ । ତାଙ୍କ ଶରୀର 'ନୀଳଅମ୍ବର ଚୁମ୍ବନେ ନତ' ଭଳି ସ୍ଥିର ହୋଇ ରହିଲା ଶୂଦ୍ରାଣୀର ଶରୀର ଉପରେ । କିଏ ଜାଣେ କେତେ ସମୟ ଧରି ?

ସେଦିନ ରାତିରେ ଦ୍ୱୈପାୟନଙ୍କ ଆଖିକୁ ନିଦ ଆସିନଥିଲା । ସମଗ୍ର ରାତିଟା ସେ କେବଳ ନିଜ ସହିତ କଥା କହିଥିଲେ । ଦ୍ୱୈପାୟନଙ୍କ ଗଭୀରରେ, ଖୁବ୍ ଗଭୀରରେ ଏକ ଜନ୍ମାନ୍ତର ଭଳି ଅଥଚ ଯୁକ୍ତ ସେହି ପରମାଶ୍ଚର୍ଯ୍ୟ ଅନୁଭୂତିଟା ନୂପୁର ଭଳି ଗୁଞ୍ଜରି ଉଠୁଥିଲା । ସମଗ୍ର ଆକାଶର ଛାତିରେ ବିଜୁଳିର ଛଟା ଭଳି ତାଙ୍କ ଶରୀର ଚମକିତ ହୋଇ ଉଠୁଥିଲା ସେଇ ଅପୂର୍ବ ସୁଖ ହର୍ଷର ଗନ୍ଧୋଲ୍ଲାସରେ । କିଏ ଏହି ରମଣୀ ? ନିଜକୁ ନିଜେ ପ୍ରଶ୍ନ କଲେ ଦ୍ୱୈପାୟନ । ଅନ୍ତର ଭିତରୁ କିଏ ଜବାବ ଦେଲା; ଅମ୍ବିକାର ନିୟତି । କୁପିତ ଅଦୃଷ୍ଟ ଛଳ

କୌଶଳ କରି ସତେଯେମିତି ଦ୍ୱୈପାୟନଙ୍କ ନିକଟକୁ ତାଙ୍କୁ ପଠାଇଥିଲା । କିନ୍ତୁ ତାର ଉଦ୍ଦେଶ୍ୟ କଣ ? ସତ୍ୟବତୀ ମଧ ତାଙ୍କୁ କି ପ୍ରକାର ଇଙ୍ଗିତ ଦେଲେ ?

ଅକସ୍ମାତ୍ ଦ୍ୱୈପାୟନଙ୍କ ମନରେ ଗୋଟାଏ ଭାବ ଉଦୟ ହେଲା । ସିଏ ନିଜେ ବି ତ ଶୂଦ୍ରାଣୀ ମା'ର ସନ୍ତାନ । ଶୂଦ୍ରର ସେବାରେ ଓ ଆତ୍ମତ୍ୟାଗରେ ମଣିଷର କୀର୍ତ୍ତି ଓ ସଭ୍ୟତାର ସୌଧ ଗଢ଼ିଉଠିଛି । ଶୂଦ୍ର ପୃଥିବୀରେ ସେବାର ପ୍ରତୀକ । ସେବାର ଶକ୍ତିରେ ଶୂଦ୍ରଜାତି ଏଇ ସମଗ୍ର ବିଶ୍ୱକୁ ଧାରଣ କରି ରଖିଛି । ଶୂଦ୍ରର ନିରହଂକାର ଆଚରଣ, ତ୍ୟାଗ, ସହିଷ୍ଣୁତା, କର୍ତ୍ତବ୍ୟ ଏବଂ ନିଷ୍ଠାଦ୍ୱାରା ସେମାନେ ପୃଥିବୀରେ ଅଧିକାର ପ୍ରତିଷ୍ଠା ପାଇଁ କାମ କରି ଚାଲିଛନ୍ତି । ଅଦୃଶ୍ୟ ଦେବତା ହୁଏତ ସେହି କାରଣରୁ ଏହି ଉଭୟଙ୍କ ମିଳନରେ ଏକ ନୂତନ କର୍ମଯଜ୍ଞର ଅନୁକୂଳ ପରିବେଶ ସୃଷ୍ଟି କରିବେ ।

ଶୂଦ୍ରାଣୀର ଗର୍ଭଜାତ ଏହି ସନ୍ତାନ କୌଣସି ଦିନ ସିଂହାସନ ଗ୍ରହଣ କରିବାର ଅଧିକାର ପାଇବନି । କିନ୍ତୁ ମାତା ସତ୍ୟବତୀଙ୍କ ଆନୁକୂଲ୍ୟରେ ଏବଂ ତାଙ୍କ ଔରସ ଜାତ ସନ୍ତାନ ଭାବେ ହସ୍ତିନାପୁରର ରାଜସଭାରେ ଓ ପରିବାରରେ ତାର ଗୁରୁତ୍ୱ ଅବଶ୍ୟ ରହିବ । ଏହି ପୁତ୍ର ଭବିଷ୍ୟତ୍‌ରେ ଯେମିତି ତାଙ୍କର ଦକ୍ଷିଣ ହସ୍ତ ଏବଂ ସହାୟ ହେବ, ଜନନୀ ସେଇଭଳି ଉପାୟ ଚିନ୍ତା କରି ତାଙ୍କୁ ପ୍ରଦାନ କରିଛନ୍ତି । ଏହି ସନ୍ତାନ ତାଙ୍କର ଭବିଷ୍ୟତ୍‌ର ସ୍ୱପ୍ନ, ଆଶ୍ରୟ ଏବଂ ଅବଲମ୍ବନ ହେବ, ଏଥିରେ ଦ୍ୱୈପାୟନଙ୍କର ସଂଦେହ ନ ଥିଲା । ଏଭଳି ଭାବରେ ହିଁ ସେ ଭାବିବାକୁ ଲାଗିଲେ । କିନ୍ତୁ କୌଣସି ସ୍ୱଷ୍ଟ ଛବି ତାଙ୍କ ଆଖି ଆଗରେ ଫୁଟି ଉଠିଲାନି ମଧ । ରାଜଅନ୍ତଃପୁରରେ ଦ୍ୱୈପାୟନଙ୍କ ଔରସଜାତ ପୁତ୍ରମାନେ ବଡ଼ ହେବାକୁ ଲାଗିଲେ । ବିଦୂର ଦାସୀପୁତ୍ର ହେଲେ ମଧ ଦ୍ୱୈପାୟନଙ୍କ ପୁତ୍ର । ସେଥିପାଇଁ ସତ୍ୟବତୀ ତାଙ୍କୁ ଧୃତରାଷ୍ଟ୍ର ଓ ପାଣ୍ଡୁଙ୍କ ଭଳି ସମାନ ମର୍ଯ୍ୟାଦା ଦେଇଥିଲେ । ସେ ମଧ କୁରୁବଂଶର ଜଣେ ଥିଲେ ।

ଦ୍ୱୈପାୟନଙ୍କ ତିନିପୁତ୍ର ମଧରେ ବିଦୂରଙ୍କ ସ୍ୱଭାବ ଖୁବ ନମ୍ର ଓ ମଧୁର । ବିଦୂରଙ୍କ ନମ୍ର ଆଚରଣ, ମଧୁର ବଚନ, ଶାନ୍ତ ଓ ଶିଷ୍ଟ ବ୍ୟବହାରରେ ସମସ୍ତେ ମୁଗ୍ଧ । ସମସ୍ତେ ତାଙ୍କୁ ଭଲ ପା'ନ୍ତି । ସ୍ନେହ କରନ୍ତି । ଦେଖିବାକୁ ମଧ ସୁନ୍ଦର 'ସୁପୁରୁଷ' । ଲମ୍ବା, ଚମତ୍କାର ଚେହେରା । ଆଖିର ଦୃଷ୍ଟି ନିରୀହ ଏବଂ ମୁହଁରେ ବିନୟ ଭାବ । ମଣିଷର ସ୍ନେହ, ପ୍ରେମ, ଶ୍ରଦ୍ଧାକୁ ଆକର୍ଷଣ କଲାଭଳି ଗୋଟିଏ ଅଦ୍ଭୁତ ଶକ୍ତି ତାଙ୍କର ଅଛି । ମଣିଷ ହିସାବରେ ସେ ଖୁବ୍ ସହଜ, ସରଳ, ସତ୍, ଅକପଟ ଏବଂ ଧାର୍ମିକ । ଅନ୍ଧ ଧୃତରାଷ୍ଟ୍ରଙ୍କ ପ୍ରତି ତାଙ୍କର ଦରଦ, ସହାନୁଭୂତି, ସମବେଦନା ଏତେ ଗଭୀର ଯେ, ଧୃତରାଷ୍ଟ୍ର ବିଦୂର କହିଲେ ଅଜ୍ଞାନ । ବିଦୂର ବ୍ୟତୀତ ମୁହୂର୍ତ୍ତେଟିଏ ଚଳିବା ତାଙ୍କ ପକ୍ଷରେ କଷ୍ଟକର । ସେ ଅନ୍ଧର ଲଉଡ଼ି । ତାଙ୍କ ନିକଟରେ ଧୃତରାଷ୍ଟ୍ର ନିଜକୁ ଉନ୍ମୋଚନ କରିବାରେ କୁଣ୍ଠା ପ୍ରକାଶ କରନ୍ତି । ବିଦୂର ଧୃତରାଷ୍ଟ୍ରଙ୍କର ବଡ଼ ବନ୍ଧୁ ଓ ସହାୟ ।

ଧୃତରାଷ୍ଟ୍ରଙ୍କର ଅତ୍ୟଧିକ ବିଦୂର-ନିର୍ଭରତା ଭୀଷ୍ମଙ୍କୁ ଚିନ୍ତାଗ୍ରସ୍ତ କରି ଦେଉଥିଲା । ନିଷ୍ପାପ ବିଦୂରକୁ ନେଇ ବେଳେ ବେଳେ ତାଙ୍କ ମନରେ ସଂଦେହ ଜାତ ହେଉଥିଲା । ଯଦିଓ ଏସବୁର ମାନେ କିଛି ନ ଥିଲା । ତଥାପି ମନର ଗଭୀରତମ ପ୍ରଦେଶରେ ଭାବନାର ଏଇ ଢେଉ କାହିଁକି ଉଠେ ତାର ଆଦିଅନ୍ତ ଅନୁସଂଧାନ ପାଇଁ ଭୀଷ୍ମ ପ୍ରବୃତ୍ତ ହେଲେ । ଏକୁଟିଆ ବସି ନିଜ ଅଭ୍ୟନ୍ତରରେ ଦ୍ୱୈପାୟନ ଓ ବିଦୂରକୁ ସେ ଏକାଠି ନିରୀକ୍ଷଣ କଲେ ଗଭୀର ଭାବେ ।

ଦ୍ୱୈପାୟନଙ୍କ ଅପତ୍ୟ ସ୍ନେହ ବିଦୂରଙ୍କ ଉପରେ ସବୁଠୁ ଅଧିକ ଥିଲା । ଧୃତରାଷ୍ଟ୍ର, ପାଣ୍ଡୁଙ୍କ ତୁଳନାରେ ବିଦୂର ହିଁ ତାଙ୍କର ଅତି ପ୍ରିୟ ଆପଣାର ମନେ ହେଉଥିଲେ । କାହିଁକି ? ଏହି ବାତ୍ସଲ୍ୟମମତା କଣ ଦ୍ୱୈପାୟନଙ୍କ କୌଣସି ସ୍ୱାର୍ଥବୋଧରୁ ଉଦ୍ଭୂତ ? ନା, ଏଇଟା ତାଙ୍କର ରକ୍ତଗତ ଟାଣ ! ବିଦୂର ସହିତ ତାଙ୍କର ରକ୍ତଗତ ବିଶୁଦ୍ଧତାର ସଂପର୍କ ଘନିଷ୍ଠ । ତାହାହିଁ ହୁଏତ ଧୃତରାଷ୍ଟ୍ର, ପାଣ୍ଡୁଙ୍କ ଅପେକ୍ଷା ବିଦୂର ସହିତ ବେଶି ମାତ୍ରାରେ ସେ ଐକାନ୍ତିକତା ଅନୁଭବ କରେ, ଆପଣାର ଭାବେ । ଏହା ମଧ୍ୟ ପ୍ରକୃତିର ନିୟମ । ଏହାକୁ ଅକାରଣରେ ସଂଦେହ ଚକ୍ଷୁରେ ଦେଖିଲେ ନିର୍ଦ୍ଦୋଷ ବିଦୂର ହିଁ ଅପରାଧୀ ମନେହେବ । ତାକୁ ହିଁ ଦୋଷୀ କରାଯିବ । ସୁତରାଂ ଏପ୍ରକାର ଭୁଲ କରିବାଟା ତାଙ୍କ ପକ୍ଷରେ ମୋଟେ ଉଚିତ ନୁହେଁ ବୋଲି ଭୀଷ୍ମ ଚିନ୍ତା କଲେ । କିନ୍ତୁ ଭୀଷ୍ମଙ୍କର ମନର ସଂଦେହ ଏକାବେଳକେ ଭୁଲ ନ ଥିଲା, ନିର୍ମଳ ନ ଥିଲା, ଅନ୍ତରର ଗଭୀରତମ ପ୍ରଦେଶରେ କୋଉଠି ଗୋଟିଏ ଅଶୁଭ ସଂକେତର ସୂଚନା ସେ ଯେମିତି ପାଉଥିଲେ । ତାଙ୍କର ସ୍ପର୍ଶକାତର ମନ ଏଥିପାଇଁ ବ୍ୟସ୍ତ ହେଇ ପଡୁଥିଲା । ସେ କଷ୍ଟ ପାଉଥିଲେ । ମନରେ ବହୁବିଧ ଚିନ୍ତାର ମିଶ୍ର ପ୍ରତିକ୍ରିୟା ଗତିବାନ-ତୀର ଭଳି ଏ ପାଖ ସେ ପାଖ ହେଉଥିଲା । ସହସା ତା ଭିତରୁ ତୀରଟିଏ ଆସି ଆମୂଳ ବିଦ୍ଧ ହୋଇଗଲା ତାଙ୍କ ଛାତି ଭିତରେ । ଧୀବର ବଂଶରେ ସତ୍ୟବତୀଙ୍କ ମାତୃ ପରିଚୟ ଦେଇ କୃଷ୍ଣ ଦ୍ୱୈପାୟନଙ୍କର ଧୀବର-ପଲ୍ଲୀରେ ଜନ୍ମ । ସେ ଅନାର୍ଯ୍ୟ ଏବଂ ନିଜେ ସେ ଆର୍ଯ୍ୟ ରକ୍ତର ସନ୍ତାନ, ଆର୍ଯ୍ୟ । ତଥାପି ଅଦୃଷ୍ଟର ଖେଳରେ ସେ ଦୁହେଁ ପରସ୍ପରର ଭାଇ । ସେମାନଙ୍କର ଗୋଷ୍ଠୀ, ବଂଶ ଓ ରକ୍ତ ଭିନ୍ନ, ଅଲଗା । ପିତାମାତା ମଧ୍ୟ ଏକ ନୁହନ୍ତି । ତଥାପି ଏକ ଅଦ୍ଭୁତ ସଂପର୍କ ନେଇ ବେଦୀ ପାର୍ଶ୍ୱର ମଙ୍ଗଳ ବୃକ୍ଷ ଭଳି ଦୁହେଁ ଠିଆ ହେଇଛନ୍ତି ଅଲଗା ଅଲଗା । ଏ ପ୍ରକାର ଚିନ୍ତା ହଠାତ୍ ଭୀଷ୍ମଙ୍କ ମନରେ ବିଦ୍ୟୁତ୍‌ର ତରଙ୍ଗ ଖେଳେଇ ଦେଲା । ମନର ଅଭ୍ୟନ୍ତରରେ କୋଉଠି ଯେମିତି ସେ ଦ୍ୱୈପାୟନଙ୍କୁ ପ୍ରତିଦ୍ୱନ୍ଦ୍ୱୀ ବୋଲି ମନେକଲେ । ପ୍ରତିଦ୍ୱନ୍ଦ୍ୱୀର ରୂପଟାକୁ ଦେଖିବାକୁ ପାଇଲେ ସତେକି ।

ଅଦୃଷ୍ଟର ସହାୟତାରେ ଋଷି ଦ୍ୱୈପାୟନଙ୍କୁ ନେଇ ସେ ଏକ ସୁଦୂରପ୍ରସାରୀ ପରିକଳ୍ପନାଟିଏ ସଂରଚନା କଲେ । ଋଷିଙ୍କର କ୍ଷୁରଧାର ସଦୃଶ କୂଟ ରାଜନୈତିକ ପ୍ରଜ୍ଞା

ନିକଟରେ ତାଙ୍କର ଅସାଧାରଣ ରାଜନୈତିକ ପ୍ରଜ୍ଞା ଯେମିତି ହାର ମାନି ଯାଉଥିଲା । ପରିକଳ୍ପନାର ରାଜନୈତିକ ରୂପ କେବେହେଲେ ଦୃଷ୍ଟିଗ୍ରାହ୍ୟ ନୁହେଁ, ତେବେ ଦ୍ୱୈପାୟନଙ୍କ କର୍ମଧାରା ଏବଂ ବିଧାତାର ଆନୁକୂଲ୍ୟ ପ୍ରତି ଦୃଷ୍ଟି ରଖି ଭୀଷ୍ମ ତାଙ୍କର ସୁଦୂରପ୍ରସାରୀ ପରିକଳ୍ପନାର ରୂପରେଖକୁ ଯେମିତି ଅନୁମାନ କରିପାରୁଥିଲେ । ଦ୍ୱୈପାୟନ ଗୋଟିଏ ନୂତନ ବଂଶଧାରା ସୃଷ୍ଟି କରି ସୁପରିକଳ୍ପିତ ଭାବେ ରାଜନୈତିକ କ୍ଷମତାକୁ ଆର୍ଯ୍ୟମାନଙ୍କ ହାତରୁ ଛଡ଼େଇ ନେଇ ସେମାନଙ୍କ ହାତରେ ଟେକି ଦେବାର ଏକ ଉଦ୍ଦେଶ୍ୟ ପୋଷଣ କରିଛନ୍ତି । ଏହି କାର୍ଯ୍ୟ ସମ୍ପନ୍ନ କରିବା ପାଇଁ ତାଙ୍କୁ ଦୀର୍ଘକାଳ ଲାଗିବ । ତଥାପି ସମୟର ହିସାବକୁ ଏହି କ୍ଷେତ୍ରରେ ନିହାତି ନଗଣ୍ୟ ଭାବେ ଗ୍ରହଣ କରିଛନ୍ତି ଦ୍ୱୈପାୟନ । ଯେଉଁ ନୂତନ ପ୍ରଜାତିକୁ ସୃଷ୍ଟି କରିଛନ୍ତି - ତାର ଜନକ ଭାବେ ସେ ତାର ପୂର୍ଣ୍ଣ ବିକାଶକୁ ଦୃଷ୍ଟି ପଥରେ ରଖି, ଯେମିତି ଧୀରେ ଧୀରେ ପରିକଳ୍ପନାଟିକୁ ଲକ୍ଷ୍ୟ ପୂରଣ ଆଡ଼କୁ ନେଇ ଯାଉଛନ୍ତି । ଏଇ କାର୍ଯ୍ୟରେ ଅଦୃଷ୍ଟ ବିଧାତା ହିଁ ତାଙ୍କର ସହାୟ । ତେଣୁ ଦ୍ୱୈପାୟନଙ୍କ ନିର୍ଭୁଲ ପଦକ୍ଷେପରେ ଆଗକୁ କୌଣସି ପ୍ରକାର ପ୍ରତିବନ୍ଧକ ସୃଷ୍ଟି ହେବାର ଆଶଙ୍କା ନ ଥିଲା । ଗୋଟିଏ ଗୋଟିଏ ପର୍ଯ୍ୟାୟର କାର୍ଯ୍ୟ ଶେଷରେ ତାର ଫଳାଫଳ ବିଚାର କରି ସୁଦ୍ଧା କୌଣସି ବିଷୟରେ ଆଗତୁରା କିଛି ବି ଚିନ୍ତା କରି ହେଉନଥିଲା । କେତେବେଳେ ଗୋଟିଏ ଦିଗରୁ କିଛି ଟିକିଏ ଭାବିବା, ପୁଣି କେତେବେଳେ ଅନ୍ୟ ଦିଗରୁ ଅନ୍ୟ ପ୍ରସଙ୍ଗକୁ ଆଧାର କରି ଆଉ କିଛି ଭାବିବା ବ୍ୟତୀତ ଆଉ କିଛି କରି ହେଉନଥିଲା । ସ୍ପଷ୍ଟ ଭାବରେ କୌଣସି ରୂପ ମନ ଭିତରେ ରେଖାପାତ କରୁନଥିଲା । ମୁଣ୍ଡ ଭିତରେ ଶରତର ଖଣ୍ଡ ଖଣ୍ଡ ମେଘ ଭଳି କେବଳ ଅସଂଖ୍ୟ କଳ୍ପନା ଭାସିଯାଉଥିଲା ।

ଏଣୁତେଣୁ ହଜାରେ ଚିନ୍ତା ଭୀଷ୍ମଙ୍କ ମୁଣ୍ଡ ଭିତରେ ଜଟିଳ ଆକାର ଧାରଣ କରୁଥିଲା । ଦ୍ୱୈପାୟନଙ୍କ ଔରସଜାତ ସନ୍ତାନମାନଙ୍କ କଥା ସେ କିଛି ସମୟ ଭାବିଲେ । ଦ୍ୱୈପାୟନଙ୍କ ପୁତ୍ର ଧୃତରାଷ୍ଟ୍ର, ପାଣ୍ଡୁ ଓ ବିଦୂର ତିନିଜଣ । ଭାବିଲା ବେଳକୁ ଶରୀର କଣ୍ଟକିତ ହେଇଯାଉଥିଲା ସତ; କିନ୍ତୁ ଦ୍ୱୈପାୟନଙ୍କ ନିଜର ବୋଲି କୌଣସି ସନ୍ତାନ ନାହାନ୍ତି । ସେ ଅମ୍ବିକା ଅମ୍ବାଳିକା ଏବଂ ଶୁଦ୍ରାଣୀ ଗର୍ଭରେ ନିଜର ସନ୍ତାନ ଉତ୍ପାଦନ କରି ନାହାନ୍ତି । ବିଚିତ୍ରବୀର୍ଯ୍ୟଙ୍କ ସନ୍ତାନ ହିଁ ତାଙ୍କ ମାଧ୍ୟମରେ ସୃଷ୍ଟି ହେଇଛି ମାତ୍ର । କାର୍ଯ୍ୟତଃ ଦ୍ୱୈପାୟନଙ୍କ ଔରସରେ ଯେଉଁମାନେ ଜନ୍ମ ନେଲେ, ସେମାନେ କୌଣସି ବୃହତ୍ତର ଜଟିଳ ସୃଷ୍ଟି ଲୀଳାର ଫସଲ । ଧୃତରାଷ୍ଟ୍ର, ପାଣ୍ଡୁ, ବିଦୂର ପିତୃ ପରିଚୟରେ ଦ୍ୱୈପାୟନଙ୍କର କୌଣସି ନାମ ନାହିଁ । ଦ୍ୱୈପାୟନ କେବଳ ସେମାନଙ୍କର ସ୍ରଷ୍ଟା । ଆଉ ସେ ନିଜେ ଅଭିଭାବକ, ନିରାପତ୍ତାରକ୍ଷୀ ଏବଂ ପ୍ରତିପୋଷକ । ଉଭୟେ ପରସ୍ପରର ପରିପୂରକ ହୋଇ ଗୋଟିଏ ନୂଆ ବଂଶଧାରାକୁ ପରିପାଳନ କରୁଛନ୍ତି ମାତ୍ର ।

ଏକୁଟିଆ ନିର୍ଜନରେ ବସି ଭୀଷ୍ମ ବର୍ତ୍ତମାନ ପରିସ୍ଥିତିରେ କିଏ ସିଂହାସନରେ ବସିବ, ସେକଥା ଚିନ୍ତା କରିବାକୁ ଯାଇ ତାଙ୍କର ମନେହେଲା, ମଣିଷ କେତେଗୁଡ଼ିଏ ଆକାଂକ୍ଷାର ସମଷ୍ଟିମାତ୍ର ନୁହେଁ । ଈଶ୍ୱର ସେମାନଙ୍କ ଭିତରେ ଅନ୍ୟ ଏକ ସମ୍ଭାବନାର ବୀଜକୁ ଅଙ୍କୁରିତ କରାଏ । ଦ୍ୱୈପାୟନଙ୍କ ଏଇ ବଂଶଧାରା ହୁଏତ ବିଧାତାର ସେଇ ଅଦ୍ଭୁତ ଖିଆଲ । ଏଇ ଉପଲବ୍ଧି ପରେ ତାଙ୍କ ହୃଦୟ କିଛିଟା ଶାନ୍ତ ହେଲା । ମନ ମଧ୍ୟ କିଛି ମାତ୍ରାରେ ପ୍ରସନ୍ନ ହେଲା ।

ଆଖି ସାମ୍ନାରେ ଭୀଷ୍ମ ଯମୁନାର ରୂପକୁ ଦେଖୁଥିଲେ । ଯମୁନାର ଆର ପାଖଟା କାଂଶଫୁଲରେ ଧଳା ଦିଶୁଥିଲା । ଶରତର ଆକାଶ ନୀଳ, ଧଳା ମେଘଖଣ୍ଡ ଆକାଶ ଛାତିକୁ ଛୁଇଁ ଉଡ଼ିଯାଉଥିଲା ଗୋଟିଏ ପରେ ଗୋଟିଏ । ମେଘର ଗତିରେ ଥିଲା ଚଞ୍ଚଳତା । ଉଦାସ ଦୃଷ୍ଟିରେ ଭୀଷ୍ମ ଚାହିଁରହିଥିଲେ ସେଇ ଆଡ଼କୁ ଅନେକ ସମୟ ଧରି । ପ୍ରକୃତିର ସ୍ନିଗ୍ଧତା ଭିତରେ ଉତ୍ତାପ ଧୀରେ ଧୀରେ ଶୀତଳ ହେଇ ଆସିଲା । ମନଗଢ଼ା କ୍ଷତ ଓ ଯନ୍ତ୍ରଣା କ୍ରମଶଃ ଭୁଲି ହେଇଗଲା । ତଥାପି କୋଉଠି ଗୋଟିଏ କେଁର ଅସ୍ୱସ୍ତି ରହି ମଝିରେ ମଝିରେ ତାଙ୍କ ମୁଣ୍ଡଟାକୁ ଭାରାକ୍ରାନ୍ତ କରିପକାଉଥିଲା । ଦୁଇ ହାତରେ ସେ ମୁଣ୍ଡକୁ ଚାପି ଧରିଥିଲେ ।

ଦ୍ୱୈପାୟନଙ୍କ ମନର ନିଆଁ କିନ୍ତୁ ଲିଭୁ ନ ଥିଲା । ଯେତେଦିନ ଗଡ଼ିଯାଉଥିଲା, ସେତିକି ମାତ୍ରାରେ ଅମ୍ବିକାର ପ୍ରତ୍ୟାଖ୍ୟାନଜନିତ ଅପମାନର ଗଭୀର ବେଦନା ତାଙ୍କ ଛାତି ଭିତରେ ଗୋଟିଏ ଅକ୍ଷମ କ୍ରୋଧର ନିଆଁ ଜାଳି ଦେଉଥିଲା । କଣ କଲେ ଏହାର ପ୍ରତିଶୋଧ ନିଆଯାଇପାରିବ, ଅହରହ ସେଇ ଚିନ୍ତା ହିଁ ତାଙ୍କୁ ଗୋଟାଏ କିଛି ମାରାତ୍ମକ କାର୍ଯ୍ୟ କରିବା ପାଇଁ ଉତ୍ତେଜିତ କରୁଥିଲା । ହେଲେ କୌଣସି ଉପାୟ ସେ ନିର୍ଣ୍ଣୟ କରି ପାରୁନଥିଲେ । କେମିତି ପାରିବେ ? ଅମ୍ବିକା ତ ନାରୀ । କୁଳବଧୂ । ଅନ୍ତଃପୁରଚାରିଣୀ । ତା ସହିତ ପ୍ରତ୍ୟକ୍ଷ ସଂଘାତ ସୃଷ୍ଟି କରିବାର କୌଣସି ରାସ୍ତା ହିଁ ନାହିଁ । ନାରୀ ଓ ପୁରୁଷ ମଝିର ଏଇ ପାଚେରିଟା ଗୋଟିଏ ସଂସ୍କାର ମାତ୍ର । ତଥାପି ପ୍ରତିଶୋଧର ନିଶାରେ ସେଇ ସଂସ୍କାରକୁ ଭାଙ୍ଗିବା ସମ୍ଭବ ନ ଥିଲା ତାଙ୍କ ପକ୍ଷରେ । ବିଶ୍ୱାସ ସଂଗେ ବୁଦ୍ଧି, ତା ସହିତ ଅମ୍ବିକା ନାରୀର ଅସ୍ତିତ୍ୱଟା ମଧ୍ୟ ଯୋଡ଼ି ହେଇରହିଛି । ଅବହେଳା କରି ତାକୁ ଧୂଳିମାଟି ଉପରକୁ ଟାଣିଆଣିଲେ ପ୍ରତିଶୋଧ ସିନା ନିଆଯିବ, ହେଲେ ଗୌରବ ବଢ଼ିବ ନାହିଁ । ତଥାପି ଅମ୍ବିକାର ଚିନ୍ତା ତାଙ୍କ ଛାତି ଭିତରେ ପାହାଡ଼ ଭଳି ଜମି ବସିଲା ।

ଦ୍ୱୈପାୟନ ଋଷି । ଧ୍ୟାନରେ ଅଭ୍ୟସ୍ତ । ଧ୍ୟାନ ଭିତରେ ଗୋଟିଏ ମାନସିକ ସ୍ଥିରତା ଆସେ । ହୃଦୟରେ ପ୍ରଶାନ୍ତ ଭାବ ସୃଷ୍ଟି ହୁଏ । ଧ୍ୟାନ ଭିତରେ ଅନେକ କିଛି ଗଭୀର ଭାବେ ଉପଲବ୍ଧି କରିହୁଏ । ଅନେକ ଦୂର ପର୍ଯ୍ୟନ୍ତ ଦୃଷ୍ଟି ସଂପ୍ରସାରିତ ହୁଏ । ମନର ବଳ ବଢ଼େ । ପ୍ରତ୍ୟୟ ଜନ୍ମେ । କିନ୍ତୁ ଆଜିକାଲି ଧ୍ୟାନରେ ଆଉ ତାଙ୍କର ମନଃସଂଯୋଗ ହୁଏନା ।

ବିଭିନ୍ନ ଘଟଣାର ଓଲଟପାଲଟ ସ୍ରୋତ ଜୀବନର କେନ୍ଦ୍ରବିନ୍ଦୁ ଠାରୁ ତାଙ୍କୁ ଅନେକ ଦୂରକୁ ଟାଣି ନେଉଥିଲା ।

ଧ୍ୟାନ ଭିତରେ ସ୍ଥିର ପ୍ରତ୍ୟୟର ଯେଉଁ ଭୂମି ବରାବର ରହିଆସିଥିଲା, ତାକୁ ଆଉ ସେ ଫେରିପାଉନଥିଲେ । ଜୀବନର ଦୁଃଖଗୁଡ଼ିକ ସବୁ ସମୟରେ ସହ୍ୟ କରି ହୁଏନା ବୋଲି ବିଶ୍ୱାସର ପ୍ରତ୍ୟୟ ଭୂମି ଭାଙ୍ଗିରୁଜି ଚୂର୍‌ମାର୍ ହେଇଯାଏ । ଅନ୍ତରରେ ଅମ୍ବିକାର କଠିଣ ଉପେକ୍ଷା ଆଉ ଘୃଣା ଭାବ ତ ବଞ୍ଚି ରହିଥିଲା ! — କହିବାକୁ ଗଲେ ଏହା ଏକ ନିରବ ବିଦ୍ରୋହ । ଅମ୍ବିକାକୁ ହିଁ ସେ ତାଙ୍କର ସବୁଠାରୁ ବଡ଼ ଓ ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ ବୋଲି ଧରିନେଲେ । ଅମ୍ବିକାର ପଦାଘାତ ତାଙ୍କ ଭିତରେ ଗୋଟିଏ ବିଧର୍ମୀ ଅବିମୃଶ୍ୟକାରୀ କଳାପାହାଡ଼କୁ ସୃଷ୍ଟି କଲା । ଦୁନିଆରେ ସତ୍ ବସ୍ତୁ ବୋଲି କିଛି ମଧ୍ୟ ସେ ରଖିବନି । ସବୁ ନୀତିବୋଧକୁ ଫୁତ୍‌କାରରେ ଉଡ଼େଇ ଦେବ । ଏଇ ବୋଧକୁ ଆତ୍ମାର ଦହନ ଭିତରୁ ସେ ଲାଭ କରିଥିଲେ । ଏହାର ମୂଳବୀଜ ଲାଞ୍ଛିତ, ନିପୀଡ଼ିତ, କ୍ଷୁବ୍‌ଧ ଅନାର୍ଯ୍ୟର ରକ୍ତ ଭିତର ଦେଇ ସଞ୍ଚରିତ ହୋଇଆସିଛି ତାଙ୍କ ରକ୍ତକୁ । ଅନାର୍ଯ୍ୟତ୍ୱର ଅଭିମାନକୁ ଆଘାତ କରିଛି ଅମ୍ବିକା । ଏହି ଅପମାନକୁ ସେ କୌଣସି ପ୍ରକାରେ ସହ୍ୟ କରିପାରୁ ନାହାନ୍ତି କିମ୍ବା ପ୍ରତିକାରର କୌଣସି ପଥ ମଧ୍ୟ ସଠିକ୍ ଭାବେ ଖୋଜି ପାଉ ନାହାନ୍ତି । ଗୋଟାଏ ଅକ୍ଷମ ଆକ୍ରୋଶ ଓ ଗଭୀର ଯନ୍ତ୍ରଣାବୋଧରେ ତାଙ୍କର ଅନ୍ତଃକରଣ ପୋଡ଼ିଜଳି ନିଃଶେଷ ହେଇଯାଉଥିଲା ।

ଏହିପରି ଗୋଟାଏ ପରିପୂର୍ଣ୍ଣ ବିଦ୍ୱେଷ ଦ୍ୱୈପାୟନଙ୍କୁ ସ୍ୱାଭାବିକ ରହିବାପାଇଁ ଦେଉନଥିଲା । ଦ୍ୱୈପାୟନ ବେଶ୍ ବୁଝିପାରୁଥିଲେ ଯେ, କ୍ରମଶଃ ସେ ସାଧାରଣ ମଣିଷର ସ୍ତରକୁ ଓହ୍ଲେଇ ଆସିଛନ୍ତି । ଋଷି ଭିତରେ ବର୍ତ୍ତମାନ ସେ ଶୟତାନର ମୁହଁକୁ ଦେଖୁଛନ୍ତି । ଅନ୍ତର ଭିତରେ ଏହି ପରିବର୍ତ୍ତନକୁ ଲକ୍ଷ୍ୟ କରି ଦ୍ୱୈପାୟନ ଗୋଟିଏ ଭୟଙ୍କର ଧ୍ୱଂସର କାଳ୍ପନିକ ରୂପକୁ ଦେଖିପାରିଲେ । ଅମ୍ବିକାକୁ ନେଇ ତାଙ୍କର କଳ୍ପନା ବାରମ୍ବାର ଧକ୍କା ଖାଇବାକୁ ଲାଗିଲା । କେବଳ ଅମ୍ବିକା ହିଁ ଦ୍ୱୈପାୟନଙ୍କ ଘୃଣା ଓ ବିଦ୍ୱେଷର ପାତ୍ର ହେଲାନି, ତାର ସନ୍ତା ଧୃତରାଷ୍ଟ୍ର ଉପରେ ମଧ୍ୟ ତାଙ୍କର କ୍ରୋଧ ଅଜାଡ଼ି ହେଇପଡ଼ିଲା । ଧୃତରାଷ୍ଟ୍ର ଅମ୍ବିକା ଆତ୍ମାର ସ୍ଫୁଲିଙ୍ଗ ଭିତରୁ ପ୍ରାପ୍ତ ଜୀବନଟିଏ । ସେଥିପାଇଁ ଅମ୍ବିକା ଉପରେ କ୍ରୋଧ ବିଦ୍ୱେଷ ଯାଇ ତା' ପୁତ୍ର ଉପରେ ପଡ଼ିଲା । ଅନ୍ଧପୁତ୍ର ଧୃତରାଷ୍ଟ୍ର ଦ୍ୱୈପାୟନଙ୍କ ଆଖିରେ ଆମ୍ବିକା ପାଲଟିଗଲା । ଅମ୍ବିକା ଓ ଧୃତରାଷ୍ଟ୍ର ଭିତରେ କୌଣସି ପ୍ରଭେଦ ଆଖିରେ ପଡ଼ିଲା ନାହିଁ । ଧୃତରାଷ୍ଟ୍ରଙ୍କୁ ତାଙ୍କର ଅପମାନ, ପ୍ରତ୍ୟାଖ୍ୟାନ ଏବଂ ଅନାକାଂକ୍ଷିତ ମିଳନର ସାକ୍ଷୀ ବୋଲି ମନେହେଲା । ଦ୍ୱୈପାୟନଙ୍କ ଅନ୍ତରର ସବୁ ଘୃଣା ଧୃତରାଷ୍ଟ୍ରଙ୍କୁ ଧରି ଦାନା ବାନ୍ଧିବାକୁ ଲାଗିଲା । ତାଙ୍କର ହୃଦୟ ଅକାରଣରେ ନିଷ୍ଠୁର ହେଇଉଠିଲା ।

ଦ୍ୱନ୍ଦ୍ୱ ଓ ଦ୍ୱିଧାର ଅବସାନ ଘଟାଇ ଦ୍ୱୈପାୟନ ତାଙ୍କର ବିଷଫଳ ଧୃତରାଷ୍ଟ୍ରଙ୍କୁ ଅମ୍ବିକାର ସ୍ଥଳାଭିଷିକ୍ତ କରି ତା'ଉପରେ ଅପମାନର ପ୍ରତିଶୋଧ ନେବାପାଇଁ ସଂକଳ୍ପବଦ୍ଧ ହେଲେ । ମାତାଙ୍କ ଅପରାଧ ଓ ଦୁଷ୍କୃତିର ପ୍ରାୟଶ୍ଚିତ୍ତ ତାଙ୍କର ଗର୍ଭଜାତ ସନ୍ତାନକୁ ହିଁ ତ କରିବାକୁ ପଡ଼େ । ଏହାହିଁ ଜଗତର ନିୟମ । ସବୁବେଳେ ବୀଜ ଭଲ ହେଲେ ମଧ୍ୟ ଫସଲ ଭଲ ହୁଏ ନାହିଁ । ମାଟିଗୁଣରୁ ଫସଲ ନିକୃଷ୍ଟ ଅଥବା ଉତ୍କୃଷ୍ଟ ହୁଏ । ଅମ୍ବିକା କ୍ଷେତ୍ରରେ ତାର ସନ୍ତାନ ଧୃତରାଷ୍ଟ୍ର କେବେ ମଧ୍ୟ ଭଲ ହେଇପାରିବନି । ଧୃତରାଷ୍ଟ୍ରଙ୍କ ସ୍ୱଭାବ ପ୍ରକୃତି ମଧ୍ୟ ତାର ଜନନୀ ଭଳି । ସେ ଅତ୍ୟନ୍ତ ଦାମ୍ଭିକ, ଆତ୍ମକୈନ୍ଦ୍ରିକ ଏବଂ ଈର୍ଷାପରାୟଣ । ପ୍ରଭୁତ୍ୱ ପ୍ରିୟ । କେବଳ ସେତିକି ନୁହେଁ ଆର୍ଯ୍ୟତ୍ୱର ଅହଂକାର ବି ତା ଭିତରେ ଭରପୂର ଅଛି । ଧୃତରାଷ୍ଟ୍ର ମଧ୍ୟରେ ଅମ୍ବିକା ସତେ ଯେମିତି ନୂତନ ରୂପ ପରିଗ୍ରହ କରି ଠିଆ ହେଇଛି ।

ଅଦ୍ଭୁତ ! ଅଦ୍ଭୁତ ! ବାରମ୍ବାର ମନେ ମନେ ଆବୃତ୍ତି କଲେ ଦ୍ୱୈପାୟନ । ବିଶ୍ଳେଷଣରେ ତାଙ୍କର ବେଶ୍ ମନଃପୂତ ହେଇଗଲା । ଏକ ପରିପୂର୍ଣ୍ଣ ଆନନ୍ଦ ଓ ପ୍ରତ୍ୟୟରେ ତାଙ୍କ ହୃଦୟ ମଥିତ ଓ ବ୍ୟଥିତ ହେବାକୁ ଲାଗିଲା । ଏଥର ତାଙ୍କୁ ଋଷିରୁ ଜଣେ ସଫଳ କୂଟ ରାଜନୀତିର ଭୂମିକାରେ ଅବତୀର୍ଣ୍ଣ ହେବାକୁ ପଡ଼ିବ । ଅଲକ୍ଷ୍ୟରେ ହସ୍ତିନାପୁରର ପ୍ରାସାଦରେ, ରାଜସଭାରେ ଏବଂ ବାହାରେ ମଧ୍ୟ ଏକ କୁଟିଳ ଗୋପନ ଷଡ଼ଯନ୍ତ୍ରର ପରିବେଶ ସୃଷ୍ଟି କରିବାକୁ ପଡ଼ିବ । ଏହି କାର୍ଯ୍ୟ ପାଇଁ ସେ ବିଦୂରଙ୍କୁ ବିଶେଷ ସହାୟକ ରୂପେ ଚାହାନ୍ତି । ବିଦୂର ଧର୍ମପ୍ରାଣ । ସତ୍ । ଆଦର୍ଶବାନ୍ । ଧୃତରାଷ୍ଟ୍ରର ପ୍ରିୟ ବନ୍ଧୁ । ସହାୟ ମଧ୍ୟ । ସବୁ ଶ୍ରେଣୀର ମଣିଷମାନଙ୍କ ସଂଗେ ତାର ମଧୁର ସଂପର୍କ । ସମସ୍ତେ ତାକୁ ଶ୍ରଦ୍ଧା ଚକ୍ଷୁରେ ଦେଖନ୍ତି; ଭଲ ପା'ନ୍ତି । ଏକାମାତ୍ର ତା ଦ୍ୱାରା ହିଁ ପ୍ରଚ୍ଛନ୍ନ ଭାବେ ଗୋପନୀୟ ରାଜନୈତିକ କାର୍ଯ୍ୟକଳାପ କରିବା ସହଜ ଓ ସମ୍ଭବ । ଏହି ଲୋକରଞ୍ଜନ କ୍ଷମତା ତାକୁ ସନ୍ଦେହର ଊର୍ଦ୍ଧ୍ୱରେ ରଖିବ, ଏଥିରେ ସନ୍ଦେହ ନାହିଁ ।

ଏଭଳି ଗୋଟାଏ ଦୁଃଶ୍ଚିନ୍ତା ଓ ଭାବନାରେ ଦ୍ୱୈପାୟନଙ୍କର ଯେତେବେଳେ ଆଶା ଓ ଭରସା ଜନ୍ମିଲା, ମନ ଭିତରେ ଜୋର ଆସିଲା ଏବଂ ମନେ ମନେ ବିବିଧ ପ୍ରକାରର କୂଟ ରାଜନୈତିକ ଚାଲ ଚଳାଇଥିଲେ, ସେତେବେଳେ ଅକସ୍ମାତ୍ ଦିନେ ତାଙ୍କୁ ହସ୍ତିନାପୁରକୁ ନେଇଯିବା ପାଇଁ ବିଶେଷ ଦୂତ ସହିତ ସତ୍ୟବତୀ ଓ ଭୀଷ୍ମଙ୍କ ପ୍ରତିନିଧି ଭାବେ ବିଦୂର ଆସି ପହଞ୍ଚିଲେ । ବିଦୂରଙ୍କ ଆକସ୍ମିକ ଆଗମନ ତାଙ୍କୁ ବିସ୍ମିତ ଓ ଅଭିଭୂତ କରି ପକାଇଲା । ଈଶ୍ୱରଙ୍କୁ ଏ ସମସ୍ତ ଘଟଣାର ନିୟନ୍ତା ବୋଲି ମନେହେଲା । ଯେତେବେଳେ ଯେଉଁ କାର୍ଯ୍ୟ ଆବଶ୍ୟକ ସେତେବେଳେ ସେଇ କାର୍ଯ୍ୟର ଅନୁକୂଳ ଅବସ୍ଥା ସେ ନିଜଠାରୁ ହିଁ ଆରମ୍ଭ କରିଛନ୍ତି । ଈଶ୍ୱର ବାସ୍ତବରେ ତାଙ୍କ ମାଧ୍ୟମରେ କଣ କରିବାକୁ ଚାହାନ୍ତି ସେ କିଛି ଜାଣନ୍ତି ନାହିଁ ।

ଅସ୍ଥିରତା କେବଳ ଦିନକୁ ଦିନ ତୀବ୍ରରୁ ତୀବ୍ରତର ହେବାକୁ ଲାଗିଲା । ନିଜ ଅଜାଣତରେ ସେ ବିଶ୍ୱସ୍ରଷ୍ଟାଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇଲେ । ଧମନୀର ରକ୍ତ ସ୍ରୋତରେ କିଛି ଉଦ୍ଦାମତା ଖେଳିଗଲା । ଛାତି ଭିତରଟା ଗୁରୁଗୁରୁ ହେଲା । ସତେ ଯେମିତି କିଏ ଫିସ୍‌ଫିସ୍ କରି କହିଲା - ଦ୍ୱୈପାୟନ, ତମ ଡାକ ଈଶ୍ୱର ଶୁଣିଛନ୍ତି । ତମ ଧ୍ୟାନରେ ସେ ସନ୍ତୁଷ୍ଟ । ତମ ଅନ୍ତରରେ ଯେଉଁ ନିଆଁ ଧିକି ଧିକି ହେଇ ଜଳୁଛି ତାକୁ ଆହୁରି ପ୍ରଜ୍ୱଳିତ କର । ପ୍ରଳୟ ଶିଖାରେ ପରିଣତ କର । ଧ୍ୱଂସ କର ସବୁକୁ ପ୍ରଳୟାନଳରେ ।

ହସ୍ତିନାପୁର ତୁମକୁ ଡାକୁଛି । ଅମ୍ବିକାର ନିୟତି ଆକର୍ଷଣ କରୁଛି ତୁମକୁ ତୀବ୍ର ଭାବେ । ତୁମେ ଯାଅ । ହସ୍ତିନାପୁର ବର୍ତ୍ତମାନଠାରୁ ତୁମର କର୍ମଭୂମି । ବର୍ତ୍ତମାନ ତୁମେ ଆଉ ଋଷି ନୁହଁ । ଜଣେ କୂଟ ରାଜନୀତିଜ୍ଞ । ବିଦୂରଙ୍କୁ ନେଇ ତୁମେ ବାହାରିଆସ ମହାପୃଥିବୀ ଆଡ଼କୁ । ଯେଉଁ ଅବାରିତ ପଥ ରହିଛି ସେଇ ପଥରେ ଅମ୍ବିକା ପୁତ୍ର ଧୃତରାଷ୍ଟ୍ର ହିଁ ସବୁଠାରୁ ବଡ଼ ପ୍ରତିବନ୍ଧକ ।

ବିଦୂରଙ୍କ ଆଚମକା ଡାକରେ ଚମକି ଉଠିଲେ ଦ୍ୱୈପାୟନ । ଇଏ ତ କୌଣସି ବିଧାତାର ଶୂନ୍ୟବାଣୀ ନୁହେଁ । ଏହା ହୁଏତ ତାଙ୍କର ମନ ଅଭ୍ୟନ୍ତରର କଥା । ବିଦୂରଙ୍କ ଆଗମନରେ ତାଙ୍କ ହୃଦୟରେ ସେଇ କଥା ହିଁ ଅନୁରଣିତ ହେବାକୁ ଲାଗିଲା । ହଠାତ୍ ସେଇଥିପାଇଁ ବୋଧେ କିଛିଟା ଶୂନ୍ୟବୋଧ କରି ମୁହୂର୍ତ୍ତେ ନିରବ ରହିଲେ ସେ । ତାପରେ ଧୀର ସ୍ୱରରେ କହିଲେ-

ହଠାତ୍ ତୁମକୁ ଦେଖି ବଡ଼ ପ୍ରୀତ ହେଲି ପୁତ୍ର । ଈଶ୍ୱର ଅନ୍ତର୍ଯାମୀ । ଏଇ କିଛିଦିନ ହେଲା ମୁଁ ମନେ ମନେ ତୁମକୁ ଖୋଜୁଥିଲି । ଈଶ୍ୱର ଶୁଣିଲେ ମୋ କଥା । ତାପରେ ଦୀର୍ଘଶ୍ୱାସଟିଏ ଛାଡ଼ି କହିଲେ- 'ହସ୍ତିନାପୁରର ଖବର କ'ଣ ପୁତ୍ର ? ଜନନୀ ସତ୍ୟବତୀ କୁଶଳରେ ଅଛନ୍ତି ତ ? ଭ୍ରାତା ଭୀଷ୍ମ ରାଜକାର୍ଯ୍ୟ ନେଇ ବିଶେଷ ବ୍ୟସ୍ତ ଅଛନ୍ତି କି ?

ଦ୍ୱୈପାୟନଙ୍କ ବ୍ୟାକୁଳ ଜିଜ୍ଞାସା ବିଦୂରଙ୍କ ମନ ଭିତରେ ଏକପ୍ରକାର ଲୋମହର୍ଷକ ରହସ୍ୟମୟ ଆନନ୍ଦର ଅନୁଭବ ସୃଷ୍ଟି କଲା । ସେଇ ବିସ୍ମୟବୋଧର କୋଣ ଭିତରୁ ବାହାରିବା ପାଇଁ କିଛି ସମୟ ଲାଗିଲା ତାଙ୍କୁ ।

ଦ୍ୱୈପାୟନ ହସ୍ତିନାପୁରରେ ପହଞ୍ଚିଲେ । ତାଙ୍କର ରାଜକୀୟ ଅଭ୍ୟର୍ଥନାରେ କୌଣସି ତ୍ରୁଟି ରଖିନଥିଲେ ଭୀଷ୍ମ; ସତ । କିନ୍ତୁ ଦ୍ୱୈପାୟନଙ୍କର ଏହି ଉପସ୍ଥିତି ଅନ୍ତତଃ ଭୀଷ୍ମଙ୍କର କାମ୍ୟ ନ ଥିଲା । ସତ୍ୟବତୀଙ୍କ ଆଦେଶ ମାନିବାକୁ ଯାଇ ବାଧ୍ୟ ହୋଇ ଘଟଣାକୁ ଗ୍ରହଣ କରିବାକୁ ପଡ଼ିଲା । ରାଜପୁତ୍ରମାନଙ୍କ ମଧ୍ୟରେ କିଏ ସିଂହାସନରେ ବସିବ ? ଏଇ ସମସ୍ୟାକୁ ନେଇ ଗଭୀର ତର୍କର ଝଡ଼ କାହିଁକି କେଜାଣି ସୃଷ୍ଟି ହେଲା, ଭୀଷ୍ମ ଭାବି ପାରୁନଥିଲେ । ସିଂହାସନର ଉତ୍ତରାଧିକାରୀ ନିର୍ଣ୍ଣୟ ନେଇ କୌଣସି ସମସ୍ୟା ହିଁ ନ ଥିଲା । ଅଥଚ ବର୍ତ୍ତମାନ

ଯାକୁ ନେଇ ଗୋଟାଏ ଭୟଙ୍କର ସଂକଟ ସୃଷ୍ଟି କରାଗଲା ରାଜଅନ୍ତଃପୁର ଭିତରେ । କିଏ ବା କେଉଁମାନେ ଏହି ସଂକଟର ସୃଷ୍ଟିକର୍ତ୍ତା ଭୀଷ୍ମ ଜାଣି ନାହାନ୍ତି । କିନ୍ତୁ ସେମାନଙ୍କର ସଂଖ୍ୟା ଅବହେଳା କଲାଭଳି ନ ଥିଲା । ଭୀଷ୍ମଙ୍କର ଆଦର୍ଶ ସହିତ ସଂଘାତ ସୃଷ୍ଟି ହେଲା । ବିରୋଧ ଭିତରକୁ ନ ଯାଇ ସେ ନିରବରେ ଆଡ଼େଇ ହୋଇ ରହିଲେ । ହେଲେ ସମସ୍ତ ଘଟଣା ଉପରେ ତାଙ୍କର ତୀକ୍ଷ୍ଣ ଦୃଷ୍ଟି ରହିଥିଲା ।

ରାଜସଭାରେ ଭୀଷ୍ମ, ଦ୍ୱୈପାୟନଙ୍କର ଖୁବ୍ ନିକଟରେ ବସିଥିଲେ । ମନେ ମନେ ସ୍ଥିର କରିଥିଲେ ଯେ, ସେ କୌଣସି କଥା କହିବେ ନାହିଁ । କିନ୍ତୁ ଦ୍ୱୈପାୟନଙ୍କ ଦୃଷ୍ଟି ତାଙ୍କ ଉପରେ ଅଠାକାଠି ଭଳି ଲାଖି ରହିଥିଲା । ସେଇ ଆଖିରେ କୌତୁକର ହସ ଖେଳି ବୁଲୁଥିଲା । ଭୀଷ୍ମଙ୍କ ଉପରେ ଥରେ ଆଖି ବୁଲେଇ ନେଇ ହିଁ ଦ୍ୱୈପାୟନ ଭୀଷ୍ମଙ୍କ ମନକଥା ପଢ଼ି ନେଇଥିଲେ । କିନ୍ତୁ ଭୀଷ୍ମ ତାଙ୍କ ମୁହଁକୁ ସଂକୋଚ ବୋଧ କରି ଚାହିଁ ପାରୁନଥିଲେ । ତାଙ୍କ ରହସ୍ୟମୟ ଦୃଷ୍ଟିର ଚୁମ୍ବକୀୟ ଆକର୍ଷଣରୁ କୌଣସି ପ୍ରକାର ଦୃଷ୍ଟି ଫେରେଇ ପାରୁନଥିଲେ ଭୀଷ୍ମ । ତାଙ୍କୁ ବୁଝେଇଦେବାପାଇଁ ଦ୍ୱୈପାୟନ ଦୃଷ୍ଟିକୁ ଅନ୍ୟରକମ କଲେ । ସେଥିପାଇଁ ଭୀଷ୍ମଙ୍କୁ ଦ୍ୱୈପାୟନଙ୍କର ଦୃଷ୍ଟି ଅନ୍ୟ ରକମ ଲାଗିଲା । ତେବେ ଭୀଷ୍ମ ଅସ୍ୱସ୍ତିର ପରିସମାପ୍ତି ଘଟିଲା । ସିଏ ମଧ୍ୟ ଦ୍ୱୈପାୟନଙ୍କ ଆଖିରେ ଆଖି ମିଳାଇ ଟିକିଏ ସ୍ମିତ ହସିଲେ । ବାସ୍ତବରେ ଭୀଷ୍ମ ବୁଝେଇ ଦେବାକୁ ଚାହୁଁଥିଲେ ଯେ, ଦ୍ୱୈପାୟନଙ୍କୁ ଦେଖିଲା ଭଳି କି ବୁଝିଲା ଭଳି ସେମିତି କିଛି ତାଙ୍କର ଜରୁରୀ ଆବଶ୍ୟକତା ନାହିଁ ।

କିନ୍ତୁ ଦ୍ୱୈପାୟନଙ୍କ ଓଷ୍ଠାଧରରେ ସେଇ ସ୍ମିତହସ ଟିକକ ଲାଖି ରହିଥିଲା ବରାବର । ସେଇ ହସ ହିଁ ଅଭିବ୍ୟକ୍ତ କରୁଥିଲା - ସେ କେତେ ଉଦାର, ମହତ୍ ଏବଂ କର୍ତ୍ତବ୍ୟନିଷ୍ଠ । ତାଙ୍କ ଚରିତ୍ର ଓ କାର୍ଯ୍ୟକଳାପ ଭିତରେ କେତେ ସୁନ୍ଦର ଭାବେ ମିଶିଯାଉଛି ତାଙ୍କର ଋଷିର ବ୍ୟକ୍ତିତ୍ୱ । ଭୀଷ୍ମଙ୍କ ମୁଣ୍ଡ ଭିତରଟା ଝାଇଁ ଝାଇଁ ହେଇଗଲା । କାନମୁଣ୍ଡା ଗରମ ହେଇ ଭାଁ ଭାଁ କଲା । ତଥାପି ସେଇ ନିଟୋଳ ସ୍ତବ୍ଧତା ଭିତରେ ଅତି କଷ୍ଟରେ ବି ଟିକିଏ ହସିଦେଲେ ଭୀଷ୍ମ । ସେଇ ହସ ବିଷଣ୍ଣତାର । ଜୋରଜବରଦସ୍ତ ଓଠରେ ହସ ଫୁଟେଇ ସେ କହିଲେ- ମହର୍ଷିଙ୍କର ସାକ୍ଷାତ୍ ଆଜିକାଲି ମୋଟେ ହିଁ ମିଳୁନି । ଏଠୁ ଆମନ୍ତ୍ରଣ ନ ଯାଇଥିଲେ, ବୋଧହୁଏ ଆପଣଙ୍କ ପାଦଧୂଳି ପଡ଼ିନଥାନ୍ତା ।

ଦ୍ୱୈପାୟନଙ୍କ ଅଧରର ସ୍ନିଗ୍ଧହସ ମାଧୁର୍ଯ୍ୟରେ ଆହୁରି ଲାବଣ୍ୟମୟ ଦିଶିଲା । କିନ୍ତୁ ତାଙ୍କର ଦୃଷ୍ଟି ଭୀଷ୍ମଙ୍କ ଉପରୁ ତିଳେ ହେଲେ ଘୁଞ୍ଚିଲା ନାହିଁ । ଭୀଷ୍ମଙ୍କର ବିବ୍ରତ ମୁଖମଣ୍ଡଳ ଭିତରୁ ତାଙ୍କୁ ଆବିଷ୍କାର କରିବା ପାଇଁ ଯେମିତି ଚାହିଁରହିଥିଲେ ଦ୍ୱୈପାୟନ । କିଛି ସମୟ ପରେ ନିରବତା ଭଙ୍ଗ କରି କହିଲେ- 'ମୁଁ ତ ବନବାସୀ ।' ସଂସାର ରାଜନୀତି ସହିତ ମୋ ସଂପର୍କ ବା କେତେ ? ରାଜନୀତି ମୁଁ ଭଲକରି ବୁଝେ ନାହିଁ, ତଥାପି ତୁମ ଆମନ୍ତ୍ରଣକୁ ରକ୍ଷା ନ କରି ରହିପାରିଲି ନାହିଁ ।

ଭୀଷ୍ମ ଅତ୍ୟନ୍ତ ବିସ୍ମୟ ଓ ଅବିଶ୍ୱାସ୍ୟଭରା ଦୃଷ୍ଟିରେ ନିଜର ଦୁଇହାତକୁ ଚାହିଁ ରହିଲେ କିଛିକ୍ଷଣ । ଦ୍ୱୈପାୟନ ଯେମିତି ତାଙ୍କର ମନୋଭାବକୁ ବୁଝି ନ ପାରିବେ ସେଥିପାଇଁ ହୁଏତ ଏ ପ୍ରକାର ଛଳନାର ଆଶ୍ରୟ ନେଲେ ସେ । ହାତର ରେଖାଗୁଡ଼ିକୁ ତନ୍ନତନ୍ନ କରି ଦେଖିସାରିବା ପରେ ତାଙ୍କ ମୁହଁରେ ସ୍ନିଗ୍ଧ ହସର ରେଖା ଉକୁଟି ଉଠିଲା । ତ୍ରସ୍ତ ଓ ବ୍ୟସ୍ତ ଲଜ୍ଜାର ଭାବ ଦେଖାଇ ହଠାତ୍ ସେ କହିଉଠିଲେ- ତା'ତ ନିଶ୍ଚୟ । ନିଶ୍ଚୟ । ସେ କଥା ମୁଁ ଭୁଲିଯାଇଥିଲି । କିନ୍ତୁ ତୁମର ରାଜନୈତିକ ପ୍ରଜ୍ଞା ଅସାଧାରଣ । କୌଣସି ଜଟିଳ ରାଜନୈତିକ ସିଦ୍ଧାନ୍ତ କ୍ଷେତ୍ରରେ ତୁମ ମେଧା ଅତ୍ୟନ୍ତ କ୍ଷୀପ୍ରଗତିରେ କାର୍ଯ୍ୟ କରେ ବୋଲି ସମସ୍ତଙ୍କର ବିଶ୍ୱାସ । ସମାଧାନର ପନ୍ଥା ବି ସେଇଭଳି କୁଆଡ଼େ ଚମତ୍କାର ।

ଦ୍ୱୈପାୟନଙ୍କ ଶାନ୍ତ ଭାବଲେଶହୀନ ମନ ଆଜି କାହିଁକି ଚଳଚଞ୍ଚଳ ହୋଇ ଉଠିଥିଲା । ଭୀଷ୍ମଙ୍କ କଥାର କୌଣସି ଉତ୍ତର ନ ଦେଇ ନିରବ ରହିଲେ । ଦ୍ୱୈପାୟନଙ୍କ ନିରବତାରେ ଭୀଷ୍ମ କିଞ୍ଚିତ୍ ଅସ୍ୱସ୍ତି ଅନୁଭବ କଲେ । ସେଥିପାଇଁ କିଛି କୈଫିୟତ୍ ଦେବା ଭଳି କହିଲେ - ମୁଁ ମଧ୍ୟ ରାଜନୀତିରେ ଆଉ ଉତ୍ସାହ ଖୋଜି ପାଉନି । ବର୍ତ୍ତମାନ ଭାରତର ରାଜନୀତି ଠିକ୍ ବାଟରେ ଚାଲୁନି । ସମସ୍ତେ ଭୟଙ୍କର ଭାବେ କ୍ଷମତାଲୋଭୀ ହୋଇଉଠିଛନ୍ତି । ସାମ୍ରାଜ୍ୟ ଏବଂ ରାଜନୀତିକ ପ୍ରଭୁତ୍ୱ ଆଉ କର୍ତ୍ତୃତ୍ୱ ବିସ୍ତାର ପାଇଁ ଏମିତି ଏକ ଜଘନ୍ୟ ଲଢ଼େଇରେ ପ୍ରବୃତ୍ତ ହେବା ଦେଖିଲେ ମନରେ ଘୃଣା ଜାତ ହୁଏ । ସବୁ ଦେଶର ରାଜାମାନେ ଅର୍ଥ, ଐଶ୍ୱର୍ଯ୍ୟ, ସୁଖ, ବିଳାସବ୍ୟସନ, ମାନସମ୍ମାନ ଓ ପ୍ରତିପତ୍ତି ଚାହୁଁଛନ୍ତି । ସେଥିପାଇଁ ଦୁର୍ବଳ ରାଜ୍ୟଗୁଡ଼ିକର ସ୍ୱାଧୀନତା ହରଣ କରି ସେମାନେ ସେ ସବୁ ଗୌରବ ସହଜରେ ଅର୍ଜନ କରିବାକୁ ଚାହୁଁଛନ୍ତି । ଏହି ପ୍ରକାର ରାଜ୍ୟଲୋଭୀ କନ୍ଦଳ ମୋତେ ମୋଟେ ଭଲ ଲାଗୁ ନାହିଁ । ଶକ୍ତିକୁଟ ରାଜନୀତିରେ ମଧ୍ୟ ମୁଁ କ୍ଳାନ୍ତ ହେଇପଡ଼ିଲିଣି । ସେଥିପାଇଁ ଭାବୁଛି ଭାଇଙ୍କ ପୁଅର ରାଜ୍ୟାଭିଷେକ କରି ରାଜନୀତିରୁ ଅଲଗା ରହିବି ।

ଭୀଷ୍ମଙ୍କ କଥା ଶୁଣି ଦ୍ୱୈପାୟନ ହସିଲେ । କିଛି କହିଲେନି । ହେଲେ ଆଉ କିଛି ଅଧିକା ଶୁଣିବା ଆଶାରେ ଉଦ୍‌ଗ୍ରୀବ ହୋଇ ତାଙ୍କ ମୁହଁକୁ ଚାହିଁ ରହିଲେ ।

ଦ୍ୱୈପାୟନଙ୍କୁ ନିରବ ରହିବା ଦେଖି ଭୀଷ୍ମ କହିଲେ, ମହର୍ଷି ଆପଣଙ୍କର ଏ ପ୍ରକାର ନିଃସ୍ପୃହ ଔଦାସୀନତାର କାରଣ ତ ମୁଁ କିଛି ବୁଝିପାରୁନି । ଆପଣ କ'ଣ କ୍ଷୁବ୍‌ଧ ହେଇଛନ୍ତି ମୋ ଉପରେ ?

ଧୀରେ ଧୀରେ ମୁଣ୍ଡ ହଲେଇଲେ ଦ୍ୱୈପାୟନ । ନମ୍ର ହସି ମୃଦୁ ସ୍ୱରରେ କହିଲେ, ଭାଇ ଦେବବ୍ରତ, ତୁମର ଏଇ ହସ୍ତିନାପୁର ମୋତେ ମୋଟେ ସାଜେ ନାହିଁ । ସେଥିପାଇଁ ନିରବରେ କେବଳ ସବୁ ଶୁଣିଯାଉଛି । ସଭାରେ ଜଣେ ଭଲ ଦର୍ଶକ ତ ଦରକାର । ମୁଁ ତମମାନଙ୍କର ସେଇ ଦର୍ଶକ । ତୁମେମାନେ ବିବ୍ରତ ହେଲା ଭଳି କିଛି କଥା ନ କହିବା ହିଁ ଭଲ । ଯାହା ହେଲେ ବି ମୁଁ ବାହାର ମଣିଷ । ଏହି ପରିବାରର ତ କେହି ନୁହଁ ।

ଭୀଷ୍ମଙ୍କ ମତିଗତି ଭଲ ଭାବରେ ବୁଝିବା ପାଇଁ କଣ୍ଠସ୍ୱରରେ କିଛିଟା ଅଭିମାନର ସ୍ପର୍ଶ ଦେଇଥିଲେ ସେ । ଭୀଷ୍ମଙ୍କର ଜାଲରେ ପକ୍ଷୀ ପଡ଼ିବା ଭଳି ଅବସ୍ଥା । କାହିଁକି ଏପରି କଥା କହିଲେ ଦ୍ୱୈପାୟନ । ଭୀଷ୍ମଙ୍କୁ ରହସ୍ୟମୟ ବୋଧ ହେଲା । ତାଙ୍କର ଅନୁଭୂତିଶୀଳ ମନ ଭିତରେ ଗୋଟିଏ ସନ୍ଦେହର ବୀଜ ଅଙ୍କୁରିତ ହେଲା । ତଥାପି ଘଟଣାକୁ ସହଜ ସରଳ କରିବାକୁ ଯାଇ ସଶବ୍ଦରେ ସେ ହସିଲେ । ବିବ୍ରତ ଓ ହତଚକିତ ମୁହଁରେ ତାଙ୍କର ବିସ୍ମୟ ଭାବ ଫୁଟିଉଠିଲା । ତ୍ରସ୍ତ ଗଳାରେ ବ୍ୟାକୁଳ ହୋଇ କହିଲେ- ତଥାପି ଆପଣ ଆମ ଭିତରୁ ଜଣେ, ନିଜର, ଆପଣଙ୍କ ସହିତ ପରାମର୍ଶ ନ କରି, ମୁଁ କୌଣସି ସିଦ୍ଧାନ୍ତ ହିଁ ନେଇପାରେ ନାହିଁ । ବିଚିତ୍ରବୀର୍ଯ୍ୟର କ୍ଷେତ୍ରଜପୁତ୍ରମାନେ ଆପଣଙ୍କ ସନ୍ତାନ । ଆପଣ ସେମାନଙ୍କ ପିତା, ଅଭିଭାବକ । ସେମାନଙ୍କ ସଂପର୍କରେ କୌଣସି ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତ ଦେବାକୁ ହେଲେ ଆପଣଙ୍କ ଅନୁମତି ଆବଶ୍ୟକ । ଆପଣ ଶାସ୍ତ୍ରଜ୍ଞ, ପ୍ରଜ୍ଞାବାନ ବ୍ୟକ୍ତି, ସବୁ ଦିଗରୁ ବିବେଚନା କରି ସ୍ଥିର କରି କୁହନ୍ତୁ- ବିଚିତ୍ରବୀର୍ଯ୍ୟର ଦୁଇପୁଅଙ୍କ ଭିତରୁ କାହାକୁ ସିଂହାସନରେ ଅଭିଷେକ କରିବା ଉଚିତ ? ପ୍ରଥାନୁସାରେ ଓ ନ୍ୟାୟତଃ ପରିବାରର ଜ୍ୟେଷ୍ଠପୁତ୍ର ଭାବେ ଧୃତରାଷ୍ଟ୍ରର ହିଁ ସିଂହାସନ ପାଇବା କଥା । କିନ୍ତୁ ଜନ୍ମାନ୍ଧ ବୋଲି କେହି କେହି ତାଙ୍କୁ ସେଇ ଅଧିକାରରୁ ବଞ୍ଚିତ କରିବାକୁ ଚାହୁଁଛନ୍ତି । ଆପଣ ତ ଏମାନଙ୍କର ପିତା, ନିରପେକ୍ଷ, ପକ୍ଷପାତଶୂନ୍ୟ ବିଚାର କେବଳ ଆପଣ ହିଁ କରିପାରିବେ । ଆପଣଙ୍କ ଉପରେ ଜନନୀ ଏହି ସମସ୍ୟା ସମାଧାନର ଭାର ଅର୍ପଣ କରିଛନ୍ତି । ବର୍ତ୍ତମାନ ଆପଣ ଯାହା କହିବେ, ତାହାହିଁ କାର୍ଯ୍ୟକାରୀ ହେବ ।

ହଠାତ୍ ଗୋଟାଏ ବିସ୍ମୟବୋଧ ଦ୍ୱୈପାୟନଙ୍କୁ ଆଚ୍ଛନ୍ନ କରିଦେଲା । ଆକସ୍ମିକ ଭାବେ ଭୀଷ୍ମଙ୍କ କଥା ଶୁଣି ତାଙ୍କର ସ୍ମୃତି ଆଲୋଡ଼ିତ ହେଇଉଠିଲା । ମନ ଭିତରର ପୁରୁଣା କ୍ଷତଟା ପୁଣିଥରେ ଆଘାତ ପାଇ ଶୁଳେଇ ହେଲା । କିଛି ରକ୍ତ ବି ଝରିଲା । ଅନେକ ଦିନରୁ ତ ଗୋଟାଏ ଭୟଙ୍କର ଯନ୍ତ୍ରଣା, ତୀବ୍ର ଆତ୍ମଗ୍ଲାନିରେ ସେ ଦିନରାତି ଦଗ୍ଧ ହେଇ ଆସିଛନ୍ତି । ପ୍ରଥମେ ପ୍ରଥମେ କିଛି ଦିନ ଅମ୍ବିକାର ପଦାଘାତଜନିତ ଅପମାନରେ ସେ ପାଗଳପ୍ରାୟ ହେଇଯାଇଥିଲେ ଲଜ୍ଜାରେ, ସଂକୋଚରେ । ନିଜ ଗଳାକୁ ନିଜେ ହିଁ ସେ ଚିପି ଧରୁଥିଲେ । ଛାତି ଭିତରର ଜ୍ୱଳନ୍ତ ଆବେଗରେ ଅନ୍ଧ ହୋଇ ଡାହାଣ ହାତର କବ୍ଜିରେ ଖଣ୍ଡିଏ ଦଗ୍ଧ କାଷ୍ଠଖଣ୍ଡ ଚାପିଧରି ଗଭୀର କ୍ଷତ ସୃଷ୍ଟି କରିଥିଲେ କେବଳ ଅପମାନଟିକୁ ସବୁଦିନେ ମନେରଖିବା ଉଦ୍ଦେଶ୍ୟରେ । କବ୍ଜିର ସେଇ କ୍ଷତ ଚିହ୍ନ ଏବେ ବି ଜଳଜଳ କରୁଛି ଆଖି ଆଗରେ । ଛାତି ଭିତରେ ଗୋଟାଏ ଅକୁହା ଯନ୍ତ୍ରଣାକୁ ସେ ଅନୁଭବ କଲେ । ନିଃଶ୍ୱାସ ପ୍ରଶ୍ୱାସ ଦ୍ରୁତ ହେଲା ।

ଅମ୍ବିକା ଛାତି ଭିତର ଗଭୀରତମ ପ୍ରଦେଶରେ ଲୁକ୍କାୟିତ ଭାବେ ସଞ୍ଚିତ ଥିବା ତାର ଗୋଲାପୀ ସ୍ୱପ୍ନ ଆଉ ବାସନାକୁ ସ୍ପଷ୍ଟ ଭାବେ ଦେଖିପାରୁଥିଲେ ଦ୍ୱୈପାୟନ । ତାଙ୍କ ମୁଣ୍ଡ

ଭିତରେ ବିଦ୍ୟୁତ୍‌ର ତରଙ୍ଗ ଖେଳିଗଲା ସତେକି । ମୁହୂର୍ତ୍ତକରେ କଣ ଯେମିତି ଓଲଟପାଲଟ ହେଇଗଲା ଅନ୍ତଃରାଜ୍ୟରେ । ଛାତି ଭିତରଟା ଶୁଖି ଶୂନ୍ୟ ଶୂନ୍ୟ ଲାଗିଲା । ଦୟା, ମାୟା, କରୁଣା, ମମତା, କ୍ଷମାର ପୁଷ୍କରିଣୀ ଶୁଖି କାଠ ହେଇଗଲା ଯେମିତି । ମନେ ମନେ ସେ ଉଚ୍ଚାରଣ କଲେ, ନା କୌଣସି କ୍ଷମା କରାଯାଇପାରେନା । ଅମ୍ବିକା ପାଇଁ କ୍ଷମା ନାହିଁ । ତା ସ୍ୱପ୍ନର ସମାଧି ଘଟାଇ ତାକୁ ଯନ୍ତ୍ରଣାବିଦ୍ଧ କରିବେ । ତିକ୍ତ ହତାଶାରେ ସେ ଯେମିତି ଘନଘନ ଦୀର୍ଘଶ୍ୱାସ ପକାଇବ । ଈର୍ଷା ଆଉ କ୍ରୋଧରେ ନିଜ ମଥାର କେଶରାଶି ଟାଣି ଓଟାରି ଛଟପଟ ହେବ । ସେତେବେଳେ ଯାଇ ଏକ ଆଶ୍ଚର୍ଯ୍ୟ ସୁଖାନୁଭୂତିରେ ତାଙ୍କ ଅଭ୍ୟନ୍ତରର ଗ୍ଲାନି ଅବା ଟିକିଏ ଅବଦମିତ ହେବ ।

ଦ୍ୱୈପାୟନଙ୍କ ସମ୍ମୁଖରେ ଉପବେଶନ କରିଥିଲେ ତାଙ୍କର ଔରସଜାତ ଜ୍ୟେଷ୍ଠ ସନ୍ତାନ ଧୃତରାଷ୍ଟ୍ର । ସୁଦୀର୍ଘ, ସୁଠାମ, ମଜଭୁତ ଗଢ଼ଣ । ଦେବଦୂତ ଭଳି ସୁନ୍ଦର ମୁଖଶ୍ରୀ । ଶାନ୍ତ, ଭାବଲେଶହୀନ ମୁଖମଣ୍ଡଳରେ ତାଙ୍କର କିଭଳି ଗୋଟାଏ ଅସହାୟ ଭାବ ଫୁଟି ଉଠୁଥିଲା । ସ୍ତବ୍‌ଧ ଆଖିରେ ଶୂନ୍ୟ ଦୃଷ୍ଟି । ଦେଖିଲେ ମାୟା ହୁଏ । ଦ୍ୱୈପାୟନ ଶକ୍ତ କଲେ ମନକୁ । ତାଙ୍କର ମନେହେଲା ଏଇ ପୁତ୍ର ଅମ୍ବିକା ଭିତର ଦେଇ ସୃଷ୍ଟି ହେଇଛି, ମଣିଷ ଗୋଟାଏ ସୂତ୍ର ଧରି ଜନ୍ମ ନିଏ । ସେ ହିଁ ଏଇ ଶିଶୁର ଜନ୍ମର ଏକାନ୍ତ କାରଣ । ତାଙ୍କ ଭିତର ଦେଇ ଅମ୍ବିକା ଧୃତରାଷ୍ଟ୍ର ହେଇ ଜନ୍ମ ଗ୍ରହଣ କରିଛି । ଧୃତରାଷ୍ଟ୍ରର ଚେହେରା ଅବିକଳ ଅମ୍ବିକା ଭଳି । ଏହି ନିଷ୍ପାପ ପୁତ୍ରଟି ଭିତରେ ଅମ୍ବିକା ପୁରୁଷ ହେଇ ଜନ୍ମ ନେଇଛି । ଅମ୍ବିକା ଏହାର ସ୍ରଷ୍ଟା । ସେ ତାର ରକ୍ଷାକାରୀ । ଧୃତରାଷ୍ଟ୍ର ତାଙ୍କର କେହି ନୁହେଁ । ତା ସହିତ ସଂପର୍କ କେବଳ ଗୋଟାଏ ସଂସ୍କାର ମାତ୍ର ।

ଦ୍ୱୈପାୟନ ଖୁବ୍ ଶାନ୍ତ ଭାବେ ଧୃତରାଷ୍ଟ୍ର ଆଡ଼କୁ ସ୍ୱପ୍ନାତୁର ଦୃଷ୍ଟିରେ ଚାହିଁରହିଲେ । କିନ୍ତୁ ଭୀଷ୍ମଙ୍କ କଥାକୁ ସେ ଠିକ୍ ଭାବେ ଅନୁମାନ କରିପାରିଥିଲେ । ଅନେକ ସମୟ ଧରି ନିରବ ହେଇ ବସିବା ପରେ ପ୍ରସଙ୍ଗକୁ ଘୂରେଇ ବୁଲେଇ ଧୀର ସ୍ୱରରେ କହିଲେ- ରାଜନୀତିରେ ନୃପତି ନିର୍ବାଚନର ପଥ ସର୍ବଦା ଗୋଟାଏ ପ୍ରକାରର ନୁହେଁ । ନୃପତିର ଅଭିଷେକ ସମୟରେ ଅନେକ କିଛି ଭାବିଚିନ୍ତି କରିବାକୁ ପଡ଼େ । ରାଜନୀତିର ରହସ୍ୟମୟ ଖେଳରେ ରାଜାର ବ୍ୟକ୍ତିତ୍ୱ, ବୁଦ୍ଧିମତ୍ତା ଏବଂ ନେତୃତ୍ୱର କ୍ଷମତା ହେଉଛି ମୂଳ କଥା । ମୁଖ୍ୟ ସମ୍ବଳ । ସୁତରାଂ ନୃପତି ନିର୍ବାଚନ ସମୟରେ ମଣିଷର ମନ ହୃଦୟକୁ ପ୍ରଭାବିତ କଲାଭଳି ଆକର୍ଷଣୀୟ ବ୍ୟକ୍ତିତ୍ୱ ଓ ପରିମାପକୁ ଦେଖିବାକୁ ହୁଏ । ମହାରାଜ ଯଯାତିଙ୍କ ଜ୍ୟେଷ୍ଠପୁତ୍ର ସକ୍ଷମ ଓ ବୀର ଥିବା ସତ୍ତ୍ୱେ ବି କନିଷ୍ଠ ପୁତ୍ରଙ୍କୁ ରାଜସିଂହାସନରେ ଅଭିଷିକ୍ତ କରାଯାଇଥିଲା । ନୃପତି ଉପରେ ଗୋଟିଏ ଦେଶ ଓ ଜାତିର ଭାଗ୍ୟ ନିର୍ଭର କରେ, ତାର ଉନ୍ନତି ଓ ଅବନତି ମଧ୍ୟ । ସୁତରାଂ କେବଳ ଜ୍ୟେଷ୍ଠପୁତ୍ର ବୋଲି ଯେ ସିଂହାସନର ଅଧିକାର

ପାଇବ ତା' ନୁହେଁ । ଏଭଳି କୌଣସି ଶାସ୍ତ୍ରୀୟ ବିଧିବିଧାନ ଶାସ୍ତ୍ରକାରମାନେ ସଂରଚନା କରି ନାହାନ୍ତି । ଦୈନନ୍ଦିନ ରାଜ୍ୟ ପରିଚାଳନା କାର୍ଯ୍ୟରେ ନୃପତି ଯଦି ଅନ୍ୟ ଉପରେ ନିର୍ଭରଶୀଳ ହୁଏ, ତାର ଫଳ ନିଶ୍ଚୟ ଭୟଙ୍କର ହେବ ।

ଦ୍ୱୈପାୟନ ହସ୍ତିନାପୁର ସିଂହାସନ ପାଇଁ କାହାରି ନାମ ପ୍ରସ୍ତାବ କଲେ ନାହିଁ । କେବଳ ନୃପତି ନିର୍ବାଚନର ସାଧାରଣ ନିୟମ କଥା ଜଣାଇଦେଲେ । ଏଇ ଧରଣର ପ୍ରସ୍ତାବରେ ଭୀଷ୍ମ କିଛି ମଧ୍ୟ ସ୍ଥିର କରିପାରିଲେ ନାହିଁ । ଦ୍ୱୈପାୟନଙ୍କ ସୁଚତୁର କୂଟ ଭାଷଣରେ ଭୀଷ୍ମଙ୍କର ଉଜ୍ଜ୍ୱଳ ମୁଖକାନ୍ତି ମଳିନ ପଡ଼ିଗଲା । ଅସମ୍ଭବ ଭାବେ ଗମ୍ଭୀର ଦିଶିଲେ ସେ । ବେଶ୍ କିଛିକ୍ଷଣ ନିରବ ରହି କ୍ଳାନ୍ତ ଗଳାରେ ଭୀଷ୍ମ କହିଲେ, ଭାଇ ଦ୍ୱୈପାୟନ ! ଆପଣଙ୍କ ଅଭିମତ ଅତ୍ୟନ୍ତ ମୂଲ୍ୟବାନ୍ । କିନ୍ତୁ ସାଧାରଣ ନୀତି ନିର୍ଦ୍ଦିଷ୍ଟ । ମଧ୍ୟମ ପନ୍ଥା ଅବଲମ୍ବନ କରି କହିଲେ ମୋ ଜିଜ୍ଞାସାର କୌଣସି ଉତ୍ତର ମୁଁ ପାଇଲିନି ଭାଇ ।

ଦ୍ୱୈପାୟନ ମୁଣ୍ଡ ହଲେଇ କହିଲେ, ମୁଁ ତ ନିର୍ବିରୋଧୀ ମଣିଷ । ରାଜନୀତି ସଂପର୍କରେ ଅନଭିଜ୍ଞ । ରାଜନୀତିର ଝଂଜଟ ମୋତେ ଭଲ ଲାଗେ ନାହିଁ । ସେଥିପାଇଁ ଏସବୁରେ ନିଜକୁ ସାମିଲ କରିବାକୁ ମୁଁ ସମୀଚୀନ ମନେକରୁ ନାହିଁ । ମୋ' ପ୍ରସ୍ତାବ ଶୁଣିଲେ ରାଜା ଓ ରାଜନୀତିର ସ୍ୱାର୍ଥ ଯଦି ଯୁଗ୍ମ ହେବ - ଏ ସବୁ ଦିଗରୁ ବିଚାର ବିବେଚନା କରି କାହାକୁ ନୃପତି କରାଯିବା ଉଚିତ, ସେ କଥା କଣ କହିବା ନିହାତି ଆବଶ୍ୟକ ?

ଭୀଷ୍ମ ଚୁପ୍‌ଚାପ୍ ଦ୍ୱୈପାୟନଙ୍କ ମୁହଁକୁ କିଛିକ୍ଷଣ ପାଇଁ ବିସ୍ମିତ ଦୃଷ୍ଟିରେ ଚାହିଁ ରହିଲେ । ମନ ଭିତରଟା ବିସ୍ୱାଦ ହେଇଗଲା ।

ଦ୍ୱୈପାୟନ ସ୍ପଷ୍ଟଭାବେ କିଛି ନ କହିଲେ ମଧ୍ୟ ତାଙ୍କ ଇଙ୍ଗିତ ବୁଝିବା ପାଇଁ ଭୀଷ୍ମଙ୍କୁ କିଛି ଅସୁବିଧା ହେଇନଥିଲା । ଆଶାଭଙ୍ଗର ଯନ୍ତ୍ରଣାରେ ମନଟା ମରିଗଲା । କିନ୍ତୁ ଖୁବ୍ କମ୍ ସମୟ ପାଇଁ । ଭୀଷ୍ମ ଦୁଃଶ୍ଚିନ୍ତାଗ୍ରସ୍ତ ମନରେ କହିଲେ- ତାହା ହିଁ ଭାବନାର ବିଷୟ । ଅଥଚ ନୃପତିର ସମସ୍ତ ଯୋଗ୍ୟତା ଧୃତରାଷ୍ଟ୍ରର ଅଛି । ସେ ଧୀର, ସ୍ଥିର, ଶାନ୍ତ, ମିତବାକ୍, ବିଚକ୍ଷଣ ଓ ବୁଦ୍ଧିମାନ୍ ମଧ୍ୟ । କୂଟ ରାଜନୀତି ଜ୍ଞାନ ମଧ୍ୟ ତାର ପ୍ରଖର । ତଥାପି ଈଶ୍ୱର ତା ପ୍ରତି ନିର୍ଦ୍ଦୟ । ଜନ୍ମାନ୍ଧତା ହିଁ ତାର ଏକମାତ୍ର ଅଯୋଗ୍ୟତା । ଈଶ୍ୱର ତା ଜୀବନକୁ ବ୍ୟର୍ଥ କରି ଦେଇଛନ୍ତି । ଏ କଥା କହି ଭୀଷ୍ମ ନିରବ ରହିଲେ । ତାଙ୍କ କଣ୍ଠସ୍ୱର ସ୍ଖଳିତ ଓ ଭିଜା ଭିଜା ଲାଗୁଥିଲା । ଧୃତରାଷ୍ଟ୍ର ପାଇଁ କେମିତି ଗୋଟାଏ ଦରଦ ଅନୁଭବ କଲେ । ମମତା ଆସିଲା ତାର ଦୁର୍ଭାଗ୍ୟ ପାଇଁ । ସେ ବଞ୍ଚିତ ହେଉଛି ଭାବି ଭୀଷ୍ମଙ୍କ ହୃଦୟ କାନ୍ଦିଉଠିଲା ।

ଦ୍ୱୈପାୟନ ନିର୍ବାକ୍ ଓ ମୂକ ହୋଇ ଚାହିଁ ରହିଥିଲେ ଶୂନ୍ୟକୁ ଅଥଚ ଶ୍ରୁତି ସଜାଗ ଥିଲା । ଗୋଟାଏ ଭିନ୍ନ ଅନୁଭୂତି ହେଲା । ନା, କୌଣସି ବିଦ୍ୱେଷ ବା ଘୃଣା ନୁହେଁ । ଯେମିତି ଗୋଟିଏ ବିରାଟକାୟ ପଥର ତାଙ୍କ ଛାତିରେ ଝୁଲି ରହିଛି । ନିଜକୁ ନିଜେ ସେ କହିଲେ, କିଛି ମଣିଷ କେବଳ ଭୋଗିବା ପାଇଁ ଆସନ୍ତି, କିଛି ଆସନ୍ତି ଭୋଗ କରିବା

ପାଇଁ । କିଏ ଆସେ ଦେବାପାଇଁ, କିଏ ଆସେ ନେବାପାଇଁ । ଜୀବନ ଗୋଟିଏ ଶତ୍ରୁ । ସୁଯୋଗ ସୁବିଧା ପାଇଲେ ହିଁ ଆକ୍ରମଣ କରିବ ।

ଆଶ୍ରମକୁ ଫେରି ଦ୍ୱୈପାୟନ ଦର୍ପଣ ସମ୍ମୁଖରେ ଠିଆ ହେଲେ । ପିତା ପରାଶର ଆଶ୍ରମରେ ଶିକ୍ଷା ଦେବା ସମୟରେ କହିଥିଲେ- ଯେତେବେଳେ ଆତ୍ମୋପଲବ୍ଧିର ପ୍ରୟୋଜନ ହେବ, ଦର୍ପଣ ସମ୍ମୁଖରେ ଠିଆ ହୁଅ, ଅପଲକ ଦୃଷ୍ଟିରେ ନିଜ ଆଖିକୁ ଚାହିଁ, ତା'ହେଲେ ନିଜକୁ ଦେଖିପାରିବ, ତୁମେ ତୁମ ନିଜକୁ ଫେରିପାଇବ, ଦର୍ପଣର ବିଶୁଦ୍ଧ ପ୍ରତିଫଳନ ଭିତରେ । ଯେତେସବୁ ପାପ ଏ କାୟାର । ଛାୟାର କୌଣସି ଅପବିତ୍ରତା ନାହିଁ ।

ଦର୍ପଣରେ ଦ୍ୱୈପାୟନଙ୍କର ଚେହେରା ପ୍ରତିବିମ୍ବିତ ହେଇଉଠିଲା । ମସ୍ତକରେ ବିଶାଳ ଜଟାଜୁଟ' ଶ୍ମଶ୍ରୁଳ ମୁଖଶ୍ରୀ । ଗୈରିକ ବସ୍ତ୍ର ପରିହିତ କପୋଳରେ ଶୋଭା ପାଉଛି ପୂର୍ଣ୍ଣଚନ୍ଦ୍ର ଭଳି ଶ୍ୱେତ ଚନ୍ଦନର ବିନ୍ଦୁ । ଛାତି ଉପରେ ରୁଦ୍ରାକ୍ଷର ମାଳା, ଦକ୍ଷିଣ ହସ୍ତରେ କମଣ୍ଡଳୁ । ଦ୍ୱୈପାୟନ ଠିଆ ହୋଇ ନିଜକୁ ଅନେକକ୍ଷଣ ପର୍ଯ୍ୟନ୍ତ ନିରୀକ୍ଷଣ କଲେ । ଦୀର୍ଘଶ୍ୱାସଟିଏ ଛୁଟି ଆସିଲା । ନିଜେ ସେଥିରେ ଚମକି ପଡ଼ିଲେ । ମନକୁ ମନ ପ୍ରଶ୍ନକଲେ ନିଜକୁ- ଇଏ କିଏ ? ଏ ତ ମହର୍ଷି ବ୍ୟାସଦେବ ଅଥବା ଦ୍ୱୈପାୟନ ନୁହେଁ । କିଏ ଦ୍ୱୈପାୟନ ? ପିତା ପରାଶର, ମାତା ସତ୍ୟବତୀ ।

ଏଥରକ ଦ୍ୱୈପାୟନ ଦର୍ପଣ ପାଖରୁ ଉଠିଆସି ଦୂରେଇ ଠିଆ ହେଲେ । ମନେହେଲା ଗଣ୍ଡିର ବାହାରେ ସେ ମହାଦମ୍ଭୀ ପ୍ରତିହିଂସା ପରାୟଣ ପ୍ରଚଣ୍ଡ ରାମ ବିଦ୍ୱେଷୀ ମହାବଳୀ ରାକ୍ଷସରାଜ ରାବଣକୁ ଦେଖୁଛନ୍ତି । ସନ୍ନ୍ୟାସୀର ଏଇ ପୋଷାକଟା କେବଳ ତାଙ୍କର ଛଦ୍ମବେଶ, ଘୃଣାର ମୁଖା । ଋଷିର ଏଇ ଜଟାଜୁଟ ମଧ୍ୟ ଛଦ୍ମ । ଏ ବେଶଭୂଷା ଖସି ପଡ଼ିଲେ ଜନ୍ମ ହେଇଥିବା ଶିଶୁଟିଏ ଭଳି ସେ ବି ଲଙ୍ଗଳା... ଉଲଗ୍ନ... କିଛି ନାହିଁ ତାଙ୍କର ।

ମୁହଁ ବୁଲେଇବାକୁ ଯାଇ ଦର୍ପଣ ଉପରେ ଆଖି ପଡ଼ିଗଲା । ତାଙ୍କ ମୁହଁ ସହିତ କାହା ମୁହଁର ମେଳ ଅଛି... ଖୋଜିବାକୁ ଲାଗିଲେ । କିଛି ଗହଳ ଶ୍ମଶ୍ରୁର ଛଦ୍ମବେଶ ଭିତରୁ ତାକୁ ଚିହ୍ନିବାରେ ତାଙ୍କ ପକ୍ଷେ କଠିନ ହେଇପଡ଼ିଲା । ଦର୍ପଣର ପ୍ରତିବିମ୍ବ ଭିତରେ ନିଜକୁ ଆବିଷ୍କାର କରିବାର ଅଦମ୍ୟ ନିଶା ତାଙ୍କୁ ଘାରିଲା କିଛି ସମୟ ପର୍ଯ୍ୟନ୍ତ । ଆଖିର ଚାହାଣିରେ, ଭ୍ରୂଲତା କପୋଳରେ, ନାସା ଏବଂ ଓଷ୍ଠାଧରରେ ଏମିତିକି ଗଣ୍ଡଦେଶର (ହନୁହାଡ଼) ଅସ୍ଥି ଗଠନରେ ସତ୍ୟବତୀଙ୍କ ଯୌବନକାଳୀନ ମୁଖ ସହିତ କୋଉଠି କେମିତି ଏକ ଅଦ୍ଭୁତ ସାଦୃଶ୍ୟ ସେ ଦେଖିପାରିଥିଲେ । ଏହିଭଳି ଭାବେ ତ ଗୋଟାଏ ବଂଶଧାରା ଅନ୍ୟ ଏକ ବଂଶଧାରା ଭିତରେ କୋଉଠି ବିଲୀନ ହେଇଯାଏ । ସେଇଥିପାଇଁ ହୁଏତ ତାଙ୍କ ରକ୍ତ ଭିତରେ ଏକ ଶୃଙ୍ଖଳିତ ଶୟତାନ ଗର୍ଜନ କରୁଛି । ତାର ପଛକୁ ଫେରିବାର ବାଟ ନାହିଁ ଆଉ । ଉତ୍ତରାଧିକାରିତ୍ୱ ତାଙ୍କୁ ସୀମା ବାହାରକୁ ଟାଣୁଛି ।

## ।। ପାଞ୍ଚ ।।

ପାଣ୍ଡୁଙ୍କ ଅଭିଷେକର ବେଶ୍ କିଛିକାଳ ପରର ଘଟଣା ।

ଦିନକୁ ଦିନ ଧୃତରାଷ୍ଟ୍ର ସ୍ୱପ୍ନଭଙ୍ଗର ଯନ୍ତ୍ରଣାରେ ଝାଉଁଳି ପଡୁଥିଲେ । ତାଙ୍କର ନିଃସ୍ପନ୍ଦ ମୂର୍ତ୍ତି ଆଡ଼କୁ ଚାହିଁଲେ ଭୀଷ୍ମଙ୍କର ଅନ୍ତରାତ୍ମା ଛଟପଟ କରି ଉଠୁଥିଲା । ଏଭଳି ପାଷାଣ ମୂର୍ତ୍ତି ଆଗରୁ ସେ କେବେ ଦେଖିନଥିଲେ । ଶରୀରରେ ସତେକି ପ୍ରାଣ ନାହିଁ । ମୁଖମଣ୍ଡଳ ମଳିନ, ଟୋପାଏ ହେଲେ ରକ୍ତ ନାହିଁ ଯେମିତି ।

ଦିନ ପରେ ଦିନ କଟିବାକୁ ଲାଗିଲା । ମାସ ପରେ ମାସ ଗଲା । ଦିନ ଏହିଭଳି ଦୁଃସହ ମର୍ମାନ୍ତିକ ଭାବେ କାହାର କଟେ । ଧୃତରାଷ୍ଟ୍ରଙ୍କୁ ନ ଦେଖିଲେ ଭୀଷ୍ମ କେବେ ବି ଅନୁମାନ କରି ପାରି ନ ଥାନ୍ତେ ହୁଏତ । ଦିନକୁ ଦିନ ସେ ଏକ ନିଷ୍କ୍ରିୟ ଗହ୍ୱର ଭିତରେ ବୁଡ଼ି ଯାଉଥିଲେ । ଜୀବନ ତାଙ୍କ ପାଇଁ ଏକ ପ୍ରକାର ଲକ୍ଷ୍ୟହୀନ ଓ ଅର୍ଥଶୂନ୍ୟ ବୋଧ ହେଉଥିଲା ।

ପ୍ରତ୍ୟେକ ଦିନ ରଥରେ ସେ କେତେ ବାଟ ଘୂରିବୁଲନ୍ତି କିଛି ଠିକଣା ନ ଥାଏ । ଅନିର୍ଦ୍ଦିଷ୍ଟଙ୍କ ଭଳି ସେ କେବଳ ଘୂରି ବୁଲନ୍ତି । କୋଉଠୁ କୁଆଡ଼ିକି ଯା'ନ୍ତି ସାରଥୀକୁ ମଧ୍ୟ ଜଣା ନ ଥାଏ । ଯେତେବେଳେ ଯୁଆଡ଼େ ମନ ଚାହେଁ, ରଥର ମୁହଁ ସେଇ ଦିଗକୁ ବୁଲାଇବାକୁ ପଡ଼େ ସାରଥୀକୁ । ଧୃତରାଷ୍ଟ୍ରଙ୍କ ମନର ଏଇ ଅଶାନ୍ତି ଓ ଅସ୍ଥିରତାଜନିତ ଏଇସବୁ ପ୍ରକ୍ରିୟା କାହିଁକି କଣ ପାଇଁ ? ଅନ୍ଧ ହେଇ ଜନ୍ମ ହେଇଛନ୍ତି- ଏହା ତ ତାଙ୍କର କପାଳ ଲିଖନ । ନିଜକୁ ନିଜେ ରକ୍ଷା କରି ବା ପାରିବାର ସାଧ ନାହିଁ ତାଙ୍କର । ବାହ୍ୟ ଦୁନିଆର ବହୁବିଧ ଆକ୍ରମଣରୁ ତାଙ୍କୁ ରକ୍ଷା କରିବା ପାଇଁ ବିଶେଷ ଭାବେ ଭୀଷ୍ମ ସଦାସର୍ବଦା ସତର୍କ ଦୃଷ୍ଟି ରଖିଥାନ୍ତି । ଏହି ଭ୍ରାତୃଷ୍ପୁତ୍ରଟି ପ୍ରତି ଭୀଷ୍ମଙ୍କର ଅତ୍ୟନ୍ତ ମମତା, ଦରଦ ଆଉ ସହାନୁଭୂତି । ରାଜନୈତିକ ପ୍ରଜ୍ଞା, କୂଟବୁଦ୍ଧି, ଶାରିରୀକ ବଳ ଥିବା ସତ୍ତ୍ୱେ ସେ ଅଦୃଷ୍ଟର ଶିକାର । ଧୃତରାଷ୍ଟ୍ର ଜନ୍ମାନ୍ଧ ବୋଲି ଭୀଷ୍ମଙ୍କ ସାବଧାନୀ ଦୃଷ୍ଟି, ମମତା ଓ ସହାନୁଭୂତି ଛାୟାବୃତ୍ତ ବୃକ୍ଷ ଭଳି ତାଙ୍କୁ ଘେରି ରଖିଛି । ତଥାପି ଧୃତରାଷ୍ଟ୍ରଙ୍କ ମନର ସବୁ ପରିଚୟ ତାଙ୍କୁ ଜଣା ନାହିଁ । ହୃଦୟର ଆଚରଣ ସବୁକାଳେ ବିଚିତ୍ର ।

ଜନ୍ମାନ୍ଧ ହେବାରୁ ଜୀବନର ଅନେକ କିଛିକୁ ବର୍ଜନ କରିବାକୁ ପଡ଼ିଥିଲା ଧୃତରାଷ୍ଟ୍ରଙ୍କୁ । ତା'ଫଳରେ ମନର ଲକ୍ଷ୍ୟ ଏକମୁଖୀନ ହୋଇପଡ଼ିଲା । ତାଙ୍କର ଏକମାତ୍ର ଲକ୍ଷ୍ୟ ଥିଲା ସିଂହାସନ । ମନର କାମନା ବାସନା ସ୍ୱପ୍ନ ଏଇ ଲକ୍ଷ୍ୟାଭିମୁଖରେ ପ୍ରବଳ ବେଗରେ ଧାବମାନ ହେଉଥିଲା । ସହସା ସେଇ ଲକ୍ଷ୍ୟବସ୍ତୁଟି ତାଙ୍କ ସମ୍ମୁଖରୁ ଘୁଞ୍ଚେଇ ଦେବା ଫଳରେ ଜୀବନର ଉଦ୍ଦେଶ୍ୟ ଅର୍ଥହୀନ ହୋଇପଡ଼ିଲା । କିନ୍ତୁ ମନର ଦୌଡ଼ଟା ରହିଗଲା ସେମିତି । ଏହି ଉନ୍ମାଦନା ତାଙ୍କର ଅବଚେତନ ମନରେ ଏକ ଅସୀମ-ବ୍ୟର୍ଥ-ସାମ୍ରାଜ୍ୟର-କ୍ଷୁଧାର ଜ୍ୱାଳାରେ ଛଟପଟ ହେବାକୁ ଲାଗିଲା । ପ୍ରକୃତରେ ତାଙ୍କ ମନ ଭିତରେ ଯେଉଁ ବିଶାଳ ସାମ୍ରାଜ୍ୟର ଅଧିପତି ହେବାର ସ୍ୱପ୍ନ ଥିଲା, ତାହା ଯେତେବେଳେ ବାସ୍ତବରେ ପରିଣତ ହେଇପାରିଲା ନାହିଁ, ସେତେବେଳେ ତାଙ୍କର କାଳ୍ପନିକ ସାଧ ପୂରଣ ପାଇଁ ସେ ଯେମିତି ଅବିରାମ ଭାବେ କେବଳ ଧାଉଁଥିଲେ ଏପଟେ ସେପଟେ, ଘୂରି ବୁଲୁଥିଲେ ଏ ପାଖରୁ ସେ ପାଖ ।

ଧୃତରାଷ୍ଟ୍ରଙ୍କ ସଂପର୍କରେ ଭୀଷ୍ମଙ୍କ ମନରେ କେତେଗୁଡ଼ିଏ ଅନୁଭୂତି ସୃଷ୍ଟି ହେଲା । ଆଗରୁ କେବେ ଏଭଳି ହେଇନଥିଲା । ତାଙ୍କର ସନ୍ଧାନୀ ଆଖି ନିଜ ଅଗୋଚରରେ ଅନେକ କିଛି ଆଜିକାଲି ଦେଖିପାରୁଥିଲା, ଯାହାକି ଆଗରୁ ସେ ଦେଖିପାରିନଥିଲେ । ଏହିସବୁ ଦୃଶ୍ୟ ଓ ଘଟଣାବଳୀ ସଂପର୍କରେ ଅନେକ ଦିନରୁ ମର୍ମବିଦାରକ ଅମଙ୍ଗଳ ଚିନ୍ତାସବୁ ମନ ଭିତରେ ବାରମ୍ବାର ଉଙ୍କି ମାରିଲା । ତାଙ୍କର ସବୁ ଦାୟ ଦାୟିତ୍ୱ ସେ ନିଜ କାନ୍ଧକୁ ନେଲେ । ନିଜର ଭ୍ରମ ଯୋଗୁଁ ସେ ଖାଲ ଖୋଳିଥିଲେ, ବର୍ତ୍ତମାନ ସେଥିରେ ବନ୍ୟାଜଳ ଆସି ପଶିଯାଇଛି । ବର୍ତ୍ତମାନ ତାର ଅବଶ୍ୟମ୍ଭାବୀ ପରିଣାମକୁ ସ୍ୱଚକ୍ଷୁରେ ତାଙ୍କୁ ଦେଖିବାକୁ ପଡ଼ିବ । ଭୀଷ୍ମ ଚିନ୍ତାଗୁଡ଼ିକ ମନରୁ ପୋଛିଦେଇ ହାଲୁକା ହେଇଯିବା ପାଇଁ ବର୍ତ୍ତମାନ ଚିନ୍ତା କଲେ । କିନ୍ତୁ ପାରୁଥିଲେ କି ?

ବେଶ୍ କିଛି ମାସ କଟିଗଲା ଏଭଳି ଭାବେ । ଭୀଷ୍ମଙ୍କୁ ଆଉ ଦୈନନ୍ଦିନ ରାଜକାର୍ଯ୍ୟ ଦେଖିବାକୁ ପଡ଼ିଲାନି । ପାଣ୍ଡୁ ହିଁ ସମସ୍ତ କାର୍ଯ୍ୟ ସଂପାଦନ କରିବାକୁ ଲାଗିଲେ । କିନ୍ତୁ ସାହାଯ୍ୟ କରିବାପାଇଁ ପ୍ରଧାନମନ୍ତ୍ରୀ, ଉପମନ୍ତ୍ରୀ, ସେନାପତି ସମସ୍ତେ ଅଛନ୍ତି ତାଙ୍କ ପାଇଁ । ସମସ୍ତେ ଯୋଗ୍ୟ । ତାଙ୍କର ଅନୁପସ୍ଥିତିରେ ରାଜନୀତି ଓ ଶାସନକାର୍ଯ୍ୟ କୌଣସିଟି ଅଚଳ ହେଇ ଯାଏ ନାହିଁ । ଏକଥା ପ୍ରଥମ କରି ସେ ଉପଲବ୍ଧି କଲେ ଯେ, ଶାସନକଳ ଭିତରେ ନିଜକୁ ସେ ଏତେବେଡ଼ କରି ଥୋଇଥିଲେ ଯେ, ନିଜେ ହିଁ ନିଜର ବିଶାଳ ଛାୟା ଭିତରେ ଲୁଚି ଯାଇଥିଲେ ଯେମିତି ? ଆଜି ସେ ମୁକ୍ତ । ଦର୍ଶକ ଆସନରେ ବସି ବର୍ତ୍ତମାନ ସେ ଅନେକ କିଛି ଦେଖୁଛନ୍ତି ଓ ଭାବିପାରୁଛନ୍ତି ।

ଭୀଷ୍ମଙ୍କର ମନେହେଲା, ଯେମିତି ଧୃତରାଷ୍ଟ୍ର ଅହରହ ତାଙ୍କ ନିକଟରେ ଗୋଟିଏ ନିରବ ଅଭିଯୋଗ କରିଚାଲିଛି । ଭୀଷ୍ମ ନିଜେ ମଧ ଚିନ୍ତା କରିଛନ୍ତି - ଜ୍ୟେଷ୍ଠ ସନ୍ତାନ

ହୋଇ ମଧ ଧୃତରାଷ୍ଟ୍ର କାହିଁକି ସିଂହାସନ ପାଇଲା ନାହିଁ । ତାକୁ ସିଂହାସନରୁ ବଞ୍ଚିତ କରିବାରେ କିଏ ଦାୟୀ ? କିଏ ? ଭୀଷ୍ମ ନିଜକୁ ହିଁ ପ୍ରଶ୍ନ କରିଥିଲେ ।

ହଁ ସବୁ ଅପରାଧ ତାଙ୍କର । ଯେଉଁ ଭୁଲ ସେ କରିଛନ୍ତି ତାର ପ୍ରାୟଶ୍ଚିତ୍ତ ବର୍ତ୍ତମାନ ତାଙ୍କୁ ହିଁ କରିବାକୁ ପଡ଼ିବ । ଗୋଟିଏ ନୁହେଁ, ଅନେକ ଭୁଲ ସେ କରିଛନ୍ତି । ଏହି ଭୁଲଗୁଡ଼ିକ କାର୍ଯ୍ୟତଃ ତାଙ୍କର ଏକାନ୍ତ ବ୍ୟକ୍ତିଗତ । ରାଜନୀତିରେ ଶାସକର ବ୍ୟକ୍ତିଗତ ମତ, ପଥ, ଆଦର୍ଶ, ପ୍ରତିଜ୍ଞାର କୌଣସି ମୂଲ୍ୟ ନାହିଁ । ରାଜନୈତିକ ସ୍ୱାର୍ଥ ଓ ବ୍ୟକ୍ତିଗତ ସ୍ୱାର୍ଥ କେବେହେଲେ ଏକ ନୁହେଁ, ଭିନ୍ନ । କେତେ ମାତ୍ରାରେ ଭିନ୍ନ ସେଇ ପରିମାପ-ଜ୍ଞାନ ଟିକକର ଅଭାବରେ ଏଇ ଜଟିଳ ପରିସ୍ଥିତିର ଉଦ୍ଭବ । ଭୀଷ୍ମଙ୍କ ଛାତି ଭିତରଟା କେମିତି ଦଳିଚକଟି ହେଇଗଲା । ତଥାପି ଏହି ଆତ୍ମବିଶ୍ଳେଷଣ ଭିତରେ ଯେମିତି ଖୁବ୍ ଗୋଟାଏ ଶାନ୍ତି ପାଉଥିଲେ ସେ ।

କିନ୍ତୁ ଧୃତରାଷ୍ଟ୍ରଙ୍କ କଥା ମନେପଡ଼ିବା ସାଙ୍ଗେ ସାଙ୍ଗେ ଏଇ ଶାନ୍ତି ଟିକକ ବିଷେଇ ଉଠିଲା । ନିଃଶ୍ୱାସ ନେବା କଷ୍ଟ ହେଲା । ଧୃତରାଷ୍ଟ୍ର ହିଁ ତାଙ୍କର ଏକମାତ୍ର ଚିନ୍ତା ହେଇଉଠିଲା । ତାର ନିର୍ବାକ୍ ସ୍ତବ୍ଧତା ତାଙ୍କୁ କଷ୍ଟ ଦେଉଥିଲା, ସେ ସହ୍ୟ କରିପାରୁନଥିଲେ । ମନେ ମନେ ସେ ଚିନ୍ତାକଲେ, ହୁଏତ କୌଣସି ସୁନ୍ଦରୀ ରମଣୀର ସାନ୍ନିଧ ପାଇଲେ ଧୃତରାଷ୍ଟ୍ରର ଏଇ ଆତ୍ମ ଅଭିମାନ କିଛି ମାତ୍ରାରେ ପ୍ରଶମିତ ହେଇଯାଇପାରେ । ଅନ୍ଧ, ଖଞ୍ଜ ହେଲେ ମଧ ପୁରୁଷ ମାତ୍ରେ ହେଁ ନାରୀ ପ୍ରତି ଆକର୍ଷଣ ସ୍ୱାଭାବିକ ଓ ପ୍ରକୃତ ଅନୁମୋଦିତ । ପ୍ରବୃତ୍ତିର କ୍ଷୁଧା ଗୋଟାଏ କ୍ଷେତ୍ରରେ ନିବୃତ୍ତ ନ ହେଲେ ଅନ୍ୟ ବାଟେ ତାହା ଫୁଟି ବାହାରେ । ବାହାରର ଯେତେସବୁ ଘଟଣା ସେତେବେଳେ ଘଟଣା ବୋଲି ମନେହୁଏନା । ଯାହା ଘଟେ ସବୁ ମନର ଅଭ୍ୟନ୍ତରରେ । ଧୃତରାଷ୍ଟ୍ରର ବିବାହ ବୟସ ମଧ ଆଗେଇ ଗଲାଣି ଅନେକ । କେବଳ ଅନ୍ଧ ବୋଲି ତାକୁ କନ୍ୟାପାତ୍ର ମିଳିବା ସମସ୍ୟା ହେଉଥିଲା । ଅଥଚ ଭିତରର ପ୍ରବୃତ୍ତି ତାର ନଖଦନ୍ତ ମେଲେଇ ବସିଥିଲା; କିନ୍ତୁ କୌଣସି ଆକାଂକ୍ଷା ଚରିତାର୍ଥ ହେଇପାରୁନଥିଲା କୌଣସି ପ୍ରକାରେ ।

ଧୃତରାଷ୍ଟ୍ରଙ୍କ କ୍ଷେତ୍ରରେ ମଧ ବୋଧହୁଏ ପ୍ରକୃତି ପ୍ରତିଶୋଧ ନେଉଥିଲା । ତାଙ୍କର ଏ ପ୍ରକାର ଉଦ୍‌ଭ୍ରାନ୍ତ ଉନ୍ମାଦନା ମୂଳରେ ଥିଲା ପ୍ରବଳ ସିଂହାସନ ଲୋଭ । ପ୍ରେମ ପାଇଁ ଅସୀମ ତୃଷ୍ଣା, ଇନ୍ଦ୍ରିୟ ବାସନା, ଯାହା ଏଯାବତ୍ ଚରିତାର୍ଥ ହୋଇନଥିଲା । ସମ୍ମୁଖରେ ଖାଦ୍ୟ ରଖି କ୍ଷୁଧାର୍ତ୍ତ ବ୍ୟାଘ୍ର ଭଳି ସେ ବସି ରହିଥିଲେ । ଜନ୍ମାନ୍ଧ ବୋଲି ସଂକୋଚବଶତଃ ନିଜ ଇଚ୍ଛାକୁ ସେ ମୁଖରେ ଉଚ୍ଚାରଣ କରିପାରୁ ନ ଥିଲେ । କିନ୍ତୁ କ୍ଷୁଧା କାହିଁକି ନିବୃତ୍ତ ହେବ ? ସେ ତାର ଅନ୍ୟ ପନ୍ଥା ଧରିଲା ।

ଦୁଃଶ୍ଚିନ୍ତା, ଦୁର୍ଭାବନାକୁ ପୋଛିଦେଇ ଭୀଷ୍ମ ଧୃତରାଷ୍ଟ୍ରଙ୍କୁ ବିବାହ ଦେବାପାଇଁ ଚିନ୍ତା କଲେ । ହେଲେ ଅନ୍ଧ ପୁତ୍ରକୁ କେମିତି ବିବାହ ଦେବେ ଭାବି ପାରୁନଥିଲେ । କିଛି ଗୋଟାଏ ତ କରିବାକୁ ପଡ଼ିବ ତାଙ୍କୁ । ବିଚିତ୍ରବୀର୍ଯ୍ୟଙ୍କ ବେଳକୁ ସ୍ୱୟଂବର ସଭା ମଧ୍ୟରୁ କନ୍ୟାଙ୍କୁ ଉଠେଇ ଆଣି ଭାଇମାନଙ୍କ ସହିତ ବିବାହ ଦେଇଥିଲେ । ହସ୍ତିନାପୁରର ରାଜନୈତିକ ମର୍ଯ୍ୟାଦା ଓ ଗୁରୁତ୍ୱକୁ କନ୍ୟାମାନଙ୍କର ସ୍ୱୟଂବର ସଭାରେ ଭାରତବର୍ଷର ଗଣ୍ୟମାନ୍ୟ ରାଜନ୍ୟବର୍ଗଙ୍କ ବିପୁଳ ସମାବେଶ ଘଟିଥିଲା । ସେଥିପାଇଁ ଭୀଷ୍ମ ଉପେକ୍ଷିତ ହସ୍ତିନାପୁରର ସାହସ, ବିକ୍ରମ, ତେଜ, ଦମ୍ଭ, ପ୍ରତାପ, ସ୍ପର୍ଦ୍ଧା ଏବଂ ଅବିଚାର ବିରୋଧରେ ନିଜର ଅମିତ ଶକ୍ତିକୁ ଠିଆ କରାଇଥିଲେ ଏବଂ ଉପସ୍ଥିତ ରାଜନ୍ୟବର୍ଗଙ୍କ ଅନ୍ତରରେ ତାଙ୍କ ନିଜ ସଂପର୍କରେ ଯୁଗପତ୍ ଭୟ, ବିସ୍ମୟ ଏବଂ ଚମକ ସୃଷ୍ଟି କରିବା ଉଦ୍ଦେଶ୍ୟରେ ରାଜକନ୍ୟାମାନଙ୍କୁ ହରଣ କରି ରାଜବଧୂର ଗୌରବ ମୁକୁଟ ପିନ୍ଧାଇ ଦେଇଥିଲେ ସେମାନଙ୍କ ଅବନତ ଶିରରେ । ଧୃତରାଷ୍ଟ୍ର ପାଇଁ ଅନୁରୂପ ସେଭଳି କିଛି କରିବାର ଚିନ୍ତା ମନରେ ଉଦୟ ହେଲେ ମଧ ତାଙ୍କ ବିବେକ ବୁଦ୍ଧି ଏବଂ ମନୁଷ୍ୟତ୍ୱ ତାଙ୍କୁ ଏହି କାର୍ଯ୍ୟରୁ ନିବୃତ୍ତ କରିଥିଲା, ନିରୁତ୍ସାହିତ କରିଥିଲା । ଜନ୍ମାନ୍ଧ ଧୃତରାଷ୍ଟ୍ର ସହିତ ଗୋଟିଏ ନିରୀହ ଝିଅର ଭାଗ୍ୟକୁ ଜୋର ଜବରଦସ୍ତ ବାନ୍ଧିଦେବା ପାଇଁ ତାଙ୍କର ବିବେକ ରାଜି ହେଲା ନାହିଁ । ଈଶ୍ୱର ତାଙ୍କୁ ଏଥିରେ କ୍ଷମା କରିବେ ନାହିଁ । ଅଭିଶାପର ଭାଗୀ ହେବେ ସେ । ତାଙ୍କ ନାମରେ ଶତ୍ରୁ କଳଙ୍କ ଲେପନ କରିବେ ।

ଭୀଷ୍ମ ସାଧାରଣ ମଣିଷଭଳି ଜଣେ ଅଧେ ଜ୍ୟୋତିଷାଚାର୍ଯ୍ୟଙ୍କ ପାଖକୁ ଯାଇ ପରାମର୍ଶ ଲୋଡ଼ିଲେ ଏବଂ ଗୋପନରେ ଅନେକ କିଛି କାର୍ଯ୍ୟ ସଂପନ୍ନ କଲେ । ଏସବୁ କଲାବେଳେ ସେଇ ସର୍ବନିୟନ୍ତା ଈଶ୍ୱରଙ୍କ କଥା ମନେପଡ଼ିଲା । ସେ ହିଁ ତ ସବୁ । ସେଇ ନିୟାମକଙ୍କ ଇଚ୍ଛାରେ ସକଳ କାର୍ଯ୍ୟ ସଂପାଦିତ ହୁଏ । ମଣିଷ ନିମିତ୍ତ ମାତ୍ର । ସେଇ ଈଶ୍ୱର ହିଁ ମଣିଷ ମାଧ୍ୟମରେ ତାଙ୍କର ଇଚ୍ଛା ପୂରଣ କରନ୍ତି । ଠିକ୍ ସମୟରେ ଉଚିତ ଫଳ ହିଁ ନିଶ୍ଚୟ ଫଳିବ ।

ଧୃତରାଷ୍ଟ୍ରଙ୍କର ବିବାହଯୋଗ ଉପସ୍ଥିତ । ଖୁବ୍ ଅଳ୍ପ ଦିନ ମଧ୍ୟରେ ଏକ ଆଶ୍ଚର୍ଯ୍ୟ ସର୍ତ୍ତରେ ପାହାଡ଼ୀ ଜାତିର କୌଣସି ଏକ କନ୍ୟା ସହିତ ବିବାହ ଯୋଗ ଥିବାର ସୂଚନା ଦେଲେ ଗଣକ ଜ୍ୟୋତିଷାଚାର୍ଯ୍ୟ । ଜ୍ୟୋତିଷଙ୍କ କଥାଗୁଡ଼ିକ ଭୀଷ୍ମଙ୍କ ମନକୁ ଛୁଇଁଲା । ଭାବିବାକୁ ଭଲ ଲାଗିଲା ତାଙ୍କୁ । ହେଲେ ଭାବନାର କଣ କିଛି ଶେଷ ଅଛି ? ଭୀଷ୍ମ କିଛି ବୁଝିପାରୁ ନ ଥିଲେ । ଜ୍ୟୋତିଷଙ୍କର ଭବିଷ୍ୟବାଣୀ କେତେ ସତ୍ୟ ଆଉ କେତେ ଭ୍ରାନ୍ତିମୂଳକ । ଭାବୁ ଭାବୁ ସେ ଉଦାସ ଅନ୍ୟମନସ୍କତା ଭିତରେ ବୁଡ଼ିଯାଇ ଦେଖିବାକୁ ଲାଗିଲେ, ତାଙ୍କ ଧୃତରାଷ୍ଟ୍ରଙ୍କ ମସ୍ତକରେ ସୁନାର ମୁକୁଟ... ଲାଲ ରେଶମୀ ଜରିପକା ବସ୍ତ୍ର ପହରଣ କରି ତାଙ୍କ ସମ୍ମୁଖରେ ଠିଆ ହେଇଛି ଜଣେ ଭୁବନମୋହିନୀ ଅପରୂପା କନ୍ୟା । ଆଖିରେ ତାର ବିସ୍ମୟ । ଧୃତରାଷ୍ଟ୍ରଙ୍କ ନିଷ୍ପ୍ରାଣ ଅପଲକ ଦୁଇଆଖି କନ୍ୟା ଉପରେ ନିବଦ୍ଧ ।

ନିଜ କଣ୍ଠଦେଶରୁ ମାଲ୍ୟ କାଢ଼ି କନ୍ୟା କଣ୍ଠରେ ପିନ୍ଧେଇ ଦେଲେ ଧୃତରାଷ୍ଟ୍ର । ତା'ପରେ ସୀମନ୍ତକୁ ସିନ୍ଦୂରରେ ରଙ୍ଗେଇ ଦେଲେ ।

ଦୀର୍ଘଶ୍ୱାସ ପକାଇଲେ ଭୀଷ୍ମ ।

କିଛିଦିନ ଭିତରେ ଏକ ଅପ୍ରତ୍ୟାଶିତ ଘଟଣା ଘଟିଲା । ଗାନ୍ଧାର ଦେଶରୁ ଗାନ୍ଧାର ଯୁବରାଜ ଶକୁନି ହସ୍ତିନାପୁରକୁ ବନ୍ଧୁତ୍ୱ ଓ ରାଜନୈତିକ ସାହାଯ୍ୟ ପାଇଁ ପ୍ରାର୍ଥୀ ହୋଇ ଆସିଲେ । ଶକୁନି ଗାନ୍ଧାର ରାଜ୍ୟର ରାଜନୈତିକ ସଂକଟକୁ ବିଶ୍ଳେଷଣ କରି କହିଲେ, ଯାଦବ ରାଜ୍ୟଗୁଡ଼ିକରୁ ନିୟମିତ ସାହାଯ୍ୟ ସହାନୁଭୂତି ପାଇ ଅମରାବତୀର ଇନ୍ଦ୍ର, ପ୍ରତିବେଶୀ ଦୁର୍ଗମ ପାର୍ବତ୍ୟ ରାଜ୍ୟଗୁଡ଼ିକର ଅଧିପତି ପବନ, ବରୁଣ ଓ ଯମ ମିଶି ନିରପେକ୍ଷ ଗାନ୍ଧାର ରାଜ୍ୟକୁ ଆକ୍ରମଣ କରିବା ପାଇଁ ବାରମ୍ବାର ଚକ୍ରାନ୍ତ କରୁଛନ୍ତି । ଇନ୍ଦ୍ରଙ୍କ ଭୟ ଭୀଷ୍ମଙ୍କୁ । ଏକମାତ୍ର ଭୀଷ୍ମ ହିଁ ତାଙ୍କର ଇନ୍ଦ୍ରତ୍ୱ ହରଣ କରିପାରନ୍ତି । ଏହି ଆଶଙ୍କାରେ ଇନ୍ଦ୍ରଙ୍କର ନିଦ୍ରା ନାହିଁ । ତାଙ୍କର ଧାରଣା ଯେ, ପିତୃ ସିଂହାସନରୁ ବଞ୍ଚିତ ଭୀଷ୍ମ ବେଶି ମାତ୍ରାରେ ଯୁଦ୍ଧେଚ୍ଛୁ ହୋଇଉଠିଛନ୍ତି । ଭାରତୀୟ ରାଜନ୍ୟବର୍ଗ ମଧ୍ୟ ତାଙ୍କୁ ଭୟ କରନ୍ତି । ସମ୍ରାଟ୍ ଜରାସନ୍ଧ ମଧ୍ୟ ତାଙ୍କୁ ମାନେ । ଏହି ପରିସ୍ଥିତିରେ ଇନ୍ଦ୍ର ଟିକିଏ ଚିନ୍ତିତ ଓ ବିମର୍ଷ ହେଇ ପଡ଼ିଛନ୍ତି । ରାଜନୀତିରୁ ଭୀଷ୍ମଙ୍କ ଅବସର ଗ୍ରହଣ ଇନ୍ଦ୍ରଙ୍କ ନିକଟରେ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ତାଙ୍କର ବିଶ୍ୱାସ ଭୀଷ୍ମ ଏକ ପୃଥକ୍ ରାଜ୍ୟ ଗଠନ ନିମନ୍ତେ ନିଶ୍ଚୟ ଅମରାବତୀ ଦଖଲ କରିବେ । କାରଣ ଭାରତୀୟ ରାଜ୍ୟଗୁଡ଼ିକ, ଗିରିବ୍ରଜର ସମ୍ରାଟ୍ ଜରାସନ୍ଧ ଅଥବା ଯାଦବ ରାଜ୍ୟ ସମବାୟର ନେତା ଶ୍ରୀକୃଷ୍ଣ ଏହି ଶକ୍ତିକୁଟର ଅନ୍ତର୍ଭୁକ୍ତ ଅଟନ୍ତି । ସୁତରାଂ କୌଣସି ଗୋଟିଏ କୁଟ / ମେଣ୍ଟ ଆକ୍ରାନ୍ତ ହେଲେ ମହାସମର ସୃଷ୍ଟି ହେବ । ଇନ୍ଦ୍ରଙ୍କ ମେଣ୍ଟ / କୁଟ ବହିର୍ଭୂତ ଅମରାବତୀ ଆକ୍ରାନ୍ତ ହେଲେ ଅନୁରୂପ କୌଣସି ବୃହତ୍ତର ସଂଘର୍ଷର ସଂଭାବନା ହୁଏତ ନାହିଁ । ସେଇ କାରଣରୁ ଇନ୍ଦ୍ର ଅମରାବତୀର ଏକମାତ୍ର ପ୍ରବେଶପଥ ଗାନ୍ଧାର ଆକ୍ରମଣ କରି ଭୀଷ୍ମଙ୍କ ସାମ୍ରାଜ୍ୟଲିପ୍ସାକୁ ଅଟକାଇ ଦେବାକୁ ଚାହାଁନ୍ତି । ବହୁ ପ୍ରତ୍ୟାଶା ନେଇ ଗାନ୍ଧାର ହସ୍ତିନାପୁରକୁ ବନ୍ଧୁତ୍ୱର ପ୍ରସ୍ତାବ ନେଇ ଆସିଛି ।

ଶକୁନିର କୂଟ ରାଜନୀତି ଭୀଷ୍ମଙ୍କୁ ଚମତ୍କୃତ କଲା । ସହାସ୍ୟ ମୁଖରେ ଭୀଷ୍ମ ତା ଆଡ଼କୁ ଚାହିଁ ରହିଲେ ଏବଂ ମନେ ମନେ କଥାଗୁଡ଼ିକୁ ତନ୍ନ ତନ୍ନ କରି ବିଚାର କରିବାକୁ ଲାଗିଲେ । ଶକୁନି ଯାହା କହୁ ପଛକେ ଭୀଷ୍ମ ତା କଥାକୁ ବିଶ୍ୱାସ କଲେ ନାହିଁ । ପ୍ରକୃତ ପକ୍ଷେ ମେଣ୍ଟ / କୁଟ ବାହାରେ କ୍ଷୁଦ୍ର ରାଜ୍ୟ ଗାନ୍ଧାରର ନିରପେକ୍ଷ ଅସ୍ତିତ୍ୱ ରକ୍ଷା କରିବା ଏକ ଦାରୁଣ ସମସ୍ୟା ହେଇ ଉଠିଛି । ବାସ୍ତବରେ ବୃହତ୍ ଦୁଇ ଶକ୍ତି ଅମରାବତୀକୁ କବ୍‌ଜା କରିବା ପାଇଁ ଗାନ୍ଧାରକୁ ଏକାବେଳକେ ଗ୍ରାସ କରିବାକୁ ଉଦ୍ୟତ । ନିରୁପାୟ ଅସହାୟ ଗାନ୍ଧାର ସେଥିପାଇଁ ଗୋଷ୍ଠୀ ନିରପେକ୍ଷ ରାଷ୍ଟ୍ର ହସ୍ତିନାପୁରର କାଣ୍ଡାରୀ ଭୀଷ୍ମଙ୍କ ଛତ୍ର ଛାୟାରେ

ଆଶ୍ରୟ ନେଇ ନିଜର ଅସ୍ତିତ୍ୱ ରକ୍ଷା କରିବା ପାଇଁ ଉତ୍ସୁକ । ଧୂର୍ତ୍ତ ଶକୁନି ସେମାନଙ୍କ ରାଜ୍ୟର ସଂକଟ ଓ ଉଦ୍‌ବେଗର କାହାଣୀକୁ ବେଶ୍ ଚତୁରତାର ସହିତ ଇନ୍ଦ୍ର ପାଟିରେ କୁହାଇଛି ମାତ୍ର । ନିଜ ସ୍ୱାର୍ଥକୁ ନିରାପଦ ରଖିବା ପାଇଁ ତାର ଓ ଇନ୍ଦ୍ର ମଧ୍ୟରେ ଗୋଟାଏ ଚାପା ସଂଘାତକୁ ଉସୁକେଇ ଦେଇଛି କୌଶଳରେ । ସେମାନଙ୍କ ପାରସ୍ପରିକ ଘୃଣା, ବଳ କଷାକଷି, ବିଦ୍ୱେଷର ଅନ୍ତଃସ୍ରୋତ କ'ଣ କଲେ ଆହୁରି ଜଟିଳ ହେବ, ତାର ଏକ ଅସାଧାରଣ କୂଟବୁଦ୍ଧିର ଖେଳ ଦେଖାଇଲା ଶକୁନି । କଣ୍ଟା ସାହାଯ୍ୟରେ କଣ୍ଟାକୁ କାଢ଼ିବାର ନୀତିକୁ ସେ ଗ୍ରହଣ କରିଛି । ମନେ ମନେ ଭୀଷ୍ମ ଶକୁନିକୁ ପ୍ରଶଂସା କଲେ । ତାଙ୍କ ମନକୁ ମଧ ଶକୁନି ପାଇଲା । ଜଟିଳ ରାଜନୀତିର ଏକ ନିର୍ଭୁଲ ହିସାବ କହିଦେଇ ଭୀଷ୍ମ ହସି ହସି ଶକୁନିର ଦୃଷ୍ଟି ଆକର୍ଷଣ କଲେ । କହିଲେ, ହସ୍ତିନାପୁର କେବଳ ଗାନ୍ଧାର ଦେଶର ବଂଧୁତ୍ୱ ଚାହେଁନା, ଚାହେଁ ତା ସହିତ ପାରିବାରିକ ସଂପର୍କ ସ୍ଥାପନ କରିବାକୁ ।

ଏହା ଶୁଣି ଶକୁନିର ଆଖି ଦୁଇଟି ବିସ୍ତାରିତ ହୋଇଉଠିଲା ହଠାତ୍ । ଏଭଳି ଅନୁରୋଧ ଅପ୍ରତ୍ୟାଶିତ । ଆଖି ସାମ୍ନାରେ ଭଗିନୀ ଗାନ୍ଧାରୀର ଅପୂର୍ବ ଶ୍ରୀମଣ୍ଡିତ ମୁଖମଣ୍ଡଳ ଭାସି ଉଠିଲା । କଣ ଉତ୍ତର ଦେବେ ଭାବିପାରୁ ନ ଥିଲା ସେ । ଟିକିଏ ବିବ୍ରତ ହେଇ ପଡ଼ିଲା । ଆଭିଜାତ୍ୟର ସଂଯମରେ ବାଧ ଅଭ୍ୟସ୍ତ ଶାଳୀନତା ଭିତରୁ ସୌଜନ୍ୟ ଦେଖାଇ ଟିକିଏ ହସିଲା ଶକୁନି । ଥତମତ ହେଇ କହିଲା- ଏଇଟା କ'ଣ ଆଉ ବଡ଼ କଥା ? ତାପରେ... ଟିକିଏ ରହି ପ୍ରଶ୍ନ କଲା, ପାତ୍ରଟି କୋଉ ରାଜକୁମାର ?

ଭୀଷ୍ମଙ୍କ ଦୃଷ୍ଟି ଆହୁରି ତୀକ୍ଷ୍ଣ ହେଲା । ଚାପା କଣ୍ଠରେ କହିଲେ : ବିଚିତ୍ରବୀର୍ଯ୍ୟର ଜ୍ୟେଷ୍ଠ ପୁତ୍ର ଅନ୍ଧ ଧୃତରାଷ୍ଟ୍ର ସହିତ ଏହି ବିବାହ ବନ୍ଧନ ସୁସଂପନ୍ନ ହେଲେ ହସ୍ତିନାପୁର ଏବଂ ଭୀଷ୍ମ ଗାନ୍ଧାରର ଅକୃତ୍ରିମ ବଂଧୁ ଓ ସହାୟ ହେଇ ରହିପାରନ୍ତି ।

ଶକୁନି ଟିକିଏ ରହିଗଲା । ହଠାତ୍ ଛାତି ଭିତରେ ଯେମିତି ଧଡ଼୍‌କରି ଶବ୍ଦଟିଏ ହେଲା । କାନମୁଣ୍ଡା ତାତି ଉଠିଲା ଦପ୍‌ଦପ୍ କରି । ମୁଣ୍ଡ ଭିତରେ ତୀବ୍ର ଯନ୍ତ୍ରଣା ଅନୁଭୂତ ହେଲା । କଣ କରିବ ସେ ? କଣ ଆଉ ତାର କରିବାର ଅଛି ? ଗୋଟାଏ ପ୍ରକାରର ଶଙ୍କାରେ ଛାତି ଭିତରଟା ଶୁଖିଗଲା ।

ଶକୁନିକୁ ଅସ୍ୱାଚ୍ଛନ୍ଦ୍ୟ ବୋଧ କରିବା ଦେଖି ଭୀଷ୍ମ ଟିକିଏ ହସିଲେ । ମୃଦୁସ୍ୱରରେ କହିଲେ, ବଂଧୁ ଶକୁନି, ଧୃତରାଷ୍ଟ୍ର ସୁଶ୍ରୀ, ସୁଠାମ, ରୂପବାନ୍, ସ୍ୱାସ୍ଥ୍ୟବାନ୍ ସୁପୁରୁଷ । ଅସାଧାରଣ ତାର ଭୁଜବଳ । ତାର ଆଲିଙ୍ଗନରେ ଲୌହସ୍ତମ୍ଭ ପର୍ଯ୍ୟନ୍ତ ଚୂର୍ଣ୍ଣ ବିଚୂର୍ଣ୍ଣ ହେଇଯାଏ । ରାଜକୁମାର ଧୃତରାଷ୍ଟ୍ରର ସିଂହାସନରୁ ବଞ୍ଚିତ ହେବା ଗୋଟାଏ ଦୁର୍ଘଟଣା ମାତ୍ର । କିଛି ମଣିଷର ଷଡ଼ଯନ୍ତ୍ର-ଏବଂ ଅନିଚ୍ଛା ହେତୁ ସେ ସିଂହାସନ ପାଇଲା ନାହିଁ । କିନ୍ତୁ ଜ୍ୟୋତିଷର ଭବିଷ୍ୟବାଣୀ ଅଛି । ପୃଥିବୀର ଅଧୀଶ୍ୱର ହେବ ସେ । ଭାରତବର୍ଷର ବୃହତ୍

ଶକ୍ତି ଗୋଷ୍ଠୀର ପୁରୋଭାଗରେ ଦିନେ ସେ ନେତୃତ୍ୱ ନେବ । ସେ ଦିନ ଆଉ ବେଶି ଦୂର ନାହିଁ । ଏସବୁ ହିଁ ଜ୍ୟୋତିଷଙ୍କ ଭବିଷ୍ୟ ବାଣୀ । ତୁମକୁ ମିତ୍ର ଭାବି ସବିନୟରେ ସମସ୍ତ କଥା ଖୋଲି କହିଲି । ତୁମ ଭଗିନୀର କିଛି ଅସୁବିଧା ହେବନି, ତାର ନିରାପତ୍ତା ସୁନିଶ୍ଚିତ । ଦିନେ ସେ ହସ୍ତିନାପୁରର ରାଜମାତା, ଲୋକମାତା ହେବ । ହସ୍ତିନାପୁରର ରାଜମହିଷୀ ହେବା ଯେ କୌଣସି ରାଜକୁମାରୀ ପକ୍ଷରେ ଗର୍ବ ଓ ଗୌରବର କଥା ନିଶ୍ଚୟ ।

ନିସ୍ପନ୍ଦ ମୂର୍ତ୍ତିଟିଏ ଭଳି ଶକୁନି ବସି ରହିଥିଲା । ଯେମିତି ହୋସ୍ ନ ଥିଲା । ଭୀଷ୍ମଙ୍କ ଅନୁଚ୍ଚ ଗଳା ଖଙ୍କାର ଶବ୍ଦରେ ମୁଣ୍ଡଟେକି ଚାହିଁଲା ଶକୁନି । ତାର ଗମ୍ଭୀର ଥମଥମ ମୁହଁକୁ ଅପଲକ ନେତ୍ରରେ ଚାହିଁ ରହିଥିଲେ ଭୀଷ୍ମ । କହିଲେ, ଆତ୍ମୀୟତାର ଏହି ପ୍ରସ୍ତାବ ଗ୍ରହଣଯୋଗ୍ୟ ନ ହେଲେ ହସ୍ତିନାପୁର ସହିତ ଗାନ୍ଧାରର କୌଣସି ରାଜନୈତିକ ସଂପର୍କ ସ୍ଥାପିତ ହୋଇପାରିବ ନାହିଁ । ଭୀଷ୍ମ ତାର ଅପମାନର ପ୍ରତିଶୋଧ ନେବାକୁ ପଶ୍ଚାତ୍‌ପଦ କେବେ ହେବ ନାହିଁ । ଶକୁନିର ଅସ୍ତିତ୍ୱ ଆହୁରି ବଢ଼ିଗଲା । ତା ସହିତ ଉଦ୍‌ବେଗ ମଧ୍ୟ । ଇଏ ଯେମିତି ଗୋଟିଏ ଦୁଃସ୍ୱପ୍ନ ଦେଖୁଛି ସେ । ରାଜନୈତିକ ସଂକଟର ସୁଯୋଗ ନେଇ ଭୀଷ୍ମ ତାକୁ ଏକ ଅଦ୍ଭୁତ ରାଜନୀତିର ଜାଲରେ ବାନ୍ଧି ଦେଲେ । ବର୍ତ୍ତମାନ ଗାନ୍ଧାର ରାଜ୍ୟର ଗୌରବ, ମର୍ଯ୍ୟାଦା, ସ୍ୱାଧୀନତା, ନିରାପତ୍ତା ଏବଂ ଅସ୍ତିତ୍ୱ ରକ୍ଷା କରିବାକୁ ହେଲେ ପ୍ରିୟ ଭଗିନୀ ଗାନ୍ଧାରୀକୁ ଜନ୍ମାନ୍ଧ ଧୃତରାଷ୍ଟ୍ରଙ୍କ କଣ୍ଠଲଗ୍ନା କରିବା ବ୍ୟତୀତ ଅନ୍ୟ କୌଣସି ଦ୍ୱିତୀୟ ପନ୍ଥା ତା ସାମ୍‌ନାରେ ନଥିଲା ।

ଅନେକ ସମୟ ପରେ ସ୍ତବ୍‌ଧତାର ଗହ୍ୱର ଭିତରୁ ସତେ ଯେମିତି ସେ ଉପରକୁ ଉଠିଲା । ତା ଆଖିରେ ଆତଙ୍କର ଛାପ ସ୍ପଷ୍ଟ ଦିଶୁଥିଲା । ଦିଶାଶୂନ୍ୟ ଭଳି ମନେ ହେଉଥିଲା ତାକୁ । ଆସ୍ତେ ଆସ୍ତେ ସେ ମୁଣ୍ଡ ହଲେଇଲା । ଗୋଟାଏ ଅଦ୍ଭୁତ ଫନ୍ଦି ତିଆରି କଲା ମନେ ମନେ । କହିଲା, ଆତ୍ମୀୟତାର ଯେଉଁ ହାତ ହସ୍ତିନାପୁର ଗାନ୍ଧାର ଆଡ଼କୁ ପ୍ରସାରିତ କରିଛି ତାକୁ ଗାନ୍ଧାର ପକ୍ଷରୁ ମୁଁ ସ୍ୱାଗତ କରୁଛି । ଗାନ୍ଧାର ହସ୍ତିନାପୁରର ମୈତ୍ରୀ ଏବଂ ଆତ୍ମୀୟତା ଦୀର୍ଘଜୀବୀ ହେଉ । ପ୍ରିୟତମ ଭଗିନୀର ଜଣେ ଅନ୍ତରଙ୍ଗ ସହଚର ଓ ସହାୟ ହୋଇ ଏଇ ରାଜଅନ୍ତଃପୁରରେ ମୁଁ ମଧ୍ୟ ରହିବାକୁ ଚାହେଁ । କାରଣ ଭଗିନୀକୁ ଛାଡ଼ି ରହିବା ମୋ ପକ୍ଷେ ଅତୀବ କଷ୍ଟକର । ସତ୍ୟାଶ୍ରୟୀ ଭୀଷ୍ମଙ୍କୁ କେବଳ ଏଇତକ ପ୍ରତିଶ୍ରୁତି ଦେବାକୁ ପଡ଼ିବ ।

ଭୀଷ୍ମ ହସିଲେ । ଉତ୍ତର ଦେଇ କହିଲେ, ଖୁବ୍ ଉତ୍ତମ କଥା ହେବ । ପ୍ରସ୍ତାବ ମଞ୍ଜୁର ହେଲା । କିନ୍ତୁ ମୋର ମଧ୍ୟ ଗୋଟାଏ ସର୍ତ୍ତ ଅଛି । ହସ୍ତିନାପୁରର ବଂଶମର୍ଯ୍ୟାଦା ଅକ୍ଷୁଣ୍ଣ ରଖିବା ପାଇଁ ଗାନ୍ଧାର ରାଜକୁମାରୀଙ୍କୁ ଅବଶ୍ୟ ଏହି ପ୍ରାସାଦକୁ ଆଣିବା ପାଇଁ ହେବ । ଏହିଠାରେ ହିଁ ବିବାହ ଉତ୍ସବ ସଂପନ୍ନ ହେବ ସେମାନଙ୍କର ।

ଧୃତରାଷ୍ଟ୍ରଙ୍କ ବିବାହ ଖବର ଖୁବ୍ ଗୋପନ ରଖାଗଲା । ଖୁବ୍ କମ୍ ସମୟରେ ଶୀଘ୍ର ମଧ୍ୟ ସଂପନ୍ନ ହେଲା । ଏତେ ଶୀଘ୍ର ହେଲା ଯେ, ପ୍ରତିବେଶୀ ରାଜାମାନେ ମଧ୍ୟ ଠିକ୍ ସମୟରେ ଯୋଗ ଦେଇପାରିଲେ ନାହିଁ । ବିବାହ ମଧ୍ୟ ଅଦ୍ଭୁତ ଭାବେ ହେଲା । ଧୃତରାଷ୍ଟ୍ର ବର ହୋଇ ଗାନ୍ଧାର ଗଲେ ନାହିଁ । ବରଂ ଗାନ୍ଧାରରୁ ରାଜକନ୍ୟା ଗାନ୍ଧାରୀ ଅଶ୍ୱପୃଷ୍ଠରେ ବସି ଧୃତରାଷ୍ଟ୍ରଙ୍କୁ ବର ରୂପେ ବରଣ କରିବା ପାଇଁ ହସ୍ତିନାପୁର ପ୍ରାସାଦକୁ ଆସିଲେ । ଗାନ୍ଧାରୀଙ୍କ ଦୁଇ ଆଖିରେ ପଟି ବନ୍ଧା ହେଇଥିଲା । ଅନ୍ଧ ଧୃତରାଷ୍ଟ୍ରଙ୍କୁ ଅନ୍ଧୁଣୀ ଭଳି ଗ୍ରହଣ କରିବା ପାଇଁ ଗାନ୍ଧାରୀ ବସ୍ତ୍ରପଟି ଦେଇ ତାଙ୍କ ଆଖିକୁ ଆବୃତ୍ତ କରି ରଖିଥିଲେ ।

ବିବାହ ଅନୁଷ୍ଠାନ ଅତି ସଂକ୍ଷିପ୍ତ ଏବଂ ଆଡ଼ମ୍ବରହୀନ ଥିଲା । ପ୍ରଜ୍ୱଳିତ ହୋମାଗ୍ନିକୁ ଚକ୍ରାକାରରେ ପ୍ରଦକ୍ଷିଣ କରି ବର ଓ କନ୍ୟା ମାଲ୍ୟ ବିନିମୟ କଲେ । ତାପରେ ଗାନ୍ଧାରୀ ଧୃତରାଷ୍ଟ୍ରଙ୍କ ସୁପୁଷ୍ଟ ସୁନ୍ଦର କରପୁଟ ଆଘ୍ରାଣ କରିଥିଲେ । ଅନୁରୂପ ଭାବେ ଧୃତରାଷ୍ଟ୍ର ଗାନ୍ଧାରୀଙ୍କ ପାଣିପଦ୍ମ ଆଘ୍ରାଣ କଲେ ଅନେକ କ୍ଷଣ ଧରି । ବିବାହ ଅନୁଷ୍ଠାନରେ ଯେଉଁମାନେ ଉପସ୍ଥିତ ଥିଲେ ସେମାନେ ଏଭଳି ଏକ ଅଦ୍ଭୁତ ବିବାହ ଦେଖି ଚକିତ ହେଇଥିଲେ, ଯାହା ସେମାନଙ୍କ ପାଇଁ ଅପାସୋରା ହୋଇ ରହିଗଲା ।

ଆଶ୍ରମରେ ଥାଇ ଦ୍ୱୈପାୟନ ସମସ୍ତ ବିଷୟ ଅବଗତ ହେଲେ । ବିଦୁର ତାଙ୍କୁ ଟିକିନିଖି କରି ବିବାହ ଖବର ଦେଇଥିଲେ । ଘଟଣାଗୁଡ଼ିକୁ ଏକାଠି କରି ଦ୍ୱୈପାୟନ ତାଙ୍କ ନିଜ ବିଶ୍ଳେଷଣରେ ପ୍ରବୃତ୍ତ ହେଲେ । ବିବାହ ଭଳି ଗୋଟାଏ ଆନନ୍ଦ ଅନୁଷ୍ଠାନକୁ ସମସ୍ତଙ୍କ ନିକଟରେ ଉନ୍ମୁକ୍ତ (ପ୍ରକାଶ) କରିବା ପାଇଁ ଭୀଷ୍ମ ଏତେ ସଂକୋଚ କଲେ କାହିଁକି ?

ଦ୍ୱୈପାୟନ ସ୍ତବ୍ଧ ହୋଇ ବସି ରହିଥିଲେ । ମନରେ ତାଙ୍କର ସନ୍ଦେହର ଜ୍ୱାଳା । ଭୀଷ୍ମ ନିଶ୍ଚୟ କୌଣସି ପ୍ରତିବନ୍ଧକର ଆଶଙ୍କା କରୁଥିଲେ । କିନ୍ତୁ ଏଇ ସଂଦେହ କାହା ଉପରେ ? ସମସ୍ତ ଚେତନା ଭିତରେ କଥାଟା କିମିତି ବାରମ୍ବାର ଝଂକୃତ ହେଇଉଠିଲା । ଚୁପ୍‌ଚାପ୍ ସେ ସମସ୍ତ ଘଟଣାକୁ ଆଧାର କରି କିଛି ସମୟ ଭାବିଲେ ।

ସତ୍ୟବତୀଙ୍କ ନିକଟରେ ଭୀଷ୍ମ ଧୃତରାଷ୍ଟ୍ରଙ୍କ ବିବାହ କଥା ଗୋପନ ରଖିଥିଲେ । ତାଙ୍କର ଅନୁମତି ମଧ୍ୟ ଚାହିଁ ନ ଥିଲେ । ଅନୁଷ୍ଠାନର ଠିକ୍ ପରମୁହୂର୍ତ୍ତରେ କହିଥିଲେ କାହିଁକି ? ପାଣ୍ଡୁ ହସ୍ତିନାପୁରର ରାଜା । କନିଷ୍ଠ ହେଲେ ମଧ୍ୟ ତାଙ୍କର ସମ୍ମତି ଆବଶ୍ୟକ । ତାଙ୍କର ଅନୁମତି ବ୍ୟତୀତ ରାଜକୋଷରୁ କୌଣସି ଅର୍ଥ ବ୍ୟୟ କରାଯାଇପାରିବ ନାହିଁ । ତଥାପି ଏସବୁ କିଛି କରି ନ ଥିଲେ ଭୀଷ୍ମ । କାହିଁକି ? ଭୀଷ୍ମ କ'ଣ ଏମାନଙ୍କୁ ସଂଦେହ ଚକ୍ଷୁରେ ଦେଖନ୍ତି କି ? ଅଥବା ତା ପଛରେ ଅନ୍ୟ କୌଣସି ଗୋପନ ରହସ୍ୟ ମଧ୍ୟ ଥାଇପାରେ ।

କୁଟୀର ସଂଲଗ୍ନ ବାରଣ୍ଡାରେ ମୃଗଚର୍ମ ଉପରେ ନିରବରେ ବସି ରହିଥିଲେ ଦ୍ୱୈପାୟନ । ଆଣ୍ଠୁ ଉପରେ କହୁଣି ଭରାଦେଇ, ହାତ ପାପୁଲି ଉପରେ ମୁହଁକୁ ଥୋଇ ଖୁବ୍

ଚିନ୍ତିତ ଭାବେ ବେଶ୍ କିଛି ସମୟ ଧରି ଶୂନ୍ୟ ଦୃଷ୍ଟିରେ ସମ୍ମୁଖ ଭାଗକୁ ଚାହିଁ ରହିଥିଲେ ସେ ଅପଲକ ଦୃଷ୍ଟିରେ । ଚାହୁଁ ଚାହୁଁ ହଠାତ୍ ତାଙ୍କର ମନେହେଲା, ଧୃତରାଷ୍ଟ୍ରର ବିବାହକୁ ଭୀଷ୍ମ ବିଭିନ୍ନ ଦିଗରୁ ତାତ୍ପର୍ଯ୍ୟପୂର୍ଣ୍ଣ କରି ତୋଳିଛନ୍ତି ।

ଏହି ବିବାହରେ ଭୀଷ୍ମ ପାଣ୍ଡୁଙ୍କୁ ଅଗ୍ରାହ୍ୟ କରିବାର ସାହସ ଦେଖାଇ ଦେଇଛନ୍ତି । ହସ୍ତିନାପୁରର ଘର ବାହାରର ରାଜନୀତିରେ ଏବଂ ରାଜ୍ୟରେ ଭୀଷ୍ମଙ୍କ କର୍ତ୍ତୃତ୍ୱ ଅବାଧ ଓ ଅପ୍ରତିହତ, ଏଭଳି ଗୋଟିଏ ଧାରଣା ଶତ୍ରୁପକ୍ଷଙ୍କ ମନରେ ନିଶ୍ଚୟ ସୃଷ୍ଟି ହେଲା । ଏହି ଘଟଣାରୁ ବୁଦ୍ଧିମାନ୍ ଓ ବିଚକ୍ଷଣ ବ୍ୟକ୍ତି ସହଜରେ ଜାଣିପାରିବ ଯେ, ହସ୍ତିନାପୁରର ସିଂହାସନରେ ପାଣ୍ଡୁଙ୍କୁ ଭୀଷ୍ମ ଗ୍ରହଣ କରିପାରି ନାହାନ୍ତି । ପ୍ରକୃତପକ୍ଷେ, ପାଣ୍ଡୁଙ୍କ ଅଭିଷେକରେ ଭୀଷ୍ମଙ୍କ ନୀତିର ପରାଜୟ ହେଲା । ତେଣୁ ଭୀଷ୍ମ ଧୃତରାଷ୍ଟ୍ର ପକ୍ଷ ନେଇଛନ୍ତି । ଏହି କଥାକୁ ସ୍ୱପ୍ନ ଭାବେ ଜଣେଇ ଦେବାପାଇଁ ସମସ୍ତ ନୀତିନିୟମ ଭାଙ୍ଗି ସେ ବିଦ୍ରୋହ କରିଛନ୍ତି ।

ଗାନ୍ଧାରୀ ସହିତ ଧୃତରାଷ୍ଟ୍ରଙ୍କ ବିବାହ ଦେଇ ଭୀଷ୍ମ ଗୃହ ବିବାଦରେ ଏକ ରାଜନୀତି ସୃଷ୍ଟି କଲେ । ଦ୍ୱୈପାୟନଙ୍କର ମନେହେଲା, ଏହାକୁ ରାଜନୀତି ନ କହି, ଭୀଷ୍ମଙ୍କ ବିଦ୍ରୋହ କିମ୍ବା ଚକ୍ରାନ୍ତ କହିବା ଉଚିତ ହେବ ।

ଭୀଷ୍ମଙ୍କ ଉଦ୍ଦେଶ୍ୟ କଣ, ଅନୁମାନ କରିବାପାଇଁ ଦ୍ୱୈପାୟନ ଚେଷ୍ଟା କଲେ । ଅନେକ ସମୟ ଏମିତି ବିତିଗଲା । ମନ ଭୀଷଣ ଖରାପ ମଧ୍ୟ ଲାଗୁଥିଲା । ହଠାତ୍ ବନ୍ୟାସ୍ରୋତରେ ଘରଦ୍ୱାର ଭାସିଗଲେ ଯେମିତି ଅସହାୟ ଲାଗେ, ଯେଉଁଭଳି ଭାବେ ମଣିଷ ହତଭମ୍ବ ହେଇପଡ଼େ, ଠିକ୍ ସେଇଭଳି ଗୋଟାଏ ବିସ୍ମୟବୋଧ ଦ୍ୱୈପାୟନଙ୍କୁ ଆଚ୍ଛନ୍ନ କରି ରଖିଥିଲା । ଭିତରେ ଭିତରେ ସେ ଗୋଟାଏ ଗଭୀର ଅବସାଦ ବୋଧ କରୁଥିଲେ । କିଛି ଗୋଟାଏ ହରାଇବାର ଆଶଙ୍କାରେ ଛାତି ଭିତରଟା ଥରିଉଠୁଥିଲା । ଅଶାନ୍ତ ଚିତ୍ତରେ ଖୋଲା ଅଗଣାରେ ଏକା ଏକା ଏଣୁତେଣୁ ଗୁଡ଼ାଏ ଭାବନାରେ ଏପାଖ ସେପାଖ ହେଉଥିଲେ ସେ ବେଶ୍ କିଛି ସମୟ ପର୍ଯ୍ୟନ୍ତ । ଆଶ୍ରମ ଦେଇ ବହିଯାଉଥିବା ଝରଣାର କଳ ସଙ୍ଗୀତ ଅବିରାମ ଭାବେ କାନରେ ବାଜୁଥିଲା । ସହସା ତାଙ୍କର ମନେହେଲା, ନା, ଏ ଝରଣାର ଶବ୍ଦ ନୁହେଁ, ହୁଏତ ଏହା ତାଙ୍କ ନିଜ ଅଭ୍ୟନ୍ତରର ଅଜସ୍ର ଅବ୍ୟକ୍ତ କଥା ଝରଣାର କୁଳୁକୁଳୁ ଧ୍ୱନିରେ ଛିଞ୍ଚି ହେଇପଡ଼ିଛି । ଦ୍ୱୈପାୟନଙ୍କ ମନ ଭିତରଟା ସେଇ କଥାଗୁଡ଼ିକୁ ଶୁଣିବା ପାଇଁ ସ୍ଥିର ହେଇ ଠିଆ ହେଲା । ତାପରେ ଧୀର ପଦରେ ସେ ବାରଣ୍ଡା ଉପରକୁ ଯାଇ ବସିଲେ । ଦୀର୍ଘଶ୍ୱାସ ନେଲେ । ହାଲୁକା ଜଣାପଡ଼ିଲା ଛାତି ଭିତରଟା । କିନ୍ତୁ ମୁହଁରେ ଗଭୀର ବିଷାଦ ଓ ଚିନ୍ତା ଜମି ରହିଥିଲା ।

ନିଜ ମନର ଅସରନ୍ତି ଜିଜ୍ଞାସା ଭିତରେ ବୁଡ଼ିରହି ଦ୍ୱୈପାୟନ ଭାବିଲେ, ରାଜପ୍ରାସାଦରେ ଏବଂ ରାଜନୀତି କ୍ଷେତ୍ରରେ ଧୃତରାଷ୍ଟ୍ରଙ୍କ ଗୁରୁତ୍ୱ ବଢ଼େଇବା ପାଇଁ ଯାହା

ଯାହା ଆବଶ୍ୟକ, ଭୀଷ୍ମ ତାର ସମସ୍ତ ବ୍ୟବସ୍ଥା ସୁଚିନ୍ତିତ ଭାବେ କରି ରଖିଛନ୍ତି ଇତି ମଧ୍ୟରେ ।

ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ବିବାହରେ ଭୀଷ୍ମ ଏମିତି ଗୋଟିଏ ଚମତ୍କାରିତ୍ୱ ଏବଂ ବିସ୍ମୟ ସୃଷ୍ଟି କରିଛନ୍ତି ଯେ, ହଠାତ୍ ଯେମିତି ଲୋକଙ୍କ ମନ ଭିତରୁ ତାହା ସହଜରେ ପୋଛି ହେଇଯିବ ନାହିଁ । ଏହି ବିବାହର ସ୍ମୃତି ଅନେକ କାଳ ପର୍ଯ୍ୟନ୍ତ ମଣିଷର ମନେରହିବ । ଲୋକେ କେମିତି ବା ଭୁଲିବେ – ସୁଦୂର ଗାନ୍ଧାରରୁ ରାଜକନ୍ୟାଟିଏ ଅନ୍ଧ ରାଜପୁତ୍ର ଧୃତରାଷ୍ଟ୍ରର ଅନୁରାଗିଣୀ ହୋଇ ସ୍ୱେଚ୍ଛାରେ ତାକୁ ବରମାଲ୍ୟ ଦେବାପାଇଁ ହସ୍ତିନାପୁର ଆସିଥିଲା- ? ଧୃତରାଷ୍ଟ୍ର କେବଳ ଅନ୍ଧ । ସେ ରାଜା ନୁହନ୍ତି । ତଥାପି ଗାନ୍ଧାରୀ ନିଜ ଆଖିକୁ ବସ୍ତ୍ରପଟିରେ ଆଚ୍ଛାଦନ କରି ତାଙ୍କୁ ସ୍ୱାମୀରୂପେ ବରଣ କଲେ । ପତିପରାୟଣା ଆଦର୍ଶ ନାରୀର ଏଇ ଦୃଶ୍ୟ କେହି କେବେ ଭୁଲିପାରେ ? ଧୃତରାଷ୍ଟ୍ରଙ୍କ ବ୍ୟକ୍ତିତ୍ୱ ଭିତରେ ନିଶ୍ଚୟ କୋଉଠି ଗୋଟାଏ ବଡ଼ ଦିଗ ଅଛି, ଯୋଉଟାକି ନିତିଦିନର ଦେଖାଶୁଣା ଜୀବନ ଭିତରେ ସମସ୍ତଙ୍କ ଆଖିରେ ପଡ଼ି ନାହିଁ । କିନ୍ତୁ ଗାନ୍ଧାରୀ ପକ୍ଷରେ ହୁଏତ ତାଙ୍କ ଭିତରର ସେଇ ବୀର୍ଯ୍ୟବାନ୍ ପୁରୁଷଟିକୁ ଖୋଜି ପାଇବା ସମ୍ଭବ ହେଇଥିଲା ଏବଂ ସେହି ବ୍ୟକ୍ତିତ୍ୱର ଚୁମ୍ବକୀୟ ଆକର୍ଷଣ ହିଁ ତାଙ୍କୁ ହସ୍ତିନାପୁର ପର୍ଯ୍ୟନ୍ତ ଟାଣିଆଣିଲା । ତାଙ୍କୁ ନିଜର କରି ପାଇବା ପାଇଁ, ନିଜର ସବୁ ସୁଖକୁ ଜଳାଞ୍ଜଳି ଦେବାପାଇଁ ସୁଦ୍ଧା କୁଣ୍ଠାବୋଧ କଲା ନାହିଁ । ଅନ୍ଧ ଧୃତରାଷ୍ଟ୍ରଙ୍କର ଦୃଷ୍ଟିହୀନତାଜନିତ ଦୁଃଖ ଓ ଯନ୍ତ୍ରଣା ସହିତ ସମଭାବରେ ଭାଗୀହେବା ପାଇଁ ଗାନ୍ଧାରୀ ନିଜ ଆଖିକୁ ବସ୍ତ୍ରାବୃତ୍ତ କରି ରଖିଲେ । ଧୃତରାଷ୍ଟ୍ରଙ୍କ ପ୍ରତି ତାଙ୍କର ଏଇ ଗଭୀର ଅନୁରାଗ ଓ ପ୍ରେମ କାହାଣୀକୁ ଅନେକ ଦିନ ପର୍ଯ୍ୟନ୍ତ ଲୋକେ ଭୁଲିପାରିବେ ନାହିଁ । ଲୋକଙ୍କ ମୁଖରେ ଏଇ କାହାଣୀ ଏକ ଅଦ୍ଭୁତ ଗଳ୍ପ ହୋଇ ଦୂରଦୂରାନ୍ତର ପର୍ଯ୍ୟନ୍ତ ବ୍ୟାପିଯିବ ଏବଂ ଧୃତରାଷ୍ଟ୍ରଙ୍କ ସଂପର୍କରେ ଲୋକମାନଙ୍କ ମନରେ ଏତେଦିନ ଧରି ବଞ୍ଚିରହିଥିବା ଧାରଣା ସବୁ ଏପାଖ ସେପାଖ ହେଇଯିବ-ଅଡୁଆ ହେଇଯିବ । ସାଧାରଣ ମଣିଷ ଭାବିବ ଧୃତରାଷ୍ଟ୍ର ଆଉ ଅସହାୟ ନୁହନ୍ତି । ଗାନ୍ଧାରୀ ଭଳି ମହୀୟସୀ ରମଣୀ ତାଙ୍କର ପତ୍ନୀ । ଗାନ୍ଧାରୀ ତାଙ୍କର ଖୋଲା ଦୁଇ ଆଖିର ଦୃଷ୍ଟି (ଧୃତରାଷ୍ଟ୍ରଙ୍କ ସମ୍ମୁଖରେ ହିଁ ଗାନ୍ଧାରୀ ନିଜ ଆଖିରେ ଅନ୍ଧପୁଟୁଳି ବ୍ୟବହାର କରୁଥିଲେ ।) ଭିତରେ ଧୃତରାଷ୍ଟ୍ରଙ୍କୁ ଆଗୁଳି ରଖିବେ । ପୁଣି ଶକୁନି ଭଳି ଜଣେ ଦକ୍ଷ କୂଟନୀତିଜ୍ଞ ଶାଳକକୁ ପାଇବା ମଧ୍ୟ ଧୃତରାଷ୍ଟ୍ରଙ୍କ ପାଇଁ ଏକ ପରମ ସୌଭାଗ୍ୟ ।

ଦ୍ୱୈପାୟନଙ୍କ ମନରେ ସହସା ପ୍ରଶ୍ନଟିଏ ଉଠିଲା । ଭୀଷ୍ମ କାହାକୁ ପ୍ରତିପକ୍ଷର ଦୃଷ୍ଟିରେ ଦେଖୁଛନ୍ତି ? ତାଙ୍କର ଲକ୍ଷ୍ୟ କଣ ? ଭୀଷ୍ମଙ୍କର ସମସ୍ତ ସନ୍ଦେହ ନିଶ୍ଚୟ ତାଙ୍କ ଉପରେ ଅଛି । ତାଙ୍କ ସମର୍ଥନ ଓ ଆନୁକୂଲ୍ୟରେ ପାଣ୍ଡୁ ସିଂହାସନର ଉତ୍ତରାଧିକାରିତ୍ୱ ପାଇଛନ୍ତି । ସେଥିପାଇଁ ପାଣ୍ଡୁ କୃତଜ୍ଞ । କିନ୍ତୁ ଧୃତରାଷ୍ଟ୍ରଙ୍କୁ ବଞ୍ଚିତ କରିବାରେ ସେ ଦାୟୀ । ତାଙ୍କର ପ୍ରତିହିଂସା ହିଁ ଅନ୍ୟତମ କାରଣ । ଏକଥା କେହି ନ ଜାଣିଲେ ମଧ୍ୟ ଭୀଷ୍ମ ଜାଣନ୍ତି ।

ହସ୍ତିନାପୁରର ଆଭ୍ୟନ୍ତରୀଣ ଗୃହ ରାଜନୀତିରେ ତାଙ୍କର ବିଜୟ ଓ ସାଫଲ୍ୟକୁ ଭୀଷ୍ମ ଭିନ୍ନ ଦୃଷ୍ଟିରେ ଦେଖି ନାହାନ୍ତି । ଏଇ ବାଟ ଦେଇ ଅନାର୍ଯ୍ୟ ଭାବଧାରା କୁରୁବଂଶକୁ ଯେମିତି ଗ୍ରାସ ନ କରେ ସେଥିପାଇଁ ଖାଣ୍ଟି ଆର୍ଯ୍ୟବଂଶର ରାଜକନ୍ୟାକୁ ସେ ବଧୂରୂପେ ବରଣ କରି ଆଣିଛନ୍ତି । ଶକୁନିକୁ ତାର ପହରାଦାର ମଧ କରିଛନ୍ତି । ଅର୍ଥାତ୍ ତାଙ୍କ ପ୍ରଚେଷ୍ଟାକୁ ନିର୍ମୂଳ କରିବା ପାଇଁ ସ୍ନାୟୁଯୁଦ୍ଧର ଏ ପ୍ରକାର କୂଟ ପରିକଳ୍ପନା କରିଛନ୍ତି ଭୀଷ୍ମ । ପାଣ୍ଡୁଙ୍କୁ ସମ୍ମୁଖରେ ରଖି ଭୀଷ୍ମ ତାଙ୍କରି ଆଡ଼କୁ ତୀର ଲକ୍ଷ୍ୟକରି ରଖିଛନ୍ତି । ନେପଥ୍ୟେ ରହି କାର୍ଯ୍ୟ କରିବାପାଇଁ ଭୀଷ୍ମ ଧୁରନ୍ଧର ଶକୁନିକୁ ରାଜଅନ୍ତଃପୁରରେ ଆଶ୍ରୟ ଦେଇଛନ୍ତି । ମୁହଁରେ ନ କହିଲେ ମଧ ଭୀଷ୍ମଙ୍କ ମୂଳ ଲଢ଼େଇ ମୁଖ୍ୟତଃ ତାଙ୍କ ସହିତ । ପାଣ୍ଡୁ କେବଳ ଉପଲକ୍ଷ୍ୟ । ଲକ୍ଷ୍ୟ ସେ ।

ଦ୍ୱୈପାୟନଙ୍କ ମନ ପୁଣିଥରେ କେମିତି ବିଷଣ୍ଣ ହେଇଗଲା । ଅସ୍ୱସ୍ତି ଏବଂ ଉତ୍ତେଜନାରେ ଛାତି ଭିତର ଥରିଉଠିଲା । ଭୀଷଣ ଘୃଣା ଆଉ କ୍ରୋଧ ମନକୁ ଅଶାନ୍ତ କରି ତୋଳିଲା । ସେ କିଛି ସଠିକ୍ ଭାବେ ଚିନ୍ତା କରିପାରୁ ନଥିଲେ, ଉଚିତ ଅନୁଚିତ ବୋଧଟା ଯେମିତି ଲୁପ୍ତ ହେଇଯାଇଥିଲା ତାଙ୍କର ।

## ।। ଛଅ ।।

ଯାଦବରାଜା କୁନ୍ତୀଭୋଜଙ୍କ ଆମନ୍ତ୍ରଣ ପାଇ ଦ୍ୱୈପାୟନ ଭୋଜରାଜ୍ୟକୁ ଯାତ୍ରା କଲେ । ଯାଦବ-ସମବାୟ ରାଜ୍ୟଗୁଡ଼ିକ ସହିତ ଦ୍ୱୈପାୟନଙ୍କର ଏକ ପ୍ରକାରର ମଧୁର ସଂପର୍କ ଥିଲା । ସେଥିପାଇଁ ବିଭିନ୍ନ ଆନୁଷ୍ଠାନିକ କ୍ରିୟା କର୍ମ କରିବା ପାଇଁ ଏବଂ ପରାମର୍ଶାଦି ଦେବା ପାଇଁ ତାଙ୍କୁ ବର୍ଷର ଅନେକ ସମୟରେ ଯାଦବ ରାଜ୍ୟକୁ ଯିବାକୁ ପଡ଼ିଥାଏ । ମୁକ୍ତ ମନରେ ହିଁ ସେ ଏତେଦିନ ଧରି ଯିବାଆସିବା କରୁଥିଲେ ସେଠାକୁ । ଏଥର ଯିବା ସମୟରେ ରଥ ଉପରେ ଦ୍ୱୈପାୟନ ଖୁବ୍ ଗଭୀର ଏବଂ ଅନ୍ୟମନସ୍କ ଜଣାପଡୁଥିଲେ । ନିବିଷ୍ଟ ଭାବେ ଏକ ଦୃଷ୍ଟିରେ ପ୍ରକୃତି ଆଡ଼କୁ ଚାହିଁ ରହିଥିଲେ ସେ । ଶୂନ୍ୟଦୃଷ୍ଟି ଆଖିର ପର୍ଦ୍ଦାରେ କୌଣସି ରୂପ କିମ୍ବା ଘଟଣା ନାଚି ଉଠୁ ନ ଥିଲା । କେମିତି ଗୋଟାଏ ଭିନ୍ନ ଭାବ ଛାତି ତଳେ ଝୁଲି ରହିଥିଲା ।

ଦ୍ୱୈପାୟନଙ୍କ ପାର୍ଶ୍ୱରେ ବସି କୁନ୍ତୀଭୋଜ ରଥ ଚଳାଇ ନେଉଥିଲେ । ବାରମ୍ବାର ସେ ମୁହଁ ବୁଲାଇ ମହର୍ଷିଙ୍କ ଆଡ଼କୁ ଚାହୁଁଥିଲେ । ଦ୍ୱୈପାୟନଙ୍କ ଭ୍ରୂଲତା କୁଞ୍ଚି ହେଇଯାଇଥିଲା । ମୁଖମଣ୍ଡଳରେ କିଞ୍ଚିତ୍ ଉଦ୍‌ବେଗର ଲକ୍ଷଣ ପ୍ରକାଶ ପାଉଥିଲା । କିନ୍ତୁ ଦ୍ୱୈପାୟନଙ୍କର ନଜର ନ ଥିଲା ସେଇଆଡ଼କୁ ।

ସହସା ରଥ ଗୋଟାଏ ବାଙ୍କ ନେଲା ଓ ପାହାଡ଼ର ଉଚ୍ଚ ରାସ୍ତାରୁ ତଳକୁ ଓହ୍ଲେଇବାକୁ ଲାଗିଲା । ଦ୍ୱୈପାୟନ ମନକୁ ମନ ମୁଣ୍ଡ ହଲାଇବା ଦେଖି କୁନ୍ତୀଭୋଜ ପ୍ରଶ୍ନ କଲେ- 'ଆପଣ ଏତେ ଚୁପ୍‌ଚାପ୍ ଗମ୍ଭୀର କାହିଁକି ମହର୍ଷି ? ବସି ବସି କଣ ସବୁ ଆକାଶପାତାଳ ଭାବୁଛନ୍ତି' ?

ସଙ୍ଗେ ସଙ୍ଗେ ଦ୍ୱୈପାୟନ କୌତୂହଳୀ ହୋଇ ଜିଜ୍ଞାସୁ ନେତ୍ରରେ ତାଙ୍କ ମୁହଁକୁ ଚାହିଁଲେ । ଛାତି ଥରେଇ ଦୀର୍ଘଶ୍ୱାସ ବାହାରି ଆସିଲା । ତା'ପରେ ବିଷଣ୍ଣ ଗମ୍ଭୀର ଗଳାରେ ଟିକିଏ ସ୍ମିତ ହସି କହିଲେ, ଇଏ ଗୋଟାଏ ପ୍ରକାରର ଅଦ୍ଭୁତ ଅନୁଭୂତି । କୌଣସି ବ୍ୟଥା ନାହିଁ, ବେଦନା ନାହିଁ, ଯନ୍ତ୍ରଣା ମଧ୍ୟ ନାହିଁ । ନିଶାଭଳି କିମିତି ଗୋଟାଏ ଝିମାଳିଆ ଭାବ ଅବଶ କରି ରଖିଛି । ସେ ସବୁ ତୁମେ ବୁଝିପାରିବନି ରାଜା ।

କୁନ୍ତୀଭୋଜଙ୍କର ମନେହେଲା, କିଏ ଯେମିତି ପୁରୁଣା କ୍ଷତଟିକୁ ଟିକେ ଉଖାରି ଦେଲା । ହତାଶ ଗଳାରେ କହିଲେ, ମୋ ମନ ମଧ୍ୟ ଆଜି କିମିତି ଝାଉଁଳି ପଡ଼ିଛି । ତା ଉପରେ ଯଦି ଆପଣଙ୍କର ଯନ୍ତ୍ରଣାର ଚାପ ପଡ଼େ·ତାହେଲେ ତ ଭାରି ଅସୁବିଧା । ମୁଁ ଆଉ କଣ କହିବି ମୋ' ମନର କଥା ?

ଦ୍ୱୈପାୟନ କୌଣସି କୌତୂହଳ କିମ୍ବା ଆଗ୍ରହ ଦେଖାଇଲେ ନାହିଁ । ସେହିଭଳି ବାହାରର ପ୍ରକୃତିକୁ ଚାହିଁ ରହିଲେ । କିଛି ସମୟ ପରେ ଗୋଟାଏ ହାଇ ତୋଳି ପଚାରିଲେ 'ତୁମର ପୁଣି କଣ ହେଲା ?'

ଟିକିଏ ଇତସ୍ତତଃ ହୋଇ କୁନ୍ତୀଭୋଜ କହିଲେ, ପୃଥାର ବିବାହ ଅନେକ ଦିନରୁ ଦେଇଦେବା ଉଚିତ ଥିଲା । କିନ୍ତୁ ଗୋଟାଏ ଭୟ ଆଉ ଆଶଙ୍କାରେ ଦେଇପାରୁ ନାହିଁ । ସାହସ ହେଉନି ଆଗେଇବା ପାଇଁ । ଆପଣ ମୋତେ ସେଇ ଉପାୟ ବତାନ୍ତୁ ।

ଦୁହେଁ କିଛି ସମୟ ନିରବରେ ବସିରହିଲେ । ତାପରେ ଉଦାସ ଓ ବିଷଣ୍ଣ କଣ୍ଠରେ କହିଲେ, ମଣିଷ ଜୀବନରେ ଏଇ ମାୟା ମୋହ ଯେ କେତେ ବଡ଼ ବୋଝ ଏବଂ କଣ୍ଟକତୁଲ୍ୟ ସେ କଥା ଆପଣ ସନ୍ନ୍ୟାସୀ ହୋଇ ବୁଝିପାରିବେ ନାହିଁ । ମଣିଷ ଏହି ମୋହର ବନ୍ଧନକୁ କୌଣସି ପ୍ରକାରେ କଟାଇ ପାରେନା । ନିଜର ନ ହେଲେ ମଧ୍ୟ ଅନ୍ୟର ବୋଝକୁ ମୋହରେ ଜାବୁଡ଼ି ଧରେ । କିଛି ନ ହେଲେ ବିରାଡ଼ି, କୁକୁର, ଶୁଆ, ଶାରୀ ପୋଷି ଦିନେ ଶେଷରେ ସେଇ ବନ୍ଧନରେ ପଡ଼ିଯାଏ । ଆଉ ମଣିଷ ତ ଜାଣି ଗୋଟାଏ ମାୟାର ବନ୍ଧନ । ଈଶ୍ୱର ଆମକୁ ସନ୍ତାନ ଦେଇ ନାହାନ୍ତି । ତଥାପି ମାୟାମୋହର ନାଗଫାଶରେ ମୁଁ ବୁଜି ହେଇଯାଇଛି । ଦିନେ ଶୂରସେନର ଦଶମାସର କନ୍ୟାସନ୍ତାନକୁ ଦେଖି ମୋର ଓ ରାଣୀଙ୍କର ଛାତି ଭିତରେ ମମତାର ସୁଅ ଉଛୁଳି ଉଠିଥିଲା । କେଉଁଠୁ କେଜାଣି ଅଦ୍ଭୁତ ଢେଉ ଭଳି ଗୋଟାଏ ଭାବ ଆମକୁ ଆଚ୍ଛନ୍ନ କରି ପକାଇଥିଲା ଏବଂ ତାହା ଗୋଟାଏ ସାଧାରଣ ପାର୍ଥିବ ଅନୁଭୂତି ବୋଲି ମନେ ହୋଇନଥିଲା । ଏକ ସ୍ୱର୍ଗୀୟ ସୁଖାନୁଭୂତିରେ ଛାତି ପୂରି ଉଠିଥିଲା ·। ଶୂରସେନର କନ୍ୟା ପୃଥାକୁ କନ୍ୟା କରି ଆଣିଲି । ପୃଥା ମାଧ୍ୟମରେ ସନ୍ତାନର ସୁଖ ଓ ବାତ୍ସଲ୍ୟମମତାକୁ ଉପଲବ୍ଧି କଲି, ଜାଣିଲି । ଚନ୍ଦ୍ରକଳା ଭଳି ପୃଥା କେତେବେଳେ ଯେ ବଡ଼ ହୋଇଗଲା ମୁଁ ଜାଣିପାରିଲିନି ମଧ୍ୟ । ଅତି ସୁନ୍ଦର ଅପାପବିଦ୍ଧ ବାଳିକା ପୃଥାର ମୁଖଶ୍ରୀ ମୋତେ ସୁଖନିଦ୍ରାରେ ଶୁଆଇ ରଖିଥିଲା ଆଜିଯାଏ । ତା ଶରୀର ଆଡ଼କୁ ମୁଁ କେବେ ଚାହିଁନି । ହଠାତ୍ ଯେତେବେଳେ ମୋର ନିଦ ଭାଙ୍ଗିଲା, ସେତେବେଳକୁ ମୋର ଆଉ କିଛି କରିପାରିବାର ନ ଥିଲା । ଆରମ୍ଭ ହେଲା ଦୁଃଖର ଦିନ । ଅନୁଶୋଚନାରେ ବାକିତକ ଜୀବନ କେବଳ ଛଟପଟ ହେଇ କଟେଇ ଚାଲିଛି ।

ମନ୍ତ୍ରମୁଗ୍ଧ ଭଳି ସବୁ ଶୁଣି ଯାଉଥିଲେ ଦ୍ୱୈପାୟନ । କୁନ୍ତୀଭୋଜଙ୍କ କଥା ସରିଲା ପରେ ସମ୍ମୋହିତଙ୍କ ଭଳି ପ୍ରଶ୍ନ କଲେ, କାହିଁକି ?

କୁନ୍ତୀଭୋଜଙ୍କ ମୁଖମଣ୍ଡଳରେ ସହସା କିଏ ଯେମିତି ଅବିର ଆଣି ବୋଳି ଦେଲା । ଦ୍ୱିଧା ଆଉ ସଂକୋଚରେ ସେ କିଛି କହିପାରିଲେ ନାହିଁ । ମୁଖମଣ୍ଡଳରେ ଗୋଟିଏ ଅସ୍ୱସ୍ତି ଓ ବିବ୍ରତ ଭାବ ଫୁଟିଉଠିଲା । ଦୀର୍ଘଶ୍ୱାସଟିଏ ପକାଇ କହିଲେ- ବିଶ୍ୱାସଘାତକତା ଏବଂ ଅସୌଜନ୍ୟତା କଲେ ଆପଣଙ୍କ କ୍ରୋଧୀ ଦୁର୍ବାସା ଏସବୁ କଥା କହିବାକୁ ଭଲ ଲାଗୁନି, ତଥାପି ଆପଣଙ୍କର ସବୁକଥା ଜାଣିରଖିବା ଉଚିତ । କେବଳ ଆପଣ ହିଁ ଚାହିଁଲେ ମୋର ସମସ୍ତ ଦୁଃଖ, ଯନ୍ତ୍ରଣା ଓ ଉତ୍କଣ୍ଠାକୁ ଦୂରୀଭୂତ କରିପାରିବେ ।

ଥରେ ଦୁର୍ବାସା ମୋର ରାଜପ୍ରାସାଦକୁ ଅତିଥି ହୋଇ ଆସିଲେ । ଅନେକ ମାସ ରାଜପ୍ରାସାଦରେ ହିଁ କଟିଗଲା ତାଙ୍କର । ସେଇ ସମୟରେ କ୍ଷଣକୋପୀ ଋଷିଙ୍କର, ସକଳ ପରିଚର୍ଯ୍ୟାର ଭାର ଥିଲା ମୁକୁଳିକା ବାଳିକାବୟସୀ ପୃଥା ଉପରେ । ଦୁର୍ବାସା ପୃଥା ସେବାରେ ପରିତୁଷ୍ଟ ହୋଇ ତାଙ୍କୁ ଗୋପନ ବିଦ୍ୟା ଶିକ୍ଷା ଦେବାପାଇଁ ଆଗ୍ରହ ପ୍ରକାଶ କଲେ । ଋଷିଙ୍କ ସଂସ୍ରବରେ ଆସି କେବେ ମୁଁ କୌଣସି ଅକଲ୍ୟାଣକର ଚିନ୍ତା କରି ନାହିଁ । ତେଣୁ ମନରେ କୌଣସି ପାପବିଚାର ଅଥବା ସଂଦେହ ଜାଗ୍ରତ ହେଇନଥିଲା । ତାଙ୍କ ଉପରେ ମୋର ସଂପୂର୍ଣ୍ଣ ଆସ୍ଥା ଥିଲା । କିନ୍ତୁ ଋଷିଙ୍କ ଭିତରେ ଯେ ଜଣେ ରକ୍ତମାଂସର ଉପାସୀ ମଣିଷଟିଏ ଲୁଚି ରହିଥିଲା ସେ କଥା କଳ୍ପନା ବି କରି ନ ଥିଲି । ମୋ ବୁଝିବାରେ ଭୁଲ ହେଇଥିଲା । ପୃଥାର ସଂସ୍ପର୍ଶ ଦୁର୍ବାସାଙ୍କ ଭିତରେ ବହୁକାଳର ସେଇ ନିଦ୍ରିତ ପୁରୁଷଟିକୁ ଉଠେଇ ଦେଇଥିଲା । ଦୁର୍ବାସା କିଶୋରୀ ବାଳିକା ପୃଥାକୁ ବୁଝେଇଲେ, କାମ ହେଉଛି ଶରୀରର ଧର୍ମ । ଏଇ ସୁଖାନନ୍ଦ ଭୋଗ କରିବାର ଅଧିକାର ସମସ୍ତ ପ୍ରାଣୀଙ୍କର ଅଛି । ଏଇ ସୁଖାନନ୍ଦରୁ କେହି ବଞ୍ଚିତ ହୋଇ ରହି ନାହାନ୍ତି । ଋଷିମାନେ ମଧ୍ୟ ନୁହଁ । ଋଷିଙ୍କୁ ପରିତୃପ୍ତ କରିବା ସେବିକାର ଧର୍ମ । ସେବିକାର ସେବା ଅସଂପୂର୍ଣ୍ଣ ରହିଲେ ନର୍କଗାମୀ ହେବାକୁ ହୁଏ । ନାରୀ ତାର ଶରୀରକୁ ଉତ୍ସର୍ଗ କରିବା ମଧ୍ୟ ସେବା । କିନ୍ତୁ ପୃଥା ଦେହ ଓ ମନର ଦ୍ୱନ୍ଦ୍ୱକୁ ଉତ୍ତୀର୍ଣ୍ଣ କରିପାରି ନ ଥିଲା । ତେଣୁ ଋଷି କିଶୋରୀ ବାଳିକାର ରକ୍ତରେ ନିଆଁ ଧରେଇ ଦେଇ କହିଲେ, ଦେହ ସଂସର୍ଗରେ ତ କୌଣସି ବାଧା ନାହିଁ । ବୟସଟା ମଧ୍ୟ ଗୋଟାଏ ବାଧା ନୁହେଁ । ଦୁଇଟି ନରନାରୀ, ଯିଏ ବି ହେଉ ପ୍ରତୀକ୍ଷା ଭିତର ଦେଇ ପରସ୍ପରକୁ ପ୍ରାର୍ଥନା କରି ଯଦି ବିଫଳ ମନୋରଥ ହୁଅନ୍ତି, ତା'ହେଲେ ଦେବତାର ରୋଷରେ ତାର ଜୀବନ ବିଷମୟ ହେଇପଡ଼ିବ । ଋଷିଙ୍କ କଥାରେ ଅବାଧ ହୁଅନ୍ତି ନାହିଁ । ନାରୀ ଓ ପୁରୁଷ ଯେତେବେଳେ ପରସ୍ପରକୁ କାଙ୍ଗାଳ ଭଳି ଆଲିଙ୍ଗନ ପାଶରେ ଆବଦ୍ଧ ହୁଅନ୍ତି ସେତେବେଳେ ସେମାନଙ୍କର ସେଇ ମିଳନରେ ଦେବଲୋକର ସ୍ପର୍ଶ, ଗନ୍ଧ, ଶବ୍ଦ ସବୁ ଓହ୍ଲେଇ ଆସେ । ବାଳିକା ପୃଥା ଋଷିଙ୍କ ଉଦ୍ଦେଶ୍ୟ ବୁଝିପାରିଲାନି । ଗୁପ୍ତବିଦ୍ୟା ଶିକ୍ଷା ନାମରେ ଋଷି ତାଙ୍କୁ ପ୍ରତାରିତ କଲେ । ତା ପରବର୍ତ୍ତୀ ଘଟଣା, ନରନାରୀଙ୍କ ମିଳନରେ ପରିଣତି ଯାହା ହୁଏ- ତାହାହିଁ ହେଲା ।

କୁନ୍ତୀଭୋଜ କେଇଟା ମୁହୂର୍ତ୍ତ ଚୁପ୍ ହେଇ ରହିଲେ । ତା'ପରେ ଦୀର୍ଘଶ୍ୱାସଟିଏ ଛାଡ଼ି କହିଲେ, ହତଭାଗିନୀ ଏଇ ବୟସରେ ସନ୍ତାନର ଜନନୀ ହେଲା । ସଦ୍ୟଜାତ ଶିଶୁପୁତ୍ରକୁ କନ୍ୟାର କଳଙ୍କ ଗୋପନ କରିବାକୁ ଯାଇ ଯମୁନା ନଦୀରେ ଭସେଇ ଦେଇ ଆସିଲି । ନିଜ ଉପରେ ଖୁବ୍ ଘୃଣା ଆସିଲା । ଲଜ୍ଜା ଲାଗିଲା ।

କୁନ୍ତୀଭୋଜ ଆଖି ବୁଜିଲେ । ଆଖି ବୁଜିବା ମାତ୍ରେ କୁନ୍ତୀର ମୁଖଶ୍ରୀ ଭାସିଉଠିଲା । ବିଷଣ୍ଣ ସେଇ ମୁଖମଣ୍ଡଳ । ନିସ୍ତେଜ ଆଖିପତା ତଳେ କୁନ୍ତୀ ଆଉ ବ୍ୟଥାର କଳାଦାଗ ହାଲୁକା ହୋଇ ଦେଖାଯାଉଛି । ତଥାପି ସେ ସୁନ୍ଦର ଦିଶୁଥିଲା । ସେଥିପାଇଁ ମୋର ଭୀଷଣ ଦୁଃଶ୍ଚିନ୍ତା ଏବଂ ଦୁର୍ଭାବନା ଲାଗିରହିଛି । ଏହାହିଁ ମୋର ଦୀର୍ଘଶ୍ୱାସର କାରଣ ମୁନିବର ।

ବିସ୍ଫାରିତ ନେତ୍ରରେ ଦ୍ୱୈପାୟନ କୁନ୍ତୀଭୋଜଙ୍କ ମୁହଁକୁ ଚାହିଁ ରହିଥିଲେ । ମନ ଭିତରେ ଅନାବନା ଅନେକ ଯୁକ୍ତିହୀନ କଥା ଗଢ଼ି ହେଇଯାଉଥିଲା । କୁନ୍ତୀଭୋଜ କେବେ ବି ତାଙ୍କ ଆଶ୍ରମକୁ ଆସି ନ ଥିଲେ । କିନ୍ତୁ ଆଜି କାହିଁକି ଆସିଲେ ? ତାର ମାନେ କଣ ହେଇପାରେ ? ଅଦୃଶ୍ୟ ଦେବତା କ'ଣ ତାଙ୍କୁ କିଛି ଶୁଭ ସୂଚନା ଦେଉଛନ୍ତି ? କୁନ୍ତୀଭୋଜ ଅଦୃଷ୍ଟର ପ୍ରତିନିଧି ହୋଇ କିଛି କହିବାପାଇଁ ଆସିଛନ୍ତି ତାଙ୍କୁ ? କିନ୍ତୁ ପୃଥା ପାଇଁ ତାଙ୍କର ତ କିଛି କରିପାରିବାର ନାହିଁ ।

ଖୁବ୍ ଜୋରରେ ରଥର ଅଶ୍ୱ ଦୌଡ଼ିବାକୁ ଲାଗିଲା । ଦୋହଲି ଉଠିଲା ଶରୀର । ମସ୍ତିଷ୍କର ରୁଦ୍ଧ କୋଠରିର ବନ୍ଦ ଝରକାଟା ଧକ୍କା ଖାଇ ଟିକିଏ ଫାଙ୍କ ହେଇଗଲା । ହଁ, ତା ପରେ ପରେ ଦରଜାଟା ଏକାବେଳକେ ଖୋଲି ହେଇଗଲା । ଏତେ ରହସ୍ୟମୟ ଭାବେ ଖୋଲିଲା ଯେ, ଦ୍ୱୈପାୟନ ମଧ୍ୟ ନିଜେ ଅବାକ୍ ହେଇଗଲେ ।

ଏ ଯାଏ ପାଣ୍ଡୁର ବିବାହ ହେଇନି । ପୃଥା ସହିତ ତାର ପରିଣୟରେ କୌଣସି ବାଧା ପ୍ରତିବନ୍ଧକ ନାହିଁ । ପୃଥାର ଧମନୀରେ ବିଶୁଦ୍ଧ ଆର୍ଯ୍ୟରକ୍ତ ପ୍ରବାହିତ । ଏହି ବିବାହ ହେଲେ, ଭୀଷ୍ମଙ୍କର ରକ୍ତର ଶୁଦ୍ଧତା ନେଇ ଯେଉଁ ପାଗଳାମି (ଶୁଚିବାଇଗ୍ରସ୍ତତା) ରହିଛି ତାହା ବି ରକ୍ଷା ହେବ । ସେ ମଧ୍ୟ ପୃଥାର ଗୋପନ କଳଙ୍କକୁ ମୂଳଧନ କରି ଅନେକ କିଛି ପୃଥା ମାଧ୍ୟମରେ କରିନେଇପାରିବେ । ପୃଥା ତାଙ୍କ ବଶରେ ରହିଲେ ପାଣ୍ଡୁ ମଧ୍ୟ ଅନୁଗତ ଓ ବାଧ୍ୟ ରହିବ । ଭୀଷ୍ମଙ୍କ ସଙ୍ଗେ ମର୍ଯ୍ୟାଦାବୋଧର ଶୀତଳ ଯୁଦ୍ଧରେ ଯେଉଁ ପରାଜୟଟା ଧୃତରାଷ୍ଟ୍ରର ବିବାହରେ ହେଇଥିଲା, ତାହା ବର୍ତ୍ତମାନ ପାଣ୍ଡୁର ବିବାହ ଦେଇ କିଛି ବିଜୟ ଗୌରବ ସେ ମଧ୍ୟ ଆଦାୟ କରିନେବେ ।

ନିରବ ଆନନ୍ଦର ଲହରିଟିଏ ଖେଳିଗଲା ତାଙ୍କର ସମସ୍ତ ଅଙ୍ଗପ୍ରତ୍ୟଙ୍ଗରେ । ସତେ ଯେମିତି ତାଙ୍କ ଭିତରେ କିଏ ଦାମାମା ପିଟୁଛି ଖୁସିରେ ।

ଦ୍ୱୈପାୟନ ନିର୍ବାକ୍ । ରଥର କାଠକୁ ଶକ୍ତ କରି ହାତରେ ଚାପିଧରି ସେଇମିତି ସେ ଚୁପ୍ ହୋଇ ବସି ରହିଥିଲେ ।

କୁନ୍ତୀଭୋଜ ଉଦ୍‌ଗ୍ରୀବ ଉତ୍କଣ୍ଠାରେ ଉଦ୍‌ବେଗ ନେଇ ଦ୍ୱୈପାୟନଙ୍କ ପରାମର୍ଶ ଶୁଣିବା ପାଇଁ ପ୍ରତୀକ୍ଷା କରି ରହିଥିଲେ । ଅପଲକ ନେତ୍ରର ଦୃଷ୍ଟି ତାଙ୍କର ସମ୍ମୁଖସ୍ଥ ପାଷାଣ ଉପରେ ନିବଦ୍ଧ ଥିଲା । ଶୁଖିଲା ଓଠ ଉପରେ ଜିଭ ବୁଲେଇ ଓଦା କରି ଆଣିଲେ କୁନ୍ତୀଭୋଜ । ତା'ପରେ ହତାଶ ଗଳାରେ କହିଲେ- 'ମହର୍ଷି ପୃଥାର ଭବିଷ୍ୟତ ଚିନ୍ତା କରି ମୁଁ ଶଙ୍କିତ ହୋଇ ଉଠୁଛି ।'

ପ୍ରଶ୍ନ କରିବାକୁ ଯାଇ ଦ୍ୱୈପାୟନଙ୍କର ସ୍ୱରଭଙ୍ଗ ଘଟିଲା । ଗଳା ସଫା କରି ପଚାରିଲେ କାହିଁକି ରାଜା ?.....

କୁନ୍ତୀଭୋଜ କ୍ଳାନ୍ତସ୍ୱରରେ କହିଲେ, ମହର୍ଷି ! ସତ୍ୟ କେବେ ଲୁଚି ରହେ ନାହିଁ । କୌଣସି ଦିନ ଯଦି ପୃଥାର କଳଙ୍କ ରହସ୍ୟ ଖୋଲିଯାଏ, ସେଦିନ ତାର ସ୍ୱାମୀ, ସଂସାର, ସନ୍ତାନମାନଙ୍କ ନିକଟରେ କୋଉ ମୁହଁରେ ସେ ଠିଆହେବ ? ନିଜର ଗୌରବ, ମର୍ଯ୍ୟାଦାକୁ ହରାଇ କେତେ ଛୋଟ ହୋଇଯିବ, ସେଇ କଥା ଭାବି ମୁଁ ଶାନ୍ତି ପାଇପାରୁନି । ତାର ଜନ୍ମପତ୍ରିକା ମଧ୍ୟ, ହରାଇଥିବା ପୁତ୍ର ସହିତ ତାର ପୁନର୍ମିଳନ ଘଟିବ ବୋଲି ସୂଚନା ଦେଉଛି । ସେମାନେ ପରସ୍ପରକୁ ଚିହ୍ନିବେ । ମହର୍ଷି ! ଆପଣ ତ୍ରିକାଳଜ୍ଞ । ଆପଣ ହିଁ ମୋର ପୃଥା ପାଇଁ କିଛି ଉପାୟ ଚିନ୍ତା କରନ୍ତୁ ।

ଓଃ ! କୁନ୍ତୀଭୋଜ ! କହି ଦ୍ୱୈପାୟନ ତାଙ୍କ ନିରୁଦ୍ଧ ଆବେଗକୁ ଚାପି ରଖିବାପାଇଁ କୁନ୍ତୀଭୋଜଙ୍କର ହାତକୁ ଚାପି ଧରିଲେ । ତାପରେ ଧୀରେ ଧୀରେ କହିଲେ- ରାଜନ୍, ତୁମେ ଉଦ୍‌ବିଗ୍ନ ହୁଅ ନାହିଁ । ବିଧାତାଙ୍କର ଏକ ମହାନ୍ କାର୍ଯ୍ୟ କରିବା ପାଇଁ ତୁମ ପୃଥାର ଜନ୍ମ । ଏହି କାନୀନ ପୁତ୍ର ତାର ହିଁ ହେତୁ । ପୃଥାର ଉପଯୁକ୍ତ ସ୍ୱାମୀ ଈଶ୍ୱର ନିର୍ବାଚିତ କରି ରଖିଛନ୍ତି । ତୁମେ ତାର ସ୍ୱୟଂବରର ଆୟୋଜନ କର । ହସ୍ତିନାପୁରର ରାଜାଧିରାଜ ପାଣ୍ଡୁଙ୍କୁ ନେଇ ମୁଁ ସ୍ୱୟଂବର ସଭାରେ ଉପସ୍ଥିତ ହେବି । ପୃଥା କେବଳ ପାଣ୍ଡୁ ଗଳାରେ ବରଣମାଳା ଦେବ ।

କୁନ୍ତୀଭୋଜଙ୍କର ଅବସ୍ଥା ସ୍ୱାଭାବିକ ନ ଥିଲା । ତାଙ୍କ ଶରୀର କମ୍ପି ଉଠୁଥିଲା ଥରଥର ହୋଇ । ବାମ ହସ୍ତରେ ସେ ଦ୍ୱୈପାୟନଙ୍କୁ ଧରି ରହିଥିଲେ । ଛାତି ତଳେ ତାଙ୍କର ଆନନ୍ଦର ବନ୍ୟା ବହିଯାଉଥିଲା । ଅପ୍ରତିରୋଧ୍ୟ ଦୁରନ୍ତ ଆବେଗରେ ସେ କଥା କହିବାକୁ ଯାଇ କମ୍ପି ଉଠୁଥିଲା । ଅସ୍ୱାଭାବିକ ସ୍ୱରରେ ସେ ଉଚ୍ଚାରଣ କଲେ- 'ମହର୍ଷି, ମୁଁ କ'ଣ ସ୍ୱପ୍ନ ଦେଖୁଛି ? ଦେଖନ୍ତୁତ । ମୁଁ ସତରେ ବଞ୍ଚିଛି କି ନାହିଁ ?'

ପାଣ୍ଡୁ କୌଣସି ବୀର୍ଯ୍ୟଶୁଳ୍‌କା ନନ୍ଦିନୀର ପାଣିଗ୍ରହଣ କରିଛନ୍ତି । ଏଇ ସଂବାଦ ହସ୍ତିନାପୁରରେ ଆସି ପହଞ୍ଚିବା ମାତ୍ରେ ଭୀଷ୍ମ କ୍ରୋଧରେ ଥରିବାକୁ ଲାଗିଲେ । ଦେହରେ ତାଙ୍କର ନିଆଁ ଜଳିଉଠିଲା । ଆଖି ପୋଡ଼ିବାକୁ ଲାଗିଲା । କାନମୁଣ୍ଡା ତାତି ଉଠିଥିଲା । ଅନେକ କଥା ତାଙ୍କର ମନେପଡ଼ିଯାଇଥିଲା । କୋଉ ସ୍ୱାର୍ଥରେ ଦ୍ୱୈପାୟନ ଏହି ବିବାହରେ ଇନ୍ଧନ ଯୋଗାଇଲେ ? ଏହାର ରହସ୍ୟ କଣ ? ମୁଖ୍ୟତଃ ଏହି ଭାବନା ହିଁ ତାଙ୍କୁ ଅଥୟ କରି ପକାଇଲା । ସେ ଥଳକୂଳ ପାଉନଥିଲେ । ତେବେ ଏକଥା ସ୍ପଷ୍ଟ ଯେ, ପାଣ୍ଡୁର ସରଳତା ଓ ବାଧ୍ୟତାକୁ ଦ୍ୱୈପାୟନ ସ୍ୱାର୍ଥସିଦ୍ଧି ପାଇଁ କାର୍ଯ୍ୟରେ ବ୍ୟବହାର କରି କୁରୁବଂଶର ଗୌରବ ଓ ମର୍ଯ୍ୟାଦାକୁ ଅନ୍ୟ ଚକ୍ଷୁରେ ହେୟ କରି ତୋଳିଛନ୍ତି । ଦ୍ୱୈପାୟନଙ୍କର ଏଇ ଅବାଞ୍ଛିତ ସିଦ୍ଧାନ୍ତ ପାଇଁ ହସ୍ତିନାପୁରକୁ ଅନେକ କିଛି ହରାଇବାପାଇଁ ପଡ଼ିଲା, ହୁଏତ ଭବିଷ୍ୟତରେ ଏହାର ସୁଧ ମଧ୍ୟ ତାଙ୍କୁ ଦେବାକୁ ପଡ଼ିବ ।

ନିରୁପାୟ କ୍ରୋଧରେ ଭୀଷ୍ମଙ୍କ ତାଳୁରୁ ତଳିପା ଜଳିବାକୁ ଲାଗିଲା । ଦ୍ୱୈପାୟନଙ୍କ ଭଳି ସର୍ବଶାସ୍ତ୍ରଜ୍ଞ, ବିଚକ୍ଷଣ ବ୍ୟକ୍ତି ଏକଥା କିପରି ବୁଝିପାରିଲେ ନାହିଁ ଯେ, ପ୍ରତ୍ୟେକ ରାଜବଂଶର ଗୋଟାଏ ଗୋଟାଏ ନିଜସ୍ୱ ଗରିମା ଅଛି, ଐତିହ୍ୟ ଅଛି । ତାହାହିଁ ସେହି ବଂଶର ସ୍ୱାତନ୍ତ୍ର୍ୟ । ସ୍ୱାତନ୍ତ୍ର୍ୟ ଗଲେ ଆଉ କଣ ରହିଲା ବଂଶରେ ? ପୃଥାର ସ୍ୱୟଂବର ସଭାରେ ଯୋଗଦାନ କରି ଦ୍ୱୈପାୟନ ସେଇ ସ୍ୱତନ୍ତ୍ର ଗରିମା ଟିକକୁ ନଷ୍ଟ କରିଦେଲେ । ହସ୍ତିନାପୁର ରାଜାକୁ ଏଭଳି ଏକ ସାଧାରଣ ସ୍ୱୟଂବର ସଭା ସାଜେ ନାହିଁ, ଦ୍ୱୈପାୟନଙ୍କର ଭାବିବା ଉଚିତ ଥିଲା । ପାଣ୍ଡୁ ନିଜର ତେଜ ବୀର୍ଯ୍ୟ ବଳରେ କନ୍ୟା ଅଧିକାର କରି ଆଣିଛି କି ନାହିଁ, ବରଂ କନ୍ୟା ହିଁ ଓଲଟି ତାକୁ ନିର୍ବାଚନ କରିଛି । ଏହି ବିବାହରେ ପାଣ୍ଡୁ ଭିତରର ପୌରୁଷଟାକୁ ବିଶେଷ ଭାବେ ଅପମାନିତ ହିଁ କରାଗଲା । ଏହି ଅପମାନ ପାଣ୍ଡୁଙ୍କ ତେଜବୀର୍ଯ୍ୟ ପ୍ରତି କେବଳ ନୁହେଁ, କୁରୁଙ୍କ ପ୍ରତି ମଧ୍ୟ । କହିବାକୁ ଗଲେ ଏହି ଅପମାନରେ ଭୀଷ୍ମଙ୍କର ଅନ୍ତରାତ୍ମା ଛଟପଟ କରିବାକୁ ଲାଗିଲା ।

ଭୀଷ୍ମଙ୍କ ପ୍ରତିକ୍ରିୟା ସଂପର୍କରେ କୁନ୍ତୀଭୋଜଙ୍କର କିଛି ଅଜଣା ନ ଥିଲା । ତେଣୁ କୁରୁବଂଶର ଆଭିଜାତ୍ୟ, ମର୍ଯ୍ୟଦା ଓ ଗୌରବ କଥା ବିବେଚନାକୁ ଆଣି ପ୍ରଚୁର ଧନରତ୍ନ, ଅଳଂକାର, ଦେଶବିଦେଶର ନାମୀ-ଦାମୀ ବହୁ ବିଚିତ୍ର ଆଶ୍ଚର୍ଯ୍ୟ ଉପହାର ସାମଗ୍ରୀ, ଦୁଗ୍ଧବତୀ ଗାଭୀ, ହସ୍ତୀ, ରଥ ପ୍ରଭୃତି ଯାନିଯୌତୁକ ସହିତ ପାଣ୍ଡୁ ଓ ପୃଥାକୁ ହସ୍ତିନାପୁର ପଠାଇଥିଲେ ।

ଗାନ୍ଧାରୀ ଅପେକ୍ଷା ପୃଥା ଅସାଧାରଣ ସୁନ୍ଦରୀ ଥିଲେ । ସତ କହିବାକୁ ଗଲେ ଚିତ୍ରପଟରେ ଅଙ୍କା ଯାଇଥିବା ଛବି ଭଳି ସେ ଅପରୂପା । ମୁହଁ ଆଖିରେ ଅଦ୍ଭୁତ ଏକ ଅପାର୍ଥିବ ମୁଗ୍ଧତାର ଭାବ, ଯାହା ମୁହୂର୍ତ୍ତକରେ ନିଷ୍ଠୁର ମଣିଷର ହୃଦୟକୁ ହରଣ କରିପାରେ । ଆଖି ଦୁଇଟିରେ ଗଭୀର ସମ୍ମୋହନ ଆଉ ଭଲ ପାଇବାର ନିଶା । ଥରେ ଚାହିଁଲେ ଆଖି

ଫେରେନା । ଅଠାକାଠି ଭଳି ଦୃଷ୍ଟି ଅଟକେ । ପୁତ୍ରବଧୂ ପୃଥା ସଂପର୍କରେ ଏହା ଥିଲା ପ୍ରାଥମିକ ମୁଗ୍ଧତା । ତା'ର ଅସାମାନ୍ୟ ମୁଖଶ୍ରୀ । ସୁନ୍ଦର ସ୍ୱାସ୍ଥ୍ୟ, ଯୌବନ ଦେଖି ଭୀଷ୍ମ ଆଉ କିଛି ବାଧା ଦେଲେ ନାହିଁ । ନିଜେ ମଧ୍ୟ ସେ ବିଚାର କରି ଦେଖିଲେ ପାଣ୍ଡୁ ଭଳି ଶୀର୍ଣ୍ଣ, ଶାନ୍ତ, ସରଳ, ନିର୍ବୋଧ, ନିର୍ବୀର୍ଯ୍ୟ ଅପଦାର୍ଥ ପୌରୁଷକୁ କୌଣସି ତରୁଣୀ ଯେ ସ୍ୱେଚ୍ଛାରେ ସ୍ୱାମୀରୂପେ ନିର୍ବାଚନ କରିପାରେ, ଭୀଷ୍ମ ତ କଳ୍ପନା କରିପାରୁ ନ ଥିଲେ । ପାଣ୍ଡୁଙ୍କ ଏଇ ଚୂଡ଼ାନ୍ତ ସଫଳତା ଭୀଷ୍ମଙ୍କୁ ଖୁସି କଲା । ନବ ବରବଧୂ ବରଣର ରାଜକୀୟ ସମାରୋହ ଓ ଆଡ଼ମ୍ବରରେ କୌଣସି ତ୍ରୁଟି କରିନଥିଲେ ଭୀଷ୍ମ !

ହେଲେ ଭୀଷ୍ମଙ୍କ ମନ ଭିତରେ ଶାନ୍ତି ନ ଥିଲା । ତାଙ୍କ ଭିତରର ବୁଦ୍ଧିମାନ ଓ ବିବେଚକ ରାଜନୀତିଜ୍ଞଟି ତାଙ୍କୁ ସାବଧାନ କରି ଦେଉଥିଲା । ପୃଥାର ଏଇ ରୂପ ଯୌବନ ହିଁ ହେବ ସବୁ ଅନିଷ୍ଟର ମୂଳ । କୁଳ ଭାଙ୍ଗିବ । ମର୍ଯ୍ୟାଦା ନଷ୍ଟ ହେବ । କୋଉଠି ସ୍ଥାନ ମିଳିବନି ତାକୁ । ବିଭ୍ରାନ୍ତିବଶତଃ ସେ ଏକ ନିଷିଦ୍ଧ ଫଳ ଆଡ଼କୁ ହାତ ବଢ଼େଇଲେ ଯାହା । କିନ୍ତୁ ପୃଥା କାହିଁକି ନିଷିଦ୍ଧ ଫଳ ହେବାକୁ ଯିବ ? କାହିଁକି ? ନିଷିଦ୍ଧ ହିଁ ଯଦି ହେବ ତେବେ ଏଭଳି ଭାବେ ମଣିଷର ହୃଦୟକୁ ଜିତିବାର ଅସୀମ ଶକ୍ତିକୁ ସେ ପାଇଲା କୋଉଠୁ ? ଭୀଷ୍ମଙ୍କ ଭୟ, ଆତଙ୍କ କ'ଣ ସେଇଥିପାଇଁ ? ଏଭଳି ସର୍ବଗୁଣସଂପନ୍ନା ଝିଅ କଣ ପାଣ୍ଡୁଙ୍କୁ ସାଜେ ?

ଭୀଷ୍ମଙ୍କ ଛାତି ଭିତର ଚିନ୍ତାରେ ଧଡ଼ପଡ଼ ହେବାକୁ ଲାଗିଲା । ସେ ଠିକ୍ ବୁଝି ପାରୁଥିଲେ, ଦ୍ୱୈପାୟନଙ୍କ ସହିତ ତାଙ୍କର ଏଇ ଶୀତଳଯୁଦ୍ଧ ସବୁବେଳେ ଦୃଷ୍ଟି ଅନ୍ତରାଳରେ ହିଁ ହେଉଥିଲା । ପୃଥା ମାଧ୍ୟମରେ ଦ୍ୱୈପାୟନ ତାଙ୍କର କୌଣସି ବୃହତ୍ ଭୂମିକା ତିଆରି କରିବାକୁ ଚାହାନ୍ତି ଗୃହ ଅଭ୍ୟନ୍ତରରେ, ବିଦୂରର ହାବଭାବ ମଧ୍ୟ ଇଦାନିଂ ବଦଳିଗଲା ଭଳି ମନେହେଉଛି । ପୃଥା ସହିତ ତାର ସଂପର୍କ ବି ଖୁବ୍ ଗଭୀର । ଦେବର ଭାଉଜଙ୍କ ପ୍ରୀତିମଧୁର ସଂପର୍କ ନେଇ ସେମାନଙ୍କର ସ୍ନେହାଳାପ ଓ ଗୋଳିଆପୋଳିଆ ଭାବ ଚାଲିପାରେ - ତେବେ ସେଇ ସବୁ ଘଟଣା ଭୀଷ୍ମଙ୍କୁ କିଞ୍ଚିତ୍ ବିଚଳିତ କରିଥିଲା । ପରିବେଶଟା ଦିନକୁ ଦିନ ତାଙ୍କ ନିକଟରେ ଓଜନିଆ ହେଇ ଉଠୁଥିଲା । ସେ ବେଶ୍ ବିବ୍ରତ ବୋଧ କରୁଥିଲେ କ୍ରମଶଃ ।

ଦିନ ଯେତେ ଗଡ଼ିବାକୁ ଲାଗିଲା ଭୀଷ୍ମଙ୍କର ମାନସିକ ସ୍ଥିତି ସେତିକି ମାତ୍ରାରେ ଟାଣ ଧରିବାକୁ ଲାଗିଲା । ତାଙ୍କ ମନରେ ଗୋଟିଏ ଚିନ୍ତା, ଗୋଟିଏ ମୁହଁ ହିଁ ଦିଶିଲା । ସକାଳରୁ ସଂଜପର୍ଯ୍ୟନ୍ତ ସେଇ ମୁହଁଟି ମୁହୂର୍ତ୍ତକ ପାଇଁ ମଧ୍ୟ ଆଖି ଆଗରୁ ଅନ୍ତର୍ହିତ ହେଉନଥିଲା । ସେଇ ମୁହଁଟି ଦ୍ୱୈପାୟନଙ୍କର ।

ଦ୍ୱୈପାୟନଙ୍କ ସହିତ ତାଙ୍କର କୌଣସି ରକ୍ତଗତ ସଂପର୍କ ନାହିଁ । ତାଙ୍କର ପିତାମାତା ମଧ୍ୟ ଏକ ନୁହନ୍ତି । ତଥାପି ବିଧାତାଙ୍କର ଅଦ୍ଭୁତ ବିଧାନ । ସେମାନେ ପରସ୍ପର ଭାଇ

ଭାଇ । ପିତା ଶାନ୍ତନୁଙ୍କ ସହିତ ବିମାତା ସତ୍ୟବତୀଙ୍କର ବିବାହ ସୂତ୍ରରେ ହିଁ ଦ୍ୱୈପାୟନ ଏଇ ରାଜବଂଶରେ ପ୍ରବେଶାଧିକାର ପାଇଛନ୍ତି । ବିଧାତା ଏଇ ପରିବାରରେ ତାଙ୍କୁ ଜଣେ ଆପଣାର ମଣିଷ ଭାବେ ସ୍ୱୀକୃତି ଦେଇଛି । ତାଙ୍କର ଆବେଗପ୍ରବଣତାଜନିତ ଭୁଲରୁ ହିଁ ଏଭଳି ଘଟିଲା । ସେଇ ଭୁଲର ପ୍ରାୟଶ୍ଚିତ୍ତ ତାଙ୍କୁ କରିବାକୁ ପଡ଼ିବ ନିରବରେ ।

ଦ୍ୱୈପାୟନ ଲୋକଚକ୍ଷୁର ଅଗୋଚରରେ ତାଙ୍କର ଜଣେ ପ୍ରତିଦ୍ୱନ୍ଦ୍ୱୀ ହୋଇ ଉଠିଛନ୍ତି, ସେ କଥା କେତେ ଜଣ ଜାଣିପାରିବେ ? ତାଙ୍କର କୋଉ କାର୍ଯ୍ୟ ଏକଥା ପ୍ରମାଣ କରୁନି ? ପାଣ୍ଡୁଙ୍କୁ ସିଂହାସନରେ ବସାଇବା ଏବଂ ହସ୍ତିନାପୁରକୁ ଏ ସଂପର୍କରେ କୌଣସି ରକମର ଅବଗତି ନ କରାଇ, ରାଜନୈତିକ ଲାଭାଲାଭ କଥା ଚିନ୍ତା ନ କରି ପୃଥାର ସ୍ୱୟଂବର ସଭାକୁ ପାଣ୍ଡୁଙ୍କୁ ନେଇଯିବା- ଏ ସମସ୍ତ ଘଟଣା ତାଙ୍କ ନିକଟରେ କେମିତି ରହସ୍ୟମୟ ବୋଲି ମନେହେଉଛି । ପାଣ୍ଡୁ ବିବାହରେ ଦୁଃସାହସ ଦେଖାଇ ସେ ଅନ୍ତତଃ ଜଣେଇ ଦେଇଛନ୍ତି ଯେ, 'ଏଇ ରାଜ୍ୟର ରାଜନୀତିରେ ଏବଂ ପରିବାରରେ ଭୀଷ୍ମଙ୍କ ଭଳି ତାଙ୍କର ମଧ୍ୟ ମର୍ଯ୍ୟାଦା ଓ ଅଧିକାର ଅଛି । ଭୀଷ୍ମଙ୍କୁ ସେ ଖାତିର କରନ୍ତି ନାହିଁ । ପ୍ରତିପକ୍ଷଙ୍କ ମତ ହେଲା ଦ୍ୱୈପାୟନ ତାଙ୍କ ବିରୋଧରେ ଯିବାପାଇଁ ପ୍ରବୃତ୍ତ ହୋଇଛନ୍ତି । ଧୃତରାଷ୍ଟ୍ରର ବିବାହ ବେଳେ ସେ ଅବଶ୍ୟ ଦ୍ୱୈପାୟନଙ୍କ ପରାମର୍ଶ ନେଇ ନାହାନ୍ତି; ଏମିତିକି ନିମନ୍ତ୍ରଣ ମଧ୍ୟ କରି ନାହାନ୍ତି । ବୋଧହୁଏ ସେଇଥିପାଇଁ ଓଲଟା ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଦ୍ୱୈପାୟନ ତାଙ୍କୁ ନ ଜଣେଇ ପାଣ୍ଡୁର ବିବାହ କରିଦେଲେ । ଏହାଠାରୁ ବଳି ଅଧିକା ଉଦାହରଣ ପ୍ରତିପକ୍ଷଙ୍କ ପାଇଁ କଣ ଆଉ ହେଇପାରେ ?

ବେଶ୍ କିଛିଦିନ କଟିଗଲା ।

ଭୀଷ୍ମ ସେମିତି କିଛି ନିଜକୁ ବଦଳେଇପାରିଲେ ନାହିଁ । ପୃଥାଙ୍କର ଏକାଧିପତ୍ୟ ପାଣ୍ଡୁଙ୍କ ଉପରେ ରହିଲେ, ରାଜନୀତି କ୍ଷେତ୍ରରେ ତାଙ୍କ ପ୍ରଭାବ କମିଯିବାର ଆଶଙ୍କା କଲେ ସେ । ବର୍ତ୍ତମାନ ଶ୍ୱଶୁର ଓ ପୁତ୍ରବଧୂ ମଧ୍ୟରେ ଯେଉଁ ମଧୁର ସଂପର୍କ ଅଛି, ତାହା ଯେ ସବୁଦିନ ପାଇଁ ଏହିଭଳି ରହିବ ବା ଏକାଭଳି ରହିବ ତାହା ଆଶା କରିବା ଅନ୍ୟାୟ । ରାଜନୀତି ହେଉ କି ଜୀବନ ହେଉ କୌଣସିଟି ସ୍ଥାଣୁ ବସ୍ତୁ ନୁହେଁ । ବାରମ୍ୱାର ଚାପ ପଡ଼ିବା ଫଳରେ ନୂତନ ଚିନ୍ତା, ନବଭାବନାର ସୂତ୍ରପାତ ହୁଏ ଏବଂ ପରିବର୍ତ୍ତନ ଘଟେ । ଧ୍ୟାନ, ଧାରଣା ଓ ବିଶ୍ୱାସ ବଦଳିଯାଏ । ସୁତରାଂ ସେଭଳି କିଛି ଘଟିବାର ସଂଭାବନା ଥିଲେ, 'ପ୍ରଥମେ ଭାଗକର ତା'ପରେ ନିଶ୍ଚିନ୍ତରେ ରହ । ନୀତି ପ୍ରୟୋଗ କରି ପାଣ୍ଡୁଙ୍କୁ ପୃଥା ନିକଟରୁ ଦୂରେଇ ରଖିବା କଥା ଭୀଷ୍ମ ଚିନ୍ତା କଲେ । ପାଣ୍ଡୁଙ୍କ ଜୀବନରେ ଆଉ ଜଣେ ନାରୀର ଆକର୍ଷଣ ଅନିବାର୍ଯ୍ୟ କରିପାରିଲେ, ପୃଥା ନିକଟରୁ ପାଣ୍ଡୁଙ୍କ ମନ ସ୍ୱତଃ କମି ଆସିବ ଓ ପ୍ରଭାବ ମଧ୍ୟ କମି ଆସିବ । ସପତ୍ନୀଜନିତ ବିଦ୍ୱେଷ ଓ ଈର୍ଷାର ଯନ୍ତ୍ରଣାରେ କେବଳ ତ

ପୃଥା ଜଳିବନି, ପାଣ୍ଡୁଙ୍କ ଜ୍ୱଳନର ମଧ୍ୟ କାରଣ ହୋଇ ଠିଆ ହେବ । ପୃଥା ପଟରୁ ଯେତିକି ଆଘାତ ଆସିବ, ସେତିକି ମାତ୍ରାରେ ପାଣ୍ଡୁ ଦୂରେଇଯିବ ତା ନିକଟରୁ । ସ୍ତ୍ରୀ ପ୍ରତି ତାର ଆନୁଗତ୍ୟର ନିଶା କଟିଯିବ । କିନ୍ତୁ କଣ କଲେ ପାଣ୍ଡୁ ଏବଂ ପୃଥାଙ୍କ ପ୍ରେମ ସଂପର୍କରେ ଅନ୍ତର ସୃଷ୍ଟି ହେବ, ବିଚ୍ଛେଦ ଘଟିବ, ସେଇ ଉପାୟ ଚିନ୍ତା କରୁ କରୁ ଭୀଷ୍ମଙ୍କର ଗୁଡ଼ାଏ ବିନିଦ୍ର ରଜନୀ ଅତିବାହିତ ହେଇଗଲା ।

ଭାବନାର ଶେଷ ନାହିଁ କି ନ ଥିଲା । ଭାବିବାକୁ ମଧ୍ୟ ଭଲ ଲାଗୁଥିଲା । କିନ୍ତୁ ଦ୍ୱୈପାୟନଙ୍କ ସଂପର୍କରେ ତାଙ୍କର ଅନୁମାନ କେତେଦୂର ସତ୍ୟ କିମ୍ବା କେତେ ପରିମାଣରେ ଭ୍ରାନ୍ତ ସେ କୌଣସି ପ୍ରକାରେ ବୁଝିପାରୁ ନ ଥିଲେ । ତଥାପି ରାଜନୀତିରେ ବିଶ୍ୱାସ କରି ଠକେଇ ହେବା ଅପେକ୍ଷା, ଅବିଶ୍ୱାସ କରି ଠକି ହେବା ଯଥେଷ୍ଟ ଭଲ । ହେଲେ ଦ୍ୱୈପାୟନ ଏବଂ ତାଙ୍କ ବିରୋଧର ମଝିରେ ନିରୀହ ସରଳ ପାଣ୍ଡୁଙ୍କୁ ଯେଉଁ ବିଡ଼ମ୍ବନା ଓ କଷ୍ଟ ଭୋଗ କରିବାକୁ ହେବ- ସେ କଥା ଚିନ୍ତା କରି ତାଙ୍କ ଛାତି ଫାଟିଯାଉଥିଲା । କ୍ରମେ ତାହା ଅବଶ୍ୟମ୍ଭାବୀ ହୋଇ ପଡ଼ିଲା, ଦୁଇଟି ବିପରୀତଧର୍ମୀ ପ୍ରବୃତ୍ତିର ସଂଘର୍ଷ ଓ ସଂଘାତ ଫଳରେ ।

ପୃଥାର କଥାବାର୍ତ୍ତା, କାର୍ଯ୍ୟକଳାପ, ସେବାସାନ୍ନିଧ ଇତ୍ୟାଦିର ବହୁ ଚିତ୍ର ଭୀଷ୍ମଙ୍କ ଚିନ୍ତା ଓ ଚେତନାକୁ ଗ୍ରାସ କରି ରଖିଥିଲା । ପୃଥାର ରୂପ, ତାର ଆଖି, ନାକ, ଓଠ, ଭ୍ରୂ ଇତ୍ୟାଦି ନଖରୁ ଶିଖ ପର୍ଯ୍ୟନ୍ତ ତାଙ୍କ ଆଖି ଆଗରେ ଅନବରତ ଭାସି ଉଠୁଥିଲା । ଭୀଷ୍ମଙ୍କ ମୁହଁରେ ବିଷଣ୍ଣ ଗମ୍ଭୀର ଭାବର ଅଭିବ୍ୟକ୍ତି ଫୁଟି ଉଠିଥିଲା । ଦୀର୍ଘଶ୍ୱାସ ପଡ଼ିଲା ଥରକୁ ଥର । କୁନ୍ତୀ ସହିତ ତାଙ୍କର ତ କୌଣସି ବିରୋଧ ନାହିଁ । ସେ ଶତ୍ରୁପକ୍ଷର ଝିଅ ମଧ୍ୟ ନୁହେଁ । ତେଣୁ ତା ପ୍ରତି କୌଣସି ବିରୋଧ ନ ରହିବା ସ୍ୱାଭାବିକ । ନିହାତି ସାଧାରଣ ଗୃହସ୍ଥ ପରିବାରର ବୋହୂ ଭଳି ବୋହୂଟିଏ ସେ । ଗାନ୍ଧାରୀଙ୍କୁ ମଧ୍ୟ ନିଜ ଗୁଣରେ ବଶୀଭୂତ କରିପାରିଛି । ତା କଥା କହିବାର ଢଙ୍ଗରେ ଚମତ୍କାରିତା ଅଛି, ଯାହା ପରକୁ ନିମିଷକରେ ଆପଣାର କରିପାରେ । ଦୂରତ୍ୱର ବ୍ୟବଧାନ କଟେଇ ଦେଇପାରେ । ପାର୍ଥକ୍ୟକୁ କ୍ଷୀଣତର କରିପାରେ ।

ଭୀଷ୍ମଙ୍କୁ ଅବାକ୍ ଲାଗିଲା । ଏହି ମିଷ୍ଟଭାଷିଣୀ, ମଧୁର ସ୍ୱଭାବର ପୃଥାର ସୁଖ ଶାନ୍ତି ଆନନ୍ଦକୁ ସେ ସହ୍ୟ କରିପାରୁ ନାହାନ୍ତି କାହିଁକି ? ଦ୍ୱୈପାୟନଙ୍କ ଉପରେ ପ୍ରତିଶୋଧ ନେବାକୁ ଯାଇ, ପୃଥାର ଜୀବନକୁ ବିଷମୟ କରି ତୋଳିବାର ଅଧିକାର ତ ତାଙ୍କର ନାହିଁ । ସୁଖଶାନ୍ତି ଏକ ଦୁର୍ଲଭ ବସ୍ତୁ, ସମସ୍ତଙ୍କ ଭାଗ୍ୟରେ ତାହା ଜୁଟେନା କି ଅଧିକ ସମୟ ପର୍ଯ୍ୟନ୍ତ ସହ୍ୟ ହୁଏନା । ପୃଥା ସେଇ ପରମ ସଂପଦକୁ ପାଇ ହରେଇ ଦେବ ? ମମତାରେ ଭରି ଉଠିଲା ଭୀଷ୍ମଙ୍କର ମନ ହୃଦୟ । କିନ୍ତୁ ପୃଥା ଆଉ ତାଙ୍କ ମଧ୍ୟରେ ଠିଆ ହେଇଛନ୍ତି ଦ୍ୱୈପାୟନ । ତୀକ୍ଷ୍ଣ କଣ୍ଟକ ଭଳି ତାଙ୍କର ଅସ୍ତିତ୍ୱ ପ୍ରତିଟି ମୁହୂର୍ତ୍ତରେ ଭୀଷ୍ମଙ୍କ ଚିନ୍ତା ଚେତନାକୁ ବିଦ୍ଧ କରି

ଚାଲିଛି ପୃଥା ଆଉ ଦ୍ୱୈପାୟନଙ୍କ ଅସ୍ତ୍ର । ରାଜକ୍ଷମତାକୁ ଯେପରି ଖୁସି ସେପରି ବ୍ୟବହାର କଲାଭଳି ଯନ୍ତ୍ର । ହସ୍ତିନାପୁର ରାଜନୀତିରୁ ଦ୍ୱୈପାୟନଙ୍କୁ ହଟାଇବାକୁ ପଡ଼ିବ । ପ୍ରଭାବ କମାଇବାକୁ ହେଲେ ଦ୍ୱୈପାୟନଙ୍କର, ପୃଥାକୁ ହସ୍ତିନାପୁର ରାଜପ୍ରାସାଦରୁ ବଞ୍ଚିତ କରିବାକୁ ପଡ଼ିବ । ସେ ଯେମିତି ଅବାଞ୍ଛିତ ହୁଏ... ।

କେମିତି ଗୋଟାଏ ହତାଶ ବିଷଣ୍ଣ ମନରେ ସେ ସ୍ଥିର କଲେ ଯେ, ବଂଧୁବର ମଦ୍ରରାଜ୍ୟର ଅଧିପତି ଶଲ୍ୟଙ୍କର ଗୋଟିଏ ଅସାଧାରଣ ସୁନ୍ଦରୀ ଭଗିନୀ ଅଛି- ନାଁ ତାର ମାଦ୍ରୀ । ତା' ସହିତ ପାଣ୍ଡୁଙ୍କ ପରିଣୟ ହେଲେ ପୃଥା ଆଡୁ ମନ ଆପେ ଆପେ ମାଦ୍ରୀ ପଟକୁ ଟାଣି ହେଇ ଆସିବ ପାଣ୍ଡୁଙ୍କର ଏବଂ ସେତେବେଳେ ତାକୁ ସଂପୂର୍ଣ୍ଣ ନିଜ ନିୟନ୍ତ୍ରଣରେ ରଖିବାରେ କୌଣସି ବାଧା ନ ଥିବ । ମଦ୍ରରାଜ୍ୟ ଏବଂ ଯାଦବ ସମବାୟ ରାଜ୍ୟ ମଧ୍ୟରେ ଶତ୍ରୁର ସଂପର୍କ । ଶତ୍ରୁତାର ବିଦ୍ୱେଷ, ଘୃଣା ଭୁଲି ମାଦ୍ରୀ କେବେବି ପୃଥାର ଅନୁଗତ ଆଉ ବାଧ ହେବ ନାହିଁ । ବରଂ ମାନସିକ ସ୍ତରରେ ଗୋଟାଏ ସୂକ୍ଷ୍ମ ସ୍ନାୟବିକ ସଂଘର୍ଷ ଉଭୟଙ୍କ ସଂପର୍କକୁ ଆହୁରି ତିକ୍ତ କରି ତୋଳିବ । ଭିତରର ବିଦ୍ୱେଷ ଟଣାଓଟରା ଯେତେ ବଢ଼ିବ ସେତିକି ମାତ୍ରାରେ କୁନ୍ତୀ, ମାଦ୍ରୀକୁ ବିଷ ଆଖିରେ ଦେଖିବ । ଆଉ ସେତେବେଳେ, ପାଣ୍ଡୁ ନବବଧୂ, ମାଦ୍ରୀର ରୂପରେ ବିମୋହିତ ହୋଇ ଅନେକ ସମୟ ତାପାଇଁ ତା ପାଖରେ କଟାଇବାକୁ ଚାହିଁବ । ତାକୁ ସନ୍ତୁଷ୍ଟ ରଖିବାକୁ ଚାହିଁବ । ମାଦ୍ରୀ ରୂପର ଆକର୍ଷଣ ଯେତେ ବଢ଼ିବ ଓ ତାକୁ ଟାଣିବ, ସେତିକି ମାତ୍ରାରେ କୁନ୍ତୀଠାରୁ ସେ ଦୂରେଇଯିବ । ଦୁରନ୍ତ ଅଭିମାନରେ କୁନ୍ତୀ ପାଣ୍ଡୁଙ୍କ ସହିତ ତାର ସଂସ୍ରବ ତ୍ୟାଗ କରିବାକୁ ବାଧ ହେବ ।

ଭୀଷ୍ମଙ୍କ ଦୃଢ଼ବଦ୍ଧ ଓଷ୍ଠର ଫାଙ୍କ ଟିକିଏ ବକ୍ର ହୋଇଉଠିଲା । ଆଖି ଜଳିଉଠିଲା ନିଆଁ ଭଳି । ତାଙ୍କୁ ଲାଗିଲା, ପୃଥାକୁ ସେ ଚିହ୍ନି ନାହାନ୍ତି । ଅଚିହ୍ନା ମନେହେଲା ସେ ।

ତୀର୍ଥ ପରେ ତୀର୍ଥ, ବିଭିନ୍ନ ତୀର୍ଥ ଘୂରି ବୁଲୁଥିଲେ ଦ୍ୱୈପାୟନ । ବାଟରେ ଅନେକ ପ୍ରକାର ଖବର ଶୁଣିଲେ ସେ । ସମ୍ବାଦ ଭିତରେ ଗୋଟାଏ ଦୁଃସମ୍ବାଦର ସୂଚନା ମଧ୍ୟ ପାଇଲେ । ମନ କିଛି ଭଲ ଲାଗିଲା ନାହିଁ । ସତେ ଯେମିତି ଭୀଷଣ ଝଡ଼ଟିଏ ବହିଗଲା ମନଉପର ଦେଇ । ଭିତରେ ଭିତରେ ଉତ୍ତେଜନା ହେତୁ ମୁହଁ ଫଣଫଣେଇ ଉଠୁଥିଲା ସତ, ହେଲେ ବାହାରକୁ କିଛି ପ୍ରକାଶ ପାଉ ନ ଥିଲା । ସବୁବେଳେ କେମିତି ଗୋଟାଏ ଥମ୍‌ଥମ୍ ଭାବ ଜମି ରହିଥିଲା ।

ଲୋକମାନେ କୁହାକୁହି ହେଉଥିଲେ, ଭୀଷ୍ମ ଆଉଥରେ ପାଣ୍ଡୁଙ୍କୁ ବିବାହ ଦେଇଛନ୍ତି । ମଦ୍ରରାଜକନ୍ୟା ମାଦ୍ରୀ ସହିତ ଧୁମ୍‌ଧାମ୍‌ରେ ବିବାହ ସଂପନ୍ନ ହୋଇଛି । ବହୁ ସ୍ଥାନରୁ ବହୁ ଗୁଣୀ, ମାନୀ, ଜ୍ଞାନୀ, ପଣ୍ଡିତ, ସାମନ୍ତ, ଅଭିଜାତ, ବ୍ୟବସାୟୀ ଏବଂ ନୃପତିଗଣଙ୍କର ସମାବେଶ ହେଇଥିଲା । ଗାନ୍ଧାରୀ ଭଳି ମାଦ୍ରୀକୁ ମଧ୍ୟ ହସ୍ତିନା ଆଣି ପାଣ୍ଡୁଙ୍କ ସହିତ ତାର ବିବାହ ଦେଇଛନ୍ତି ।

ଏଇ ଗୋଟିଏ ବିବାହ କାର୍ଯ୍ୟ କରି ଭୀଷ୍ମ ଚୁପ୍ ହୋଇ ବସିନଥିଲେ । ଅତି ଶୀଘ୍ର ହିଁ ଶୂଦ୍ରକ ରାଜା ଦେବକଙ୍କର ପରମା ସୁନ୍ଦରୀ କନ୍ୟା ପରାଶରୀ ସହିତ ବିଦୂରର ବିବାହ ମଧ୍ୟ ବେଶ୍ ଧୁମ୍‌ଧାମ୍‌ରେ ହିଁ ସଂପନ୍ନ କରିଥିଲେ ।

ବିଦୂରର ବିବାହ ସଂବାଦ ଦ୍ୱୈପାୟନଙ୍କୁ ବେଶ୍ ବିଚଳିତ କଲା । କିଛିକ୍ଷଣ ପାଇଁ ପୃଥିବୀଟା ଶୂନ୍ୟ ମନେହେଲା ତାଙ୍କର । କୌଣସି ଅନୁଭୂତି, ରାଗ, ହିଂସା, ଯନ୍ତ୍ରଣା, କିଛି ବୋଧ କରିପାରିଲେନି । କିମିତି ଗୋଟାଏ ଭାବ ଛାତି ଭିତରେ ଝୁଲି ରହିଲା । ଯାହା ବା ସେ ସଂଦେହ କରୁଥିଲେ, ଅନୁମାନ କରୁଥିଲେ, ଯାହାକୁ ହୁଏତ ଆଖିବୁଜି ଭୁଲିଯାଇ ପାରନ୍ତେ, ସେଇଟା ଏଭଳି ରୂଢ଼ି ବାସ୍ତବ ରୂପରେ ମନ ଭିତରେ ଜମାଟ ବାନ୍ଧି ରହିଲା ଯେ, ସେ କଥା ଭାବି ସେ ଟିକିଏ ଅସ୍ଥିର ଏବଂ ବିଚଳିତ ହେଇପଡ଼ିଲେ ନିଶ୍ଚୟ ।

ଦ୍ୱୈପାୟନ ଆଉ ଉତ୍ତେଜିତ ହେଲେ ନାହିଁ । ପ୍ରତିକ୍ରିୟା ବଦଳରେ ଆରମ୍ଭ ହେଲା ତାଙ୍କର ବିଚାର ବିଶ୍ଳେଷଣ ଏବଂ ସମାଧାନର ଚେଷ୍ଟା । ନାନା ପ୍ରଶ୍ନ ଜାତ ହେଲା ଦ୍ୱୈପାୟନଙ୍କ ମନରେ । ଯେଉଁ ସଂଘର୍ଷ ଦିନେ ତାଙ୍କୁ ଓ ଅମ୍ବିକାକୁ ନେଇ ଆରମ୍ଭ ହେଇଥିଲା ଏବଂ ଧୃତରାଷ୍ଟ୍ର ଭିତରକୁ ମଧ୍ୟ ସଞ୍ଚରିତ ହେଇଯାଇଥିଲା, ତାହା ବର୍ତ୍ତମାନ ଆଉ ତାଙ୍କ ଆୟତ୍ତରେ ନାହିଁ, ସଂଘର୍ଷର ଉତ୍ପତ୍ତିସ୍ଥଳ ସେମାନଙ୍କଠୁଁ ଅପସରି ଭୀଷ୍ମଙ୍କ ପାଖରେ ଯାଇ ପହଞ୍ଚିଛି । କାରଣ ରାଜନୀତିର ସ୍ରୋତ ଏକପ୍ରକାରେ, ଏକାଧାରରେ ବହେନା । ନଦୀ ଯେମିତି ତାର ଗତିପଥ ବଦଳେଇ ବଦଳେଇ ସ୍ରୋତଧାରାକୁ ଅବ୍ୟାହତ ରଖେ, ଠିକ୍ ସେଇଭଳି ରାଜନୀତିରେ ପରିସ୍ଥିତି ସହିତ ଖାପ ଖୁଆଇବାକୁ ଯାଇ ରୂପ ବଦଳାଏ, ପରିବର୍ତ୍ତିତ ହୁଏ ।

ଭୀଷ୍ମ ହସ୍ତିନାପୁରର ମୁକୁଟବିହୀନ ସମ୍ରାଟ୍ । ଶାନ୍ତନୁଙ୍କ ମୃତ୍ୟୁ ପରଠାରୁ ଏହା ସୂଚିତ ହେଇସାରିଛି । ସେତେବେଳେ ସାମ୍ରାଜ୍ଞୀ ସତ୍ୟବତୀଙ୍କର ପ୍ରତିନିଧି ଭାବେ ରାଜକାର୍ଯ୍ୟ ଓ ଶାସନକାର୍ଯ୍ୟ ସେ ଦେଖାଶୁଣା କରୁଥିଲେ । ସତ୍ୟବତୀଙ୍କ ଇଚ୍ଛା, ଅନିଚ୍ଛା, ଆଦେଶ, ଅଭିପ୍ରାୟ, ନିର୍ଦ୍ଦେଶ ମାନି ଚାଲିବା ହିଁ ତାଙ୍କର କାମ ଥିଲା । ରାଜ୍ୟ ଓ ରାଜନୀତିର ସ୍ୱାର୍ଥ ପାଇଁ କୋଉଟା ଭଲ ଅବା ମନ୍ଦ ସେ କେବେ ବିଚାର କରି ନାହାନ୍ତି । ତାଙ୍କର କୌଣସି ଗୋଟିଏ କାର୍ଯ୍ୟକଳାପ ଯଦି ସତ୍ୟବତୀଙ୍କ ମନରେ ସଂଦେହ ଜାଗ୍ରତ କରାଏ ଯେ- ସେ କ୍ଷମତାଲୋଭୀ- ତା ହେଲେ ତାଙ୍କର ଦୁଃଖର ସୀମା ରହିବନି । ଏହି ଆଶଙ୍କା ତାଙ୍କୁ ସଦାସର୍ବଦା ସତର୍କ କରି ରଖିଥିଲା । ସତ୍ୟବତୀଙ୍କର ସମସ୍ତ ଇଚ୍ଛାକୁ ସେ ପ୍ରଶ୍ରୟ ଦେଉଥିଲେ । ଭୀଷ୍ମଙ୍କ ଦୁର୍ବଳତାର ସେଇ ରନ୍ଧ୍ରପଥ ଦେଇ ସେ ଦିନେ ଏହି ପରିବାରର ଜଣେ ହେଇପାରିଲେ । ଯେତେଦିନ ପର୍ଯ୍ୟନ୍ତ ସତ୍ୟବତୀଙ୍କ ନାମରେ ରାଜ୍ୟଶାସନ ଚାଲିଥିଲା, ସେତେଦିନ ପର୍ଯ୍ୟନ୍ତ ତାଙ୍କର ଅବାଧ ଯିବାଆସିବାରେ କୌଣସି ପ୍ରତିବନ୍ଧକ ନ ଥିଲା । କିନ୍ତୁ ବର୍ତ୍ତମାନ ସମୟ ବଦଳି ଯାଇଛି । ପାଣ୍ଡୁ ହାତରେ ରାଷ୍ଟ୍ରର କ୍ଷମତା ହସ୍ତାନ୍ତରିତ ହେଇଛି । ଭୀଷ୍ମ ତାଙ୍କର ସତ୍ୟ ଓ

ପ୍ରତିଜ୍ଞା ପାଳନ କରିଛନ୍ତି । ବର୍ତ୍ତମାନ ବଦନାମର ଭାଗୀ ହେବାର ଆଶଙ୍କା ନାହିଁ ତାଙ୍କ ମନରେ । ତଥାପି ବି ଆଶ୍ଚର୍ଯ୍ୟ ନିଜ ଅଧିକାରଟିକକ କାଳେ ସଂପୂର୍ଣ୍ଣ ଭାବେ ଚାଲିଯିବ, ସେଇ ଭୟରେ ସେ ପାଗଳ ହେଇଯାଉଛନ୍ତି ଭିତରେ ଭିତରେ । କ୍ଷମତାକୁ ଶକ୍ତ ଭାବେ ହାତରେ ଧରି ରଖିବା ପଥରେ ଏକମାତ୍ର ପ୍ରତିବନ୍ଧକ ହେଉଛନ୍ତି ଦ୍ୱୈପାୟନ । ସୁତରାଂ ଭୀଷ୍ମଙ୍କ ମତରେ ତାଙ୍କୁ ହିଁ ପ୍ରଥମେ ଛିନ୍ନମୂଳ କରିବା ଏକାନ୍ତ ଆବଶ୍ୟକ । ପାଣ୍ଡୁର ଦ୍ୱିତୀୟ ବିବାହ କରି ତାଙ୍କ ବିରୋଧରେ ଭୀଷ୍ମ ଯେମିତି ଯୁଦ୍ଧ ଘୋଷଣା କଲେ । ଏତିକିରେ ସରିଲାନି, ବିଦୂରକୁ ମଧ ବିବାହ ଦେଇ ଏକ ଦୁଃସାହସିକ କାର୍ଯ୍ୟ କଲେ ଭୀଷ୍ମ । ତାଙ୍କ ଆଚରଣରୁ ଯାହା ଜଣାଯାଉଛି, ହସ୍ତିନାପୁରରେ ଦ୍ୱୈପାୟନଙ୍କ ପ୍ରୟୋଜନର ଆବଶ୍ୟକତା ସରିଛି- ସେ ବର୍ତ୍ତମାନ ଅବାଞ୍ଛିତ ଅତିଥି ।

ଦ୍ୱୈପାୟନଙ୍କ ଛାତି ଥରେଇ ଦୀର୍ଘଶ୍ୱାସ ଛୁଟିଆସିଲା । ବିଦୂର ବିବାହ ସବୁଠାରୁ ତାଙ୍କୁ ବେଶି କଷ୍ଟ ଦେଲା । ବିଦୂର ସହିତ ତାଙ୍କର ରକ୍ତର ସଂପର୍କ ସବୁଠୁଁ ଗଭୀର । ଆନ୍ତରିକତା ବି ଅଧିକ । ବିଦୂରର ପାତ୍ରୀ ନିର୍ବାଚନ ନେଇ କେତେ ସ୍ୱପ୍ନ ସେ ଦେଖି ନ ଥିଲେ, ଏଇ ତ କିଛିଦିନ ପୂର୍ବରୁ । କିନ୍ତୁ ଭୀଷ୍ମ ତାଙ୍କୁ ସେଇ ଅଧିକାରରୁ ବଞ୍ଚିତ କରି ସ୍ୱପ୍ନଭଙ୍ଗ କଲେ । ନିଜର ଏଇ ପୁତ୍ରଟି ପାଇଁ ତାଙ୍କର ଯେଉଁ ସୂକ୍ଷ୍ମ ଅନୁଭୂତି ଥିଲା, ଜାଣିଜାଣି ଭୀଷ୍ମ ତାର ଅପମାନ କଲେ । ଭୀଷ୍ମ ଜାଣିଥିଲେ, ଦ୍ୱୈପାୟନ ଯେତେ କୁହନ୍ତୁ ସେ କିଛି ଜାଣି ନାହାନ୍ତି କି କିଛି ଦାୟିତ୍ୱ ତାଙ୍କର ନାହିଁ ବୋଲି ଏଇ ଅପମାନ ପରେ ସେ ହସ୍ତିନାକୁ ଆଉ ଯିବେ ନାହିଁ ଓ ସେଠାର ଦ୍ୱାର ତାଙ୍କ ପାଇଁ ବନ୍ଦ ହେଇଯିବ । ଏଇ ଦୁଇ ବିବାହ ପଛରେ ତ ତାହାହିଁ ମୂଳ ଉଦ୍ଦେଶ୍ୟ ଥିଲା ।

ଦ୍ୱୈପାୟନଙ୍କ ଭିତରେ ପ୍ରତିକ୍ରିୟା ଆରମ୍ଭ ହେଇଗଲା । ବର୍ତ୍ତମାନ ଏଇ ମୁହୂର୍ତ୍ତରେ ଛାତି ଭିତରଟା ଯେ କମ୍ପିଉଠିଲା, ସେ ଜାଣିପାରିଲେ । ତାଙ୍କୁ ଅବଶ ଲାଗିଲା ଶରୀରଟା । ଗୋଟାଏ ଅକୁହା ଯନ୍ତ୍ରଣା ଶରୀରଟାକୁ କାବୁକରି ପକାଇଲା ସତେକି ?

ପୁଷ୍କରରେ ପହଞ୍ଚି ଦ୍ୱୈପାୟନ ହସ୍ତିନାପୁର ରାଜନୀତିରେ ଅଦଳବଦଳର ଏକ ଆଶ୍ଚର୍ଯ୍ୟ ଓ ଚମକପ୍ରଦ କାହାଣୀ ଶୁଣିବାକୁ ପାଇଲେ । କେଡ଼େ ସହଜରେ ପାଣ୍ଡୁଙ୍କୁ ସିଂହାସନରୁ ଚ୍ୟୁତ କରି ଧୃତରାଷ୍ଟ୍ର ରାଜନୈତିକ କ୍ଷମତାକୁ ଆସିଲେ । କ୍ଷମତା ହସ୍ତାନ୍ତରର କାର୍ଯ୍ୟଟି ଖୁବ୍ କୌଶଳରେ ଏବଂ ଗୋପନରେ କରେଇ ନେଲେ ଧୃତରାଷ୍ଟ୍ର । ହାଣକାଟ, ରକ୍ତପାତ ମୋଟେ କିଛି କରିବା ଆବଶ୍ୟକ ହେଲା ନାହିଁ । ପାଣ୍ଡୁଙ୍କୁ ଦିଗ୍‌ବିଜୟରେ ପଠେଇ ଦେଇ ଧୃତରାଷ୍ଟ୍ର ରାଜକାର୍ଯ୍ୟ ଦେଖାଶୁଣା କରିବା ସଙ୍ଗେ ସଙ୍ଗେ ପରିଚାଳନାର ଭାର ମଧ ଗ୍ରହଣ କଲେ । ତାପରେ ଦିଗ୍‌ବିଜୟରୁ ପାଣ୍ଡୁ ଫେରିବା ପରେ, ଧୃତରାଷ୍ଟ୍ର ତାଙ୍କୁ ସ୍ପଷ୍ଟ କରି କହିଲେ, ପାଣ୍ଡୁ ! ଈଶ୍ୱର ଆଖି ଦିଇଟିକୁ ଛାଡ଼ିଦେଲେ ମୋତେ ସବୁକିଛି ଦେଇଛନ୍ତି । ଅନ୍ଧତ୍ୱ ହିଁ ମୋ ଜୀବନର

ଏକ ଅଭିଶାପ । କିନ୍ତୁ ମୁଁ ଅନ୍ଧ ହେଲେ ମଧ୍ୟ ରାଜକାର୍ଯ୍ୟ ଅତି ସୁନ୍ଦରଭାବେ ସଂପନ୍ନ କରିପାରେ, ଏହା ନିଶ୍ଚେ ଗାଲୁଗଳ୍ପ ନୁହେଁ, ବାସ୍ତବ ସତ୍ୟ । ରାଜନୈତିକ କ୍ଷମତାର ସ୍ୱାଦ ଏହି କିଛିଦିନ ମଧ୍ୟରେ ମୋ ଜୀବନରେ ଏକ ଅଭୂତପୂର୍ବ ଉନ୍ମାଦନା ଆଣିଦେଇଛି ଏବଂ ସେଇ ଅନୁଭୂତିକୁ କାହାକୁ ମୁଁ ବୁଝାଇପାରୁନି । ବର୍ତ୍ତମାନ କେବଳ ମନେହୁଏ ଏହି ସିଂହାସନ ଧର୍ମତଃ, ନ୍ୟାୟତଃ ମୋର ହିଁ ପ୍ରାପ୍ୟ । ମୋ ସିଂହାସନକୁ ତୁମ ନିକଟରେ ଗଚ୍ଛିତ ରଖିବି କାହିଁକି ? ଏଥିରେ ମୋର ଲାଭ କ'ଣ ? ତୁମକୁ ଏଇ ସିଂହାସନର ଅଧିକାର ଫେରାଇ ଦେଲେ ମୋତେ ଲୋକେ ନିର୍ବୋଧ ବୋଲି କହିବେ । ଭାଗ୍ୟର ଛଳନାକୁ ଆଉ ମାନିନେବାର ପ୍ରବୃତ୍ତି ମୋର ନାହିଁ କିମ୍ବା ତା ପାଇଁ ମୁଁ ପ୍ରସ୍ତୁତ ନୁହେଁ । ଆଜି ଏଇ ବିଶାଳ ଭାରତବର୍ଷର ଭାଗ୍ୟ ବିଧାତା ହେବାର ଯେଉଁ ସ୍ୱପ୍ନ ମୋ ଆଖିରେ ଅଛି, ତାକୁ ମୁଁ ଆଉ ତୁମକୁ ଫେରାଇ ଦେଇପାରିବି ନାହିଁ ।

ପାଣ୍ଡୁ ନିରବ । ସବୁ କଥା କୁଆଡ଼େ ଯେମିତି ହଜିଗଲା । ଧୃତରାଷ୍ଟ୍ରଙ୍କର କୌଶଳପୂର୍ଣ୍ଣ କଥାବାର୍ତ୍ତା ଆଗରେ ସେ ଏକାବେଳକେ ପ୍ରତିରୋଧହୀନ । ଏମିତିକି ଧୃତରାଷ୍ଟ୍ରଙ୍କୁ ପାଣ୍ଡୁ ଭୟ ବି କରନ୍ତି । ଧୃତରାଷ୍ଟ୍ରଙ୍କର ଏମିତି ଗୋଟାଏ ସହଜ, ସରଳ ଧାରୁଆ ଜିଭ ଅଛି ଯାହା ଅପ୍ରିୟ କଥାକୁ ତୀକ୍ଷ୍ଣ ଛୁରୀ ଭଳି ବ୍ୟବହାର କରିପାରନ୍ତି ।

ସ୍ତବ୍‌ଧତା ଭିତରେ ଧୃତରାଷ୍ଟ୍ର ଟିକିଏ ଅସ୍ୱସ୍ତି ବୋଧ କରୁଥିଲେ । ପ୍ରସଙ୍ଗଟି ନିଶ୍ଚୟ ଖୁବ୍ ଲଜ୍ଜାଜନକ ଥିଲା । କିଛି ସମୟର ନିରବତା ପରେ ସେ ପାଣ୍ଡୁଙ୍କୁ ଖୋଜିବାକୁ ଯାଇ ଗୋଟାଏ ସ୍ତବ୍‌ଧ ପାଷାଣ ମୂର୍ତ୍ତିକୁ ସତେକି ସ୍ପର୍ଶ କଲେ । ତା'ପରେ ନିଜ କଣ୍ଠସ୍ୱରକୁ କିଞ୍ଚିତ୍ କୋମଳ କରି କହିଲେ, ଭାଇ ପାଣ୍ଡୁ, ଅକପଟରେ ମୁଁ ମୋ ମନର କଥାକୁ ତୁମ ଆଗରେ ଖୋଲି କହିଛି । ମଣିଷ ନିଜେ ହିଁ ତାର ଭାଗ୍ୟନିର୍ମାତା । ଅଦୃଷ୍ଟର ଚକ୍ରାନ୍ତକୁ ନଷ୍ଟକରି ମୁଁ ଯେଉଁ ନୂତନ ସୌଭାଗ୍ୟକୁ ଅର୍ଜନ କରିଛି, ତାହା ବିଧାତାର ଅବଦାନ ନୁହେଁ । ନିଜ କୂଟବୁଦ୍ଧି ବଳରେ ତାହା ମୁଁ ହାସଲ କରିଛି । ଅଧିକାର ଅର୍ଜନ ନ କଲେ ତାର ଧାର ଓ ଗୌରବ ଉଭୟେ କ୍ଷୟ ହୁଏ । କୃତକର୍ମ ପାଇଁ ମୋର କୌଣସି ଦୁଃଖ କି ଅନୁଶୋଚନା ନାହିଁ । ମୁଁ ରାଜା । ରାଜଧର୍ମରେ ପିତାମାତା, ଭାଇବନ୍ଧୁ ବୋଲି କିଛି ନାହିଁ । ସ୍ନେହ, ମାୟା, ମମତା, ନ୍ୟାୟ-ଧର୍ମ, ସତ୍ୟ, ବିବେକ ବୋଲି ମଧ୍ୟ କିଛି ନାହିଁ । ରାଜା କେବଳ ଚାହେଁ ବିଜୟ ଗୌରବ ଏବଂ ଶତ୍ରୁର ବିନାଶ । ତୁମେ ବର୍ତ୍ତମାନ ମୋର ଭାଇ ନୁହଁ, ମୋର ପ୍ରତିଦ୍ୱନ୍ଦ୍ୱୀ । ରାଜାର କୌଣସି ପ୍ରତିଦ୍ୱନ୍ଦ୍ୱୀ ରହିବା ଉଚିତ ନୁହେଁ । ତେଣୁ ତୁମର ହସ୍ତିନାପୁରରେ ରହିବା ଆଉ ଉଚିତ ହେବ ନାହିଁ । ରାଜ୍ୟର ଅଧିକାର ତ୍ୟାଗ କରି ସପରିବାରେ ତୁମକୁ ସ୍ୱେଚ୍ଛାରେ ନିର୍ବାସନରେ ଯିବାକୁ ହେବ । ରଥ ମଧ୍ୟ ପ୍ରସ୍ତୁତ ଅଛି । ରାତି ପାହିବା ପୂର୍ବରୁ ହସ୍ତିନାପୁର ତ୍ୟାଗ କରି ତୁମେ ସପରିବାରେ ହିମାଳୟର ଉତ୍ତରରେ ଥିବା ଶତଶୃଙ୍ଗ

ପର୍ବତମାଳାକୁ ଚାଲିଯାଅ । ସେଠାରେ ତୁମେ ରହିବା ପାଇଁ ସମସ୍ତ ବ୍ୟବସ୍ଥା କରାଯାଇଛି ।

ପାଣ୍ଡୁ ଦୀର୍ଘଶ୍ୱାସ ଛାଡ଼ିଲେ । ବିଷଣ୍ଣ କଣ୍ଠରେ କହିଲେ- ପାଣ୍ଡୁର ସବୁଠାରୁ ବଡ଼ ପରାଜୟ ତାର ଭାଇ ନିକଟରେ ହିଁ ହେଲା । ଏଇ ପରାଜୟରୁ ମୁଁ ନିଜକୁ ଆଉ କୋଉଠି ରକ୍ଷା କରିପାରିଲି ? ପିତାମହ କୁହନ୍ତି, ମୁଁ କୁଆଡ଼େ ନିଜକୁ କେବେବି ରକ୍ଷା କରି ଶିଖିନି । କଥାଟା କେତେ ସତ୍ୟ, ତାହା ଆଜି ମୁଁ ବୁଝିପାରୁଛି ।

ଧୃତରାଷ୍ଟ୍ର ଥମ୍‌ଥମ୍ ହୋଇ କିଞ୍ଚିତ ଗମ୍ଭୀର ଗଳାରେ କହିଲେ, ତୁମେ ମୋତେ ଭୁଲ ବୁଝ ନାହିଁ ପାଣ୍ଡୁ । ଯେଉଁମାନେ ମୋ ସ୍ଥାନରେ ତୁମକୁ ଅଭିଷିକ୍ତ କରିଥିଲେ ସେମାନେ ସମସ୍ତେ ସ୍ୱାର୍ଥପର, ଲୋଭୀ । କୁରୁବଂଶର କିମ୍ବା ହସ୍ତିନାପୁରର ସେମାନେ କେବେହେଲେ ମିତ୍ର ନୁହନ୍ତି । ତୁମକୁ ଖେଳନା କରି ନିଜର ସୁଖସୁବିଧା ନିମନ୍ତେ ନିଜ ସ୍ୱାର୍ଥର ମୂଳ କଡ଼ାଗଣ୍ଡା ହିସାବ କରି ତୁମ ନିକଟରୁ ଆଦାୟ କରି ନିଅନ୍ତେ । ସେହି ସର୍ବନାଶରୁ ମୁଁ ହସ୍ତିନାପୁର ରାଜବଂଶକୁ ରକ୍ଷା କରିବା ପାଇଁ ଶାସନଦଣ୍ଡ ହାତକୁ ନେଇଛି । କେବଳ ସେମାନଙ୍କୁ ସାବଧାନ କରିବା ପାଇଁ ମୋତେ ନିଷ୍ଠୁର ହେବାକୁ ପଡ଼ିଲା ।

ଦ୍ୱୈପାୟନ ବଜ୍ରାହତ ଭଳି ବସି ରହିଲେ । ପ୍ରକୃତ କଥାକୁ ବୁଝିବାପାଇଁ ତାଙ୍କୁ କିଛି ସମୟ ଲାଗିଲା । ହସ୍ତିନାପୁରର ରୁଦ୍ଧ ଦ୍ୱାର ତାଙ୍କର ସୁଦୂର ପ୍ରସାରୀ ପରିକଳ୍ପନାର ସମସ୍ତ ସଂଭାବନାର ପଥକୁ ଉନ୍ମୁକ୍ତ କରିଦେବାପାଇଁ ଖିଲ ଖୋଲିଦେଲା । ସାରା ରାତି ବିଛଣାରେ ଶୋଇ ସେ ଏକଡ଼ ସେକଡ଼ ହେଲେ । କମ୍ବଳ ଭିତରେ ମୁହଁ ଲୁଚେଇ ଚୁପ୍‌ଚାପ୍ ଅନିଦ୍ରାରେ ହିଁ କଟେଇ ଦେଲେ ଦ୍ୱୈପାୟନ । ନିଦ ନ ଥିଲା ଆଖିରେ ।

ନିଦ ଆସିବା ମଧ୍ୟ ସହଜ ନୁହେଁ । ଶୋଇ ଶୋଇ ସେ ପ୍ରତ୍ୟେକ ଘଟଣାକୁ ବିଶ୍ଳେଷଣ କରୁଥିଲେ । ମନ ଭିତରେ ଅସୁମାରି ପ୍ରଶ୍ନବାଚୀ । ହସ୍ତିନାପୁର ରାଜନୀତିର ଏଇ ପରିବର୍ତ୍ତନରେ କାହାର ହାତ, କାହା ଚକ୍ରାନ୍ତରେ ଏସବୁ ଘଟଣା ଘଟିଯାଉଛି ? ଏସବୁର ନେପଥ୍ୟ ନାୟକ କିଏ ? ଭୀଷ୍ମ ?

ଭୀଷ୍ମଙ୍କ ସହିତ ତାଙ୍କର ବିରୋଧ ଓ ପ୍ରତିଦ୍ୱନ୍ଦ୍ୱିତା ହୁଏତ ଥାଇପାରେ, କିନ୍ତୁ ଏବେବି ତାହା ଲୋକଚକ୍ଷୁର ଅନ୍ତରାଳରେ । ଏଇଟା ହେଲା ରାଜନୀତିର ଗୋପନ ସଂଘାତ- ଶୀତଳଯୁଦ୍ଧ । କିନ୍ତୁ ପାଣ୍ଡୁଙ୍କୁ ଗାଦିଚ୍ୟୁତ ଓ କ୍ଷମତାଚ୍ୟୁତ କରିବା ଘଟଣାଟି ଏଭଳି ଖୋଲାଖୋଲି ସିଧାସଳଖ ଭାବେ କରାଗଲା ଯେ, ଏଥିରେ ସର୍ବସାଧାରଣଙ୍କ ଦୃଷ୍ଟି ମଧ୍ୟ ଆକର୍ଷଣ କଲା ଯଦିଓ ଉଭୟ ପ୍ରତିଦ୍ୱନ୍ଦ୍ୱୀ ମୁହାଁମୁହିଁ ଦ୍ୱନ୍ଦ୍ୱଯୁଦ୍ଧରେ ଓହ୍ଲେଇ ନ ଥିଲେ, ତଥାପି କୂଟନୀତି ପ୍ରୟୋଗରେ କିଏ କାହାକୁ ହରାଇପାରେ ସେକଥାର ଫଏସଲା ହେଇଗଲା । ଯୁଦ୍ଧ ହେଲା ଦୁଇଭାଇଙ୍କର - ଧୃତରାଷ୍ଟ୍ର ଓ ପାଣ୍ଡୁଙ୍କର । ବଞ୍ଚିତ ଓ ଭାଗ୍ୟବାନ୍ ମଧ୍ୟରେ ଏଇ ଯୋଉ ସଂଘର୍ଷ ଆରମ୍ଭ ହେଲା ତା ଭିତରେ ଭୀଷ୍ମଙ୍କ ସ୍ଥାନ କୋଉଠି ?

କମ୍ବଳ ଭିତରୁ ମୁହଁ କାଢ଼ି ବଡ଼ବଡ଼ ଆଖିରେ ଚାହିଁରହିଲେ ଦ୍ୱୈପାୟନ ଅନ୍ଧାର ଭିତରକୁ । ଖୋଲା ଝରକା ଦେଇ ଉତ୍ତରା ପବନ ବହି ଆସୁଥିଲା । ଦେହ ଥରି ଉଠୁଥିଲା । ଝରକା ବନ୍ଦ କରିବାପାଇଁ ତଥାପି ସେ ଉଠିଲେ ନାହିଁ । ଘର ଭିତରେ ବନ୍ଦ ଝରକା ସେ ମୋଟେ ସହ୍ୟ କରିପାରନ୍ତି ନାହିଁ । ଝରକା ବନ୍ଦ ହେବା ଦେଖିଲେ ଅସ୍ଥିର ହେଇପଡ଼ନ୍ତି ସେ । ଆଜି ତ ତାଙ୍କର ଅସ୍ଥିରତା ଏମିତି ହିଁ ବଢ଼ିଯାଇଛି । କିନ୍ତୁ ବିଛଣା ଉପରେ ସ୍ଥିର ନିଶ୍ଚଳ ଭାବେ ପଡ଼ିଛି ତାଙ୍କର ଶରୀର । ଆଖି ଦୁଇଟି କିନ୍ତୁ ଖୋଲା ଝରକା ଉପରେ ଅଠାକାଠି ଭଳି ନିବଦ୍ଧ ରହିଥିଲା ।

ବାହାରେ ରୂପବତୀ ଅନ୍ଧକାର । ଜ୍ୟୋସ୍ନାର ଝିରି ଝିରି ଆଲୁଅ ଝରିପଡ଼ୁଛି ସେଠି । କୁହୁଡ଼ି ଭିତରେ ବଡ଼ ବଡ଼ ବୃକ୍ଷ ସବୁ ଭୂତ ଭଳି ଠିଆ ହୋଇଛନ୍ତି । ଜୁଲୁଜୁଲିଆ ପୋକର ଦପ୍‌ଦପ୍ ଆଲୁଅ ବନଭୂମିର ନିରନ୍ଧ୍ର ଅନ୍ଧକାର ଭିତରେ ଚୁମକି ଭଳି ଝିଲ୍‌ମିଲ କରୁଥିଲା ।

ପ୍ରକୃତିର ଅପରୂପ ରୂପକୁ ଚାହିଁ ଚାହିଁ ଦୀର୍ଘଶ୍ୱାସ ଛାଡ଼ିଲେ ଦ୍ୱୈପାୟନ । ଛାତି ଭିତରଟା ଥରଥର ହେଇ ଥରିଉଠିଲା । ଆତଙ୍କିତ ମନରେ ସେ ଝରକା ଆଡ଼କୁ କିଛି ସମୟ ପାଇଁ ଚାହିଁରହିଲେ ସେମିତି । ଅବୋଧ ଦୃଷ୍ଟି । ତାପରେ ଘର ଭିତରର ନିରୋଳା ଅନ୍ଧକାର ଆଡ଼କୁ ଦୃଷ୍ଟି ଫେରିଆସିଲା ତାଙ୍କର । ଭୟଙ୍କର ଚିନ୍ତା ସବୁ ତାଙ୍କ ମନ ଚାରିପଟେ ଜମିବାକୁ ଲାଗିଲେ ।

ସଂଘର୍ଷର ଚେହେରା ଯେଉଁ ରୂପ ନେଉନା କାହିଁକି ମୂଳତଃ ତାଙ୍କ ସଂଘର୍ଷ ଭୀଷ୍ମଙ୍କ ସହିତ । ପାଣ୍ଡୁଙ୍କୁ ହସ୍ତିନାପୁରରୁ ବିଦାୟ ଦେବା ଘଟଣାର ନିରବ ସମର୍ଥକ ଥିଲେ ଭୀଷ୍ମ । ଏ କଥାରେ ଅନୁମୋଦନ ଥିଲା ତାଙ୍କର । ଯଦି ତାହା ନ ଥାନ୍ତା ଭୀଷ୍ମ ଫେରେଇ ଆଣିଥାନ୍ତେ ପାଣ୍ଡୁଙ୍କୁ କିନ୍ତୁ ସେଭଳି କୌଣସି ପ୍ରଯତ୍ନ ସେ କରି ନ ଥିଲେ ତ ? ଛଳନା ପ୍ରତାରଣା ପାଇଁ ଧୃତରାଷ୍ଟ୍ରଙ୍କୁ ତିରସ୍କାର ଅଥବା ଭର୍ତ୍ସନା ମଧ୍ୟ କରିନଥିଲେ । ଭୀଷ୍ମ ମନେମନେ ହସ୍ତିନାପୁର ରାଜନୀତି ଭିତରେ ପାଣ୍ଡୁଙ୍କ ଉପସ୍ଥିତି ମୋଟେ ଚାହୁଁ ନଥିଲେ - ଏକଥା ସ୍ପଷ୍ଟ ଭାବେ ବ୍ୟଞ୍ଜିତ ହେଉଥିଲା ତାଙ୍କର ନିର୍ଲିପ୍ତ, ନିର୍ବିକାର ମନୋଭାବରୁ । ଧୃତରାଷ୍ଟ୍ର ନିଜ ରାସ୍ତାରୁ କଣ୍ଟା ନିଜେ ହିଁ କାଢ଼ି ନେବା ପାଇଁ ଯେଉଁ କୌଶଳ ଫାନ୍ଦିଥିଲେ, ସେଥିରେ ଭୀଷ୍ମଙ୍କର ନିରବ ଅନୁମୋଦନ ଥିଲା ବୋଲି ହିଁ ଧୃତରାଷ୍ଟ୍ର ପାଣ୍ଡୁଙ୍କୁ ଠକେଇ ସିଂହାସନ ତାଙ୍କଠୁଁ ଛଡ଼େଇ ନେଇପାରିଲେ । ଏ କାର୍ଯ୍ୟ ପାଇଁ ଆନୁଗତ୍ୟ ହିଁ ଭୀଷ୍ମଙ୍କର ବଡ଼ ମୂଳଧନ । ଆନୁଗତ୍ୟ ହିଁ ଏକମାତ୍ର ଯାହା କ୍ଷମତା ଉପରେ ଶକ୍ତ ଭାବେ ଲାଗି ରହିଥାଏ । ଯାହା ହାତରେ କ୍ଷମତା, ସେ ଅନେକ କିଛି କରିପାରେ, ଅନେକ କିଛି ଦେଇପାରେ, ଅନେକ ଲୋଭ ମଧ୍ୟ ଦେଖାଇପାରେ । ଧୃତରାଷ୍ଟ୍ର ପାଣ୍ଡୁଙ୍କ ଅନୁପସ୍ଥିତିରେ ଲୋକଙ୍କୁ ହାତ କରିନେବାର ରାଜନୀତି କରି ତାଙ୍କ ଆଡ଼କୁ ଟାଣି ନେବାଭଳି ଅନୁକୂଳ ପରିବେଶ ସୃଷ୍ଟି କରିପାରିଲେ । ଅନେକ

ମିଛ, ଅନେକ ଛଳନା କରି ଜୟଲାଭର ବାଟ ତିଆରି କରିନେଲେ । ପାଣ୍ଡୁ ଯେଉଁ ମୁହୂର୍ତ୍ତରେ ଫେରିଆସିଲେ; ସେଇ ମୁହୂର୍ତ୍ତରେ ପ୍ରଜା ଓ ରାଜକର୍ମଚାରୀଙ୍କ ଆନୁଗତ୍ୟ ଓ ଆସ୍ଥା ନେଇ ତାଙ୍କୁ କ୍ଷମତାଚ୍ୟୁତ କରି ନିର୍ବାସନ ପାଇଁ ଏପରି କୌଶଳ ପ୍ରୟୋଗ କଲେ ଯେ ଲୋକଚକ୍ଷୁରେ ପାଣ୍ଡୁ ସ୍ୱେଚ୍ଛାରେ ନିର୍ବାସନ ଗ୍ରହଣ କଲା ଭଳି ମନେହେଲା ।

ପାଣ୍ଡୁଙ୍କ ଉପରେ ଏଇ ଭୟଙ୍କର ପ୍ରତିଶୋଧାତ୍ମକ ଆକ୍ରମଣ କରି ଭୀଷ୍ମ କାର୍ଯ୍ୟତଃ ତାଙ୍କ ଉପରେ ହିଁ ପ୍ରତିଶୋଧ ନେଲେ ବୋଲି କହିବାକୁ ହେବ । ଯେମିତି ସେ ଅମ୍ବିକାର ପ୍ରତିଶୋଧ ଧୃତରାଷ୍ଟ୍ର ଉପରେ ଦେଇଛନ୍ତି । କିନ୍ତୁ ସଂଘର୍ଷରେ ଜିତିବା ପାଇଁ ସେ କୌଣସି ମିଥ୍ୟାର ଆଶ୍ରୟ ନେଇ ନାହାନ୍ତି । ଅନ୍ୟାୟକୁ ସମର୍ଥନ ମଧ୍ୟ କରି ନାହାନ୍ତି । ହେଲେ ଭୀଷ୍ମ ଧର୍ମଭ୍ରଷ୍ଟ ହେଲେ । ଅନେକ ମିଥ୍ୟା ଦେଇ ବିଜୟଲାଭର ଏହି ଗୌରବକୁ ଦିନେ ତାଙ୍କୁ ଅନେକ ମୂଲ୍ୟ ଦେଇ ପରିଶୋଧ କରିବାକୁ ପଡ଼ିବ ।

କୂଟନୀତିର ବିପର୍ଯ୍ୟୟ ଦ୍ୱୈପାୟନଙ୍କୁ ଭାବନା ଭିତରେ ପକାଇଦେଲା । ଯେଉଁ ଭାବରେ ସବୁକିଛି ଚାଲୁଥିଲା, ତାର ପ୍ରଥମ ପର୍ଯ୍ୟାୟରେ ସେ ଜିତିଲେ । ଦ୍ୱିତୀୟ ପର୍ଯ୍ୟାୟରେ, ତାଙ୍କ ମଧ୍ୟରେ ବି ଅର୍ଦ୍ଧେକ ପରାଜୟ ରହିଛି; କିନ୍ତୁ ତୃତୀୟ ପର୍ଯ୍ୟାୟରେ କେବଳ ହିଁ ପରାଜୟ ।

ଦ୍ୱୈପାୟନ ହତାଶ ଭାବେ ମୁଣ୍ଡ ହଲେଇଲେ । ପରାଜୟର ଅପମାନ ଏବଂ ଗ୍ଲାନି ତାଙ୍କୁ ଅସ୍ତବ୍ୟସ୍ତ କରି ପକେଇଲା । ସେ କିଛି ସ୍ଥିର କରିପାରୁ ନ ଥିଲେ । ଛାତି ଭିତରେ ଯନ୍ତ୍ରଣାର ସୂତ୍ରପାତ ହେଲା । ମନ ଅସ୍ଥିର । ଦ୍ୱୈପାୟନ ଶଯ୍ୟା ତ୍ୟାଗ କଲେ । ଘର ଭିତରେ ପଦଚାରଣ କରିବାକୁ ଲାଗିଲେ ଓ ଭାବିବାକୁ ଲାଗିଲେ । କିନ୍ତୁ ଭୀଷ୍ମ କିମ୍ବା ଧୃତରାଷ୍ଟ୍ର ସହିତ ତାଙ୍କୁ ଯେ କୌଣସି ପ୍ରକାରେ ଟକ୍କର ଦେବାକୁ ହେବ । ଅଟକିଗଲେ ଚଳିବନି । ପାଣ୍ଡୁଙ୍କୁ ନିର୍ବାସନରେ ପଠେଇ ଭୀଷ୍ମ ତାଙ୍କୁ ଯାହା ବୁଝାଇବାକୁ ଚାହୁଁଛନ୍ତି, ଦ୍ୱୈପାୟନଙ୍କୁ ତାହା ବିଦ୍ୟୁତ୍ ତରଙ୍ଗ ଭଳି ସ୍ପର୍ଶକଲା ।

ହସ୍ତିନାପୁରରେ ପାଣ୍ଡୁ ଆଜି କେହି ନୁହନ୍ତି । ତାଙ୍କର ବ୍ୟକ୍ତିତ୍ୱ କିମ୍ବା ରାଜନୈତିକ ସତ୍ତା କିଛି ନାହିଁ । କୁନ୍ତୀ ତାଙ୍କୁ ଚଳଉଛି । ସେ କୁନ୍ତୀର ଅନୁଗତ ଓ ବାଧ୍ୟ । କୁନ୍ତୀ ଆଚ୍ଛନ୍ନ କରି ରଖିଛି ତାଙ୍କର ସମଗ୍ର ସତ୍ତାକୁ । ସେଇଥିପାଇଁ ଭୀଷ୍ମ ମାଦ୍ରୀର ପ୍ରୟୋଜନ ଅନୁଭବ କଲେ । କିନ୍ତୁ ଭୀଷ୍ମ ଯାହା ଚାହିଁଥିଲେ କୁନ୍ତୀ ତାହା ହେବାକୁ ଦେଲେ ନାହିଁ । କୁନ୍ତୀର ବ୍ୟକ୍ତିତ୍ୱର ସଂସ୍ପର୍ଶରେ ତାର ମୃଦୁମଧୁର ବ୍ୟବହାରରେ ଓ ମିଷ୍ଟାଳାପରେ ମାଦ୍ରୀ ମଧ୍ୟ କୁନ୍ତୀର ଅନୁରାଗିଣୀ ହେଲା । ସପତ୍ନୀଗତ ବିଦ୍ୱେଷ, ବିଭେଦ, ଘୃଣାର ପାଚେରି ତାଙ୍କ ଭିତରେ ରହିଲା ନାହିଁ । ତାହାହିଁ ପାଣ୍ଡୁଙ୍କୁ ହସ୍ତିନାପୁରର ସିଂହାସନରେ ରଖିବା ଆଉ ଯୁକ୍ତିଯୁକ୍ତ ମନେହେଲା ନାହିଁ । ଦୂରେଇ ରଖିବା ପାଇଁ ଚକ୍ରାନ୍ତ ହେଲା ।

ପାଣ୍ଡୁଙ୍କୁ ନେଇ ତ ତାଙ୍କର ସମସ୍ତ ପରିକଳ୍ପନା । ପାଣ୍ଡୁଙ୍କୁ ଦୂରେଇ ଦେବା ମାନେ ତାଙ୍କୁ ଦୂରେଇ ରଖିବା । ଜାଣିଶୁଣି ଧୃତରାଷ୍ଟ୍ର ତାଙ୍କ ସହିତ ସଂଘାତ ସୃଷ୍ଟି କରିବାକୁ ଚାହୁଁଛନ୍ତି । ଧୃତରାଷ୍ଟ୍ରଙ୍କ ଆଖିରେ ସେ ଜଣେ ବନବାସୀ, ତପସ୍ୱୀ, ଅନାର୍ଯ୍ୟ । ତେଣୁ ତାଙ୍କୁ ସେ ଅବଜ୍ଞା କରିବାର ସ୍ପର୍ଦ୍ଧା କରିଛି । କ୍ରୋଧରେ ଦ୍ୱୈପାୟନଙ୍କ ଭ୍ରୂ କୁଞ୍ଚିତ ହେଲା । ଅନ୍ତର ଭିତରଟା ଗୋଳେଇଘାଣ୍ଟି ହେବାକୁ ଲାଗିଲା ।

ରାଜ୍ୟଚ୍ୟୁତ ପାଣ୍ଡୁଙ୍କୁ ଫେରେଇ ଆଣିବାର ସଂକଳ୍ପ ନେଇ ଦ୍ୱୈପାୟନ ଏକ ଗୋପନ ରାଜନୈତିକ ଚକ୍ରାନ୍ତରେ ଲିପ୍ତ ହେଲେ । ସେସବୁ କାର୍ଯ୍ୟକଳାପ ସତର୍କରେ ଚାଲିଲା । ମନ୍ଥର ଗତିରେ ଆରମ୍ଭ ହେଲା ଚକ୍ରାନ୍ତର ପ୍ରକ୍ରିୟା ।

ଭୀଷ୍ମ, ଧୃତରାଷ୍ଟ୍ର, ଶକୁନିଙ୍କ ମନରେ ତାଙ୍କ ସଂପର୍କରେ ଯେଉଁ ଧାରଣା ବସି ରହିଛି, ତାକୁ ପୋଛି ଦେବାପାଇଁ ଦ୍ୱୈପାୟନ ପୂରାପୂରି ତପସ୍ୱୀର ଜୀବନ ଆରମ୍ଭ କଲେ । ବେଦ ବିଭାଗରେ ଅନେକ କାମ ସମାପ୍ତ କଲେ । ବିବିଧ ପୁରାଣ ଲେଖିଲେ । ଖୁବ୍ ଦ୍ରୁତ ଏବଂ ଅଳ୍ପ ସମୟରେ ତାଙ୍କର ଯଶ ଖ୍ୟାତି ଓ ଗୌରବ ଚାରିଆଡ଼େ ବ୍ୟାପିଗଲା । ଲୋକେ ତାଙ୍କୁ ମହର୍ଷି ବ୍ୟାସଦେବ ବୋଲି ଜାଣିଲେ । ବିପୁଳ ଖ୍ୟାତି, ଗୌରବ, ପ୍ରତିଷ୍ଠା ଭିତରେ ଲୁଚିଗଲା ତାଙ୍କର ଜନନୀଙ୍କ ପ୍ରଦତ୍ତ ନାମ କୃଷ୍ଣଦ୍ୱୈପାୟନ ।

ନିଜର ବିପୁଳ ନାମ-ଗୌରବର ଛତ୍ରଛାୟା ତଳେ ଠିଆ ହୋଇ ଦ୍ୱୈପାୟନ ନୂଆ ଗୋଟିଏ ରାଜନୈତିକ ଖେଳ ଆରମ୍ଭ କଲେ । ବ୍ୟାସଦେବ ତାର ଉଦ୍ୟୋକ୍ତା, ସଂଗଠକ ଏବଂ ପରିଚାଳକ । ହସ୍ତିନାପୁର ଅଭ୍ୟନ୍ତରରେ ଓ ବାହାରେ ଏଇ ରାଜନୀତି ପ୍ରବର୍ତ୍ତନ କରିବା ପାଇଁ କେତେଗୁଡ଼ିଏ ବ୍ୟବସ୍ଥା ଗ୍ରହଣ କଲେ ବ୍ୟାସଦେବ ।

ଧୃତରାଷ୍ଟ୍ରଙ୍କୁ ସିଂହାସନଚ୍ୟୁତ କରିବାକୁ ହେଲେ ଜଣେ ବିଚକ୍ଷଣ ବୁଦ୍ଧିମାନ୍ କୂଟନୀତି ବିଶାରଦଙ୍କର ସର୍ବାଦୌ ଆବଶ୍ୟକ । ଏହି କାର୍ଯ୍ୟ ସଂପାଦନ ପାଇଁ ବିଦୂରକୁ ତାଙ୍କର ସବୁଠାରୁ ଉପଯୋଗୀ ବୋଲି ମନେହେଲା । ବିଦୂର ତାଙ୍କର ପୁତ୍ର । ତା ଶରୀରରେ ଅନାର୍ଯ୍ୟ ରକ୍ତ । ଶାନ୍ତ ସ୍ୱଭାବର ମଣିଷ ବିଦୂର । ଖୁବ୍ ଧୀର, ସ୍ଥିର, ସଂଯତ, ବିଚକ୍ଷଣ, ବୁଦ୍ଧିମାନ୍ ଓ ଚତୁର । ସର୍ବୋପରି ବିଦୂରର ରାଜନୈତିକ ପ୍ରଜ୍ଞା ଅସାଧାରଣ । ତାର ଦୂରଦୃଷ୍ଟି ମଧ୍ୟ ଅପରିକଳ୍ପନୀୟ । ସେ ଭାବି-ବିପଦ-ସଂଭାବନାର ବହୁ ପୂର୍ବରୁ ଅନୁମାନ କରି କହିପାରେ । କେତେବେଳେ କୋଉ କଥାଟା କହିଲେ ମଣିଷ ସୁଖୀ ହେବା ସଙ୍ଗେ ସଙ୍ଗେ ଖୁସି ମଧ୍ୟ ହୁଏ । ସେ ଜାଣେ- ଏ ପ୍ରକାର ଲୋକରଂଜକ ଶକ୍ତି, ଲୋକଚରିତ୍ର ଅନୁଧ୍ୟାନଜନିତ ଅଭିଜ୍ଞତା ତାର ପ୍ରବଳ । କେବଳ ତାହା ନୁହେଁ, ହସ୍ତିନାପୁର ପ୍ରଶାସନରେ ସେ ଧୃତରାଷ୍ଟ୍ରର ବ୍ୟକ୍ତିଗତ ମନ୍ତ୍ରଣାଦାତା, ଉପଦେଷ୍ଟା ଏବଂ ମନ୍ତ୍ରୀର ଗୁରୁଦାୟିତ୍ୱପୂର୍ଣ୍ଣ ପଦରେ ଅଧିଷ୍ଠିତ । ଏହିଭଳି ବ୍ୟକ୍ତିର ରାଜନୈତିକ ସହଯୋଗିତା ପାଇଲେ ଷଡ଼ଯନ୍ତ୍ରର କାର୍ଯ୍ୟ ଦ୍ରୁତ ଭାବରେ ଆଗେଇ

ଚାଲିବ । କିନ୍ତୁ ବିଦୂର ଆଗ ଭଳି ଆଉ ନାହିଁ । ଦେଶ କାଳ ପରିସ୍ଥିତି ଏବଂ ଘଟଣାର ଆକସ୍ମିକତାରେ ସେ ବାଧ ହୋଇଛି ନିଜକୁ ଅବସ୍ଥା ସହିତ ବଦଳେଇ ନେବାକୁ । କିନ୍ତୁ ବିଦୂରକୁ ଏଠାରେ କୌଣସି ପ୍ରକାରେ ଅଟକି ଯିବାପାଇଁ ଦିଆଯିବ ନାହିଁ । ତା' ମନରେ ଏକ ବୃହତ୍ତର ସ୍ୱପ୍ନକୁ ଜାଗ୍ରତ କରିବାକୁ ହେବ ।

ଖୁବ୍ ଗୋପନରେ ବିଦୂର ସହିତ ସାକ୍ଷାତ୍ କଲେ ବ୍ୟାସଦେବ । ବିଦୂରର ଅନୁରାଗ ଦୀପଟି ଶ୍ରଦ୍ଧାଶୀଳ ମନକୁ ଚହଲେଇ ଦେବାପାଇଁ ରାମଚନ୍ଦ୍ରଙ୍କ ପିତୃସତ୍ୟ ପାଳନର ଗଳ୍ପ ଶୁଣେଇଲେ ବ୍ୟାସଦେବ । ପିତାଙ୍କ ଆଦେଶରେ ଅପ୍ରିୟ, ଅଧର୍ମ କର୍ମାନୁଷ୍ଠାନ ହେଲେ ମଧ ବିନା ଯୁକ୍ତିରେ ପର୍ଶୁରାମ ଗର୍ଭଧାରିଣୀ ମାତାଙ୍କୁ ହତ୍ୟା କରିଥିଲେ- ଏହାର ଉପାଖ୍ୟାନ ମଧ ଶୁଣେଇଥିଲେ । ତା'ପରେ ସସ୍ନେହରେ କହିଲେ, ତୋର ଏବଂ ମୋର ଉଭୟଙ୍କ ଶରୀରରେ ଗୋଟାଏ ରକ୍ତର ଧାରା ପ୍ରବାହିତ ହେଉଛି । ସେଇ ରକ୍ତ ଅନାର୍ଯ୍ୟର । ଆର୍ଯ୍ୟମାନେ ଅନାର୍ଯ୍ୟମାନଙ୍କୁ ଚିରକାଳ ଧରି ନିଷ୍ପେଷିତ କରି ରଖିବାକୁ ଚାହାନ୍ତି । ଅବଜ୍ଞା କରନ୍ତି ସେମାନଙ୍କୁ । ଶ୍ୱେତାଙ୍ଗ ଆର୍ଯ୍ୟ, କୃଷ୍ଣକାୟ ଅନାର୍ଯ୍ୟକୁ ବଣର ମଣିଷ ଭାବନ୍ତି । ତେଣୁ ଜନ୍ତୁ ଭଳି ବ୍ୟବହାର କରନ୍ତି ସେମାନଙ୍କ ସହିତ । ତୋ ନିକଟରେ ଏସବୁ ଦୁଃଖ ଓ ଆତ୍ମଗ୍ଲାନିର କଥା କହିବା ବାହୁଲ୍ୟ ମାତ୍ର ।

ଆକସ୍ମିକ ଭାବେ ବିଦୂରଙ୍କର ଗୋଟାଏ ପ୍ରକାରର ଉପଲବ୍ଧି ହେଲା । ମନେହେଲା ତାଙ୍କ ସତ୍ତାରେ ସଭାରେ ଅନାର୍ଯ୍ୟ ରକ୍ତର କଳଧ୍ୱନିକୁ ସେ ଶୁଣିପାରୁଛନ୍ତି । ଛାତି ଭିତରଟା କେମିତି ହେଇଗଲା । କଣ୍ଟା ଫୋଡ଼ି ହେଲାଭଳି ଏକ ତୀବ୍ର ଯନ୍ତ୍ରଣାକୁ ସେ ଅନୁଭବ କରୁଥିଲେ । ସମ୍ମୋହିତଙ୍କ ଭଳି ବ୍ୟାସଦେବଙ୍କ ମୁହଁକୁ ଶୂନ୍ୟ ଦୃଷ୍ଟିରେ ଚାହିଁରହିଲେ କିଛିକ୍ଷଣ । ଅନ୍ତରର ଗଭୀରତମ ପ୍ରଦେଶରେ ଏକ କମ୍ପନର ଅନୁଭବ କରୁଥିଲେ ସେ । ସ୍ତମୀତ କଣ୍ଠରେ କହିଲେ ପଦୁଟିଏ- 'ସବୁ ଜାଣେ ।'

ବ୍ୟାସଦେବ ସ୍ମିତ ହସିଲେ । କହିଲେ, ତା'ହେଲେ ତୁ କାହିଁକି ବୁଝିପାରୁ ନାହୁଁ ଯେ, ଧୃତରାଷ୍ଟ୍ର ଏବଂ ପାଣ୍ଡୁ ଭାଇ ଭାଇ ହୋଇ ମଧ ଏକା ଗୋତ୍ର ଏବଂ ଏକା ବର୍ଣ୍ଣ ନୁହନ୍ତି । ଯଦିଓ ତମେମାନେ ଏକା ପିତାର ସନ୍ତାନ । ତଥାପି ଅଧିକାରରେ ତୁ ଅନ୍ୟ ଭ୍ରାତାମାନଙ୍କ ସହିତ ସମାନ ନୁହେଁ । ତୋର ପରିଚୟ ମଧ ଅଲଗା । ଧୃତରାଷ୍ଟ୍ର ଓ ପାଣ୍ଡୁ ସହିତ ତୋତେ ଅଲଗା ଦେଖାହେଉଛି । ସେମାନେ ହେଲେ ରାଜପୁତ୍ର । ଏଇ ବଂଶର ସନ୍ତାନ, ଆଉ ତୁ ହେଲୁ ଶୂଦ୍ରାଣୀର ପୁତ୍ର, ଏ ବଂଶର କେହି ନୁହେଁ । କାହିଁକି ? ତୋର ଜନନୀ ଅନାର୍ଯ୍ୟ, ଶୂଦ୍ରରମଣୀ ବୋଲି ସେ ତ ବିଚିତ୍ରବୀର୍ଯ୍ୟଙ୍କର ବିବାହିତ ପତ୍ନୀ ନ ଥିଲା । ଏହାହିଁ ତୋର ଅପରାଧ ।

ବିସ୍ମୟରେ ବିଦୁର କୌଣସି ଜବାବ ଦେଇପାରିଲେ ନାହିଁ । ଜନନୀଙ୍କ କଥା ଶୁଣି ତାଙ୍କ ମୁହଁ ଲଜ୍ଜାରେ ରକ୍ତିମ ହୋଇ ଉଠିଲା । ମନେ ମନେ ବିଦୁର ନିଜ ସହିତ ଅନେକ କଥା କହିଲେ । ହଁ, ବ୍ୟାସଦେବ ! ଆପଣ ଠିକ୍ କଥା କହିଛନ୍ତି । ବିଚିତ୍ରବୀର୍ଯ୍ୟଙ୍କ ସଙ୍ଗେ ବିବାହର ସ୍ୱପ୍ନ ଦେଖିଥିଲେ ଜନନୀ । ସେଇ ସ୍ୱପ୍ନ ଅନାର୍ଯ୍ୟ ରମଣୀ ବୋଲି ଚୂରମାର ହୋଇଗଲା । ସ୍ୱାଭାବିକ ଜୀବନଯାତ୍ରାରୁ ବିଚ୍ୟୁତ ହୋଇ ପତିତା ଭଳି ଜୀବନଯାପନ କରିବାକୁ ପଡ଼ିଥିଲା ତାଙ୍କୁ । ସେଇଟା କାହାର ଦୋଷ ? ଆଦ୍ରିକାର ଅଦୃଷ୍ଟରେ ? ନା ମଣିଷର ଅବିଚାରରେ ? ବ୍ୟାସଦେବ ! ଆପଣ ତ ଜନନୀଙ୍କ ମନର ସମସ୍ତ କଥା ଜାଣନ୍ତି । ସେଥିପାଇଁ ଆପଣ ଏଭଳି ମୋ ଅନ୍ତଃସ୍ଥଳର କୋମଳ ଅନୁଭୂତିମାନଙ୍କୁ ସୃଷ୍ଟି କରିପାରିଲେ । ଆପଣ ଭଲଭାବେ ଜାଣନ୍ତି, ପ୍ରତ୍ୟେକ ମଣିଷ ଭିତରେ ପ୍ରତିଶୋଧର ସ୍ପୃହା ଲୁଚି ରହିଛି । ଆପଣ ମୋରି ମାଧ୍ୟମରେ ସେଇ ଭାବନାକୁ ପୁଣିଥରେ ଉଜ୍ଜୀବିତ କରିବାକୁ ଚାହୁଁଛନ୍ତି ।

ବିଦୁର ନିରବ । ବ୍ୟାସଦେବ ତାଙ୍କ ଆଡ଼କୁ ଅବାକ୍ ଚକ୍ଷୁରେ ଚାହିଁ, ତାଙ୍କୁ ବୁଝେଇବା ପାଇଁ ପ୍ରୟାସ କରୁଥିଲେ । କିନ୍ତୁ ତାଙ୍କର ସ୍ତବ୍ଧ ଗମ୍ଭୀର ଅଭିବ୍ୟକ୍ତି ଦେଖି କିଛି ବୁଝିବାର ଉପାୟ ନ ଥିଲା । କିଛିକ୍ଷଣ ନିରବ ରହି ବ୍ୟାସଦେବ ଅନେକ କିଛି ଭାବି ନେଇ, ତାଙ୍କୁ ନିଜ ଅଧୀନକୁ ଆଣିବାକୁ ଯାଇ କହିଲେ- ବିଦୁର ! ତୁମ ତିନିଭାଇଙ୍କ ମଧ୍ୟରେ ତୁ ହିଁ ରାଜପଦ ପାଇଁ ସର୍ବାଧିକ ଯୋଗ୍ୟତମ ବ୍ୟକ୍ତି । ତୋତେ ଆଖି ଆଗରେ ରଖି ମୁଁ ସେମାନଙ୍କୁ ନୃପତି ନିର୍ବାଚନର ଗୁଣ ଲକ୍ଷଣଗୁଡ଼ିକ କହିଥିଲି । ହେଲେ ଆଶ୍ଚର୍ଯ୍ୟର କଥା ଭୀଷ୍ମ, ଜଣେ କେହି ଥରେ ମଧ୍ୟ ତୋର ନାମ ଉଚ୍ଚାରଣ କଲେ ନାହିଁ । ତୋତେ ବଞ୍ଚିତ କରିବା ହିଁ ସେମାନଙ୍କର ଉଦ୍ଦେଶ୍ୟ ଥିଲା । ଅନ୍ଧ ବୋଲି ଧୃତରାଷ୍ଟ୍ର ଯେମିତି ଅଯୋଗ୍ୟ, ପାଣ୍ଡୁ ମଧ୍ୟ ସେହିଭଳି ଅପଦାର୍ଥ, ବ୍ୟକ୍ତିତ୍ୱହୀନ ବୋଲି ଅଯୋଗ୍ୟ । ତଥାପି ବିଚିତ୍ରବୀର୍ଯ୍ୟଙ୍କ ଦୁଇ ପତ୍ନୀଙ୍କ ଗର୍ଭଜାତ ସନ୍ତାନ ବୋଲି ସେମାନଙ୍କର ସିଂହାସନରେ ଅଧିକାର । ଆଉ ତୁ ହେଲୁ ଦାସୀପୁତ୍ର । ଅନାର୍ଯ୍ୟ, ଆଶ୍ରିତ, ଅନୁଗ୍ରାହୀ । ତୁ ପାଇଲୁ ସାମାନ୍ୟ ମନ୍ତ୍ରୀପଦ । କାହିଁକି ଜାଣିଛୁ ପୁତ୍ର ? ତୋର ଧମନୀରେ ବିଶୁଦ୍ଧ ଅନାର୍ଯ୍ୟ ରକ୍ତ ପ୍ରବାହିତ । ତୁ କୃଷ୍ଣକାୟ । ଚିରକାଳ ଅନାଦୃତ । ତୁ ହେଉଛୁ ସେମାନଙ୍କର ଅନାର୍ଯ୍ୟ ବିକ୍ଷୋଭ । ବିଦ୍ରୋହ ବନ୍ଦର ରାଜନୈତିକ ଘୋଡ଼ଣି । ତୋର ଲୋକପ୍ରିୟତା ଓ ଲୋକରଂଜନଶକ୍ତିକୁ ସେମାନେ ପ୍ରଜାରୋଷର କର୍ମରୂପେ ବ୍ୟବହାର କରିବେ । ସେଥିପାଇଁ ତୋ ପ୍ରତି ଏମାନଙ୍କର ଏତେ ସମ୍ମାନ, ଏତେ ଆଦର ବୁଝିପାରୁଛୁ ତ ? କିନ୍ତୁ ରକ୍ତ ଏବଂ ଗୋତ୍ର ଦୃଷ୍ଟିରୁ ଏହି ହସ୍ତିନାପୁର ଭିତରେ ତୁ ହିଁ ମୋର ଆତ୍ମଜ । ଏକାନ୍ତ ଆପଣାର । ବିଶ୍ୱସ୍ତ । ତୋ ନିକଟରୁ ମୋର ଅନେକ ଆଶା, ପ୍ରତ୍ୟାଶା ।

ଉତ୍ତେଜନାରେ ବିଦୁର ଥରିଉଠୁଥିଲେ ନିଜ ଅଭ୍ୟନ୍ତରରେ । ବ୍ୟାସଦେବଙ୍କ କଥାଗୁଡ଼ିକ ତାଙ୍କୁ ଶିହରିତ କରୁଥିଲା । ଆଗରୁ ତ ଏଭଳି କେବେ ଅନୁଭବ ହୋଇନଥିଲା । ଥରଥର ଛାତିରେ ସେ କହିଲେ, ତା'ହେଲେ ମୋତେ କଣ କରିବାକୁ ହେବ ?

ଗଭୀର ଦୃଷ୍ଟିରେ ବ୍ୟାସଦେବ ବିଦୂରଙ୍କ ଆଡ଼କୁ ଚାହିଁ ସ୍ନେହଭରା କଣ୍ଠରେ ହସି ହସି କହିଲେ ପୁତ୍ର, ତୁ ଆଉ ମୁଁ ଏକାଠି ହେଲେ ଅନେକ ଅସାଧ୍ୟ ସାଧନ କରିପାରିବା । ରାଜବଂଶର ଅଭ୍ୟନ୍ତରରେ ତୁ ମୋର ଲକ୍ଷ୍ୟ ହାସଲ ପାଇଁ ସଜାଗ ଦୃଷ୍ଟି ରଖି ସହଯୋଗୀ ଭାବେ କାର୍ଯ୍ୟ କରିଚାଲିବୁ- ଏହାହିଁ ତୋ ପାଖରେ ମୋର ଅନୁରୋଧ ।

ଚମକି ଉଠିଲେ ବିଦୂର । ସହସା ତାଙ୍କ ଛାତିର ହୃତ୍‌ସ୍ପନ୍ଦନ ବଢ଼ିଗଲା, ଦ୍ରୁତ ହେଲା । ବ୍ୟସ୍ତ ହୋଇ ସେ କହିଲେ, ଅନୁରୋଧ ବୋଲି କାହିଁକି କହୁଛନ୍ତି ? ପୁତ୍ର ନିକଟରେ ପିତାର କୌଣସି ଅନୁରୋଧ କିମ୍ବା ମିନତି ନ ଥାଏ କେବେ । ଥାଏ କେବଳ କର୍ତ୍ତବ୍ୟ ପାଳନ ପାଇଁ ଆଦେଶ । ହେଲେ ମୋ ଚିନ୍ତା, ବିଶ୍ୱାସ ସବୁ କିମିତି ଗୋଳମାଳ ହେଇଯାଉଛି । ଭଲମନ୍ଦ ବିଚାର କରିବା ପାଇଁ ମୁଁ ଯେମିତି ଅକ୍ଷମ ।

ବିଦୂରଙ୍କ ଦୃଷ୍ଟିରେ କେମିତି ଗୋଟିଏ ଗୋଳିଆଘଣ୍ଟା କୁହୁଡ଼ିଭାବ ଲକ୍ଷ୍ୟ କଲେ ବ୍ୟାସଦେବ । ବିଦୂର ସଂପର୍କରେ ସବୁକିଛି ତ ତାଙ୍କୁ ଗଭୀରଭାବେ ଜଣାଅଛି । ଏଇ ଆଖି ଆଉ ଆଖିର ଚାହାଣି ମଧ୍ୟ ତାଙ୍କର ଅତି ପରିଚିତ । ମଣିଷ ଏଇଭଳି ଦୃଷ୍ଟି କେତେବେଳେ ପ୍ରାପ୍ତ ହୁଏ ତାହା ମଧ୍ୟ ତାଙ୍କର ଅଜଣା ନୁହେଁ । ବିଦୂର ଭିତରେ ତାଙ୍କ କଥାର ପ୍ରତିକ୍ରିୟା ଯେ, ମାନସିକ ଭାରସାମ୍ୟକୁ ତାର ଗୋଳମାଳିଆ କରି ଦେଇଛି, ଏଥିରେ କୌଣସି ସନ୍ଦେହ ନାହିଁ ।

ବିଦୂରଙ୍କୁ ସବୁଠାରୁ ବେଶି ଅବାକ୍ ଲାଗିଲା, ବ୍ୟାସଦେବଙ୍କର ତାଙ୍କ ପ୍ରତି ଗଭୀର ବିଶ୍ୱାସ ଆଉ ଅକପଟ ଆସ୍ଥା ଦେଖି । ଅକପଟରେ ସେ ତା' ପାଖରେ ନିଜର ଇଚ୍ଛା ଓ ବାସନାକୁ ଉପସ୍ଥାପିତ କରିପାରିଲେ । ନିଜ ଅଧିକାରକୁ ଏଭଳି କେତେଜଣ ଅକପଟ ଭାବେ ସାବ୍ୟସ୍ତ କରିପାରନ୍ତି ? ତାଙ୍କ ଦାବି ଭିତରେ ସଂଶୟ, ଦ୍ୱିଧାର ଲେଶମାତ୍ର ଚିହ୍ନବର୍ଣ୍ଣ ନାହିଁ । ଏହି ବିଶ୍ୱାସ ଓ ଆସ୍ଥାକୁ ପ୍ରତ୍ୟାଖ୍ୟାନ କରିବାର ଶକ୍ତି ତାଙ୍କର ନାହିଁ । ନିଜ ଭିତରର ଏତେବଡ଼ ବିସ୍ମୟକୁ ବିଦୂର କୌଣସି ପ୍ରକାରେ ଲୁଚାଇ ପାରୁନଥିଲେ । ତଥାପି ନିଜ ମନକୁ କଠିଣ ଓ ନିର୍ବିକାର ରଖି ପ୍ରଶ୍ନ କଲେ- ନିଜ ଗୋଷ୍ଠୀ ପ୍ରତି ଆପଣଙ୍କର ମମତା ଅସୀମ । ମଣିଷର ମର୍ଯ୍ୟାଦା ନେଇ ସେମାନେ ଆର୍ଯ୍ୟମାନଙ୍କର ସମକକ୍ଷ ହୁଅନ୍ତୁ, ଏହାହିଁ ଆପଣ ଚାହାନ୍ତି । କିନ୍ତୁ ଏଥିପାଇଁ ବିରୋଧ, ବିଭେଦର ବିଷମଞ୍ଜି କାହିଁକି ବପନ କରିବାକୁ ଚାହୁଁଛନ୍ତି ଆପଣ ହସ୍ତିନାପୁର ଭିତରେ ? ପାଣ୍ଡୁଙ୍କ ପକ୍ଷରେ ଗଲେ ଯେଉଁ ସ୍ୱାର୍ଥରକ୍ଷା ହେବ ଧୃତରାଷ୍ଟ୍ରଙ୍କ ପକ୍ଷରେ ରହିଲେ ତାହା କାହିଁକି ପୂରଣ ନ ହେବ ?

ବ୍ୟାସଦେବ ମୃଦୁହସି ଉତ୍ତର ଦେଲେ । ପୁତ୍ର ଅଧିକାର ଅର୍ଜନ କରିବାକୁ ହୁଏ । ଅଧିକାରକୁ ବୁଦ୍ଧି, ରକ୍ତ ଅଥବା ବାହୁବଳ ଦେଇ ଯଦି ଅର୍ଜନ ନ କରାଯାଏ ତେବେ ତାର ଗୌରବ ବା ମର୍ଯ୍ୟାଦା ବଢ଼େ ନାହିଁ । ଦୟାର ଦାନ ହେଲେ, ତାର କିଛି ଅର୍ଥ ରହେନା ।

ଅନୁକମ୍ପା, ଅନୁଗ୍ରହର ପାତ୍ର ନିଃଶେଷ ହେଇଗଲେ ଅଧିକାରର ପାତ୍ର ମଧ୍ୟ ଶୁଖିଯିବ । ସେଥିପାଇଁ ଯେଉଁ ପକ୍ଷରେ ସଂଘର୍ଷ ଅଛି, ସେଇ ପକ୍ଷକୁ ମୁଁ ସମର୍ଥନ କରୁଛି ।

ପିତା ! ଆପଣ ଶ୍ୱେତାଙ୍ଗ ବିରୋଧୀ ହୋଇ, ଶ୍ୱେତାଙ୍ଗମାନଙ୍କ ପକ୍ଷ ଅବଲମ୍ବନ କରି ସଂଘର୍ଷରେ ଲିପ୍ତ ହେଲେ, ଆପଣଙ୍କ କୃଷ୍ଣାଙ୍ଗାଭିମାନ ଦେହରେ କଣ ଟିକିଏ ବି ଆଞ୍ଚ ଆସିବନି ? ଯଦି ଆପଣଙ୍କ ପରିକଳ୍ପନା ସଫଳ ହୁଏ, ତା'ହେଲେ ବି ସେଇ ବିଜୟ ଶ୍ୱେତାଙ୍ଗ ଆର୍ଯ୍ୟମାନଙ୍କର ହିଁ ନା ? ଏଥିରେ ଅନାର୍ଯ୍ୟ ଶୂଦ୍ରମାନଙ୍କର ଅବା କି ଗୌରବ ବଢ଼ିବ ?

ବିଦୂରଙ୍କର ଏଭଳି ଗୋଟିଏ ଅଦ୍ଭୁତ ପ୍ରଶ୍ନରେ ବ୍ୟାସଦେବ ଅସ୍ୱସ୍ତିବୋଧ କଲେ । ହଠାତ୍ କୌଣସି ଉତ୍ତର ଦେଇପାରିଲେ ନାହିଁ । ଉଦ୍‌ବେଗରେ ତାଙ୍କ ଛାତି ଭିତରଟା ଶୁଖି ଯାଉଥିଲା । ଅବଶ୍ୟ ତାହା କିଛିକ୍ଷଣ ପାଇଁ ଥିଲା । ପ୍ରଥମ ବିସ୍ମୟର ନିଶା କଟିଗଲା ପରେ ବ୍ୟାସଦେବ ଖୁବ୍ ପ୍ରଶାନ୍ତ କଣ୍ଠରେ ସ୍ମିତହସି ମୃଦୁସ୍ୱରରେ କହିଲେ : ପୁତ୍ର, ତୋର ଏହି ପ୍ରଶ୍ନର ଉତ୍ତର ସମସ୍ତଙ୍କୁ ଦିଆଯାଇପାରିବ ନାହିଁ । କିନ୍ତୁ ତୁ ମୋର ଅତି ପ୍ରିୟ ଓ ଆପଣାର । ତୋ' ନିକଟରେ ମୁଁ କିଛି ଗୋପନୀୟ ରଖିବି ନାହିଁ ! ଏହା ହେଉଛି କଣ୍ଟାକୁ କଣ୍ଟା ଦ୍ୱାରା କାଢ଼ିବା ନୀତି । ଆର୍ଯ୍ୟ ଆର୍ଯ୍ୟଙ୍କ ଭିତରେ ବିରୋଧ ଜନିତ ସଂଘର୍ଷ ଘଟାଇ ସେମାନଙ୍କୁ ଧ୍ୱଂସ କରିବା ହେଉଛି ମୋର ଲକ୍ଷ୍ୟ । ବସ ! ବର୍ତ୍ତମାନ କୌଣସି ଯୁଦ୍ଧ ଦୁଇ ଦେଶ ମଧ୍ୟରେ ହେବ ନାହିଁ । ପ୍ରତିବେଶୀ ରାଜ୍ୟଗୁଡ଼ିକ ନାନା ସ୍ୱାର୍ଥରେ ଜଡ଼ିତ ହେଇପଡ଼ିଛନ୍ତି । ଯୁଦ୍ଧ ମାନେ ହିଁ ଦୁଇ ବୃହତ୍‌ଶକ୍ତି ମଧ୍ୟରେ ସଂଘର୍ଷ - ତାର ଅର୍ଥ ସମଗ୍ର ଆର୍ଯ୍ୟ ନୃପତିଗଣ ଏଇ ଯୁଦ୍ଧରେ ଜଡ଼ିତ ହୋଇପଡ଼ିବେ । ଏକ ମହାଯଜ୍ଞ ରୂପକ ମହାଯୁଦ୍ଧରେ ଶ୍ମଶାନ ବେଦୀରେ ଅନାର୍ଯ୍ୟ ସାମ୍ରାଜ୍ୟର ନବଯୁଗର ଅଭିଷେକ ହେବ । ମୁଁ ତାର ସେଇ ଅଭ୍ୟୁଦୟକୁ ଚାହିଁ ରହିଛି । କହ ପୁତ୍ର... ତୁ ମୋର ସହାୟ ହେବୁ କି ନାହିଁ ? କହ... ।'

ବିଦୂରଙ୍କର ସମ୍ମୋହନ ଅବସ୍ଥା । ଦ୍ୱୈପାୟନଙ୍କ ଆଖିରେ ଆଖି ରଖି ସେ ନିରବ ବିସ୍ମୟରେ ଅନେକ ସମୟ ଧରି ଚାହିଁ ରହିଥିଲେ । କିଛିକ୍ଷଣ ପରେ ଧୀରେ ଧୀରେ ମୁଣ୍ଡ ହଲେଇ ଦୀର୍ଘଶ୍ୱାସଟିଏ ତ୍ୟାଗ କଲେ । ସେଇ ଦୀର୍ଘଶ୍ୱାସ ଭିତରୁ ହିଁ ତାଙ୍କର ଉତ୍ତର ବାହାରି ଆସିଲା- କହିଲେ 'ହେବି' ।

ପାଣ୍ଡୁଙ୍କ ଶତଶୃଙ୍ଗ ଯାତ୍ରାର ବହୁକାଳ ପରେ, ମହର୍ଷି ଦ୍ୱୈପାୟନଙ୍କ ପଦାର୍ପଣ ଘଟିଲା ସେଇଠି । ପର୍ବତ ପରେ ପର୍ବତ । ବିଶାଳ ବିଶାଳ ସମୁଦ୍ରର ଢେଉସବୁ ଯେମିତି ସ୍ଥିର ହୋଇ ଠିଆ ହୋଇଛନ୍ତି ସେଇଠି । କୌଣସି ଅଦୃଶ୍ୟ ଯାଦୁକରର ମାୟାରେ ସେମାନେ ସତେକି ଅଚଳ ହେଇପଡ଼ିଛନ୍ତି । ଦିଗ୍‌ବଳୟକୁ ଛୁଇଁ ଶତଶତ ଶୃଙ୍ଗ ସତେ ଯେମିତି ଢେଉ ଭଳି ଜାଗ୍ରତ ରହିଛନ୍ତି । ପାହାଡ଼ଗୁଡ଼ିକ ପଥୁରିଆ ନୁହେଁ । ଗଛପତ୍ରରେ ଭରା ଜଙ୍ଗଲ ମଧ୍ୟ ଏତେ ନିବିଡ଼ ନୁହେଁ । ତେବେ ବିଶାଳ ବିଶାଳ ଶମୀ ଓ ଦେବଦାରୁ ବୃକ୍ଷର ଘଞ୍ଚ ଜଙ୍ଗଲ

ଅଛି ଏଠି ଏବଂ ବହୁ ନିମ୍ନରେ ଜ୍ୱଳନ୍ତ ରୂପାପାତ ଭଳି । ଚକଚକ ହେଇ ବହିଯାଉଛି ପାହାଡ଼ୀ ନଦୀର ଧାରା ।

ପଥ ମଧ୍ୟ କଙ୍କରିଳ ନୁହେଁ । ଉଠାପକା ରାସ୍ତା ବ୍ୟାସଦେବଙ୍କୁ ଗଭୀରରୁ ଗଭୀରତା ଆଡ଼କୁ ଟାଣି ନେଉଥିଲା । ଏଠାକାର ପାହାଡ଼ ଭଳି ଏତେ ରହସ୍ୟମୟ ଆକର୍ଷଣ ଅନ୍ୟ କୌଣସି ପର୍ବତମାଳା ପରିକ୍ରମା କଲାବେଳେ ଅନୁଭବ କରିନଥିଲେ ବ୍ୟାସଦେବ ।

ସଂଧ୍ୟା ହେଇ ଆସୁଥିଲା । ସୂର୍ଯ୍ୟଙ୍କର ଅସ୍ତାଲୋକ ବୃକ୍ଷର ଛାୟାକୁ ଦୀର୍ଘତର କଲା । ଦଳଦଳ ହୋଇ ପକ୍ଷୀମାନେ ନିଜ ନିଜ ନିରାପଦ ଆଶ୍ରୟକୁ ବାହୁଡୁଥିଲେ । କୋଉଠି କିଛି ସୋର ଶବଦ ନ ଥିଲା । ସ୍ଥାନଟା ଭୀଷଣ ନିର୍ଜନ ଏବଂ ଜନଶୂନ୍ୟ ଥିଲା ।

ସୂର୍ଯ୍ୟଙ୍କର ଶେଷ ଆଲୁଅ ଟିକକ ମଧ୍ୟ ଲିଭିଗଲା । କିନ୍ତୁ ସମଗ୍ର ଆକାଶ ସତେଯେମିତି ପାଲଟିଗଲା ରକ୍ତର ସମୁଦ୍ର । ଦ୍ୱୈପାୟନଙ୍କର ମନେହେଲା ଶତଶୃଙ୍ଗ ପର୍ବତର ଶିଖରଗୁଡ଼ିକ ଯେମିତି ଗୋଟାଏ ଗୋଟାଏ ଛିନ୍ନ ମସ୍ତକ ଭଳି ରକ୍ତରେ ଭାସୁଛି । ଗୋଟାଏ ରକ୍ତାକ୍ତ ଯୁଦ୍ଧକ୍ଷେତ୍ରର ଦୃଶ୍ୟପଟ ଯେମିତି ତିଆରି କରିଛି ପ୍ରକୃତି । ଦ୍ୱୈପାୟନ ଅନ୍ୟମନସ୍କ ଭାବେ ଦେଖିବାକୁ ଲାଗିଲେ ହୁ ହୁ ହେଇ ପବନ ବହିଆସି ତାଙ୍କ କାନରେ କେତେ କଣ କଥା କହିଗଲା ଫିସ୍ ଫିସ୍ କରି । ଅନ୍ଧକାରକୁ ଆଡ଼େଇ ଦ୍ୱୈପାୟନ ଆଗକୁ ଆଗକୁ ଚାଲିବାକୁ ଲାଗିଲେ । ଚନ୍ଦ୍ରର କଅଁଳ ଆଲୁଅରେ ଉଦ୍ଭାସିତ ହେଇ ଉଠୁଥିଲା ଗଛଲତା, ପାହାଡ଼ । ସେଇଠି ସଂଚରିତ ହେଲା ସ୍ୱପ୍ନଟିଏ ।

ପବନର କଥା ଶୁଣି ଶୁଣି ବାଟ ଚାଲୁଥିଲେ ଦ୍ୱୈପାୟନ । ତାଙ୍କର ସମସ୍ତ ଇନ୍ଦ୍ରିୟ ଦେଇ ପବନର ଅସଂଖ୍ୟ ପ୍ରଳାପ ସେ ଶୁଣିବାକୁ ଲାଗିଲେ । ଯେମିତି ପବନ ତାଙ୍କୁ କହୁଥିଲା, ଦ୍ୱୈପାୟନ ! ତୁମେ ଅନେକ ପଥ ଆସିସାରିଛ, ଅନେକ ପଥ... ଆଉ ତୁମର ଅଟକିବାର ନାହିଁ । ଫେରିଯିବାର ବି ପ୍ରୟୋଜନ ନାହିଁ । ମହାପୃଥିବୀ ଆଡ଼କୁ ଯେଉଁ ଅବାରିତ ପଥ ପଡ଼ିଛି, ତୁମେ ସେଇ ପଥକୁ ଆସିଯାଇଛ । ଆଗେଇ ଚାଲ ତୁମେ, ଆଗେଇ ଚାଲ.... ।

କିଛି ଦୂରରେ ଆଲୁଅ ଦେଖି ଠିଆ ହେଇପଡ଼ିଲେ ଦ୍ୱୈପାୟନ । ଭଲ ଭାବରେ ଦିଗ ସ୍ଥିର କରି ନେଇ ପୁଣି ଆଗେଇ ଚାଲିଲେ । ପୂର୍ବର ଆଚ୍ଛନ୍ନ ଭାବ ଆଉ ତାଙ୍କର ନ ଥିଲା । ବର୍ତ୍ତମାନ ମନେହେଲା, ଯାହାକୁ ସେ ପବନର କଥା ବୋଲି ଭାବୁଥିଲେ, ଆଦୌ ତାହା ନୁହେଁ । ହୁଏତ ଏଇଟା ତାଙ୍କର ଗଭୀର ଅଭ୍ୟନ୍ତରର କଥା, ଅନ୍ତରର ଭାବନା । ପବନରେ ସେସବୁ ଯେମିତି ମିଶି ଖେଳେଇ ହେଇଯାଇଛି । ନିଜ ଅଜାଣତରେ ଦୀର୍ଘଶ୍ୱାସଟିଏ ଛୁଟି ଆସିଲା ଛାତି ଭିତରୁ ।

କୁଟୀର ପାଖାପାଖି ଆସି ସେ ଯେତେବେଳେ ଠିଆ ହେଇଗଲେ, ସେତେବେଳକୁ ରାତି ହେଇଯାଇଥିଲା । କିଛି କୋଉଠି ବି ଘନ ଅନ୍ଧକାର ନ ଥିଲା । ପଞ୍ଚମୀ ଜହ୍ନର ନିଷ୍ପ୍ରଭ

ଆଲୁଅ ବିଛୁରିତ ହେଇପଡ଼ିଥିଲା ସବୁଆଡ଼େ । ବନଫୁଲର ସୁଗନ୍ଧରେ ରାତ୍ରିର ଆବେଗ ଏବଂ ପବନରେ ସ୍ନିଗ୍ଧତା ମିଶି ରହିଥିଲା । ଭୀଷଣ ଭଲ ଲାଗୁଥିଲା ଦ୍ୱୈପାୟନଙ୍କୁ । କିନ୍ତୁ କୁଟୀର ଭିତରେ, ଏତେ ଅନ୍ଧକାର କାହିଁକି ? କିଛି କ୍ଷଣ ପୂର୍ବରୁ ତ ଆଲୁଅଟିଏ ଜଳୁଥିବାର ସେ ଦେଖିଥିଲେ । ତାହା କଣ ଲିଭିଯାଇଛି ? ନା, ଲିଭେଇ ଦେଇ ଶୋଇ ପଡ଼ିଲେଣି ? ସମଗ୍ର ପ୍ରକୃତି ଭିତରେ କି ସୁନ୍ଦର ଅପରୂପ ଜହ୍ନ ଆଲୁଅ ସମସ୍ତ ପାର୍ବତ୍ୟ ପରିବେଶ ଆଲୋକିତ ହୋଇ ରହିଛି । କେବଳ ଏଇ କୁଟୀରରେ ଏତେ ଅନ୍ଧକାର ! କାହିଁକି ? ସୋର ଶବ୍ଦ ବି କିଛି ନାହିଁ । ଭୂତକୋଠି ଭଳି ମନେହେଉଛି ଘରଟା । କବାଟ ବି ବନ୍ଦ । ଗୋଟାଏ ଗୁମ୍ ଗୁମ୍ ପରିବେଶ ।

ଦ୍ୱୈପାୟନ କୁଟୀରର ଅଗଣା ଭିତରକୁ ପଶିଗଲେ । କାନ ପାତିଲେ କବାଟରେ । ଭିତରେ ଚେଇଁଛନ୍ତି କିଏ ସବୁ । ଶ୍ୱାସପ୍ରଶ୍ୱାସର ଶବ୍ଦ ବାରି ହେଇପଡୁଛି । କିଏ ଜଣେ କାଶିଲା । ସେ ଶୁଣିବାକୁ ପାଇଲେ । ତାପରେ ଜଣେ ପୁରୁଷର କଣ୍ଠସ୍ୱର, ପାଣ୍ଡୁ ଭଳି ଶୁଭିଲା, ସେ ଶୁଣିବାକୁ ପାଇଲେ ଭିତରପଟୁ ।

ବନ୍ଦ ଦୁଆର ଏପଟୁ ଠିଆ ହେଇ ଡାକିଲେ ଦ୍ୱୈପାୟନ । ପାଣ୍ଡୁ ! ମୁଁ... ମୁଁ ଆସିଛି, ଦ୍ୱାର ଖୋଲ ।

ଭିତରୁ କୌଣସି ଉତ୍ତର କିମ୍ବା ସୋର ଶବ୍ଦ କିଛି ଆସିଲା ନାହିଁ । କଣ୍ଠସ୍ୱର ଶୁଣି କୁନ୍ତୀ କିନ୍ତୁ ଧଡ଼ପଡ଼ ହେଇ ଉଠିବସିଲେ । ନିର୍ବାକ୍ ଆନନ୍ଦର ବିଶାଳ ସ୍ରୋତଟିଏ ସତେ ଯେମିତି ତାଙ୍କ ବୁକୁ ତଳେ ଉଛୁଳି ଉଠିଲା ଓ ସମଗ୍ର ଦେହମନକୁ ପ୍ଳାବିତ କରିଦେଲା ସେଇ କଣ୍ଠସ୍ୱରର ମୂର୍ଚ୍ଛନା ।

ଅନେକ ଦିନ ଧରି ବିଦୂରଙ୍କ ପାଇଁ ତାଙ୍କ ମନ ଛଟପଟ କରୁଥିଲା । ଦୁର୍ବିଷହ ଅସହିଷ୍ଣୁତା ଭିତର ଦେଇ କଟୁଥିଲା । ଆଜି ଦିନଟା ସାରା ବିଦୂର ପାଇଁ ମନ ତାଙ୍କର କିମିତି କିମିତି ଲାଗୁଥିଲା । ଶୋଇ ଶୋଇ ବିଦୂର ସଙ୍ଗେ ମଧୁର କଳହର କାଳ୍ପନିକ ଛବି ଆଙ୍କୁଥିଲେ ସେ । ଠିକ୍ ସେଇ ସମୟରେ ବାହାରୁ ବିଦୂରଙ୍କ ଭଳି କଣ୍ଠସ୍ୱର ଶୁଣି ସେ ଚମକି ଉଠିଲେ । ଗୋଟାଏ ଅବରୁଦ୍ଧ ଆବେଗ ସେଇ ମୁହୂର୍ତ୍ତରେ ତାଙ୍କ ଗଳାକୁ ଜାବୁଡ଼ି ଧରିଲା । ସେ କିଛି ଜବାବ ଦେଲେ ନାହିଁ । ନିରବ ରହିଲେ । ଏତେ ରାତ୍ରିରେ ସତେ କଣ ବିଦୂର ଆସିଥିବେ ? ବିଦୂର ? ବିଶ୍ୱାସ ହେଲା ନାହିଁ କୁନ୍ତୀଙ୍କର ।

ନିର୍ଜନ ବାସ । ରାତିରେ ହୁଟ୍ କରି ଦ୍ୱାର ଖୋଲି ବାହାରକୁ ବାହାରିବା ପୂର୍ବରୁ କିଛି ସମୟ ଭାବିବାକୁ ହୁଏ । ସେଥିପାଇଁ ସେ ଦ୍ୱାର ଖୋଲି ନ ଥିଲେ । ଉତ୍କଣ୍ଠା ହୋଇ ସେ ଆଉ ଗୋଟିଏ ଡାକକୁ ଶୁଣିବା ପାଇଁ ପ୍ରତୀକ୍ଷା କଲେ ।

ବାହାରେ ଠିଆ ହେଇ ଦ୍ୱୈପାୟନ କିଛି ସମୟ ପରେ ପୁଣି ଅନ୍ତରଙ୍ଗ କଣ୍ଠରେ ଡାକିଲେ, ପାଣ୍ଡୁ, ପୃଥା, ତୁମେମାନେ କଣ ଶୋଇପଡ଼ିଲଣି ? ମୁଁ ଆସିଛି... ମୁଁ । କୁନ୍ତୀଙ୍କର ଭିତରଟା ଯେମିତି ଭାଙ୍ଗିରୁଜି ଟୁକୁରା ଟୁକୁରା ହେଇଗଲା । ସମ୍ମୋହିତଙ୍କ ଭଳି ସେ ଦ୍ୱାର ଖୋଲିଦେଲେ । ରାତି ଶେଷରେ ଅନ୍ଧାର ଭଳି ଓହ୍ଲେଇ ଆସିଲା ମଣିଷଟିଏ ଅଗଣା ଭିତରୁ । ଅନ୍ଧାର ଭିତରେ ଦ୍ୱୈପାୟନଙ୍କୁ ବିଦୂର ବୋଲି ଭାବିନେଲେ କୁନ୍ତୀ ଏବଂ ଏକ ତୀବ୍ର ଆନନ୍ଦମିଶା ଯନ୍ତ୍ରଣାରେ ବିଦୀର୍ଣ୍ଣ ହେଇ ଯାଉ ଯାଉ କହିଲେ, 'ତୁମେ ଆସିଛ ଦେବର ବିଦୂର । ଏତେଦିନ ପରେ ତୁମକୁ ସମୟ ହେଲା ?' ଏମିତି ନିଷ୍ଠୁର ହେଲ କିମିତି ? କେତେ କାଳ ହେଲା ଯେ ମୁଁ ତୁମକୁ ଦେଖିନି କୁହ ତ ? ତୁମେ ତ ଜାଣ, ଏଠି ମୁଁ କେତେ ଏକୁଟିଆ । ଇଏ ବି ତ ଗୋଟାଏ ପ୍ରକାରର ବନ୍ଦୀର ଜୀବନ । କଣ ଅଛି ଏଠି ? କାହାକୁ ନେଇ ମୁଁ ରହିବି ଏଠି ? ତୁମେ କାହିଁକି ବୁଝିପାରନା ଯେ- ତୁମେ ମୋର ସର୍ବସ୍ୱ । ତୁମେ ମୋର ସୁଖ, ଦୁଃଖ, ମୋ ଜୀବନ-ମରଣ, ମୋର ଅସ୍ତିତ୍ୱ-ଅନସ୍ତିତ୍ୱ, ସବୁ ହିଁ ତୁମେ । ତୁମ ଦେହର ଜୀବନ୍ତ ସ୍ପର୍ଶରେ ମୋ ଜଠରରେ ଯେଉଁ ପ୍ରାଣସତ୍ତାର ଅଙ୍କୁର ହୋଇଛି ତାର କ'ଣ କିଛି ଖବର ରଖିଛ ତୁମେ ?

ଦ୍ୱୈପାୟନ ସ୍ତବ୍ଧ । ଚିତ୍ରାର୍ପିତ ଭଳି ଠିଆ ହୋଇ ରହିଲେ ସେ । ଏତେ ଶୀତରେ ମଧ୍ୟ ସେ ଗମ୍‌ଗମ୍ ଝାଳରେ ତିନ୍ତି ଯାଉଥିଲେ ।

କୁନ୍ତୀଙ୍କ ଛାତି ଭିତରେ ଏତେଦିନ ଧରି ପୁଞ୍ଜୀଭୂତ କଥା ସବୁ ଲାଭା ସ୍ରୋତ ଭଳି ତାଙ୍କ ଛାତିରୁ ଠେଲି ହୋଇ ବାହାରି ଆସିଲା ।

ଅନ୍ଧକାର ଭିତରେ ମଣିଷଟାକୁ ଭଲକରି ଚିହ୍ନି ପାରିନଥିଲେ କୁନ୍ତୀ । ଚିହ୍ନିପାରିଥିଲେ ବୋଧହୁଏ ଲଜ୍ଜାରେ ମାଟିରେ ମିଶିଯାଇଥାନ୍ତେ । ସେତେବେଳେ ଭାଗ୍ୟକୁ କଳାମେଘ ଖଣ୍ଡେ ପଞ୍ଚମୀର ଚନ୍ଦ୍ରଙ୍କୁ ଘୋଡ଼େଇ ରଖିଥିଲା... ।

ହତବୁଦ୍ଧି ଦ୍ୱୈପାୟନ ଏତିକି ବୁଝି ପାରୁଥିଲେ ଯେ, କମ୍ବଳରେ ଆବୃତ୍ତ ଶରୀର ଏବଂ ଏହି ଅନ୍ଧକାର ହିଁ ବର୍ତ୍ତମାନ ଉଭୟଙ୍କର ଲଜ୍ଜାର ଆବରଣ । ଏହି ଆବରଣଟା ଭାସିଗଲେ, ପାଚେରି ଭାଙ୍ଗିଗଲେ, ସେମାନେ କେହି ପରସ୍ପରର ମୁହଁକୁ କୌଣସି ଦିନ ଚାହିଁପାରିବେ ନାହିଁ । ସୁତରାଂ ଯେ କୌଣସି ଅବସ୍ଥାରେ ମଧ୍ୟ କୁନ୍ତୀଙ୍କୁ ଜାଣିବାକୁ ଦେବେନି ଯେ, ସେ ଦ୍ୱୈପାୟନ ବୋଲି ।

ଦ୍ୱୈପାୟନଙ୍କ ପ୍ରସ୍ତର ମୂର୍ତ୍ତି ଭଳି ଆଚ୍ଛନ୍ନତା କୁନ୍ତୀଙ୍କୁ ହତାଶ କଲା । ଅଭିମାନର ସମୁଦ୍ର ଉଛୁଳି ଉଠିଲା ଛାତି ଭିତରେ । ରାଗରେ ମନ ପୋଡ଼ି ଯାଉଥିଲା । କହିଲେ, ନିଷ୍ଠୁର, ତୁମେ ଭୀଷଣ ଭାବେ ନିଷ୍ଠୁର । ମିଥ୍ୟାବାଦୀ । ଭଲପାଇବାର ଛଳନା କରି ଅନ୍ୟକୁ ପ୍ରତାରିତ କର । ଭଣ୍ଡ ତୁମେ... ଭଣ୍ଡ କହୁ କହୁ ପଣତରେ ମୁହଁ ଢାଙ୍କି ପ୍ରଣୟର ଆବେଗରେ

ଏକାନ୍ତ ଅସହାୟ ଭାବେ ଫୁଲି ଫୁଲି ସେ କାନ୍ଦିବାକୁ ଲାଗିଲେ । ରାଗ, ଘୃଣା, ଅଭିମାନ ଆଉ ନିଜ ଉପରେ ଧିକ୍କାର ସବୁ ମିଶି ଗୋଟାଏ ଭୟଙ୍କର ଝଡ଼ ସୃଷ୍ଟି କରିଥିଲା ତାଙ୍କ ସମଗ୍ର ଦେହମନରେ । ଅପମାନରେ ଛାତି ଭିତରଟା ଭାଙ୍ଗି ଯିବାକୁ ଲାଗିଲା । ଉଚିତ ଅନୁଚିତର ବୋଧ ଲୁପ୍ତ ହେଇଗଲା । ଉତ୍ତେଜିତ ହୋଇ ସେ ଥରି ଥରି ଦୌଡ଼ି ଚାଲିଗଲେ ନିଜ କୁଟୀର ଭିତରକୁ । ବନ୍ଦ କରିଦେଲେ କବାଟ ।

କୁନ୍ତୀ ଚାଲିଯିବା ପରେ ଦ୍ୱୈପାୟନ ଧୀରେ ଧୀରେ ନିଃଶ୍ୱାସ ଛାଡ଼ିଲେ । ଅବରୁଦ୍ଧ ଥିବା ଶ୍ୱାସ ବାହାରି ଆସିଲା ନାଭିଦେଶରୁ ବାହାରକୁ । ବେଶ୍ କିଛିଟା ସ୍ୱସ୍ତି ବୋଧ କଲେ ସେ । ସୌନ୍ଦର୍ଯ୍ୟର ଲୀଳାଭୂମି ଉପରେ ଛିଡ଼ା ହେଇ ଦ୍ୱୈପାୟନଙ୍କର ଏକ ଅନାସ୍ୱାଦିତ ଜୀବନ ରହସ୍ୟକୁ ଦେଖିବାର ସୌଭାଗ୍ୟ ଲାଭ ହେଲା ଏକାବେଳକେ । ଗଭୀର ପ୍ରେମରେ ସିଞ୍ଚିତ ଜ୍ୱାଳାମୟୀ ଅନୁଭୂତି କେତେ ନଗ୍ନ ଆଉ କେତେ ପ୍ରତ୍ୟାଶାରେ ଭରପୂର- ଏଇ ମାତ୍ର ସେ ପ୍ରଥମ କରି ଅନୁଭବ କଲେ ।

କୁନ୍ତୀ ପାଇଁ ସତରେ ଦ୍ୱୈପାୟନଙ୍କର ଭାରି କଷ୍ଟ ହେଲା ମନରେ । ଗୋଟାଏ ଅଦ୍ଭୁତ ଭ୍ରମ ନିଶାରେ ଆଚ୍ଛନ୍ନ କୁନ୍ତୀ । ତା' ନିଜ ମନର ଆବରଣ ଖୋଲି ଦେଇଛି । ନଚେତ୍ ଦ୍ୱୈପାୟନ ଜାଣିପାରିନଥାନ୍ତେ ଯେ କୁନ୍ତୀ ବିଦୂରକୁ ଭଲପାଏ । ଏଇ ଭଲପାଇବା କୌଣସି ଅଭ୍ୟାସ ବା ସଂସ୍କାର ନୁହଁ । କୁନ୍ତୀ ତା ଜୀବନକୁ ଖୋଜୁଛି । ଭବିଷ୍ୟତ ଦେଖୁଛି । ପାଣ୍ଡୁର ପ୍ରଜନନ କ୍ଷମତା ନାହିଁ ବୋଲି ଶରୀରୀ ପ୍ରାର୍ଥନା ନେଇ ସେ ଆହ୍ୱାନ କରିଛି ବିଦୂରକୁ । ବିଦୂରର ସନ୍ତାନ ବର୍ତ୍ତମାନ ତା ଗର୍ଭରେ । ଦ୍ୱୈପାୟନ ଚମତ୍କୃତ ହେଲେ । ଭୀଷଣ ଖୁସି ମଧ୍ୟ ହେଲେ । ଆଉ ବିଦୂରକୁ ହଜାଇବାର ଭୟ ନାହିଁ ତାଙ୍କର । ବିଦୂର ବର୍ତ୍ତମାନ ତା ସନ୍ତାନର ସ୍ୱାର୍ଥ ପାଇଁ କୁନ୍ତୀର ଟାଣରେ କାର୍ଯ୍ୟ କରିଯିବ । ହସ୍ତିନାପୁରରେ ବିଦୂର ଆଉ ଏକୁଟିଆ ନୁହେଁ । ଟୁକୁରା ଟୁକୁରା ହେଇ ଭାଙ୍ଗିଗଲାଣି ତା ସତ୍ତା । ସେ ପୁତ୍ର, ପିତା ଏବଂ ପ୍ରଣୟୀ ମଧ୍ୟ । ଖଣ୍ଡ ଖଣ୍ଡ ବିଦୂର । ବିଦୂରର ସାଧ କାହିଁ ଧୃତରାଷ୍ଟ୍ରର ସ୍ୱାର୍ଥ ପାଇଁ କାର୍ଯ୍ୟ କରିବାକୁ । ଅନ୍ଧକାର ଭିତରେ ଏକା ଏକା ଠିଆ ହେଇଥିଲେ ଦ୍ୱୈପାୟନ । ଆଖି ଟେକି ଚାହିଁଲେ ସେ ରାତ୍ରିର ଆକାଶକୁ । ମଥା ଉପରେ ଧ୍ରୁବତାରା । ଆଖି ଆଗରେ ଧନୁରାଶି, ତା ବାମପଟକୁ କାଳପୁରୁଷ ମଣ୍ଡଳ ।

ପାଣ୍ଡୁ ବୋଧହୁଏ କୁନ୍ତୀର ଗଳା ଶୁଣି ପଛପଟର ଏକ କୁଟୀର ଭିତରୁ ବାହାରକୁ ଆସିଲେ । ହାତରେ ପ୍ରଦୀପ । ପ୍ରଦୀପର ଆଲୁଅରେ କିଛି ମାତ୍ରାରେ ଅନ୍ଧାର ହାଲୁକା ହେଲା । ଦ୍ୱୈପାୟନଙ୍କ ଖୁବ୍ ନିକଟକୁ ଆସିଲେ ସେ । ପ୍ରଦୀପ ଉଠେଇ ମୁହଁକୁ ନିରେଖିଲେ । କୁନ୍ତୀର ଭ୍ରମ ବିଭ୍ରାଟର ରହସ୍ୟ ଉନ୍ମୋଚନ କଲେ ଲଜ୍ଜାରେ ସଢ଼ିଯିବ । ତେଣୁ ପାଣ୍ଡୁ କୌଣସି କୌତୂହଳ ପ୍ରକାଶ କରିବା ପୂର୍ବରୁ ମୁଖରେ ଆଙ୍ଗୁଠି ରଖି ନିରବ ରହିବାକୁ ଇଙ୍ଗିତ

କଲେ ଦ୍ୱୈପାୟନ । କାନ ପାଖକୁ ମୁହଁ ନେଇ କହିଲେ "ପ୍ରଦୀପ ଲିଭାଇ ଦିଅ, ମୁଁ ମହର୍ଷି ବ୍ୟାସଦେବ । ତୁମ ସହିତ କିଛି ଗୋପନ କଥା ଅଛି । ସ୍ଥାନାନ୍ତରେ ଚାଲ କହିବି ।"

ନିଃଶବ୍ଦରେ ସେମାନେ ପାଖାପାଖି ବେଶ୍ କିଛିବାଟ ଅତିକ୍ରମ କଲେ । ଗୋଟାଏ ମୁକ୍ତ ସ୍ଥାନରେ ଆସି ଠିଆ ହେଲେ । ପରୀର ଆଖିଭଳି ଟିକ୍ ଟିକ୍ କରୁଥିବା ଖଦ୍ୟୋତମାନେ ଉଡ଼ିବୁଲୁଥିଲେ ଅନ୍ଧାର ଭିତରେ । ପାଣ୍ଡୁ ସେମିତି କିଛି ଭାବିପାରୁ ନ ଥିଲେ । ଅସ୍ଥିରତା ଭିତରେ ମୁଣ୍ଡ ଗୋଳମାଳିଆ ହେଇଯାଉଥିଲା ।

ଦ୍ୱୈପାୟନ ଗଭୀର ଭାବେ ଅନ୍ୟମନସ୍କ ହେଇ ପଡ଼ିଥିଲେ । କିଛି ସମୟ ନିରବତା ମଧ୍ୟରେ କଟିଗଲା । ତା'ପରେ କହିଲେ, ବତ୍ସ ! ପ୍ରତୀକ୍ଷାର ପ୍ରହର ଗଣନାର କାଳ ଶେଷ ହେଇଆସୁଛି । କାଳର ଘଣ୍ଟା ଧ୍ୱନି ମୁଁ ଶୁଣିବାକୁ ପାଉଛି । କୌଣସି ଭୟ କି ଭାବନା ନାହିଁ । ବିଧାତା ସ୍ୱୟଂ ଅଦୃଷ୍ଟ ସହିତ ଅଣ୍ଟାଭିଡ଼ି ନିଜେ କାମ କରିବାକୁ ଓହ୍ଲେଇ ଆସିଛନ୍ତି । ପାଣ୍ଡୁଙ୍କ ଅପଲକ ଚକ୍ଷୁରେ ବିସ୍ମୟର ଚିହ୍ନ । କିନ୍ତୁ କଥାରେ ସଂଶୟ । କହିଲେ ମହର୍ଷି, ଚାରିଦିଗର ପରିସ୍ଥିତି ଅତ୍ୟନ୍ତ ଜଟିଳ । ସ୍ୱେଚ୍ଛାଚାରୀ ସାମ୍ରାଜ୍ୟବାଦୀ ଶାସକବର୍ଗ ଧୃତରାଷ୍ଟ୍ର ଆଡ଼କୁ ହାତ ବଢ଼ାଇଛନ୍ତି । ଏହି ପରିସ୍ଥିତିରେ କିଏ କୋଉ ଆଶା ନେଇ ସୁଖ ସ୍ୱପ୍ନ ଦେଖିବ ? ମୋର ବା ଅଛି କଣ ? ବାହୁବଳ, ଲୋକବଳ, ଅର୍ଥବଳ ନା ବନ୍ଧୁବଳ ? କିଛି ନାହିଁ ମୋର । ମୁଁ ଏକା । ନିର୍ବାସିତ । ମୋର ସହାୟ, ବନ୍ଧୁ ଆତ୍ମୀୟ କହିଲେ ଆପଣ, କେବଳ ଆପଣ । ତଥାପି ମୁଁ ସ୍ୱପ୍ନ ଦେଖୁଛି, ବିଶ୍ୱାସ ରଖିଛି, ଦିନେ ହସ୍ତିନାପୁରକୁ ଫେରିବି । ମହର୍ଷି ! ମୋର ସେଇ ଦୁରାଶା ସତରେ କଣ ପରିପୂର୍ଣ୍ଣ ହେବ ? ଆପଣ ତ୍ରିକାଳଜ୍ଞ, ଭବିଷ୍ୟତ୍ ଦ୍ରଷ୍ଟା । କୁହନ୍ତୁ କଣ କଲେ ଏଇ ନିର୍ବାସନରୁ ରାଜ୍ୟୋଦ୍ଧାର କରିପାରିବି ?

ଦ୍ୱୈପାୟନ ଟିକିଏ ଇତସ୍ତତଃ ହୋଇ କହିଲେ, ପୁତ୍ର, ମୁଁ ସୁମେରୁ ବ୍ରହ୍ମର୍ଷି, ଅମରାବତୀ ହୋଇ ତୁମ ନିକଟକୁ ଆସିଛି । ସମତଳ ଭୂମିର ରାଜନ୍ୟବର୍ଗ ନିଜ ନିଜ ସ୍ୱାର୍ଥ ନେଇ ମତ୍ତ ଅଛନ୍ତି । ତୁମଭଳି ରାଜ୍ୟଚ୍ୟୁତ ନିର୍ବାସିତର ପକ୍ଷ ଅବଲମ୍ବନ କରି ବୃହତ୍-ଶକ୍ତି-ଗୋଷ୍ଠୀର ଅନ୍ୟତମ ଶାସକ ଜରାସନ୍ଧର ଅନୁଗତ ବାନ୍ଧବ ଓ ସହାୟମାନେ ଧୃତରାଷ୍ଟ୍ରଙ୍କ ବିରୁଦ୍ଧାଚରଣ କରିବେ ନାହିଁ । ତୁମର ତ କୌଣସି ରାଜନୈତିକ ଭବିଷ୍ୟତ ନାହିଁ । ସୁତରାଂ ତୁମ ପାଖକୁ ସେମାନେ ଯିବେ କାହିଁକି ?

ପାଣ୍ଡୁଙ୍କ ହୃଦୟକୁ ମଥିତ କରି ଛୁଟି ଆସିଲା ଦୀର୍ଘଶ୍ୱାସଟିଏ । କହିଲେ, ତେବେ ବି ଆପଣ ଆଶା ପୋଷଣ କରିଛନ୍ତି ? ଏକମାତ୍ର ଆପଣ ହିଁ ମୋତେ ଅନ୍ଧକାର ଭିତରେ ଆଲୋକ ଦେଖାଉଛନ୍ତି ।

ଶୁଣ ପୁତ୍ର, ହିମାଳୟ ନିବାସୀ ଦେବ-ନୃପତିଗଣ ତୁମର ବନ୍ଧୁ ଓ ସହାୟ ହୋଇପାରନ୍ତି । କେବଳ ତାହା ନୁହେଁ ତୁମ ଦୁଃସମୟରେ ଏକମାତ୍ର ବନ୍ଧୁ ହେଲା ଭଳି

ସାମର୍ଥ୍ୟ ସେମାନଙ୍କର ଅଛି । ଏବେବି ସେମାନେ ରାଜନୀତି, କୂଟନୀତି, ଯୁଦ୍ଧନୀତିରେ ସମତଳ ପ୍ରଦେଶର ନୃପତିମାନଙ୍କଠାରୁ ଅନେକ ଉନ୍ନତ ଏବଂ ପ୍ରଗତିଶୀଳ । ସୁଉଚ୍ଚ ପର୍ବତ ଶୃଙ୍ଗଗୁଡ଼ିକ ଦୁର୍ଭେଦ୍ୟ ଦୁର୍ଗ ଭଳି ସେମାନଙ୍କ ରାଜ୍ୟଗୁଡ଼ିକୁ ଶତ୍ରୁର ଆକ୍ରମଣରୁ ରକ୍ଷା କରୁଛି । ସମତଳ ଅଞ୍ଚଳର ସମସ୍ତ ନୃପତି ସେମାନଙ୍କୁ ଭୟରେ ଯୁଦ୍ଧ ଏଡ଼େଇ ଚାଲିଛନ୍ତି । ତେଣୁ ଏମାନଙ୍କ ସହିତ ବନ୍ଧୁତ୍ୱ ପାଇଁ ମୁଁ ସେଇ ଦେଶକୁ ଯାଇଥିଲି ।

ପାଣ୍ଡୁ ସରଳ ଦୃଷ୍ଟିରେ ଅଗାଧ ବିସ୍ମୟ ନେଇ ଦ୍ୱୈପାୟନଙ୍କ ଆଡ଼କୁ ଚାହିଁ କହିଲେ, ଦେବତାମାନଙ୍କ ଭଳି, ମହତ୍ ମଣିଷମାନଙ୍କ କଥା ମଧ୍ୟ ଚିନ୍ତା କରିବା ଆବଶ୍ୟକ । ସେମାନଙ୍କ ସାହାଯ୍ୟ ପାଇବା ପାଇଁ ମୁଁ ଯେ କୌଣସି କଠିଣ କାର୍ଯ୍ୟ କରିବା ପାଇଁ ପ୍ରସ୍ତୁତ ଅଛି ।

ଚକ୍ଷୁ ମୁଦ୍ରିତ ଅବସ୍ଥାରେ କିଛି ସମୟ ଦ୍ୱୈପାୟନ ଦେବତାମାନଙ୍କର ପରିକଳ୍ପନା ଓ ପ୍ରସ୍ତାବ କଥା ସ୍ମରଣ କଲେ । ଦେବ-ନୃପତିଗଣ ବର୍ତ୍ତମାନ ବୃହତ୍ ଶକ୍ତି ଗୋଷ୍ଠୀର ଆକ୍ରମଣ ଆଶଙ୍କାରେ ବିବ୍ରତ । ସେଇ କାରଣରୁ ସେମାନେ ନିଜସ୍ୱ ଗୋଟିଏ ବାହିନୀ ସୃଷ୍ଟି କରି ଏଇ ନିରାପତ୍ତାକୁ ସୁଦୃଢ଼ କରିବାପାଇଁ ପ୍ରୟାସ କରୁଛନ୍ତି । କିନ୍ତୁ ସେମାନଙ୍କର ଲୋକବଳର ଅଭାବ, ଅତୀତରେ କ୍ଷମତାଚ୍ୟୁତ, ରାଜ୍ୟଚ୍ୟୁତ ମନୁଙ୍କ ବଂଶଧର ମଣିଷକୁ ସାହାଯ୍ୟ କରିବାପାଇଁ ସେମାନେ ହାତ ବଢ଼େଇ ଦେଇଥିଲେ । କିନ୍ତୁ ସ୍ୱାର୍ଥାନ୍ୱେଷୀ ରାଜ୍ୟଚ୍ୟୁତ ମଣିଷ ଦେବ ନୃପତିମାନଙ୍କର ଅନୁଗ୍ରହ ଓ ସମର୍ଥନ ନେଇ ଅନେକ ହୃତରାଜ୍ୟ ତଥା କ୍ଷମତା, ସମ୍ମାନ ଓ ଗୌରବ ମଧ୍ୟ ଉଦ୍ଧାର କରିଛନ୍ତି ଏବଂ ତାପରେ ଭୁଲିଯାଇଛନ୍ତି ଶପଥ କଥା । ତେଣୁ ହିଁ ଦେବ ନୃପତିଗଣ ପୁଣି ଥରେ ଅତୀତର ତ୍ରୁଟିକୁ ପୁନରାବୃତ୍ତି କରିବାକୁ ଚାହୁଁ ନାହାନ୍ତି । ଖୁବ୍ ବେଶି ହେଲେ ସେମାନେ ନିଜ ଉତ୍ତରାଧିକାରୀଙ୍କ ହାତରେ ନିଜ ନିଜ ଅସ୍ତ୍ରଶସ୍ତ୍ର ଦେଇଦେବେ । ଏହି ବ୍ୟବସ୍ଥା ଦ୍ୱାରା ଆନୁଗତ୍ୟ ସ୍ଥାୟୀ ହେବ । ସେମାନଙ୍କର ଦେବ ନିର୍ଭରତା ମଧ୍ୟ ଅତୁଟ ରହିବ । ସମତଳ ପ୍ରଦେଶର ମଣିଷ ଯେତେ ମାତ୍ରାରେ ସେମାନଙ୍କ ସୌଭାଗ୍ୟ ଗର୍ବଗୌରବ ଦେଖି ଈର୍ଷାନ୍ୱିତ ହେବ, ସେତେ ପରିମାଣରେ ସେମାନେ ଦେବଲୋକ ଉପରେ ନିର୍ଭରଶୀଳ ହେବେ । ରାଜ୍ୟଚ୍ୟୁତ ରାଜା ଯଦି ଦେବ-ନୃପତିମାନଙ୍କ ସହାୟତାରେ କ୍ଷେତ୍ରଜପୁତ୍ର ଉତ୍ପାଦନ କରିବେ ତାହେଲେ ସେଇ ଦେବତାଙ୍କର ଔରସଜାତ ପୁତ୍ରମାନଙ୍କୁ ସେମାନେ ନିଶ୍ଚୟ ସାହାଯ୍ୟ କରିବେ । ମାତ୍ର ଅଳ୍ପ ସମୟ ଭିତରେ ତାଙ୍କର ଅନେକ କଥା ମନେପଡ଼ିଗଲା । କିନ୍ତୁ ପାଣ୍ଡୁଙ୍କୁ ସେ ସବୁ କଥା କହିବା ପାଇଁ ସଂକୋଚ ଲାଗିଲା ।

ନିସ୍ତବ୍ଧ ରାତ୍ରୀ । ପବନ ମଧ୍ୟ ଚଞ୍ଚଳତା ପ୍ରକାଶ କରିବା ପାଇଁ ସାହସ କରୁନଥିଲା । ନିଶ୍ୱାସ ପ୍ରଶ୍ୱାସ ସହିତ ଛାତି ଭିତରଟା ଉଠପଡ଼ ହେଉଥିଲା ଭିତରେ ଭିତରେ । ଖୋଲା ପରିବେଶ, ବେଶ୍ କିଛି ସମୟ ଚୁପ୍‌ଚାପ୍ ଠିଆ ହୋଇ ରହିଲେ । କୌଣସି ଅନୁଶୋଚନା,

ଅପରାଧବୋଧ, ବିବେକର ଦଂଶନ କିଛି ହିଁ ମନକୁ ଆସୁନଥିଲା । କେବଳ ମନେପଡୁଥିଲା କୁନ୍ତୀ । ଛାତି ଭିତରେ ତାର ଝଡ଼ । ରକ୍ତରେ ନାଲି ପଡ଼ିଯାଇଥିବା କାମନାର ସମୁଦ୍ର ତା' ମନରେ । ତାର ସତେଜ ପ୍ରାଣ ଚାହେଁ ଜୀବନର ଉତ୍ତାପ । ଅନେକଙ୍କର ପ୍ରେମିକା ହେବା ଭଳି ଯୋଗ୍ୟତା ଅଛି ତାର । ନାରୀର ସଂସ୍କାର ତା' ଭିତରେ କିଛି ନାହିଁ । ବିବାହିତ ପ୍ରେମ ତା ନିକଟରେ ଗୋଟାଏ ଅଭ୍ୟାସ ମାତ୍ର । କେବଳ କୁନ୍ତୀର ହିଁ ସେଇ କ୍ଷମତା ଅଛି ଅନାଗତ ବିଧାତାକୁ ଆହ୍ୱାନ କରିପାରିବାର ।

ଅଳ୍ପ ଅଳ୍ପ ଥଣ୍ଡା ଭିତରେ ମଧ ଝାଳେଇ ଯାଉଥିଲେ ପାଣ୍ଡୁ । ଦ୍ୱୈପାୟନଙ୍କୁ କଥା କହିବା ପାଇଁ ବେଶ୍ କିଛି ସମୟ ଲାଗିଗଲା । ସେ କହିଲେ, ବତ୍ସ ! କୃତାନ୍ତ ନଗରର କୃତାନ୍ତରାଜ, ଅମରାବତୀର ଇନ୍ଦ୍ର ଏବଂ ଦେବନୃପତି ପବନ ପରସ୍ପର ସୌଭ୍ରାତୃତ୍ୱ ବନ୍ଧନରେ ନିବିଡ଼ ଭାବେ ବନ୍ଧା । ଏମାନଙ୍କର ବନ୍ଧୁତ୍ୱ ତୁମର ହୃତରାଜ୍ୟ ଲାଭ କରିବାର ପଥକୁ ସୁଗମ କରିଦେବ ପୁତ୍ର । ଦ୍ୱୈପାୟନଙ୍କ କଥାଗୁଡ଼ିକ ଖୁବ୍ ଧୀର ଶୁଭୁଥିଲା ।

ପାଣ୍ଡୁଙ୍କ ଅନ୍ତରରେ ଏକ ଆନନ୍ଦର ସ୍ରୋତ ବହିଗଲା । କହିଲେ, ଉତ୍ତମ ପ୍ରସ୍ତାବ ଆପଣଙ୍କର । ଆଦେଶ କରନ୍ତୁ ଆପଣ, ଆମେ କିଭଳି ଏମାନଙ୍କର କୃପା ଏବଂ ଅନୁଗ୍ରହ ଲାଭ କରିପାରିବା ।

ଦ୍ୱୈପାୟନ ଅସ୍ୱସ୍ତିବୋଧ କଲେ ଟିକିଏ । ଅବଶ୍ୟ ଖୁବ୍ କମ୍ ସମୟ ମଧ୍ୟରେ ଦ୍ୱିଧା କଟେଇ କହିଲେ, ପୁତ୍ର, ଦେବନୃପତିଗଣ ଅତ୍ୟନ୍ତ ସ୍ୱାର୍ଥପର । ସ୍ୱାର୍ଥ ଭିନ୍ନ ସେମାନେ ପାଦେ ମଧ ଅଗ୍ରସର ହୁଅନ୍ତି ନାହିଁ । ବର୍ତ୍ତମାନ ଯଦି ପ୍ରଶ୍ନ କରନ୍ତି, ତୁମେ କୋଉ ସ୍ୱାର୍ଥରେ, କାହାପାଇଁ ହୃତରାଜ୍ୟ ଫେରି ପାଇବାକୁ ଚାହଁ ? ତୁମର ଉତ୍ତରାଧିକାରୀ କିଏ ? କି ଉତ୍ତର ତୁମେ ଦେବ ? ପୁତ୍ରର ଜନକ ତୁମେ କୌଣସି ଦିନ ହେଇପାରିବ ନାହିଁ । ଏପରି କ୍ଷେତ୍ରରେ କେବଳ ତୁମପାଇଁ ସେମାନେ ବା କାହିଁକି ଆଗେଇ ଆସିବେ ? ତୁମକୁ ଗୋଟିଏ ଭବିଷ୍ୟତ୍ ସୃଷ୍ଟି କରିବାକୁ ହେବ କୁନ୍ତୀ ଏବଂ ମାଦ୍ରୀଙ୍କ ମାଧ୍ୟମରେ । କୌଣସି ଦ୍ୱିଧା ନ କରି ଏଇ ସମସ୍ତ ଦେବ-ନୃପତିଙ୍କ ଔରସରେ କ୍ଷେତ୍ରଜ ପୁତ୍ର ଉତ୍ପାଦନ କର । ଏଇସବୁ ପୁତ୍ରମାନଙ୍କ ପ୍ରତି ସ୍ନେହ ଓ ମମତାର ଟାଣରେ ସେମାନେ ତୁମ ପ୍ରତି ଅନୁରକ୍ତ ରହିବେ । ତୁମର ସମସ୍ତ କାର୍ଯ୍ୟରେ ସହାୟ ହେବେ । ସେମାନଙ୍କ ଛତ୍ରଛାୟା ତଳେ ତୁମେ ସର୍ବଦା ନିରାପଦ ମନେକରିବ । ତୁମର ନିରାପଦ ରାଜନୈତିକ ପ୍ରତ୍ୟାବର୍ତ୍ତନର ଆଉ କୌଣସି ବାଧା ରହିବ ନାହିଁ । ଧୃତରାଷ୍ଟ୍ର ହାତରୁ ରାଜକ୍ଷମତା ଖସି ପଡ଼ିବ । ସୁତରାଂ ତୁମେ ଦ୍ୱିଧା ନ କରି କୁନ୍ତୀ ଓ ମାଦ୍ରୀଙ୍କୁ ସେଇ ଭାବରେ ଉତ୍ସାହିତ କର । ମନେରଖ ଏହି କ୍ଷେତ୍ରଜ ପୁତ୍ରମାନେ ଦେବତାମାନଙ୍କର ସହାୟତା ଓ ଆଶୀର୍ବାଦରୁ ଦିନେ ସର୍ବବିଦ୍ୟାରେ ପାରଦର୍ଶୀ ହୋଇ ପୃଥିବୀ ଶାସନ କରିବେ ।

ପାଣ୍ଡୁଙ୍କର ସମସ୍ତ ଉତ୍ସାହ ଓ ଆନନ୍ଦ ମୁହୂର୍ତ୍ତକରେ ଫୁତ୍‌କାରରେ ଲିଭିଗଲା । ଭ୍ରୂକୁଞ୍ଚନ କରି ଦ୍ୱୈପାୟନଙ୍କ ଆଡ଼କୁ ଚାହିଁ ରହିଲେ ସେ ନିର୍ବୋଧଙ୍କ ଭଳି । ବିମର୍ଷତା ଛାଇଗଲା ମୁଖମଣ୍ଡଳରେ । ବିଷଣ୍ଣ, ଗମ୍ଭୀର ଆଖିର ଦୃଷ୍ଟିରେ ଯନ୍ତ୍ରଣାର ଅନ୍ଧକାର ଘନୀଭୂତ ହେବାକୁ ଲାଗିଲା । ନାନାବିଧ ଅବ୍ୟକ୍ତ ଅନୁଭୂତିର ମିଶ୍ରଣରେ ଜଟିଳ ହୋଇପଡ଼ିଲା ଚେତନା । ମନର ଉତ୍ତେଜନାରେ ପାଣ୍ଡୁ ଦୀର୍ଘଶ୍ୱାସ ଛାଡ଼ିଲେ । ଖୁବ୍ ଅବସନ୍ନ ମନେ କରୁଥିଲେ ସେ ନିଜକୁ । ନିର୍ବୀର୍ଯ୍ୟର ଆତ୍ମଗ୍ଲାନିରେ ମନ ଓ ଶରୀର ପୋଡ଼ିଜଳି ଯାଉଥିଲା । ପୃଥିବୀଟା ତାଙ୍କ ପାଇଁ ଭୟଙ୍କର ଗୋଟାଏ ଜଙ୍ଗଲ ଭଳି ମନେହେଲା । ଭାବିବାକୁ ଯାଇ ପୁଣି ସେ ଚିନ୍ତିତ ହୋଇପଡ଼ିଲେ । ମନକୁ ମନ କହିଲେ, କିଛି ତ ସାଥିରେ ଯାଏନା, ସବୁତକ ଏଠି ରଖିଯିବାକୁ ହୁଏ । ତେବେ ମୋର ମୋର ବୋଲି ଏତେ ମୋହ କାହିଁକି ? ଦେହ ଅବସାନ ପରେ ଏସବୁ ତ କିଛି ରହେ ନାହିଁ । ପ୍ରାଗୈତିହାସିକ ଯୁଗର ମଣିଷର ନିଜର ବୋଲି କିଛି ନ ଥିଲା । ନିଜର ବିଳାସ ସେ ଶିଖି ନଥିଲା ସେତେବେଳେ । ମଣିଷ ତାର ପିତୃ ପରିଚୟ ପର୍ଯ୍ୟନ୍ତ ଜାଣୁ ନଥିଲା । ମଣିଷ ସଭ୍ୟ ହେବା ପରେ ହିଁ ଯେତିକି ଅସୁବିଧା ଓ ଗଣ୍ଡଗୋଳ ହେଉଛି । ବର୍ତ୍ତମାନ ତାର ବନ୍ୟ ଜୀବନକୁ ସେ ଭୁଲି ପାରିନି । ବଣ ଜଙ୍ଗଲର ଅଲିଖିତ ଆଇନ ମଣିଷର ସଭ୍ୟ ସମାଜରେ ସେଇମିତି ଅଛି ଏବଂ ରହିବ ମଧ୍ୟ । ତା'ହେଲେ ଦ୍ୱିଧା କାହିଁକି ? ତାଙ୍କୁ ମଧ୍ୟ ଜୀବନ୍ମୃତ ହୋଇ ବଞ୍ଚିବାକୁ ହେବ । ଏଭଳି ବଞ୍ଚି ରହିବାର କୌଣସି ଅର୍ଥ ନାହିଁ । ସଂସ୍କାର, ମିଛକଥା । ସେ ନିଜେ ତ କ୍ଷେତ୍ରଜ ପୁତ୍ର ।

ପାଣ୍ଡୁ ଅନ୍ଧକାର ଭିତରେ ବ୍ୟାସଦେବଙ୍କ ମୁହଁକୁ ଚାହିଁ ପ୍ରେତ ଭଳି ହସିଲେ ଏବଂ ସ୍ତିମିତ କଣ୍ଠରେ କହିଲେ, "ଏହାହିଁ ମୋର ଭାଗ୍ୟଲିପି । ଏଥିରେ ଆଉ ଆପତ୍ତି କରିବାପାଇଁ କିଏ ଅଛି ?"

ସ୍ତବ୍‌ଧତା ନଇଁ ଆସିଲା ଏଥର । ପଞ୍ଚମୀର ଚନ୍ଦ୍ର ଅସ୍ତ ହୋଇଯାଇଥିଲା । ଦୃଷ୍ଟି ସମ୍ମୁଖରେ ବର୍ତ୍ତମାନ ଅତଳ ଅନ୍ଧକାର । ମସ୍ତକ ଉପରେ କେବଳ ଆକାଶଭରା ନକ୍ଷତ୍ର ।

ଏଣିକି ହସ୍ତିନାପୁରରେ ରାଜପ୍ରାସାଦ ଭିତରେ ସଂଘର୍ଷର ଏକ ଆବର୍ତ୍ତ ରଚନା କରିବାରେ ଦ୍ୱୈପାୟନ ବିଶେଷ ମନଯୋଗ କଲେ । ଧୃତରାଷ୍ଟ୍ରଙ୍କ ମନରେ ଦୁଃଶ୍ଚିନ୍ତା, ଉଦ୍‌ବେଗ, ଉତ୍କଣ୍ଠା ଏବଂ ଭୟକୁ ପ୍ରବଳରୁ ପ୍ରବଳତର କରିବା ହିଁ ତାଙ୍କର ଲକ୍ଷ୍ୟ ଥିଲା । ଧୃତରାଷ୍ଟ୍ରଙ୍କ ମନର ଗଭୀରତମ ପ୍ରଦେଶରେ ବହିର୍ଘଟଣାର ସଂକଟ ଓ ସଂଘାତ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଏକ ଭୟଙ୍କର 'ବିଷରେ ବିଷ' ନୀତିର ସେ ଅବଲମ୍ବନ କଲେ । ଧୃତରାଷ୍ଟ୍ରଙ୍କ ମାନସିକ ଶକ୍ତିକୁ ବେଶି ମାତ୍ରାରେ ନଷ୍ଟ କରିଦେବା ଏବଂ ଆସନ୍ନ ସଂଘାତର ବିଜୟକୁ ସଂପୂର୍ଣ୍ଣ ଓ ନିଶ୍ଚିତ କରିବା ପାଇଁ ଦ୍ୱୈପାୟନ କୁନ୍ତୀଙ୍କ ପୁତ୍ରଲାଭର ସମ୍ବାଦ ବିଦୁର ମାଧ୍ୟମରେ ରାଜଅନ୍ତଃପୁରରେ ପରିବେଷଣ କଲେ, ପରିବେଷଣ କଲେ ଏକାବେଳକେ ପାରିବାରିକ ଜୀବନ ଭିତରେ ।

ଗାନ୍ଧାରୀ ଓ ଧୃତରାଷ୍ଟ୍ରଙ୍କ ମନର ପ୍ରତିକ୍ରିୟା ଭଲଭାବେ ଅନୁଧ୍ୟାନ କରିବାପାଇଁ ଉଭୟଙ୍କ ସମ୍ମୁଖରେ ବିଦୂର କହିଲେ- 'ମହାରାଣୀ ! ଗୁପ୍ତଚର ମୁଖରୁ ଜାଣିବାକୁ ପାଇଲି ଯେ, ଶତଶୃଙ୍ଗ ପର୍ବତରେ ପାଣ୍ଡୁ ଓ ପାଣ୍ଡୁପତ୍ନୀ କୁନ୍ତୀଙ୍କର ଏକ ପୁତ୍ରସନ୍ତାନ ଲାଭ ହେଇଛି । ଗାନ୍ଧାରୀ ଅକପଟ ବିସ୍ମୟ ପ୍ରକାଶ କରି କହିଲେ, 'କୁନ୍ତୀର ପୁତ୍ରଲାଭ ହୋଇଛି ? କ'ଣ ତୁମେ କହୁଛ ଦେବର ? ପାଣ୍ଡୁତ... ଶୁଣିଛି... ।'

ବିଦୂର ଗାନ୍ଧାରୀଙ୍କର ଭାବାନ୍ତର ଲକ୍ଷ୍ୟ କରି ମୃଦୁମୃଦୁ ହସିଲେ । କହିଲେ, ଆପଣଙ୍କ ଅନୁମାନ ସତ୍ୟ ମହାରାଣୀ । ତେବେ ଏଥିରେ ବିସ୍ମୟ ହେବାର କିଛି ନାହିଁ । କ୍ଷେତ୍ରଜ ପୁତ୍ର ଉତ୍ପାଦନ କରିବାରେ ତ କୌଣସି ବାଧା ନାହିଁ ।

ମୁହୂର୍ତ୍ତକ ପାଇଁ ଗାନ୍ଧାରୀ ଗମ୍ଭୀର ହେଇଗଲେ । କେମିତି ଗୋଟାଏ କ୍ଳାନ୍ତ ଓ ଅବସନ୍ନ ଲାଗୁଥିଲା ତାଙ୍କୁ । ହତାଶ କଣ୍ଠରେ କହିଲେ, ନାରୀଟିଏ; କଳଙ୍କର ଭୟ ନାହିଁ ? କ୍ଷେତ୍ରଜପୁତ୍ର ପାଇଁ ମଧ୍ୟ ଗୋଟାଏ ନିୟମ ଅଛି । ଏହା ତ ଆଉ କୁନ୍ତୀର ନିଜ ଖୁସିବାସି ଇଚ୍ଛାର କଥା ନୁହେଁ ।

ଭିତରେ ଭିତରେ ଧୃତରାଷ୍ଟ୍ର ଟିକିଏ ଅଧୈର୍ଯ୍ୟ ହେଇପଡୁଥିଲେ । ତାଙ୍କର ସ୍ତବ୍ଧ-ଶାନ୍ତ, ନିସ୍ପୃହ, ସ୍ଥିର ଆଖି ଦୁଇଟିରେ ଦେଖି ନ ପାରିବାର ଶୂନ୍ୟଦୃଷ୍ଟି ନେଇ ବିଦୂର ଆଡ଼କୁ ଚାହିଁ ରହିଥିଲେ । ଉଦ୍‌ଗ୍ରୀବ ଉତ୍କଣ୍ଠାରେ ଛାତି ଭିତରଟା ଶୁଖି କଳାକାଠ ହେଇଯାଇଥିଲା । ତାଙ୍କ ମନରେ ଆଉ ଏକ ପ୍ରକାରର ଭୟ ସଂଚାର ହେଲା । ଦୂର ଭବିଷ୍ୟତରେ କୁନ୍ତୀର ଏଭଳି ଅନେକ ଅବାଞ୍ଛିତ ପୁତ୍ର ଯଦି ହୁଅନ୍ତି, ତେବେ ଏହି ରାଜ୍ୟର ଏବଂ ପରିବାରର ଗୋଟାଏ କିଛି ସମସ୍ୟା ନିଶ୍ଚେ ଉପୁଜିବ । ଧୃତରାଷ୍ଟ୍ରଙ୍କର ଶଙ୍କାକୁଳ ମନରେ ମୁହୂର୍ତ୍ତ ମୁହୂର୍ତ୍ତକରେ ପ୍ରଶ୍ନମାନ ମୁଣ୍ଡ ଟେକିଲା । ଗୋଟାଏ ପରେ ଗୋଟାଏ ପ୍ରଶ୍ନ ସେ କରିଚାଲିଲେ ନିଜକୁ । ଆଖିପତାରେ, ଭ୍ରୂଲତା ଆଉ କପୋଳ ଦେଶରେ ଉଦ୍‌ବେଗ ଓ ଦୁଃଶ୍ଚିନ୍ତାର ସ୍ପଷ୍ଟ ଚିହ୍ନ ଘନେଇ ଉଠୁଥିଲା । ଅନେକ କ୍ଷଣ ପରେ ଦୀର୍ଘଶ୍ୱାସ ଛାଡ଼ି ସେ କହିଲେ, 'ସେଇଟା ହିଁ ତ ସମସ୍ୟା ରାଣୀ । ପାଣ୍ଡୁ ସ୍ୱେଚ୍ଛାରେ ସବୁ ଛାଡ଼ିଛୁଡ଼ି ବନବାସୀ ହେବାରୁ ମୁଁ ନିଶ୍ଚିନ୍ତ ହୋଇଯାଇଥିଲି । ଭାବିଥିଲି ବୋଧହୁଏ ନିଷ୍କଣ୍ଟକ ହେଇଗଲି । କିନ୍ତୁ ଏଇଟା ତ ଆଉ ଗୋଟିଏ ନୂଆ କଣ୍ଟା ଦେଖାଗଲାଣି ଜୀବନରେ । ସଂପର୍କର ଶେଷ ସୂତାରେ ବନ୍ଧା ଏଇ କଣ୍ଟାଫୁଲଟି ତୁମର ଓ ମୋର ଉଭୟଙ୍କ ଛାତିରେ ବିଦ୍ଧ ହୋଇ କେବଳ ରକ୍ତକ୍ଷରଣ କରିବ ରାଣୀ । ତା'ପରେ କେମିତି ଗୋଟାଏ ବିସ୍ମୟବୋଧରେ ଆଚ୍ଛନ୍ନ ହୋଇ ବିଦୂରଙ୍କୁ ପ୍ରଶ୍ନ କଲେ- କାହା ଔରସରେ କୁନ୍ତୀ ପୁତ୍ରଲାଭ କରିଛି ଜାଣିଛ ବିଦୂର ? ବିଦ୍ୟୁତ୍‌ର ତରଙ୍ଗ ଖେଳିଗଲା ବିଦୂରଙ୍କ ଶରୀରରେ । ଆଉ କେହି ଜାଣନ୍ତୁ ଅଥବା ନ ଜାଣନ୍ତୁ, ସେ ତ ଜାଣନ୍ତି ଯେ, ଏ ପୁତ୍ରସନ୍ତାନ ତାଙ୍କର । ପ୍ରଥମେ ପିତା ହେବାର ସୁଖାନୁଭୂତିରେ ଅନେକ ସମୟ

ପର୍ଯ୍ୟନ୍ତ ତାଙ୍କ ମନହୃଦୟ ମଗ୍ନ ହେଇଯାଇଥିଲା । ଇଚ୍ଛା ହେଉଥିଲା, ଧୃତରାଷ୍ଟ୍ରଙ୍କ ମୁହଁ ଉପରେ ଚିତ୍କାର କରି କହିଦେବେ- 'ଏଇ ପୁତ୍ର ମୋର । ତାକୁ ମୁଁ ଆଣିଛି ଏଇ ପୃଥିବୀକୁ । ତାକୁ ଆଣିବା ପାଇଁ ନିଜ ପାଖରେ ମୁଁ ନିଜକୁ ନିଃଶେଷ କରି ଅନୁରୋଧ କରିଛି । ତାର ଶରୀର, ଆତ୍ମା, ଅସ୍ଥିମଜ୍ଜା ସବୁ ମୋରି ବୀର୍ଯ୍ୟରେ ଗଠିତ । ଗୋଟାଏ ଅଦ୍ଭୁତ ସୁଖକର ଉଲ୍ଲାସରେ ଏବଂ ଅବ୍ୟକ୍ତ ଆନନ୍ଦରେ ବିଦୂରଙ୍କ ନିଃଶ୍ୱାସ ରୁଦ୍ଧ ହୋଇଯାଉଥିଲା ଯେମିତି । କଳ୍ପନାରେ ସତେକି ସେ ଶିଶୁଟିର ମସ୍ତକ ଆଘ୍ରାଣ କଲେ । ରକ୍ତମାଂସର ପିଣ୍ଡୁଳାଟିକୁ ଛାତିରେ ଜାକି ଧରି ଆଦର କଲେ, ଚୁମ୍ବନ କଲେ । ମୁହୂର୍ତ୍ତକର ଏଇ ନିରବତା ଭିତରେ ସେଇ ଅନିର୍ବଚନୀୟ ସୁଖ ସହସ୍ରଧାରା ହୋଇ ବହିଆସି ତାଙ୍କୁ ପ୍ଲାବିତ କରିଦେଲା । ଅଫୁରନ୍ତ ଆନନ୍ଦର ଘୋଷବାଦ୍ୟ ବାଜିଉଠିଲା ତାଙ୍କ ସମଗ୍ର ଦେହମନରେ । କିନ୍ତୁ ବିଦୂର ଚଟ୍‌କରି ନିଜ ମନର ବିସ୍ମୟକୁ ଗୋପନ କରି ଧୃତରାଷ୍ଟ୍ରଙ୍କୁ ଇତସ୍ତତଃ ହେଇ କହିଲେ, ଶୁଣିଛି ଦେବଲୋକର ଧର୍ମରାଜଙ୍କୁ ପାଣ୍ଡୁ ନିଯୋଗ କରିଥିଲେ, କ୍ଷେତ୍ରଜପୁତ୍ର ପାଇଁ ।

ସବିସ୍ମୟରେ ଉଚ୍ଚାରଣ କଲେ ଧୃତରାଷ୍ଟ୍ର : 'ଧର୍ମରାଜଙ୍କୁ'–

ବିଦୂରଙ୍କ ଅଧରରେ ହସର ତରଙ୍ଗ ଖେଳିଗଲା । କହିଲେ- ତାହାହିଁ ତ ଶୁଣିଛି । ଶତଶୃଙ୍ଗ ପର୍ବତରୁ ଯେଉଁସବୁ ଋଷି, ବ୍ରାହ୍ମଣ ଫେରିଛନ୍ତି, ସେମାନଙ୍କୁ ନିଜେ ପାଣ୍ଡୁ ଏକଥା କହିଛନ୍ତି । କୁନ୍ତୀର ନାରୀ ଜନ୍ମକୁ ସାର୍ଥକ କରିବା ତାଙ୍କର ପ୍ରଥମ କର୍ତ୍ତବ୍ୟ । କୁନ୍ତୀ ଭଳି ମହୀୟସୀ ନାରୀର ଉପଯୁକ୍ତ ପୁରୁଷ ରୂପେ ସେ ଧର୍ମରାଜଙ୍କୁ ନିର୍ବାଚନ କରିଛନ୍ତି । ସବୁ ଶିଶୁ ନିଷ୍ପାପ । ତେବେ ପୃଥିବୀରେ ପାପପୁଣ୍ୟ ଭଲମନ୍ଦ କଥା ତ ରହିଛି । ଶିଶୁଟିକୁ କେହି ଯେମିତି ଅଶୁଭ ମନେ ନକରେ ସେଥିପାଇଁ ଧର୍ମରାଜଙ୍କୁ ଆମନ୍ତ୍ରଣ କରିଛନ୍ତି ।

ଏପରି ଭାବରେ ସତମିଛ ମିଶେଇ କଥାଗୁଡ଼ିକ କହିପାରିଲେ ବୋଲି ବିଦୂର ନିଜ ଭିତରେ କିଞ୍ଚିତ୍ ତୃପ୍ତି ଅନୁଭବ କଲେ ।

ସହସା ଧୃତରାଷ୍ଟ୍ରଙ୍କ ମୁଖରେ କୌଣସି ଭାଷା ଫୁଟିଲା ନାହିଁ । ଭ୍ରୂଯୁଗଳର ମଧ୍ୟସ୍ଥଳ କୁଞ୍ଚି ହେଇଗଲା । ଲଲାଟର ମଧ୍ୟଶିରା ଫୁଲି ଉଠିଲା । ଆତଙ୍କିତ ସଂଶୟରେ ମୁହଁ ତାଙ୍କର ବିବର୍ଣ୍ଣ ଦିଶିଲା । ସତେଯେମିତି ସେ ବିଭ୍ରାନ୍ତ ହେଇପଡ଼ିଲେ । ତାଙ୍କ ପାଦତଳର ମାଟି କମ୍ପିଉଠିଲା ଭଳି ଲାଗିଲା । ଏକପ୍ରକାର ଅନ୍ୟରକମର ଅନୁଭୂତି ଏଇଟା ।

ବଜ୍ରାହତ ଭଳି ଅବାକ୍ ହୋଇ ଧୃତରାଷ୍ଟ୍ରଙ୍କ ମୁହଁ ଆଡ଼କୁ ମୁହଁକରି ବସିଥିଲେ ଗାନ୍ଧାରୀ । ବିଦୂରଙ୍କ କଥା ଶୁଣିବା ପରେ କିଛିକ୍ଷଣ ପାଇଁ ବୋଧହୁଏ ତାଙ୍କର ଶରୀରରେ ପ୍ରାଣ ନ ଥିଲା । ହୁଏତ ମୂର୍ଚ୍ଛା ଯାଇଥିଲେ । କିନ୍ତୁ ଧୃତରାଷ୍ଟ୍ରଙ୍କୁ ଅନେକକ୍ଷଣ ନିରବ ରହିବା ଦେଖି ସେ ଭୟାର୍ତ୍ତ ହେଇଉଠିଲେ । ପାଣ୍ଡୁଙ୍କୁ ତାଙ୍କର ଭୟ ନ ଥିଲା । ସେ ଜାଣିଥିଲେ ପାଣ୍ଡୁ କୌଣସିଦିନ ପୁତ୍ରର ଜନକ ହେଇପାରିବ ନାହିଁ । କୁନ୍ତୀ ସଂପର୍କରେ ମଧ୍ୟ ତାଙ୍କର

ବିଶେଷ ଆଗ୍ରହ ନ ଥିଲା । କାରଣ ସେ ନାରୀ । ସମାଜକୁ ତାର ଭୟ ଅଛି । କଳଙ୍କକୁ ଭୟ ଅଛି । ହେଲେ କୁନ୍ତୀ, ତାଙ୍କର ସବୁ ବିଚାର ଭାବନାକୁ ଓଲଟପାଲଟ କରିଦେଲା । ଗାନ୍ଧାରୀ ଦୂରଗ୍ରସ୍ତ ରୋଗୀ ଭଳି କମ୍ପିତ କଣ୍ଠରେ କହିଲେ, 'ଭ୍ରାତା ଦେବର ! ...ଏମିତି ତ କ୍ଷେତ୍ରଜ ପୁତ୍ର ହୁଏ ନାହିଁ, ଏଭଳି ଭାବରେ ନୁହେଁ । ପରିବାରର ସମସ୍ତେ ଏଥିରେ ସମ୍ମତି ଦେବା ଆବଶ୍ୟକ । ପାରିବାରିକ ଅନୁମୋଦନ ବ୍ୟତୀତ କ୍ଷେତ୍ରଜପୁତ୍ର ଉତ୍ପାଦନ କରାଯାଏନା ।

ଗାନ୍ଧାରୀଙ୍କର ଉଦ୍‌ବେଗର ଅର୍ଥ ଧୃତରାଷ୍ଟ୍ରଙ୍କୁ ଅଜ୍ଞାତ ନ ଥିଲା । କୁନ୍ତୀ ଯେ ଗୋଟାଏ ଅଘଟନ ଘଟାଇବାକୁ ଚାହୁଁଛି, ଧୃତରାଷ୍ଟ୍ର ସେକଥା ଦେଶ, କାଳ, ଅବସ୍ଥା ବିଚାର କରି ଉପଲବ୍ଧି କରିପାରୁଥିଲେ । ଘୋର ନିଶାରୁ ଉଠିଲା ଭଳି ଉଠି ଥମ୍‌ଥମ୍ ଗମ୍ଭୀର ଗଳାରେ କହିଲେ- 'ରାଣୀ, ତୁମଭଳି ମୁଁ ମଧ୍ୟ ଉଦ୍‌ବିଗ୍ନ । ଭାବି ଭାବି କୂଳକିନାରା କିଛି ପାଉନି ।'

ତେବେ ଏତିକି ବୁଝିପାରୁଛି ଯେ, ସିଂହାସନର ଉତ୍ତରାଧିକାର ନେଇ ପୁଣି ବୋଧହୁଏ ଆଉ ଗୋଟିଏ ସଂକଟ ଘନେଇ ଆସିବ । ପାଣ୍ଡୁ ପୁତ୍ର ଆଗ ଜନ୍ମ ହୋଇଥିବାରୁ ଆମ ପୁତ୍ରମାନଙ୍କର କୌଣସି ଅଧିକାର ରହିବନି ସିଂହାସନ ଉପରେ । କିଛି... କହୁ କହୁ ଧୃତରାଷ୍ଟ୍ର କେମିତି ଉଦାସ ଏବଂ ଅନ୍ୟମନସ୍କ ହେଇପଡ଼ିଲେ । କଣ୍ଠସ୍ୱର ଦବିଗଲା । ଅଦୂର ଭବିଷ୍ୟତରେ ପାଣ୍ଡୁପୁତ୍ରମାନଙ୍କୁ ଶାସନକ୍ଷମତା ଫେରେଇ ଦେବାର ଏକ କାଳ୍ପନିକ ଚିନ୍ତାରେ ସେ ମନେ ମନେ ଆଶଙ୍କିତ ଓ ଉଦ୍‌ବିଗ୍ନ ହେଇପଡ଼ିଲେ ।

ଏକ ଦୀର୍ଘଶ୍ୱାସ ତ୍ୟାଗ କରି ଗାନ୍ଧାରୀ ବିଦୂର ଆଡ଼କୁ ମୁହଁକରି ପଚାରିଲେ- ଦେବର, ତୁମେ ପାଣ୍ଡୁପୁତ୍ରଙ୍କ ସମ୍ବାଦ ଶୁଣି ଆନନ୍ଦିତ ହୋଇଛ... ନୁହେଁ କି ? ଗାନ୍ଧାରୀଙ୍କ ଜିଜ୍ଞାସା ଭିତରେ ସଂଶୟ ଫୁଟି ଉଠିଥିଲା । ତାଙ୍କ ଇଙ୍ଗିତପୂର୍ଣ୍ଣ ଉକ୍ତିର ତାତ୍ପର୍ଯ୍ୟ ବୁଝିବା ପାଇଁ କିଛି କଷ୍ଟ ହୋଇନଥିଲା ବିଦୂରଙ୍କର । କିନ୍ତୁ ସେ ଅଭ୍ୟାସବଶତଃ ଏଭଳି ଭାବରେ ମୁଣ୍ଡ ହଲେଇଲେ ଯେ, ଯାହାର ଅର୍ଥ ବହୁ ପ୍ରକାରେ ଓ ଅସ୍ପଷ୍ଟ ଜଣାଗଲା । କିନ୍ତୁ ଗାନ୍ଧାରୀ କିମ୍ବା ଧୃତରାଷ୍ଟ୍ର କେହି ତାଙ୍କର ଅଭିବ୍ୟକ୍ତି ଦେଖିପାରୁ ନ ଥିଲେ । ତେଣୁ ଖୁବ୍ ବିଷଣ୍ଣ ଭାବେ ଭାରାକ୍ରାନ୍ତ କଣ୍ଠରେ କହିଲେ, ରାଣୀ ଆପଣଙ୍କ ନିଃଶ୍ୱାସରେ ଅବିଶ୍ୱାସ, କଥାରେ ସଂଦେହ । କିନ୍ତୁ ଅଗ୍ରଜ ବାଲ୍ୟକାଳରୁ ମୋ'ଉପରେ ନିର୍ଭରଶୀଳ । ମୋ'ଉପରେ ତାଙ୍କର ଭରସା ବେଶି । ଆଖିରେ ଦେଖିପାରନ୍ତିନି ବୋଲି ଟିକିନିଖି ଭାବେ ମୁଁ ସବୁ କହିଯାଏ । କେଉଁଠି କଣ ହେଇଛି, କିଏ କଣ ଭାବୁଛି, କରୁଛି, କହୁଛି- ସେସବୁର ସାମଗ୍ରିକ ଛବି ଯଦି ତାଙ୍କ କାନରେ ନ ପକାଏ ତାହେଲେ ସେ ଭଲମନ୍ଦ ନିରୂପଣ କରିବେ କିପରି ? ଅଗ୍ରଜ ସ୍ୱଚକ୍ଷୁରେ ଦେଖିପାରନ୍ତିନି ବୋଲି, କୌଣସି କଥା ଗୋପନ ରଖି ମୁଁ କୁହେନା, ଲୁଚାଏନା । ଅନେକ ଭାବିଚିନ୍ତି, ଦେଖିଚାହିଁ ରାଜାଙ୍କୁ ସିଦ୍ଧାନ୍ତ ନେବାକୁ ହେଇଥାଏ । ମୋର ସେହି ବିଶ୍ୱସ୍ତତାକୁ

ଆପଣ ଏଭଳି ସଂଦେହ ଚକ୍ଷୁରେ ଦେଖିବେ ବୋଲି ମୁଁ ଭାବି ପାରୁନି ମହାରାଣୀ । ଆପଣଙ୍କ କଥାଗୁଡ଼ିକ ମୋ' ମନରେ ଭୀଷଣ ଆଘାତ କରିଛି ।

ବିଦୂର ଯେତେବେଳେ କହୁଥିଲେ, ସେତେବେଳେ ଧୃତରାଷ୍ଟ୍ର ନିଜ ଆସନରୁ ଉଠି ଚଞ୍ଚଳ ପଦରେ ପ୍ରକୋଷ୍ଠ ଭିତରେ ପଦଚାରଣା କରିବାକୁ ଲାଗିଲେ । ଛାତି ଭିତରେ ତାଙ୍କର ଝଡ଼ ବହି ଯାଉଥିଲା । ମନରେ କେତେ ପ୍ରକାର ଭାବନାର ଛବି ଭାସି ଯାଉଥିଲା । କିନ୍ତୁ ସେଇ ଗଭୀର ଗୋପନ କଥା ସବୁ କାହାକୁ ଜଣେଇବା ସମ୍ଭବ ନ ଥିଲା । ତେଣୁ ବିଦୂର କେବଳ ତାଙ୍କର ବାହାର ଅସ୍ଥିରତାକୁ ହିଁ ଦେଖିପାରୁଥିଲେ । ଗାନ୍ଧାରୀ ବୁଝିପାରିଲେ, ସେ ଗୋଟାଏ ବଡ଼ ଅପରାଧ କରି ପକାଇଛନ୍ତି । ନିର୍ମମ ଭୁଲ । ଲଜ୍ଜା ଆଉ ଆତ୍ମଗ୍ଳାନିରେ ତାଙ୍କର ଆଖି ଦୁଇଟିରେ ଲୁହଭରି ଆସିଲା । କିନ୍ତୁ ଚକ୍ଷୁ ବସ୍ତ୍ରାବୃତ ଥିବାରୁ ତାହା ବିଦୂର ଦେଖିପାରି ନ ଥିଲେ । ମୁହଁରେ, ଓଠରେ ଭୂଲତାରେ କ୍ରନ୍ଦନର ଚିହ୍ନ ଫୁଟି ଉଠିଥିଲା । ଦୁଇ ହାତରେ ଗାନ୍ଧାରୀ ମୁହଁ ଲୁଚାଇ କାନ୍ଦିବାକୁ ଲାଗିଲେ । ହେଲେ ଶବ୍ଦଟିଏ ଉଚ୍ଚାରିତ ହେଇ ନ ଥିଲା ପାଟିରୁ ।

ଅବାକ୍ ହେଇ ଏହି ଦୃଶ୍ୟକୁ ଚାହିଁ ରହିଥିଲେ ବିଦୂର । ଅପରାଧ ବୋଧରେ ଗାନ୍ଧାରୀ ଶେଷରେ କାନ୍ଦିଥିଲେ । ଭଗ୍ନ କଣ୍ଠରେ ବିକୃତ ସ୍ୱରରେ କହିଲେ, ଭ୍ରାତା ଦେବର, ଦୁର୍ଭାଗିନୀ ନାରୀ ମୁଁ, କହୁ କହୁ କଣ କହିପକାଇଲି ନିଜେ ବି ଜାଣିନି । ମୋ' ଦୋଷ ଧରିବନି ।' ତୁମକୁ ଦୁଃଖ ଦେବାପାଇଁ କିମ୍ୱା ଅପମାନିତ କରିବା ଉଦ୍ଦେଶ୍ୟରେ ଏସବୁ କିଛି କହିନି । ବିଶ୍ୱାସ କର, କୁନ୍ତୀର ପୁତ୍ର ହେବା ସଂବାଦରେ ମୁଁ ଖୁସି ହେଇପାରିନି । ଟିକିଏ ବି ଆନନ୍ଦ ହେଇନି ମୋର । ବରଂ ମୋର ଅନ୍ତର ବିଷାଦିତ ହେଇଛି । ମୋତେ କିଛି ଭଲ ଲାଗୁନି । ଭଲ ଚିନ୍ତା ବି କରିପାରୁନି । ଛାତି ତଳେ ସତେ ଯେମିତି କିଛି ଗୋଟାଏ ଭଙ୍ଗାଗଢ଼ା ଚାଲିଛି । ସବୁ ଯେମିତି ଗୋଳମାଳିଆ ହେଇଯାଉଛି । ମୁଣ୍ଡ ଠିକ୍ କାମ କରୁନି । ସ୍ୱପ୍ନଭଙ୍ଗର ଯନ୍ତ୍ରଣାରେ ଛାତି ମୋର ଫାଟିଯାଉଛି । ମୋ ସନ୍ତାନମାନଙ୍କର କୌଣସି ଭବିଷ୍ୟତ ଦେଖିପାରୁନି ମୁଁ । ସେମାନଙ୍କର ଆଉ ଭୂମିଷ୍ଠ ହେବାର କି ପ୍ରୟୋଜନ ଅଛି ? ନା, କୌଣସି ପ୍ରୟୋଜନ ନାହିଁ ସେମାନଙ୍କର ଏଇ ପୃଥିବୀରେ । ଗର୍ଭର ଭ୍ରୁଣକୁ ମୁଁ ଆଉ ପୃଥିବୀର ଆଲୁଅ ଦେଖାଇବାକୁ ଚାହେଁନା ।

ତା'ପରେ ଗାନ୍ଧାରୀ ଭୀଷଣ ଭାବେ ନିଜ ଉପରେ ଉତ୍‌କ୍ଷିପ୍ତ ହୋଇଉଠିଲେ । ଆଶା ଭଙ୍ଗର ନିଦାରୁଣ ଯନ୍ତ୍ରଣା ଆଉ ଦହନ ତୀବ୍ର ଓ ଭୟଙ୍କର ହେଇଉଠିଲା । ଗର୍ଭ ଉପରେ ହିଁ ତାଙ୍କର ଆକ୍ରୋଶ । ବାରମ୍ୱାର ସେ ଆଘାତ କରିବାକୁ ଲାଗିଲେ ଗର୍ଭକୁ ଦୁଇ ହାତରେ ।

ବିବ୍ରତ ବିଦୂରଙ୍କୁ ଅସ୍ୱସ୍ତି ଲାଗିଲା । ପ୍ରବୋଧନା ଦେବାକୁ ଯାଇ ଗାନ୍ଧାରୀଙ୍କୁ ସେଥିରୁ ନିରସ୍ତ କରିବାକୁ ପ୍ରୟାସ କଲେ । ନଇଁପଡ଼ି ଧରିବାକୁ ଚେଷ୍ଟା କଲେ । ତାଙ୍କର ତପ୍ତ ନିଃଶ୍ୱାସ ବିଦୂରଙ୍କ କଣ୍ଠଦେଶରେ ଲାଗିଲା । କେଶପାଶ ମୁକୁଳା ହୋଇ ଗାନ୍ଧାରୀଙ୍କ ମୁଖପଦ୍ମକୁ ଢାଙ୍କି ପକେଇଥିଲା । ଘନଘନ ନିଃଶ୍ୱାସ ନେଉଥିଲେ ସେ ଏବଂ ଗୋଟିଏ କାତର ଯନ୍ତ୍ରଣାର ସ୍ୱର ତାଙ୍କ ମୁଖ ଦେଇ ଫୁଟି ଉଠୁଥିଲା । ବ୍ୟସ୍ତବିବ୍ରତ ହୋଇ ବାରମ୍ବାର ବିଦୂର ଡାକୁଥିଲେ- ରାଜମହିଷୀ । ରାଜମହିଷୀ । ଏ ପ୍ରକାର ଉନ୍ମାଦନା ଆପଣଙ୍କୁ ଶୋଭାପାଉନି । ଜନନୀ କେବେ ଅଧୀର ହୁଏନା । ଅନେକ ଧୈର୍ଯ୍ୟ, ସହିଷ୍ଣୁତାର ଉତ୍ତରଣ ହେଲେ ଯାଇ ଜଣେ ଜନନୀ ହୁଏ । ଏକଥା ଆପଣଙ୍କଠାରୁ ଅଧିକ କିଏ ଜାଣେ ।

ଧୃତରାଷ୍ଟ୍ର ଅସହାୟଙ୍କ ଭଳି ପାଖରେ ବସି ତାଙ୍କ ଦେହରେ ହାତ ବୁଲାଉଥିଲେ । ଶାନ୍ତ କରୁଥିଲେ ତାଙ୍କୁ । ଦରଦ ଓ ସହାନୁଭୂତିରେ ତାଙ୍କର କଣ୍ଠସ୍ୱର ଭିଜି ଯାଇଥିଲା । ଆର୍ତ୍ତକଣ୍ଠରେ କହିଲେ, ରାଣୀ, ତୁମେ ଶାନ୍ତ ହୁଅ । ଏଭଳି ଭାବରେ ଗର୍ଭନଷ୍ଟ କଲେ ତୁମେ ମହାପାତକିନୀ ହେବ । ଈଶ୍ୱର ତୁମକୁ କ୍ଷମା କରିବେନି । ପ୍ରଥମ ସନ୍ତାନ ଆସୁଛି ତୁମର । କେତେ ସ୍ୱପ୍ନ ଆମ ଦୁହିଁଙ୍କର । କେତେ ଆଶା, କେତେ କଳ୍ପନା ଅଛି କୁହତ ? ତୁମେ ନିଜ ହାତରେ ତାକୁ ନିର୍ମୂଳ କରି ଦେଉଛ ? ତୁମେ କ'ଣ ଶେଷରେ ପାଗଳ ହେଇଗଲ ରାଣୀ ?

ଗାନ୍ଧାରୀ କ୍ଳାନ୍ତରେ ସଁସଁ ହେଇଯାଉଥିଲେ । ଖୁବ୍ ଜୋରରେ ଘନଘନ ନିଃଶ୍ୱାସ ପଡୁଥିଲା ତାଙ୍କର । ଭୟଙ୍କର ଯନ୍ତ୍ରଣାରେ ମୁହଁ ନୀଳ ପଡ଼ି ଯାଉଥିଲା । ନାକର ହୀରାଫୁଲ କମ୍ପି ଉଠିଲା । ଅବ୍ୟକ୍ତ ଯନ୍ତ୍ରଣାରେ ଥରିଉଠିଲା ସମଗ୍ର ଶରୀର । ମଝିରେ ମଝିରେ ଛୁଞ୍ଚି ଫୋଡ଼ିଲା ଭଳି ଅସହ୍ୟ ଯନ୍ତ୍ରଣାରେ ଶରୀର ବାଙ୍କି ଯାଉଥିଲା । ନିଃଶ୍ୱାସ ପ୍ରଶ୍ୱାସରେ ଗୋଟାଏ ଅସ୍ଫୁଟ କ୍ଳାନ୍ତ ସ୍ୱର ଫୁଟିଉଠିଲା । ଶରୀରରେ ତୀବ୍ର ଏକ ଅନୁଭୂତିର ତରଙ୍ଗ ଖେଳିଗଲା । ଯନ୍ତ୍ରଣାମଥିତ ରୁଦ୍ଧ ସ୍ୱରରେ ଗାନ୍ଧାରୀ କହିଲେ- ମୁଁ ଆଉ ସହ୍ୟ କରି ପାରୁନି । ବଞ୍ଚିବିନି ଆଉ । ଭୀଷଣ କଷ୍ଟ ହେଉଛି ମୋର । ନିଃଶ୍ୱାସ ବନ୍ଦ ହେଇଯାଉଛି । ଆମ ସନ୍ତାନ ପୃଥିବୀର ଆଲୁଅ ଦେଖିପାରିବନି ଆଉ । ରାଜମାତା ହେବାର ସ୍ୱପ୍ନ ମୋର ଧୂଳିସାତ୍ ହେଇଗଲା । କଣ ନେଇ ମୁଁ ବଞ୍ଚିବି ?

ଧୃତରାଷ୍ଟ୍ରଙ୍କ ବାହୁରେ ମଥାରଖି କାନ୍ଦିବାକୁ ଲାଗିଲେ ଗାନ୍ଧାରୀ । ସହସା ଗୋଟିଏ ତୀବ୍ର ଯନ୍ତ୍ରଣାରେ ଆର୍ତ୍ତ ହେଇଉଠିଲା କଣ୍ଠସ୍ୱର । କୁହ, କଣ ନେଇ ବଞ୍ଚିବି ମୁଁ, କି ଆଶାରେ ବଞ୍ଚିରହିବି ? ଯନ୍ତ୍ରଣାର ଆର୍ତ୍ତ ତୀବ୍ର ହାହାକାରରେ ଝଂକୃତ ହେଇଉଠିଲା ତାଙ୍କ କଣ୍ଠରେ ।

କ୍ରମେ ଶରୀର ତାଙ୍କର ଅବସନ୍ନ ହେଇଆସିଲା । ଧୀରେ ଧୀରେ ଅବଲୁପ୍ତ ହେଲା ଚେତନା । ବିସ୍ମୃତି ଭିତରେ ତଳେଇ ଯାଉ ଯାଉ ସେ ଅନୁଭବ କଲେ, ଗୋଟାଏ ଉଷ୍ମତରଳ ପଦାର୍ଥ ନରମ ମାଂସର ପିଣ୍ଡୁଳା ସଙ୍ଗେ ମିଶି ତାଙ୍କ ଗର୍ଭ ଦେଶରୁ ସ୍ଖଳିତ ହେଇ ବାହାରି ଆସିଲା ବାହାରକୁ ।

ଶ୍ୱେତ ମର୍ମରରେ ଚଟାଣ ଲାଲ ହୋଇଗଲା ରକ୍ତରେ ।

ବିଦୂର ବ୍ୟସ୍ତ ବିବ୍ରତ ହୋଇ କହିଲେ- ସର୍ବନାଶ ମହାରାଜ, ରାଜମହିଷୀଙ୍କର ଗର୍ଭପାତ ହୋଇଛି ।

ଚମକି ଉଠିଲେ ଧୃତରାଷ୍ଟ । ମସ୍ତକରେ କରାଘାତ କରି କହିଲେ, ହେ ଈଶ୍ୱର ! କ'ଣ କଲ ତୁମେ !

କିଛିକ୍ଷଣ ପାଇଁ ବିଦୂର ଠିଆହେଲେ ଓ ତା'ପରେ ପ୍ରସ୍ଥାନ କଲେ ନିରବରେ ।

ବ୍ୟାସଦେବଙ୍କ ଅସାଧାରଣ ଚିକିତ୍ସାରେ ଗାନ୍ଧାରୀ ସୁସ୍ଥ ହୋଇଉଠିଲେ । ତାଙ୍କର ଗର୍ଭରକ୍ଷା ହୋଇଗଲା ଏଥର । ଯଥା କାଳରେ ଏକ ସୁନ୍ଦର ସ୍ୱାସ୍ଥ୍ୟବାନ୍ ପୁତ୍ର ଜନ୍ମ ଦେଲା । କିନ୍ତୁ ଦିନଟା ପ୍ରାକୃତିକ ଦୁର୍ଯୋଗରେ ପରିପୂର୍ଣ୍ଣ ଥିଲା । ପ୍ରକୃତିଲୋକରେ ଅଶାନ୍ତ, ଅସ୍ଥିରତା ଗାନ୍ଧାରୀଙ୍କୁ ବିଚଳିତ କରିଦେଇଥିଲା । ନାରୀର ନିଜସ୍ୱ ସଂସ୍କାରରେ କେତେଗୁଡ଼ିଏ ଅମଙ୍ଗଳ ଆଶଙ୍କା ଏବଂ ଅଶୁଭ ଭାବନା ତାଙ୍କୁ କୋରି କୋରି ଖାଇବାକୁ ଲାଗିଲା । ଅକସ୍ମାତ୍ ମନେପଡ଼ିଗଲା ଏକ ଭୟଙ୍କର ଦୁର୍ଯୋଗମୟ ଅନ୍ଧକାର ରାତିରେ ଯଦୁପତି ଶ୍ରୀକୃଷ୍ଣ ଜନ୍ମଗ୍ରହଣ କରିଥିଲେ । ସେଦିନ ସହିତ ଆଜିର କୌଣସି ପ୍ରଭେଦ ନାହିଁ । ଏମିତି ଭାବି ଗୋଟାଏ ସ୍ୱସ୍ତିର ବିଶ୍ୱାସରେ ମନଟା ଆଶ୍ୱସ୍ତ ହେଲା । ଗାନ୍ଧାରୀ ପୁତ୍ରର ମୁଖ ଆଡ଼କୁ ଦୃଷ୍ଟି ନିବଦ୍ଧ କରି ଅନେକ ସମୟ ଚୁପ୍‌ଚାପ୍ ବସିରହିଲେ । ସମସ୍ତ ଶରୀରରେ ଅବସାଦର କ୍ଲାନ୍ତି । ଆଖିବୁଜି ହୋଇଯାଉଥିଲା ଅବସନ୍ନତାରେ । ତଥାପି ଗୋଟାଏ ଅଦ୍ଭୁତ ସୁଖର ଉଲ୍ଲାସରେ ହୃଦୟ ତାଙ୍କର ଫୁଲି ଉଠୁଥିଲା । ଚୁମ୍ବକ ଭଳି ଏକ ଅଦୃଶ୍ୟ ଆକର୍ଷଣକୁ ସେ ଛାତି ଭିତରେ ଅନୁଭବ କଲେ । ବାତ୍ସଲ୍ୟମମତା ଉତୁରି ଉଠିଲା । ତାକୁ ପ୍ରଶମିତ କରିବାପାଇଁ ଶିଶୁଟିକୁ ସେ ଛାତିରେ ଜାକି ଧରିଲେ । ତୁଳାଭଳି କୋମଳ, ନରମ ମୁହଁଟି ଉପରେ ମୁହଁ ରଖିଲେ, ଗାଲ ଉପରେ ଗାଲ ରଖି । ସମଗ୍ର ଶରୀରକୁ ଥରେ ଆଘ୍ରାଣ କରିନେଲେ ମନପୂରେଇ... ଛାତିର ସ୍ପନ୍ଦନ ଶୁଣିଲେ ଆନନ୍ଦରେ । ଆଦର କଲେ । ଚୁମ୍ବନ ପରେ ଚୁମ୍ବନ କୁଢ଼େଇ ଦେଇ ଗଲେ ତାର କୋମଳ ଶରୀର ଉପରେ । ଶିଶୁଟି ଆଡ଼କୁ ଚାହିଁ ମନେ ମନେ କେତେ କଣ କହିଗଲେ ଗାନ୍ଧାରୀ । ଯାର କିଛି ଅର୍ଥ ନାହିଁ । ଉତ୍ତର ପାଇଁ ପ୍ରତୀକ୍ଷା ନାହିଁ । ତଥାପି ଏ ପ୍ରକାର ପ୍ରଗଲ୍‌ଭତା ଭିତରେ ସବୁ ଜନନୀଙ୍କ ହୃଦୟ ଏକ ଅନିର୍ବଚନୀୟ ଆନନ୍ଦ ଓ ସୁଖାନୁଭୂତିରେ ଉଲ୍ଲସି ଉଠେ । ଗାନ୍ଧାରୀ ମଧ୍ୟ ସେହିଭଳି ଏକ ସୁଖ ଭିତରେ ଆବିଷ୍ଟ ହୋଇଯାଇଥିଲେ । ତାଙ୍କର ବାହ୍ୟଚେତନା ସତେକି ଲୁପ୍ତ ହୋଇଯାଇଥିଲା ।

ତେଣୁ ହିଁ ଧୃତରାଷ୍ଟ୍ରଙ୍କର ନିଃଶବ୍ଦ ପ୍ରବେଶର ସୂଚନା ସେ ଜାଣିପାରିଲେ ନାହିଁ । ଧୃତରାଷ୍ଟ୍ରଙ୍କ ଡାକରେ ତାଙ୍କର ତନ୍ମୟତା ଭାଙ୍ଗିଗଲା । ଯଥା ଶୀଘ୍ର ଆଖିରେ ବସ୍ତ୍ରାବରଣ ଦେଇ ସେ ଉତ୍ତର ଦେଲେ- ସ୍ୱାମୀ, ତୁମେ ଆସିଛ ?

ରାଣୀ, ଏତେବଡ଼ ଗୋଟାଏ ଆନନ୍ଦର ଖବର ଶୁଣି କେମିତି ମୁଁ ଚୁପ୍ ହେଇ ବସିଥାନ୍ତି ? ମଣିଷର ଜୀବନଟା ବଡ଼ ଅଦ୍ଭୁତ । ଦିନେ ଯାହାକୁ ଅବାଞ୍ଛିତ ମନେକରି ଜଠରରେ ହତ୍ୟା କରିବାକୁ ଚାହିଁଥିଲା, ଆଜି ତାକୁ ହାତରେ ପାଇ ହୃଦୟ ତୁମର ମମତାରେ ଭରି ଉଠିଲା କେମିତି ? ପୃଥିବୀକୁ ଏ କୋଉ ପ୍ରଳୟ ଓହ୍ଲେଇ ଆସିଲା ? ଯାର ଅର୍ଥ କ'ଣ ?

ଗାନ୍ଧାରୀ ବିବ୍ରତ ହେଇପଡ଼ିଲେ । କହିଲେ- ଏଭଳି କଥା କୁହ ନାହିଁ ସ୍ୱାମୀ । ମୋର ଭାରି ଭୟ ହେଉଛି ।

ଭୟ ! ଉଚ୍ଚସ୍ୱରରେ ହସିଉଠିଲେ ଧୃତରାଷ୍ଟ୍ର । ତାଙ୍କ ଖିଲ୍ ଖିଲ୍ ହସର ଧ୍ୱନି ଅନେକ ସମୟ ଯାଏ ଅନୁରଣିତ ହେଇଉଠିଲା । ସେହିଭଳି ହସିଲା କଣ୍ଠରେ କହିଲେ- କି ପ୍ରକାର ଭୟ ? କାହାର ଭୟ ରାଣୀ ? ତୁମେ ଯେ ଧୃତରାଷ୍ଟ୍ରର ମହିଷୀ-ଗାନ୍ଧାରୀ ।

ଭୟାର୍ତ୍ତ ହୋଇ ଗାନ୍ଧାରୀ କହିଲେ : ସବୁବେଳେ ଅପ୍ରିୟ ସତ୍ୟ କୁହାଯାଏ ନାହିଁ ସ୍ୱାମୀ । ମଝିରେ ମଝିରେ ମନର ଅବସ୍ଥାକୁ ମଧ୍ୟ ଧ୍ୟାନ ଦେବାକୁ ହୁଏ ।

ଗାନ୍ଧାରୀଙ୍କର ଚକ୍ଷୁ ଆବୃତ୍ତ ନ ଥିଲେ ସେ ଦେଖି ପାରିଥାନ୍ତେ ଯେ ଧୃତରାଷ୍ଟ୍ର କିପରି ତାଙ୍କ ଆଡ଼କୁ ଚାହିଁ ମୃଦୁମୃଦୁ ହସୁଛନ୍ତି ? କିଛି ମୁହୂର୍ତ୍ତ ନିରବରେ କଟିଗଲା ପରେ ଧୃତରାଷ୍ଟ୍ର କହିଲେ- ରାଣୀ ତୁମ ଉଦ୍‌ବେଗର କୌଣସି କାରଣ ନାହିଁ । ଏହି ସିଂହାସନ ନ୍ୟାୟତଃ, ଧର୍ମତଃ, ଆମର । ଆମ ସନ୍ତାନ ହିଁ ତାର ଉତ୍ତରାଧିକାରୀ । ଏହା ମଧ୍ୟରେ ପାଣ୍ଡୁ ପୁତ୍ରର କୌଣସି ଅଧିକାର ନାହିଁ । ତାର କଥା ଭାବିବା ହିଁ ମିଥ୍ୟା ।

ଗାନ୍ଧାରୀ ଦୀର୍ଘଶ୍ୱାସ ମୋଚନ କରି କହିଲେ, ତେବେ ଘଟଣା ଓ ପାରିପାର୍ଶ୍ୱିକ ଅବସ୍ଥା ଯେ ତୁମପାଇଁ ଅନୁକୂଳ ନୁହେଁ, ତାହା ମୁଁ ଅନୁମାନ କରିପାରୁଛି । ଧାତ୍ରୀ କହୁଥିଲା କୁନ୍ତୀର ଆହୁରି ଗୋଟିଏ କ୍ଷେତ୍ରଜ ସନ୍ତାନ ଆସନ୍ନ ପ୍ରାୟ । ହୁଏତ ସେ ଭୂମିଷ୍ଠ ହେଇ ସାରିଥିବ । ରାଜଧାନୀରେ ଖବର ଆସି ପହଞ୍ଚି ନାହିଁ । ପାଣ୍ଡୁ ଏଥର ପବନଦେବଙ୍କୁ ଆହ୍ୱାନ କରିଛନ୍ତି ।

ମହାରାଣୀ ! ଏସବୁର ଅର୍ଥ କ'ଣ କୁହତ ?

ପ୍ରତିଶୋଧ । ସିଂହାସନରେ ତାଙ୍କ ନିଜର ଅଥବା ତାଙ୍କ ପୁତ୍ରର ଦାବି ପ୍ରତିଷ୍ଠା କରିବା ପାଇଁ ପାଣ୍ଡୁ ଏକ ଗୋପନ ଷଡ଼ଯନ୍ତ୍ରରେ ଲିପ୍ତ ଅଛନ୍ତି ନିଶ୍ଚୟ । ଦେବତାମାନଙ୍କ ସଙ୍ଗେ ରକ୍ତର ସଂପର୍କ ସ୍ଥାପନ କରି ଦେବ-ପୁତ୍ରମାନଙ୍କୁ ସମ୍ମୁଖରେ ରଖି ସେ ଏକ ଅଘୋଷିତ ସ୍ନାୟୁଯୁଦ୍ଧର ସୂଚନା ଦେଉଛନ୍ତି ରାଜ୍ୟରେ, ରାଜପୁରୀରେ ଏବଂ ରାଜାଙ୍କ ମନୋଭୂମିରେ ।

ରାଣୀ ! ତୁମର ଆଶଙ୍କାକୁ ଅମୂଳକ ବୋଲି କହିଲେ ଭୁଲ ହେବ । ସେକଥା କହିବାର ସାହସ ମୋର ନାହିଁ । ତେବେ ସମୟ ଥାଉ ଥାଉ ସାବଧାନ ହେବା ଉଚିତ । ମୁଁ ଯଥାଶୀଘ୍ର ସଭାସଦ୍‌ବର୍ଗଙ୍କ ବୈଠକ ଡକାଇ ଘଟଣା ସଂପର୍କରେ ଆଲୋଚନା କରିବି ।

କିଛିଦିନ ଯାଉ ନ ଯାଉଣୁ ଏକ ଅଦ୍ଭୁତ ଆଲୋଚନାର ଝଡ଼ ଉଠିଲା । ଦୁର୍ଯୋଗର ଦିନପାଇଁ ଯେକୌଣସି ଅପବ୍ୟାଖ୍ୟା ଯେ କରାଯାଇପାରେ, ଗାନ୍ଧାରୀ କିମ୍ବା ଧୃତରାଷ୍ଟ୍ର କେହି କଳ୍ପନା କରିପାରି ନ ଥିଲେ । ବାସ୍ତବରେ ତାହା ହିଁ ଘଟିଲା । ରାଜ୍ୟରେ ରାଜପୁରୀରେ ସମସ୍ତେ କଥାବାର୍ତ୍ତା କରୁଥିଲେ ଗୋପନରେ... ଦୁର୍ଯ୍ୟୋଧନ ଦୁରାତ୍ମାଟିଏ । ପାପୀ । ଘୋର କଳି । ତେଣୁ ପ୍ରକୃତି ଭିତରେ ସେପରି ଏକ ଭୟଙ୍କର ବିପ୍ଳାତ ଆରମ୍ଭ ହୋଇଥିଲା । ଚୈତ୍ରର ନୀଳଆକାଶ ହଠାତ୍ କଳାଘୁମର ହେଇଯାଇଥିଲା । ଭୟରେ ବୃକ୍ଷଲତା ଯେମିତି କାଠପିତୁଳା ଭଳି ମ୍ଳାନ ନିଷ୍ପନ୍ଦ ହେଇ ଠିଆହେଇ ରହିଲେ । ପକ୍ଷୀମାନେ ସେହି ମୁହୂର୍ତ୍ତରେ କର୍କଶ ସ୍ୱରରେ ଚିତ୍କାର କରିବା ଆରମ୍ଭ କରି ଦେଇଥିଲେ । ପଶୁମାନେ ଅସହାୟଙ୍କ ଭଳି ଗୁମୁରି ଗୁମୁରି କାନ୍ଦିଥିଲେ । ନରାଧମ ଭୂମିଷ୍ଠ ହେବା ସଂଗେ ସଂଗେ ସମଗ୍ର ପୃଥିବୀ ବକ୍ଷରେ ତାଣ୍ଡବ ସୃଷ୍ଟି ହେଲା । ଆକାଶ ଗର୍ଜି ଉଠିଲା । ବତାସ ପ୍ରଳୟଙ୍କରୀ ହେଲା । ବଜ୍ରର ଭୀମ ପ୍ରହରଣରେ ଧରିତ୍ରୀ କମ୍ପିଉଠିଲା ଘନଘନ ହେଇ । କେବଳ ଦୁର୍ଯ୍ୟୋଧନ ଦୁରାତ୍ମା ବୋଲି ଏଭଳି ସବୁ ବିଲକ୍ଷଣ ଚାରିଆଡ଼େ ପ୍ରକାଶ ପାଇଥିଲା । ଏଭଳି ଶିଶୁପୁତ୍ର ରାଜ୍ୟ ପକ୍ଷରେ ଅଶୁଭ । ଭୟଙ୍କର ଭାବେ ବିପଦଜନକ ।

ଏହିପରି ଅଦ୍ଭୁତ ନିନ୍ଦା ଶୁଣି ଧୃତରାଷ୍ଟ୍ର ବିସ୍ମିତ ହେଲେ । ଏକ ଗଭୀର ବେଦନାରେ ଅନ୍ତର ବ୍ୟଥିତ ହେଇଉଠିଲା । ନିଜ ମନକଥା ସେ କାହାକୁ ବି କହିପାରୁ ନ ଥିଲେ । ଏପରିକି ଗାନ୍ଧାରୀଙ୍କୁ ମଧ୍ୟ ନୁହେଁ ।

ଧୃତରାଷ୍ଟ୍ର କକ୍ଷ ଭିତରକୁ ପ୍ରବେଶ କଲାମାତ୍ରେ ଗାନ୍ଧାରୀଙ୍କ ହୃଦୟର ସ୍ପନ୍ଦନ ବଢ଼ିଯାଏ । ସେ ବୁଝିପାରନ୍ତି ଧୃତରାଷ୍ଟ୍ର କିଛି କହିବାକୁ ଚାହୁଁଛନ୍ତି । ଏଇ ଘନଘନ ଆସିବାଟା ତାର କେବଳ ଭୂମିକା ମାତ୍ର । କିନ୍ତୁ ତାଙ୍କର ମାତୃହୃଦୟ ସେଇ ନିଷିଦ୍ଧ ଅମଙ୍ଗଳ କଥା ଶୁଣିବା ପାଇଁ ଯୁଗପତ୍ ଆତଙ୍କ ଓ କଷ୍ଟ ଅନୁଭବ କରୁଥିଲା । ନିରବରେ ବସି ରହିଲେ ସେଇ କଷ୍ଟ ଆହୁରି ଦ୍ୱିଗୁଣିତ ହୋଇ ଉଠୁଥିଲା । ଅସ୍ଫୁଟ ଶବ୍ଦ ସବୁ ମୁଖରୁ ବାହାରି ଆସୁଥିଲା । ବ୍ୟସ୍ତ ହେଇ ଉଠୁଥିଲେ ଧୃତରାଷ୍ଟ୍ର । ବିଷଣ୍ଣଗଳାରେ କୁଣ୍ଠିତ ଭାବେ ପ୍ରଶ୍ନ କଲେ, ରାଣୀ, କଣ ପାଇଁ ତୁମେ ଏତେ କଷ୍ଟ ଭୋଗ କରୁଛ ? କି ଦୁଃଖ ତୁମର ?

ଗାନ୍ଧାରୀ ଏପ୍ରକାର ଆଚମକା ପ୍ରଶ୍ନରେ ଟିକିଏ ଇତସ୍ତତଃ ହେଇପଡ଼ିଲେ । କହିଲେ, ସ୍ୱାମୀ ! କଣ ସବୁ ଶୁଣୁଛି ଏମିତି ? ତୁମେ କ'ଣ ଏସବୁରେ ବିଶ୍ୱାସ କର ?

ଗାନ୍ଧାରୀଙ୍କର ଅନ୍ଧପୁଚୁଳି ନ ଥିଲେ ଦେଖିପାରିଥାନ୍ତେ ଯେ, ଧୃତରାଷ୍ଟ୍ର କିପରି ଚିନ୍ତିତ ଭାବେ କ୍ଷୀପ୍ର ଗତିରେ ସମଗ୍ର କକ୍ଷ ଭିତରେ ପଦଚାରଣା କରୁଛନ୍ତି । ଗାନ୍ଧାରୀଙ୍କ ପ୍ରଶ୍ନ ଶୁଣି ହଠାତ୍ ସେ ଠିଆ ହେଇ ପଡ଼ିଲେ । ମେରୁଦଣ୍ଡକୁ ସିଧାସଳଖି ଗାନ୍ଧାରୀଙ୍କ ମୁହଁ ଉପରେ ତାଙ୍କର ଦୃଷ୍ଟିହୀନ ଆଖି ଦୁଇଟିକୁ ନିବଦ୍ଧ କରି ଚାହିଁ ରହିଲେ ଅନେକ ସମୟ । କିଛି

ଗୋଟାଏ ଗଭୀର ଭାବେ ଅନୁଭବ କରୁଥିଲେ ସେ । ଶରୀର କଣ୍ଟକିତ ହେଲା । ଗମ୍ଭୀର ଗଳାରେ କହିଲେ, ରାଣୀ, ପୃଥିବୀର ସବୁ ଶିଶୁ ନିଷ୍ପାପ । ନିରାବରଣ ଦେହକୁ ସମ୍ବଳ କରି.ଯିଏ ଭୂମିଷ୍ଠ ହୁଏ, ଯାହାର ବୋଧ ବୁଦ୍ଧି କିଛି ବିକଶିତ ହୋଇନଥାଏ । ଯିଏ ସଂପୂର୍ଣ୍ଣ ଅସହାୟ, ପରନିର୍ଭରଶୀଳ, ଯାହାର ଆତ୍ମପର ଜ୍ଞାନ ବୋଲି କିଛି ହିଁ ନାହିଁ, କ୍ଷୁଧା ତୃଷ୍ଣାକୁ ଛାଡ଼ିଦେଲେ ଯିଏ ଆଉ କିଛି ଜାଣେନା, ସେ କେବେ ଦୁରାତ୍ମା, ପାପୀ ହୋଇପାରିବନି । ତା'ବିରୋଧରେ ଯେତେବେଳେ ଏତେସବୁ ଅପପ୍ରଚାର ଚାଲିଛି ବୁଝିବାକୁ ହେବ ଏହା ପଶ୍ଚାତ୍‌ରେ ଗଭୀର ରାଜନୈତିକ ଷଡ଼ଯନ୍ତ୍ର ଏବଂ ସ୍ୱାର୍ଥ କାର୍ଯ୍ୟ କରୁଛି । ତୁମର ଅନୁମାନ ସତ୍ୟ । ହସ୍ତିନାପୁର ସିଂହାସନ ଉପରେ ପାଣ୍ଡୁପୁତ୍ର ଯୁଧିଷ୍ଠିରର ଦାବିକୁ ନିଷ୍କଣ୍ଟକ କରିବା ପାଇଁ ସେମାନେ ଏଭଳି ଅପପ୍ରଚାର ଚଳାଇଛନ୍ତି । ଦୁର୍ଯ୍ୟୋଧନକୁ ବରଖାସ୍ତ କରିବା ଉଦ୍ଦେଶ୍ୟରେ ଏହା ଏକ ଚକ୍ରାନ୍ତ । ଏହି ଚକ୍ରାନ୍ତକୁ ଆଉ ଅଧିକା ବଢ଼ାଇବାକୁ ମୁଁ ଦେବି ନାହିଁ ରାଣୀ । ଯେଉଁମାନେ ଦୁର୍ଯ୍ୟୋଧନର ନିନ୍ଦା କରିବେ ସେମାନେ ହେବେ ହସ୍ତିନାପୁରର ଶତ୍ରୁ । ସେମାନଙ୍କୁ ମୁଁ ଶାସ୍ତି ଦେବି । ଜିଭ କାଟିଦେବି । ପ୍ରତ୍ୟେକଙ୍କୁ ଜଣାଇଦେବି ଧୃତରାଷ୍ଟ୍ରର ସିଂହାସନର ଅଧିକାରୀ କେବଳ ଏକମାତ୍ର ଦୁର୍ଯ୍ୟୋଧନ । ତା କପାଳରେ ଜନ୍ମରୁ ରାଜଟୀକା ଅଛି । ଯିଏ ଦୁର୍ଯ୍ୟୋଧନକୁ ନିନ୍ଦା କରିବ ତାକୁ ମୁଁ ହତ୍ୟା କରିବି । ରାଣୀ ! ତୁମେ ନିଶ୍ଚିନ୍ତ ରୁହ । ଶକୁନି ମଧ୍ୟ ଶୀଘ୍ର ଫେରିଆସୁଛି । ତାପରେ... ହଁ ତାପରେ ହିଁ ଆମେ ·ମିଶି ସମସ୍ତ ଷଡ଼ଯନ୍ତ୍ରକୁ ଛିନ୍ନଭିନ୍ନ କରିଦେବୁ ।

ଗାନ୍ଧାରୀ ନିରୁତ୍ତର । ଛାଇ ଆଲୁଅ ଭିତରେ ସେ ବହୁକ୍ଷଣ ଧରି ବିବଶ ହୋଇ ବସି ରହିଲେ । ତାଙ୍କ ଛାତି ଭିତରେ ଭୟ, ଉତ୍କଣ୍ଠା, ଦ୍ୱିଧା ଏବଂ ମୁଣ୍ଡ ଭିତରେ ଆବୁରୁ ଜାବୁରୁ ହଜାରେ ଚିନ୍ତା ।

ରାତ୍ରୀ ଗଭୀର । କଳା କିଟି କିଟି ଅନ୍ଧକାର । ସୋର ଶବ୍ଦ ବୋଲି କିଛି କୁଆଡ଼େ ନାହିଁ । ଜଳସ୍ଥଳ ଅନ୍ତରୀକ୍ଷ ସବୁ ଯେମିତି ଏକାକାର ପାଲଟିଯାଇଛି । ଘନ ଅନ୍ଧକାର ଭିତରେ ବିଦୂରଙ୍କ ଘରଟା ଭୂତକୋଠି ଭଳି ଦିଶୁଥିଲା । ଘର ନିକଟକୁ ଆସି ଦ୍ୱୈପାୟନଙ୍କର ଖିଆଲ ହେଲା ଯେ, ରାତି ଖୁବ୍ ବେଶି ହେଇଯାଇଛି– ହୁଏତ ବିଦୂର ଶୋଇପଡ଼ିଥିବ ।

ଚାରିଆଡ଼େ ଦେହ ଥରିଲା ଭଳି ଥମ୍‌ଥମ୍ ପରିବେଶ । ଦୂରରେ ଶିଆଳମାନେ ରହି ରହି ଡାକି ଉଠୁଥିଲେ ହୁକେ ହୋ... କରି ।

ବିଦୂରଙ୍କ କୁଟୀର ସମ୍ମୁଖରେ ଠିଆ ହେଇ ଦେଖିଲେ, ଭିତରେ ପ୍ରଦୀପ ଜଳୁଛି । କବାଟରେ ଥରେ ଦି'ଥର ଠକ୍ ଠକ୍ କଲେ, ଆସ୍ତେ ଖୁବ୍ ଆସ୍ତେ । ତା'ପରେ ଟିକିଏ ଜୋରରେ ଶବ୍ଦ ହେଲା ଭଳି ଡାକିଲେ ଭିତରୁ ବିଦୂରଙ୍କ କଣ୍ଠସ୍ୱର ଶୁଭିଲା । ଡାକିବା ଠକ୍‌ଠକ୍ ଶବ୍ଦରୁ ବିଦୂର ଜାଣିପାରିଥିଲେ ଯେ, ଦ୍ୱୈପାୟନ ଆସିଛନ୍ତି । ତେଣୁ ଇତସ୍ତତଃ ନ ଭାବି

ଦ୍ୱାର ଖୋଲିବା ପାଇଁ ଉଠିଗଲେ । କବାଟ ଖୋଲି କହିଲେ- ଆସନ୍ତୁ ମହର୍ଷି, ଏତେ ରାତିରେ ହଠାତ୍ କି ଉଦ୍ଦେଶ୍ୟରେ... କିଛି ଅଘଟଣ ଘଟି ନାହିଁ ତ ?

ପ୍ରଦୀପର ଆଲୁଅ ପଡ଼ିଥିଲା ବିଦୂରଙ୍କ ଅନିନ୍ଦ୍ୟ ସୁନ୍ଦର ମୁଖମଣ୍ଡଳ ଉପରେ । ଦ୍ୱୈପାୟନ ମାୟାବୀ ଆଖିରେ ଅନେକ ସମୟ ଧରି ଚାହିଁରହିଥିଲେ ତାଙ୍କର ସେଇ ମୁହଁଟିକୁ । ତାପରେ ମୃଦୁକଣ୍ଠରେ କହିଲେ "ତୁମକୁ ଦେଖିବାକୁ ଇଚ୍ଛା ହେଲା ପୁତ୍ର, ସେଥିପାଇଁ... ବିଦୂର ନିଜ ପ୍ରଶ୍ନ ପାଇଁ ଲଜ୍ଜିତ ହେଲେ । ମୁହଁ ତଳକୁ ପୋତି ଓଠକୁ ଦାନ୍ତରେ କାମୁଡ଼ି କହିଲେ, ମୋତେ ଖବର କାହିଁକି ଦେଲେ ନାହିଁ ?

ଦ୍ୱୈପାୟନଙ୍କ ଆଖିକୋଣରେ ହସର ଝଲକ ଝଲସି ଉଠିଲା । କହିଲେ, ଧୃତରାଷ୍ଟ୍ରର ଗୁପ୍ତଚରମାନେ ଚାରିଆଡ଼େ କଡ଼ା ନଜର ରଖିଛନ୍ତି, ତୁମକୁ ଓ ମୋତେ ହୁଏତ ସେ ଆଖିରେ ରଖିଛି । ସେଥିପାଇଁ ଅନ୍ଧାରରେ ଲୁଚିଛପି ଆସିବାକୁ ପଡ଼ିଲା । ତୁମ ସହିତ ମୋର ଦେଖାସାକ୍ଷାତ୍ ଯେତେ ନ ହେବ ସେତିକି ଭଲ । ଶୀଘ୍ର ହିଁ ମୁଁ ଦେଶ ପର୍ଯ୍ୟଟନରେ ବାହାରିଯିବି । ଅନେକ କାଳ ପର୍ଯ୍ୟନ୍ତ ଆଉ ଦେଖାସାକ୍ଷାତ ସମ୍ଭବ ହେବ ନାହିଁ । ତେଣୁ ଯାତ୍ରା ପୂର୍ବରୁ କିଛି ଜରୁରୀ କଥା ତୁମକୁ କହିଯିବି ବୋଲି ଆସିବାକୁ ହେଲା ।

ଝରକା ନିକଟକୁ ଯାଇ ଦ୍ୱୈପାୟନ କବାଟ ବନ୍ଦକଲେ । ଭିତରପଟୁ ଦ୍ୱାରରେ କିଳିଣି ଲଗାଇ ଦେଲେ । ତାପରେ ବଳିତା କମାଇ ନିଷ୍ପ୍ରଭ କରିଦେଲେ ପ୍ରଦୀପକୁ । ଘର ଭିତରେ ଛାଇ ଛାଇ ଅନ୍ଧକାର । କୃଷ୍ଣକାୟ ଦ୍ୱୈପାୟନ ସେଇ ଅଧା ଛାଇ ଅନ୍ଧାର ଭିତରେ ଭୟଙ୍କର ଦିଶୁଥିଲେ ।

ଅବାକ୍ ହେଇ ଏ ସମସ୍ତ ଦୃଶ୍ୟ ଓ କାର୍ଯ୍ୟକଳାପକୁ ଦେଖୁଥିଲେ ବିଦୂର । ଦ୍ୱୈପାୟନଙ୍କ ଏ ପ୍ରକାର ଅଦ୍ଭୁତ ଆଚରଣ ତାଙ୍କର ବୋଧଗମ୍ୟ ହେଉନଥିଲା । ଅନେକ ଓଲଟା ପାଲଟା ପ୍ରଶ୍ନ ଜାଗ୍ରତ ହେଲା ମନରେ । ଏଇ କୁଟୀର ତାଙ୍କର ବାସଗୃହ ନୁହେଁ । ମଝିରେ ମଝିରେ ଅବସର ଯାପନ ପାଇଁ ସେ ଏଠାକୁ ଆସନ୍ତି । ବିଶେଷକରି ଗ୍ରୀଷ୍ମଦିନେ ପାହାଡ଼ ପର୍ବତଘେରା ଏଇ ନିର୍ଜନ ପରିବେଶ ମନକୁ ସ୍ନିଗ୍ଧ କରିଦେଉଥିଲା । ତେଣୁ ଅବକାଶ ଦିନମାନଙ୍କରେ କେହି ଏଠାକୁ ଆସନ୍ତି ନାହିଁ । ଦ୍ୱୈପାୟନ ମଧ୍ୟ ଏଇ ନିର୍ଜନ କୁଟୀରରେ କେବେ ପଦାର୍ପଣ କରି ନ ଥିଲେ । ତା'ହେଲେ କୋଉ ଜରୁରୀ ପ୍ରୟୋଜନରେ ତାଙ୍କୁ ଏଠାକୁ ଆସିବାକୁ ହେଲା ? କିଛି ଅଶୁଭ ଖବର ନାହିଁ ତ ? ନିଜକୁ ନିଜେ ପ୍ରଶ୍ନକରି ବିଦୂର ନିର୍ନିମେଷ ନୟନରେ ଚାହିଁରହିଲେ ଦ୍ୱୈପାୟନଙ୍କ ମୁହଁକୁ । ବିଦୂରଙ୍କର ମନେହେଲା, ଦ୍ୱୈପାୟନ ତାଙ୍କୁ ସମ୍ମୋହିତ କରି ରଖିଛନ୍ତି । ଖୁବ୍ ଧୀରେ ଧୀରେ ତାଙ୍କର ବାହ୍ୟଚେତନା ଲୁପ୍ତ ହେଇଯାଉଛି । ଚେତନା ବିଲୁପ୍ତ ହେବା ଆଗରୁ ସେ ଉଦ୍‌ବିଗ୍ନ ସ୍ୱରରେ ପ୍ରଶ୍ନ କଲେ- କ'ଣ ହେଇଛି କୁହନ୍ତୁ ତ ?

କୁଣ୍ଠିତ ଭ୍ରୂ ଟାଣି ହେଇଗଲା ଦ୍ୱୈପାୟନଙ୍କର । ଟିକିଏ ହସିଲେ । କହିଲେ, ନିସ୍ତବ୍ଧ ରାତ୍ରୀରେ ଖୁବ୍ ମୃଦୁସ୍ୱରରେ ମଧ୍ୟ କଥୋପକଥନ ବହୁଦୂର ପର୍ଯ୍ୟନ୍ତ ଶୁଣାଯାଏ । କଥାବାର୍ତ୍ତା ବେଳେ ସାବଧାନରେ ରହିବା ଉଚିତ ହେବ । ଅସତର୍କତାର ଫାଙ୍କ ଦେଇ ବିପଦ ପଶିଆସେ । ସବୁଆଡ଼କୁ ଆଖି ରଖିବାକୁ ହେବ ପୁତ୍ର ।

ବିଦୂରଙ୍କ ମୁହଁ ଓ ଆଖିରେ ଗୋଟାଏ ଅଜଣା ଆଶଙ୍କା ଫୁଟି ଉଠିଲା । ତୀକ୍ଷ୍ଣ ଦୃଷ୍ଟିରେ ବିଦୂରଙ୍କୁ ଲକ୍ଷ୍ୟ କରୁଥିଲେ ଦ୍ୱୈପାୟନ । ଧୀର ସ୍ୱରରେ କହିଲେ- ତୁମ ଭିତରେ ଗୋଟିଏ ଅଦ୍ଭୁତ ଶକ୍ତି ମୁଁ ଲକ୍ଷ୍ୟ କରିଛି । ଯାହା ସମସ୍ତ ପ୍ରକାରର ବିରୁଦ୍ଧତାକୁ ଜୟ କରିପାରିବାର, ସବୁ ରକମର ପ୍ରତିକୂଳତାକୁ ନିଜ ଅନୁକୂଳରେ ପରିଣତ କରିନେଇ ପାରିବାର ମୁଁ ଆଜି ସେଇ ଶକ୍ତିର ପ୍ରାର୍ଥନା ନେଇ ଆସିଛି ।

ଉଦାସ ଗଳାରେ ବିଦୂର କହିଲେ- ଆପଣଙ୍କ ଆଚରଣ ଓ କଥାବାର୍ତ୍ତା କେମିତି ରହସ୍ୟମୟ ଜଣାପଡୁଛି । ସେଇ ଅବୋଧ ରହସ୍ୟମୟ ଅନୁଭୂତି ସଂପର୍କରେ ମୋର କିଛି ବି ବୋଧଗମ୍ୟ ହେଉନି । ଆପଣ ମୋର କୌତୂହଳକୁ ନିବୃତ୍ତ କରନ୍ତୁ ।

ହସ ହସ ମୁଖରେ ବ୍ୟାସଦେବ କହିଲେ- ବତ୍ସ ! ଧୃତରାଷ୍ଟ୍ରଙ୍କୁ ଧ୍ୱଂସ କରିବା ପାଇଁ, ଦେଶର ଅଭ୍ୟନ୍ତରରେ, ତା ସହିତ ବାହାରେ ମଧ୍ୟ ଗୋଟାଏ ସମାନ୍ତରାଳ ଶକ୍ତି ଗଠନ କରିବାପାଇଁ ତୁମକୁ ବ୍ୟବସ୍ଥା କରିବାକୁ ପଡ଼ିବ । ଯେଉଁଥିରେ ଧୃତରାଷ୍ଟ୍ର ସମୂଳେ ବିନାଶ ହେବ । କେବଳ ରାଜ୍ୟ ଭିତରେ ନୁହଁ, ଧୃତରାଷ୍ଟ୍ରଙ୍କ ମନର ଅବଚେତନରେ ଯେମିତି ଏସବୁର ସଂଘାତ ସୃଷ୍ଟି ହୁଏ । ଏହି ଅସାଧାରଣ କାର୍ଯ୍ୟ କରିବାର ଶକ୍ତି କେବଳ ତୁମର ହିଁ ଅଛି । ମୁଁ ଜାଣେ, ତୁମେ ନିଶ୍ଚୟ ପାରିବ । କଣ କହିବେ ବିଦୂର ଭାବିପାରିଲେ ନାହିଁ । ବିସ୍ମୟରେ ହତବାକ୍ ହେଇଗଲେ । ଉଦ୍‌ବିଗ୍ନ ମନରେ ବେଶ୍ କିଛି ସମୟ ଭାବିବାକୁ ଲାଗିଲେ । ତା'ପରେ ସ୍ପଷ୍ଟ ଭାବେ ଦ୍ୱୈପାୟନଙ୍କ ମୁଖକୁ ଚାହିଁ ଟିକିଏ ଅପ୍ରତିଭ ହୋଇ କହିଲେ କିନ୍ତୁ... କିଛି ସମୟ କଟିଗଲା ସଂଶୟରେ । ପୁଣି କହିଲେ- ମୋତେ ଆପଣ ଭୁଲ ବୁଝନ୍ତୁ ନାହିଁ । ଧୃତରାଷ୍ଟ୍ର ଯେ ଅନ୍ଧ, ଅସହାୟ । ତାଙ୍କର ଏକମାତ୍ର ଭରସା ମୁଁ । ତାଙ୍କ ସହିତ ମୁଁ କିଭଳି ବିଶ୍ୱାସଘାତକତା କରିବି ?

ଏକ ଅଦ୍ଭୁତ ହସ ହସିଉଠିଲେ ଦ୍ୱୈପାୟନ ଏବଂ ଅନ୍ତର୍ଭେଦୀ ଦୃଷ୍ଟିରେ ଚାହିଁ ରହିଲେ ବିଦୂର ମୁହଁକୁ । ଦ୍ୱୈପାୟନଙ୍କ ଦୁଇ ଆଖିରେ କୌତୁକ । ମୁହଁରେ ଚତୁରତାର ହସ । କହିଲେ, 'ତୁମେ ଅଭିନୟରେ ଯେଭଳି ପଟୁ, ବିଭ୍ରାନ୍ତି ସୃଷ୍ଟି କରିବାରେ ସେହିଭଳି ସିଦ୍ଧହସ୍ତ ।'

କ୍ଷୀଣକଣ୍ଠରେ ବିଦୂର କହିଲେ, ଏକଥା କାହିଁକି କହୁଛନ୍ତି ? ନିସ୍ପୃହ କଣ୍ଠରେ ଜବାବ ଦେଲେ ଦ୍ୱୈପାୟନ - ଯାହା ସତ୍ୟ ବୋଲି ମନେହେଉଛି, ତାହାହିଁ କହୁଛି ।

କିଞ୍ଚିତ୍ ରୁଷ୍ଟ ସ୍ୱରରେ ବିଦୂର କହିଲେ- କଥାଟା ଠିକ୍ ହେଲାନି । ଦ୍ୱୈପାୟନଙ୍କ କଣ୍ଠସ୍ୱରରେ ଶ୍ଳେଷ, ବ୍ୟଙ୍ଗ ଓ ବିଦୂପର ଏକ ଐକ୍ୟତାନ ସୃଷ୍ଟି ହେଲା ମୁହୂର୍ତ୍ତକ ପାଇଁ । କହିଲେ, ସତକଥା ତୁମେ ଧର୍ମପ୍ରାଣ । ଧର୍ମରେ ତୁମର ଅନୁରାଗ, ଶ୍ରଦ୍ଧା, ଭକ୍ତି ଓ ସ୍ନେହକୁ ଅବିଚଳ ରଖ ବୋଲି ଭୀଷ୍ମ ତୁମକୁ ଆଦରରେ ଧର୍ମପୁତ୍ର ବୋଲି ସମ୍ବୋଧନ କରନ୍ତି । ସ୍ନେହବଶରେ ଧୃତରାଷ୍ଟ୍ର ଧର୍ମରାଜ ବୋଲି ଡାକେ । ସୁତରାଂ ଧର୍ମ ନାମରେ ଭାଣ୍ଡାମି କରି, ଏତେବଡ଼ ସୁଯୋଗକୁ ହାତରେ ପାଇ କିଏ ଛାଡ଼େ ? ଧର୍ମର ନାମାବଳୀ ଦେହରେ ପକାଇ କି ସୁନ୍ଦର ବିଭ୍ରାନ୍ତି ସୃଷ୍ଟି କରିପାରିଛ, ଶତଶୃଙ୍ଗ ପର୍ବତରେ । ସମସ୍ତେ ଜାଣନ୍ତି ଯୁଧିଷ୍ଠିର ଧର୍ମପୁତ୍ର ବୋଲି । କିନ୍ତୁ କୋଉ ଧର୍ମରାଜ ସେ ? ସୁମେରୁ ନା ହସ୍ତିନାପୁରର ? କଥାଟା ଶୁଣୁ ଶୁଣୁ ଚମକି ପଡ଼ିଲେ ବିଦୂର ନିଜ ଭିତରେ । କୋହଲା ଶୀତ ପବନରେ ଥରି ଉଠିଲା ଭଳି ତାଙ୍କ ଦେହ ଥରିଉଠିଲା । କାଗଜ ଭଳି ଶେତା ପଡ଼ିଗଲା ବିଦୂରଙ୍କ ମୁହଁ । ଅବିଶ୍ୱାସର ଆଖିରେ ସେ ଚାହିଁରହିଲେ ଦ୍ୱୈପାୟନଙ୍କ ମୁଖକୁ କିଛିକ୍ଷଣ ପର୍ଯ୍ୟନ୍ତ । ହେଲେ ପ୍ରତିବାଦ କରିବାପାଇଁ ଶକ୍ତି ନ ଥିଲା । ପାଣ୍ଡୁ ମଧ୍ୟ ଯାହା ଜାଣନ୍ତି ନାହିଁ, ତାହା ଦ୍ୱୈପାୟନ କେମିତି ଜାଣିପାରିଲେ ? ଲଜ୍ଜାରେ କଥା ଅଟକିଗଲା । ବାକ୍ୟ ସ୍ଫୁରିଲା ନାହିଁ । କେବଳ ଦୀର୍ଘଶ୍ୱାସ ଛାଡ଼ିଲେ ।

ଜାଲରେ ପଡ଼ିଥିବା ପକ୍ଷୀ ଭଳି ଅସହାୟ ଅବସ୍ଥା ବିଦୂରଙ୍କର । ତୀକ୍ଷ୍ଣ ଦୃଷ୍ଟିରେ ଦ୍ୱୈପାୟନ ବିଦୂରଙ୍କୁ ବୁଝିବା ପାଇଁ ଚେଷ୍ଟା କଲେ । ବିଦୂରଙ୍କ ଦୃଷ୍ଟିରେ ଗୋଟାଏ କୁହୁଡ଼ିଆ ଭାବ ଦେଖିବାକୁ ପାଇଲେ ସେ । ଏହି ଆଖିର ଚାହାଣିକୁ ସେ ତ ଭଲ ଭାବରେ ଚିହ୍ନନ୍ତି । ଗୋଟାଏ ମାନସିକ ପ୍ରତିକ୍ରିୟା ଯେ ତାଙ୍କ ଭିତରେ ତୀବ୍ର ଭାବରେ କାର୍ଯ୍ୟ କରୁଛି, ଏତକ ଅନୁମାନ କରିପାରିଲେ ଦ୍ୱୈପାୟନ । ତାଙ୍କୁ ଦେଖି ବଡ଼ କଷ୍ଟ ଅନୁଭୂତ ହେଲା । ତାଙ୍କର ବିମର୍ଷ ମୁଖମଣ୍ଡଳକୁ ମାୟାଭରା ଦୃଷ୍ଟିରେ କିଛି ସମୟ ଚାହିଁରହି ଆସ୍ତେ ଆସ୍ତେ ନମ୍ରକଣ୍ଠରେ କହିଲେ, ପୁତ୍ର, ଶତଶୃଙ୍ଗ ପର୍ବତରେ ଷୋଳବର୍ଷ ଧରି ଯେଉଁ ନାଟକ ଅଭିନୀତ ହେଲା, ସେହି ନାଟକ ଏଥର ହସ୍ତିନାପୁର ରାଜନବରରେ ହେବ । ପାଣ୍ଡୁ ବର୍ତ୍ତମାନ ଏକୁଟିଆ ନୁହନ୍ତି । ନିର୍ବାନ୍ଧବ ମଧ୍ୟ ନୁହନ୍ତି । ମିତ୍ରଶକ୍ତିର ବାହୁବଳ ଓ ଲୋକବଳ ତାଙ୍କ ପଛରେ ରହିଛି । ଦେବ ନରପତିମାନଙ୍କର ସମର୍ଥନରେ ପରିପୁଷ୍ଟ ହୋଇ ରାଜା ଓ ରାଜସିଂହାସନର ଦାବି ନେଇ ସେ ଶୀଘ୍ର ହିଁ ହସ୍ତିନାପୁରକୁ ପ୍ରତ୍ୟାବର୍ତ୍ତନ କରିବେ । ପଞ୍ଚପୁତ୍ର ଓ ମହିଷୀ ଦ୍ୱୟଙ୍କ ବ୍ୟତୀତ ସାଥିରେ ଦେବଲୋକର ବହୁ ଋଷି, ବ୍ରାହ୍ମଣ ଏବଂ ଦେବ ପ୍ରତିନିଧି ମଧ୍ୟ ଅଛନ୍ତି ।

ଦମ୍ ନେବାପାଇଁ ମୁହୂର୍ତ୍ତେ ଅଟକିଗଲେ ଦ୍ୱୈପାୟନ । ବିସ୍ମୟରେ ହତବାକ୍ ହେଲେ ବିଦୂର । ଆଖିରେ ପଲକ ପଡୁ ନ ଥିଲା । ବିଭ୍ରାନ୍ତ ବିସ୍ମୟରେ ସେ ଦ୍ୱୈପାୟନଙ୍କ ମୁହଁକୁ ଚାହିଁଲା ବେଳକୁ ତାଙ୍କ ଅନ୍ତର କମ୍ପି ଉଠୁଥିଲା ବାରମ୍ବାର । ହାଲୁକା ଭାବେ ନିଃଶ୍ୱାସ ଟାଣିନେଲେ ସେ ଛାତି ଭିତରକୁ ।

ବିଦୂରଙ୍କ ଆଡ଼କୁ ଚାହିଁଥିଲେ ଦ୍ୱୈପାୟନ । ଗଳାର ସ୍ୱରକୁ ନରମ କରି ପ୍ରଶ୍ନ କଲେ, ତୁମେ କିଛି ଭାବୁଛ ବତ୍ସ ! ତୁମର କିଛି କରିବାର ଅଛି । କ'ଣ କରିବ କିଛି ସ୍ଥିର କରିଛ ?

ଦ୍ୱୈପାୟନଙ୍କ କଥାଗୁଡ଼ାକ ବିଦୂରଙ୍କ କାନରେ ବାଜୁଥିଲା ସତ, ହେଲେ ମଗଜରେ ପଶୁନଥିଲା । ସଂପୂର୍ଣ୍ଣ ଅନ୍ୟମନସ୍କ ଭାବେ ବିଦୂର ମୁଣ୍ଡକୁ ଅସ୍ଥିର ଭାବେ ହିଁ ହଲେଇବାକୁ ଲାଗିଲେ । କହିଲେ, ନା, ଏହି ମୁହୂର୍ତ୍ତରେ ତ ମୋର କିଛି ମନେପଡୁନି ।

ଦ୍ୱୈପାୟନ ହସିଲେ ବିଦୂରଙ୍କ ମୁହଁକୁ ଚାହିଁ । କହିଲେ, ତୁମ ମନକୁ ମୁଁ ଚିହ୍ନିଛି । ଯେତେଦିନ ଯିବ, ସେତେ ବେଶି ଭାବିବାକୁ ଲାଗିବ ସିଏ । ଦୁଃଶ୍ଚିନ୍ତା ମଧ୍ୟ ବଢ଼ିବ । ତଥାପି ସ୍ଥିର କରିପାରିବନି ତୁମର କର୍ତ୍ତବ୍ୟ । ମୁଣ୍ଡ ଖେଳେଇବାର ଦାୟିତ୍ୱଟା ତୁମେ ମୋ ଉପରେ ଛାଡ଼ିଦିଅ । କେବଳ ମୋର ଆଦେଶ ଓ ନିର୍ଦ୍ଦେଶ ମାନି ତୁମେ କାର୍ଯ୍ୟ କରିଯାଅ । ତାହାହେଲେ ହିଁ ହେବ ।

ବିଦୂର ନିଜ ଓଷ୍ଠକୁ ଦାନ୍ତରେ କାମୁଡ଼ି ଧରିଲେ- ବିସ୍ଫାରିତ ଚକ୍ଷୁ ଦ୍ୱୈପାୟନଙ୍କ ଉପରେ ନିବଦ୍ଧ ଥିଲା । କିଛି ସମୟ ପରେ ଅସ୍ଫୁଟ ସ୍ୱରରେ ଟିକିଏ ଅଭିମାନମିଶା କଣ୍ଠରେ କହିଲେ, ତା'ହେଲେ... କେବଳ ତାହାହିଁ କରିବି ?

କ୍ଷୀଣ ହସର ଝଲକ ଫୁଟେଇ ଦ୍ୱୈପାୟନ କହିଲେ, ତୁମେ ପାଣ୍ଡବମାନଙ୍କର ଅତି ପ୍ରିୟ । ଆପଣାର ଏକାନ୍ତ ଭାବେ । ଯୁଧିଷ୍ଠିରର ପିତା- ଏକଥା ଯେମିତି ଭୁଲି ନ ଯାଅ । ତାର ପିତା ହିସାବରେ ତୁମର କିଛି କରିବାର ଅଛି ।

ଦ୍ୱୈପାୟନଙ୍କ କଥା ଶୁଣି ବିଦୂର ଅତି କଷ୍ଟରେ ନିଜର ଲଜ୍ଜାକୁ ସମ୍ଭାଳି ନେଲେ । କିନ୍ତୁ ଭିତରେ ଭିତରେ ତାଙ୍କର ସମଗ୍ର ଶରୀର ଘର୍ମାକ୍ତ ହୋଇ ଉଠିଥିଲା । ନିଃଶ୍ୱାସ ଛାଡ଼ିଲା ବେଳେ ସେ ଅନୁଭବ କଲେ, ଶ୍ୱାସ ପବନଟା ମଧ୍ୟ ଥରିଉଠୁଛି ଯେମିତି ।

କୌଣସିଟା ଦ୍ୱୈପାୟନଙ୍କ ଦୃଷ୍ଟିକୁ ଏଡ଼େଇ ପାରିନଥିଲା । ହସିଲା ମୁଖରେ ପ୍ରଶ୍ନ କଲେ- ନେପଥ୍ୟର କୁଶୀଲବ ଭଳି ତୁମେ ଧୃତରାଷ୍ଟ୍ରଙ୍କ ଆତ୍ମବିଶ୍ୱାସର ଦୁର୍ଗରେ ଆଘାତ ସୃଷ୍ଟି କର ବତ୍ସ । ତାଙ୍କ ମନର ଶକ୍ତିକୁ ଦୋହଲେଇ ବିନାଶ ସାଧନର ବ୍ୟବସ୍ଥା କର । ରାଜପ୍ରାସାଦ ଓ ରାଜ୍ୟର ଅଭ୍ୟନ୍ତରରେ ସଂଘାତ ସୃଷ୍ଟି କର, ଯେଭଳି ଧୃତରାଷ୍ଟ୍ରଙ୍କ ମନକୁ ତାହା ଆନ୍ଦୋଳିତ, ବିଚଳିତ କରିପାରିବ । ଏହି ସଂଘାତ ସୃଷ୍ଟି କରିବାକୁ ହେବ ପାରିବାରିକ ପରିସୀମା ଭିତରେ ବିଶେଷ ଭାବେ ।

॥ ସାତ ॥

ପାଞ୍ଚପୁତ୍ର ଓ ଦୁଇ ମହିଷୀଙ୍କୁ ନେଇ ପାଣ୍ଡୁ ଶତଶୃଙ୍ଗ ପର୍ବତରୁ ହସ୍ତିନାପୁର ଯାତ୍ରା କଲେ । ସାଙ୍ଗରେ ଥିଲେ କିଛି ଦେବଋଷି । ବ୍ରାହ୍ମଣ ଏବଂ ଦେବନରପତିମାନଙ୍କ ପ୍ରତିନିଧିଗଣ ମଧ୍ୟ ସେଇ ଯାତ୍ରାରେ ଥିଲେ ।

ବସନ୍ତକାଳ । ପ୍ରକୃତିରୂପ ରାଜ୍ୟରେ ବର୍ଣ୍ଣରସର ପସରା ମେଲି ଦେଇଛି । ବଣର କୋଣେ କୋଣେ, ବୃକ୍ଷଲତା, ପାହାଡ଼କନ୍ଦର, ନଦୀ ଝରଣା, ଆକାଶ, ପ୍ରାନ୍ତର, ତୃଣକ୍ଷେତ୍ର ସବୁଠାରେ ସତେଯେମିତି କୋଉ ଅପରୂପା ରୂପବତୀକୁ ନିରବରେ ଅପଲକ ଦୃଷ୍ଟିରେ ଚାହିଁ ବସିଛି । ପାଣ୍ଡୁଙ୍କ ମନର ଗଭୀରତମ ପ୍ରଦେଶକୁ ଛୁଇଁ ଯାଉଥିଲା । ଦେହ ଆଉ ମନରେ ଅଜଣା ସୁରଟିଏ ସତେକି ବାଜି ଉଠୁଥିଲା । ଆଖିରେ ତାଙ୍କର ତୃପ୍ତିର ଆବେଗ । ଅବ୍ୟକ୍ତ ଆନନ୍ଦ ଓ ଉତ୍ତେଜନାରେ ହୃଦୟ ଟଳମଳ କରୁଥିଲା । ସତେଯେମିତି ଜୀବନର ଏକ ପରମ ସ୍ପର୍ଶର ସ୍ୱାଦ ପ୍ରକୃତି ହିଁ ଆଣିଦେଲା ତାଙ୍କୁ । ଏଭଳି ଅଫୁରନ୍ତ ସୌନ୍ଦର୍ଯ୍ୟାନୁଭୂତି କେବେବି ତାଙ୍କର ହୋଇନଥିଲା ।

ଶତଶୃଙ୍ଗ ପର୍ବତରେ ସେ ଷୋଳଟି ବସନ୍ତ କଟେଇଛନ୍ତି । ସେଇ ସମୟଗୁଡ଼ାକ ତାଙ୍କ ପାଇଁ ଦୁଃସହ ବୋଝ ହୋଇ ଉଠିଥିଲା । କୁନ୍ତୀ ହିଁ କେବଳ ତାଙ୍କ ମନରେ ଜୋର ଆଣିବାରେ ସକ୍ଷମ ଥିଲେ ବୋଲି ସେ ଜୀବନକୁ ସହିନେଇଥିଲେ । କେବଳ ସହିନେଇଥିଲେ ନୁହେଁ, ଭଲପାଇ ଶିଖିଥିଲେ ମଧ୍ୟ । ଶତଶୃଙ୍ଗ ପର୍ବତର ନିସ୍ତରଙ୍ଗ ଶାନ୍ତ ଜୀବନକୁ ସେ ଭଲ ପାଇଥିଲେ । ତା'ଭିତରେ ସେ ସନ୍ଧାନ କରିଥିଲେ ଅସରନ୍ତି ମାଧୁର୍ଯ୍ୟର । ହେଲେ, ଆଜିଭଳି ସେ କେବେ ମନପ୍ରାଣକୁ ଆଚ୍ଛନ୍ନ କରିନଥିଲା କି ଏଭଳି ପ୍ରଶାନ୍ତି ସେ କେବେ ଅନୁଭବ କରିନଥିଲେ । ଏଇ ଅନୁଭୂତି ସଂପୂର୍ଣ୍ଣ ଅଭିନବ ଓ ସ୍ୱାଦଭରା ।

ପଶ୍ଚିମ ଦିଗରେ ସୂର୍ଯ୍ୟ ବୁଡ଼ିଗଲେ । ପାଣ୍ଡୁ ଏବଂ ତାଙ୍କର ସହଯାତ୍ରୀଗଣ କୌଣସି ଏକ ଲୋକାଳୟ ନିକଟରେ ଶିବିର ସ୍ଥାପନ କଲେ ରାତ୍ରିଯାପନ ଉଦ୍ଦେଶ୍ୟରେ ।

ବସନ୍ତର ଆସନ୍ନ ସଂଧ୍ୟାରେ ବଣଜଙ୍ଗଲରେ ଏକ ଆଶ୍ଚର୍ଯ୍ୟଜନକ ମହିମାମୟ ସୌନ୍ଦର୍ଯ୍ୟ ସୃଷ୍ଟି ହେଲା । ବଣଭିତରୁ ରହି ରହି ଡାକି ଉଠିଲେ ମୟୂର ମୟୂରୀ । ବହୁବିଧ ପକ୍ଷୀଙ୍କ କାକଳିରେ କଳମୁଖର ହୋଇଉଠିଲା ବନ-ବନାନ୍ତର । ଗଛପତ୍ରର ଗହଳି ଭିତରୁ ଝିଙ୍କାରିର ଝିଁ ଝିଁ ସ୍ୱନ ଅନବରତ ବନଭୂମିକୁ ମୁଖରିତ କରୁଥିଲା ।

ଅନ୍ଧକାର ଗାଢ଼ ହୋଇ ଆସିବାରୁ ଚତୁର୍ଦ୍ଦିଗ ଝଲମଲ କରି ଉଠିଲା ଚନ୍ଦ୍ରକିରଣରେ । ଶିଶିର ଭିଜା ବଣ, ପ୍ରାନ୍ତର ଏବଂ ଉପଲଖଣ୍ଡ ଉପରେ ଜ୍ୟୋତ୍ସ୍ନାଲୋକ ପଡ଼ି ଏକ ଅପୂର୍ବ ଶୋଭା ସୃଷ୍ଟି କରୁଥିଲା । ସମଗ୍ର ବନଭୂମି ଚନ୍ଦ୍ରାଲୋକରେ ହସିଉଠୁଥିଲା ।

ପାଣ୍ଡୁ ସେଇ ସାଧାରଣ ଅଥଚ ଅସାମାନ୍ୟ ଦୃଶ୍ୟରେ ମୁଗ୍ଧ ହୋଇ ନିର୍ଜନ ଏକ ସ୍ଥାନରେ ସ୍ତବ୍ଧ ହୋଇ ଅନେକ ସମୟ ଧରି ଠିଆ ହୋଇରହିଥିଲେ ।

ଝରଣାର ଫେନୀଳ ପାଣିରେ ନିଜ ଦେହକୁ ବୁଡ଼େଇ ରଖି ସ୍ନିଗ୍ଧ ଶୀତଳ କରିନେଲେ ମାଦ୍ରୀ । କୂଳରେ ଠିଆ ହୋଇ ପାଣ୍ଡୁ ମାଦ୍ରୀଙ୍କ ଅନାବରଣ ଶରୀରର ନିଖୁଣ ଅପରୂପ ଗଢ଼ଣକୁ ନିରେଖି ଦେଖୁଥିଲେ । ଚନ୍ଦ୍ରାଲୋକରେ ଅପୂର୍ବ ଦିଶୁଥିଲେ ମାଦ୍ରୀ । ଶିଳା ଉପରେ ଆଣ୍ଠୁ ଦୁଇଟିକୁ ଛାତି ପାଖରେ ଜାକି ମାଦ୍ରୀ ଦେହ ପୋଛୁଥିଲେ ସଙ୍କୁଚିତ ହୋଇ । ତାଙ୍କର କୋମଳ ସ୍ପନ୍ଦିତ ଛାତିର ପେଲବ ଭାଂଜଟି ସ୍ପଷ୍ଟ ଦୃଷ୍ଟିଗୋଚର ହେଉଥିଲା । ତାଙ୍କର ଅପୂର୍ବ ଗ୍ରୀବା, କଣ୍ଠଦେଶର ଚମତ୍କାର ଅଳଙ୍କାର, କଜ୍ଜଳ କଳା ଆଖିର କଟାକ୍ଷ, ଓଷ୍ଠାଧରରେ ଆଶ୍ଚର୍ଯ୍ୟ ହସର ଆଭାସ - ସବୁ ମିଶି ଏକ ଦୁର୍ନିବାର ଆକର୍ଷଣ ପାଣ୍ଡୁଙ୍କୁ ମାଦ୍ରୀଙ୍କ ନିକଟକୁ ଟାଣି ନେଇଥିଲା । ମନପ୍ରାଣ ଦେଇ ସେ ମାଦ୍ରୀଙ୍କୁ ନିବିଷ୍ଟ ଭାବେ ଚାହିଁ ରହିଥିଲେ । ପାଣ୍ଡୁଙ୍କ ଦେହ ମନରେ ବିଦ୍ୟୁତ୍ ଖେଳିଗଲା ମୁହୂର୍ତ୍ତକରେ... । ଜଳି ଉଠିଲେ ସେ । ଭୟଙ୍କର କାମପିପାସା ଜାଗିଉଠିଲା ତାଙ୍କ ଭିତରେ ବହୁଗୁଣିତ ହୋଇ । ନିଜକୁ ଥୟ ରଖି ପାରିଲେନି ସେ । ପତଙ୍ଗ ଭଳି ନିଆଁ ଆଡ଼କୁ ଟାଣି ହୋଇ ଆଗେଇ ଯାଉଥିଲେ । ଉତ୍ତେଜନାରେ ଶରୀର କମ୍ପି ଉଠିଲା । ହଠାତ୍ ନିଶା ଭଳି କେମିତି ଗୋଟାଏ ଅବସନ୍ନ ଭାବ ତାଙ୍କୁ ଝାଙ୍କି ପକାଇଲା । ପାଣ୍ଡୁ ଅନୁଭବ କରୁଥିଲେ ତାଙ୍କ ପାଦତଳର ମାଟି ସତେଯେମିତି ଦୋହଲି ଯାଉଛି । ଲକ୍ଷ ଲକ୍ଷ ଜୁଳୁଜୁଳିଆ ପୋକ ଫୁଲ ଭଳି ଫୁଟି ଯାଉଛନ୍ତି ଆଖି ଆଗରେ । ଚେତନାର ସୀମାଟା କୁଆଡ଼େ ହଜି ହଜି ଯାଉଛି । ତାପର ମୁହୂର୍ତ୍ତରେ ହିଁ ତାଙ୍କ ଶରୀର ଧପ୍ କରି ଢଳିପଡ଼ିଲା ମାଟି ଉପରେ ।

ଅକସ୍ମାତ୍ ଚମକି ଉଠିଲେ ମାଦ୍ରୀ । ସମସ୍ତ ମୁଗ୍ଧତା ମୁହୂର୍ତ୍ତକରେ କଟିଗଲା । ଚିତ୍କାର କରି ଉଠିଲେ । ଛାତି ଭିତରଟା ଥରିଲା । ପଞ୍ଜରା ସବୁ ସତେ ଯେମିତି ଚୂରମାର ହୋଇଗଲା ସେଇ ଚିତ୍କାରରେ । ପାଗଳ ଭଳି ସେ ପାଣିଭିତରୁ କୂଳକୁ ଉଠି ଆସିଲେ । ପାଣ୍ଡୁଙ୍କର ନିଥର ନିଷ୍ପ୍ରାଣ ଦେହ ମୁହଁକୁ ଚାହିଁ ଆର୍ତ୍ତନାଦ କରିଉଠିଲେ । ସେଇ ଭୟାର୍ତ୍ତ ଚିତ୍କାର ଅନ୍ଧାର

ଭିତରେ ଶିହରିତ ହେଇ ଉଠିଲା - ଅନେକ ସମୟ ଧରି ଗଛର ପତ୍ର, ବଣଜଙ୍ଗଲ ଓ ପାହାଡ଼ର ପଥର ଦେହରେ ଅନୁରଣିତ ହେଇ ଉଠିଥିଲା ସେଇ ଚିତ୍କାର ।

ମାଦ୍ରୀଙ୍କ ଆର୍ତ୍ତଧ୍ୱନି କୁନ୍ତୀଙ୍କ ଛାତିକୁ ଥରେଇ ଦେଲା । ତାଙ୍କର ସମସ୍ତ ବୋଧଶକ୍ତି ଓ ଚେତନା ଭିତରେ ବାରମ୍ବାର ଆଘାତ କରିଥିଲା ସେଇ ଆର୍ତ୍ତସ୍ୱର । ସମସ୍ତ ଚିନ୍ତା, ଭାବନା ଖଣ୍ଡ ବିଖଣ୍ଡିତ ହୋଇଗଲା ଏକ ଅଜଣା ଆଶଙ୍କାରେ । ଉତ୍କଣ୍ଠିତ ମନରେ କୁନ୍ତୀ ପାଞ୍ଚପୁଅଙ୍କୁ ନେଇ ଶିବିରରୁ ବାହାରକୁ ଆସିଲେ ।

ହସ୍ତିନାପୁର ଆସିବା ପଥରେ ଆକସ୍ମିକ ଭାବେ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ପାଣ୍ଡୁ ମୃତ୍ୟୁବରଣ କଲେ । ଏହି ଦାରୁଣ ଦୁଃସମ୍ବାଦ ବ୍ୟାସଦେବଙ୍କ ନିକଟରେ ପହଞ୍ଚିବାକୁ ବିଶେଷ ବିଳମ୍ବ ଲାଗି ନ ଥିଲା । ଗୋଟାଏ ଦୂରତ୍ୱ ରଖି ବ୍ୟାସଦେବ ପ୍ରଚ୍ଛନ୍ନ ଭାବେ ସେମାନଙ୍କ ସହିତ ଅବସ୍ଥାନ କରୁଥିଲେ । କୁନ୍ତୀ, ମାଦ୍ରୀ, ପାଣ୍ଡୁ ଏବଂ ସେମାନଙ୍କ ପ୍ରିୟଜନମାନଙ୍କୁ କିନ୍ତୁ ଏ କଥା ଜଣା ନ ଥିଲା ।

ପାଣ୍ଡୁଙ୍କ ମୃତ୍ୟୁ ସମ୍ବାଦ ଅକସ୍ମାତ୍ ବ୍ୟାସଦେବଙ୍କୁ ସ୍ତବ୍ଧ କରିଦେଲା । ଏତେ ବଡ଼ ଶୂନ୍ୟତା ସେ ଆଗରୁ କେବେ ଅନୁଭବ କରିନଥିଲେ । ସଂବାଦ ପାଇବା ସଙ୍ଗେ ସଙ୍ଗେ ଯେ ତାଙ୍କୁ ଦେଖିବା ପାଇଁ ଯିବେ, ସେଇ ଶକ୍ତି ମଧ ତାଙ୍କର ନ ଥିଲା । ଦାରୁଣ ନୈରାଶ୍ୟ ଆଉ ହତାଶା ତାଙ୍କୁ ଜଡ଼ କରି ପକାଇଥିଲା । ନିରାଶ ହେବାର ଘଟଣା ତାଙ୍କ ପାଖରେ କିଛି ନୂଆ କଥା ନୁହେଁ । ପିତାଙ୍କ ଆଶ୍ରମରେ ସହପାଠୀମାନେ ବାରମ୍ବାର ତାଙ୍କୁ ହତାଶ କରିଛନ୍ତି । ତାଙ୍କର ପ୍ରଥମ ସ୍ୱପ୍ନ ଓ କଳ୍ପନା, ଆଘାତପ୍ରାପ୍ତ ହେଇଥିଲା ଆଶ୍ରମର ମୁନିଋଷିମାନଙ୍କ ପ୍ରବଳ ଈର୍ଷା ଓ ଶତ୍ରୁତା ଦ୍ୱାରା । ଅମ୍ବାଳିକାର ଘୃଣା ଏବଂ ପ୍ରତ୍ୟାଖ୍ୟାନ, ଅମ୍ବିକାର ଅସହାୟ ଆତ୍ମସମର୍ପଣରେ, ଭୀଷ୍ମଙ୍କର ବୈରିତା ଭିତରେ, ଧୃତରାଷ୍ଟ୍ରର ବିଶ୍ୱାସଘାତକତାରେ ସେ ହତାଶ ହେଇଥିଲେ । କିନ୍ତୁ ଦୈବ ତ କେବେ ବିରୂପ ହୋଇନଥିଲା ତାଙ୍କ ପ୍ରତି । ଆଜି ପ୍ରଥମଥର ପାଇଁ ମନେହେଲା ବିଧାତା ଯେମିତି ତାଙ୍କ ବିରୋଧରେ ଏକ ଗୋପନ ଚକ୍ରାନ୍ତରେ ଲିପ୍ତ ହେଇଛି । ତା' ନହେଲେ ଶତଶୃଙ୍ଗ ପର୍ବତରେ ଆରମ୍ଭ ହୋଇଥିବା ନାଟକର ଶ୍ୱାସରୁଦ୍ଧକାରୀ ଉତ୍ତେଜନାର ଏଇ ଚରମ ମୁହୂର୍ତ୍ତରେ ଏଇଭଳି ଭାବରେ ଯବନିକା ପଡ଼ିଥାନ୍ତା କାହିଁକି ?

ବ୍ୟାସଦେବ ଛାତିରେ, ଏକ ଗଭୀର ଯନ୍ତ୍ରଣା ଅନୁଭବ କଲେ । ମୃତ୍ୟୁ ମାନେ କ'ଣ ସ୍ତବ୍ଧତା ? ପରିଚୟହୀନତା ? ପାଣ୍ଡୁର ଦେହ କିମ୍ବା ଅସ୍ତିତ୍ୱ ଯଦି ନ ରହେ ତାହେଲେ ପଞ୍ଚପାଣ୍ଡବଙ୍କ ଅସ୍ତିତ୍ୱ କିଭଳି ପ୍ରମାଣିତ ହେବ ? ଏମାନେ ଯେ ପାଣ୍ଡୁଙ୍କ ଇଚ୍ଛାରେ, ସମ୍ମତିରେ; କୁନ୍ତୀ ଓ ମାଦ୍ରୀଙ୍କ ଗର୍ଭରେ ଜନ୍ମ ନେଇଛନ୍ତି - କିଏ ଦେବ ଏଇ ସ୍ୱୀକାରୋକ୍ତି ? କିଭଳି ବା ଏମାନେ ତାର ପ୍ରମାଣ ଦେବେ ?

ପାଣ୍ଡୁଙ୍କ ନଶ୍ୱର ଶରୀର ଆଉ ଟିକିଏ ପରେ ଅଗ୍ନିଙ୍କୁ ସମର୍ପଣ କରାଯିବ । ତା'ପରେ ସବୁ ନିଶ୍ଚିହ୍ନ ହେଇଯିବ, ଲିଭିଯିବ । ସେତେବେଳେ ଏଇ ମଣିଷଟିର କିଏ ପତ୍ନୀ, କିଏ ପୁତ୍ର, କିଏ ବା କାହାର । ରାଜସିଂହାସନରେ କାହିଁକି ଭାଗୀଦାର ହେବେ ଏମାନେ । ଏ ସମସ୍ତ ଜଟିଳ, କୁଟିଳ ପ୍ରଶ୍ନର କି ପ୍ରମାଣ ଆଉ କି ଉତ୍ତର ଦେବ କୁନ୍ତୀ, ଅଥବା ତାର ସଙ୍ଗୀମାନେ ?

ବ୍ୟାସଦେବଙ୍କ ପାଦତଳର ମାଟିରେ ଛୋଟ ଗୋଟିଏ ଭୂକମ୍ପନ ଅନୁଭୂତ ହେଲା । ବାସ୍ତବରେ କିନ୍ତୁ ତାହା ଭୂମିକମ୍ପ ନ ଥିଲା, ତାହା ଥିଲା ତାଙ୍କ ନିଜ ଶରୀରର ଏକ ଅପ୍ରତିରୋଧୀ ଦୁର୍ବଳତାଜନିତ ପ୍ରକମ୍ପନ । ଯାହା ତାଙ୍କର ସମଗ୍ର ସତ୍ତାରେ ଏକ ତୀବ୍ର ହତାଶା ଓ ନୈରାଶ୍ୟରେ ସମ୍ମୋହିତଙ୍କ ଭଳି ଥର ଥର ହେଇ କମ୍ପୁଥିଲେ ।

ସ୍ୱପ୍ନାଛନ୍ନ ଅବସ୍ଥାରେ ସେ ରାସ୍ତାକୁ ପାଦ ବଢ଼େଇଲେ । ସ୍ନିଗ୍ଧ ଚନ୍ଦ୍ରର କିରଣ ନିଷ୍ପ୍ରଭ ହେଇ ଯାଇଥିଲା । କିଛି କ୍ଷଣ ପରେ ନିଶାନ୍ତର ଘନ ଅନ୍ଧକାର ଓହ୍ଲେଇ ଆସିଲା ଚତୁର୍ଦ୍ଦିଗକୁ । ରହସ୍ୟମୟ ଏକ ସ୍ୱର୍ଗୀୟ ଆଭା ଉକୁଟି ଉଠିଲା ସମଗ୍ର ଆକାଶରେ । ସରସ୍ୱତୀର ଛାତି ଉପରୁ ହୁ ହୁ ହେଇ ହେମାଳ ଉତ୍ତରା ବହିଆସିଲା । ବ୍ୟାସଦେବଙ୍କ ମୁକ୍ତ କେଶରାଶି ପବନରେ ଅସ୍ତବ୍ୟସ୍ତ ହେଇଗଲା । ଆଗର ଭାବନା ଆଉ ଛାତି ତଳେ ନ ଥିଲା । ମୁଣ୍ଡ ମଧ୍ୟ ହାଲୁକା ଲାଗୁଥିଲା ।

ବ୍ୟାସଦେବ ଯେତେବେଳେ ଶିବିରରେ ପହଞ୍ଚିଲେ, ସେତେବେଳେ ଚାରିଆଡ଼େ ସୂର୍ଯ୍ୟାଲୋକରେ ଝିଲ୍‌ମିଲ୍ ହେଇ ବିଛେଇ ପଡ଼ିଥିଲା । ପାଣ୍ଡୁଙ୍କ ନିଷ୍ପ୍ରାଣ ଶରୀର ଉପରେ ମୂର୍ଚ୍ଛିତା ହେଇ ପଡ଼ିଥିଲେ ମାଦ୍ରୀ । କୁନ୍ତୀ ପାଣ୍ଡୁଙ୍କ ପଦପ୍ରାନ୍ତରେ ପାଷାଣ ପ୍ରତିମା ଭଳି ନିଶ୍ଚଳ ହେଇ ବସିଥିଲେ ।

ବ୍ୟାସଦେବଙ୍କୁ ଦେଖିବାମାତ୍ରେ କରୁଣ ଭାବେ କାନ୍ଦିଉଠିଲେ କଇଁ କଇଁ ହୋଇ । ପଞ୍ଚପାଣ୍ଡବ ପିତାଙ୍କ ଶବପିଣ୍ଡ ଆଡ଼କୁ ସାଶ୍ରୁ ନେତ୍ରରେ ଚାହିଁରହିଥିଲେ । ସେମାନଙ୍କର କରୁଣ ବିଷାଦିତ ନିଃଶ୍ୱାସରେ ସେଇ ସ୍ଥାନଟି ବିଷଣ୍ଣ ହେଇ ଉଠିଥିଲା ।

ପାଣ୍ଡୁଙ୍କର ସେଇ ସୁନ୍ଦର ଗୌରବର୍ଣ୍ଣର ଶରୀର ଆଡ଼କୁ ଚାହିଁ ବ୍ୟାସଦେବଙ୍କ ଅନ୍ତର କାନ୍ଦି ଉଠିଲା । ତାଙ୍କ ଅନୁଭୂତି ଭିତରେ ବିଦ୍ୟୁତ୍‌ର ତରଙ୍ଗ ଖେଳିଗଲା । ଛାତି ଭିତର ଆନ୍ଦୋଳିତ ହେଇ ଉଠିଲା । ପାଣ୍ଡୁଙ୍କ ଅନସ୍ତିତ୍ୱର ପ୍ରଶ୍ନ ହଠାତ୍ ତାଙ୍କ ମନ ଭିତରକୁ ପ୍ରବଳ ଭାବେ ଆଲୋଡ଼ିତ କଲା । ମଣିଷର ଏଇ ଶରୀର ଯେତେ ପର୍ଯ୍ୟନ୍ତ ଥାଏ, ସେତେବେଳଯାଏ ସମସ୍ତେ ତାର ଅସ୍ତିତ୍ୱକୁ ଅନୁଭବ କରିଥାନ୍ତି ଶକୁନ୍ତଳାଙ୍କ ଅଭିଜ୍ଞାନ ମୁଦ୍ରିକା ଭଳି । ଯେତେ ପର୍ଯ୍ୟନ୍ତ ଶକୁନ୍ତଳାଙ୍କ ପାଖରେ ମୁଦ୍ରିକାଟି ରହିଛି, ସେତେବେଳଯାଏ ସମସ୍ତେ ତାକୁ ଚିହ୍ନିବେ, ମାନିବେ, ଭୟ କରିବେ, ଶ୍ରଦ୍ଧା କରିବେ । ଠିକ୍ ସେଇଭଳି ପାଣ୍ଡୁଙ୍କର ଯେ ପର୍ଯ୍ୟନ୍ତ ଏହି

ମହାର୍ଘ ନଶ୍ୱର ନିଷ୍ପ୍ରାଣ ଶରୀରଟା ରହିଛି, ସେତେପର୍ଯ୍ୟନ୍ତ ତାଙ୍କର ଗୋଟିଏ ବାସ୍ତବ ଅସ୍ତିତ୍ୱ ଅଛି । ଏହି ଶରୀରକୁ ଥରେ ଅଗ୍ନିଙ୍କୁ ସମର୍ପି ଦେଲେ, ମୁଦ୍ରିକା ହରାଇଲା ଭଳି ଅବସ୍ଥା ହେବ ପାଣ୍ଡବ ପଞ୍ଚଭ୍ରାତାଙ୍କର । ସେମାନେ ପ୍ରକୃତରେ ଯେ ପାଣ୍ଡବ, ପାଣ୍ଡୁଙ୍କର କ୍ଷେତ୍ରଜପୁତ୍ର, ଏକଥା ବିଶ୍ୱାସ କରିବା ଟିକିଏ କଷ୍ଟସାଧ୍ୟ ହେଇପଡ଼ିବ । ଶରୀର ଦହନ କରିବା ଅର୍ଥ ବିଶ୍ୱାସ ଓ ପ୍ରମାଣକୁ ନଷ୍ଟ କରିଦେବା । ସୁତରାଂ ପାଣ୍ଡୁଙ୍କ ଶବ ରାଜଧାନୀ ହସ୍ତିନାକୁ ନେଇଯିବା ପାଇଁ ମନେ ମନେ ସ୍ଥିର କରିନେଲେ ବ୍ୟାସଦେବ ।

ପାଣ୍ଡୁଙ୍କ ସହଯାତ୍ରୀ ବ୍ରାହ୍ମଣ, ଋଷି ଏବଂ ଦେବ ପ୍ରତିନିଧିମାନଙ୍କୁ ବ୍ୟାସଦେବ ବୁଝାଇଦେଲେ ଯେ, ପାଣ୍ଡୁଙ୍କ ମୃତଦେହର ସତ୍କାର ଏଠାରେ କରିବା ଉଚିତ ହେବନି । ରାଜଧାନୀ ହସ୍ତିନାକୁ ମୃତପିଣ୍ଡ ନେଇଯିବାହିଁ ଯଥାର୍ଥ ହେବ । ସେଇଠାରେ ହିଁ ତାଙ୍କର ସତ୍କାର ଭୂତପୂର୍ବ ନରପତିଙ୍କ ଭଳି କରିବା ବିଧେୟ ହେବ ।

ବ୍ୟାସଦେବଙ୍କ ବିଚାରକୁ ସମସ୍ତେ ଏକସ୍ୱରରେ ଅନୁମୋଦନ କଲେ । କିନ୍ତୁ ହସ୍ତିନାପୁରରେ ପହଞ୍ଚିବା ପାଇଁ ଦୁଇଦିନ ଲାଗିବ । ଏହି ସମୟ ମଧ୍ୟରେ ଶରୀରର ପଚନକ୍ରିୟା ଆରମ୍ଭ ହୋଇଯିବ । ବିକୃତି ଘଟିବ ଓ ଦୁର୍ଗନ୍ଧ ସୃଷ୍ଟି ହେବ ।

ପ୍ରତ୍ୟୁତ୍ତରରେ ଦ୍ୱୈପାୟନ କହିଲେ, ଶବ ସଂରକ୍ଷଣର ଆରକ ପ୍ରସ୍ତୁତ ପ୍ରଣାଳୀ ଏବଂ ତାର ବ୍ୟବହାର ପଦ୍ଧତି ମୁଁ ଜାଣେ । ଆରକ ଭିତରେ ମୃତଶରୀର ରଖିଲେ ତାହା ଅବିକୃତ ରହିବ ଏବଂ ତୁମ୍ଭେମାନେ ନିର୍ଭାବନାରେ ହସ୍ତିନାପୁର ପର୍ଯ୍ୟନ୍ତ ପହଞ୍ଚି ଯାଇପାରିବ ।

ଦୀର୍ଘ ଦେଢ଼ଯୁଗ ପରେ ପାଣ୍ଡୁ ହସ୍ତିନାକୁ ପ୍ରତ୍ୟାବର୍ତ୍ତନ କଲେ । କିନ୍ତୁ ଜୀବିତରେ ନୁହେଁ ମୃତଭାବେ । ତାଙ୍କର ଦେବତୁଲ୍ୟ ପଞ୍ଚପୁତ୍ର ଓ ମହିଷୀଦ୍ୱୟ, ମୃତ ପାଣ୍ଡୁଙ୍କ ମରଶରୀରକୁ ନେଇ ହସ୍ତିନାପୁର ଆସୁଛନ୍ତି, ଏହି ସଂବାଦକୁ ବ୍ୟାସଦେବ କୌଶଳତାର ସହ ପ୍ରଚାର କରାଇଦେଲେ । ପ୍ରତ୍ୟେକଙ୍କ ମୁଖରେ ସେଇ କଥା ବିଞ୍ଚିହେଇ ପଡ଼ିଲା ଏଇ ଦୁଃସମ୍ବାଦ ଭିତରେ ।

ସକାଳର ସୂର୍ଯ୍ୟ ଉଠିବା ପୂର୍ବରୁ ଦଳଦଳ ହେଇ ମଣିଷମାନେ ରାଜପୁରୀ ଅଭିମୁଖେ ଯାତ୍ରା କଲେ । ସକାଳୁ ସକାଳୁ ହିଁ ରାଜପ୍ରାସାଦରେ ଲୋକଗହଳି ବଢ଼ିବାକୁ ଲାଗିଲା । ବେଳ ବଢ଼ିବା ସଙ୍ଗେ ସଙ୍ଗେ ରାଜପୁରୀର ପ୍ରାଙ୍ଗଣ ଡେଇଁ ଭିଡ଼ ରାଜପଥ ଉପରେ ଜମିଲା । ପାଣ୍ଡୁପୁତ୍ରଙ୍କୁ ନେଇ ନାନା ପ୍ରକାର କଳ୍ପନା, ଜଳ୍ପନା, ଅଦ୍ଭୁତ ଗଳ୍ପ ସବୁ ଲୋକମୁଖରେ ବିଞ୍ଚିହେଇ ପଡ଼ିଲା । ଅଜ୍ଞ, ମୂର୍ଖ, ଜନାଗଣ କୌଣସି ବିଚାର ନ କରି ବିଶ୍ୱାସ କରିନେଲେ ଯେ, ପାଣ୍ଡୁଙ୍କ ମହିଷୀଦ୍ୱୟ କୌଣସି ଏକ ଅଲୌକିକ ମନ୍ତ୍ରବଳରେ ଦେବପୁତ୍ରମାନଙ୍କୁ ଲାଭ କରିଛନ୍ତି । ସେମାନଙ୍କ ରୂପସୌଷ୍ଠଭ ଖୁବ୍ ଆକର୍ଷଣୀୟ । ମୁଖମଣ୍ଡଳରୁ ଏକପ୍ରକାର ଜ୍ୟୋତି ବିନିର୍ଗତ ହେଉଛି – ମଧୁର ରୂପ, ଅପରୂପ ଆଖି ଦିଓଟିକୁ ଚାହିଁଲେ ଦୃଷ୍ଟି ଫେରୁନି ।

ଅଠାକାଠି ଭଳି ଲାଖି ରହୁଛି । କଥାବାର୍ତ୍ତା ମଧ୍ୟ ସାଧାରଣ ମଣିଷ ଭଳି ନୁହେଁ । ଏମାନେ କୁଆଡ଼େ ପୃଥିବୀରୁ ମଣିଷ ଭିତରେ ଥିବା ଭେଦାଭେଦ ବୈଷମ୍ୟ ଦୂର କରିବା ଉଦ୍ଦେଶ୍ୟରେ ଜନ୍ମଗ୍ରହଣ କରିଛନ୍ତି । ଏହି ପୃଥିବୀକୁ ମଣିଷର ବସବାସ ଯୋଗ୍ୟକରି ଗଢ଼ି ତୋଳିବା ପାଇଁ ଈଶ୍ୱର ସ୍ୱୟଂ ସେମାନଙ୍କ ଅଂଶରେ ଜନ୍ମଗ୍ରହଣ କରିଛନ୍ତି । ଗହଳି ଭିତରେ କଥାଗୁଡ଼ିକର ସତ୍ୟାସତ୍ୟ ବିଚାର କରିବା ପାଇଁ କେହି ପ୍ରସ୍ତୁତ ନ ଥିଲେ । ନିର୍ବିବାଦରେ ଯା', ତା' ମୁହଁର କଥା କ୍ରମଶଃ ଫୁଲିଫାଟି ହେଇ ଶେଷରେ ପାଣ୍ଡୁପୁତ୍ରମାନେ ଏକ ଅସାଧାରଣ ମଣିଷ ହେଇ ଉଠିଲେ ସମସ୍ତଙ୍କ ପାଇଁ । ବର୍ତ୍ତମାନ ଜନତା ସେଇ ଦେବତୁଲ୍ୟ ପାଣ୍ଡବପୁତ୍ରଙ୍କୁ ଦେଖିବାପାଇଁ ଉଦ୍‌ଗ୍ରୀବ । ଉତ୍କର୍ଣ୍ଣ କୌତୂହଳ ନେଇ ସମସ୍ତେ ପ୍ରତୀକ୍ଷା କରିବାକୁ ଲାଗିଲେ ।

ପାଣ୍ଡୁଙ୍କ ଆକସ୍ମିକ ମୃତ୍ୟୁ ସଂବାଦରେ ରାଜସଭା ସ୍ତବ୍ଧ । ଛୁଞ୍ଚିଟିଏ ଗଳିପଡ଼ିଲେ ମଧ୍ୟ ଶବ୍ଦ ହେବ । ସିଂହାସନରେ ଧୃତରାଷ୍ଟ୍ର ଅତ୍ୟନ୍ତ ଗମ୍ଭୀର ଓ ବିମର୍ଷ ଭାବେ ବସିଥିଲେ । ଭୀଷ୍ମ ତାଙ୍କ ପାର୍ଶ୍ୱବର୍ତ୍ତୀ ଆସନରେ ମୁଣ୍ଡରେ ହାତ ଦେଇ ବସି ଭାବୁଥିଲେ- 'ଅତଃ କିମ୍ ?' କଣିକ, ଶକୁନି ଉଦ୍ଦେଶ୍ୟହୀନ ଭାବେ ଏମାନଙ୍କ ମୁଖକୁ ଚାହିଁ ନିରବରେ ବସି ରହିଲେ । ସମଗ୍ର ରାଜସଭା ଶୋକାକୁଳ, ଥମ୍‌ଥମ୍ ସ୍ତବ୍‌ଧତା ବିରାଜମାନ କରୁଥିଲା ସବୁଠାରେ ।

ଧୃତରାଷ୍ଟ୍ରଙ୍କ ଭିତରେ କିନ୍ତୁ ଗୋଟାଏ ମିଶ୍ର ପ୍ରତିକ୍ରିୟା ସୃଷ୍ଟି ହେଇଥିଲା । କଣ୍ଟା ଫୋଡ଼ି ହେଇଗଲେ ଯେଭଳି ଅସ୍ୱସ୍ତି ଓ ଯନ୍ତ୍ରଣା ହୁଏ, ଅନୁରୂପ ସେଇଭଳି ଏକ ଯନ୍ତ୍ରଣା ତାଙ୍କ ଛାତିର ହୃତ୍‌ପିଣ୍ଡରେ ସେ ଅନୁଭବ କରୁଥିଲେ । ଏ କଷ୍ଟର କୌଣସି ପରିପ୍ରକାଶ ନ ଥିଲା ବାହାରେ । କେବଳ ଗୋଟାଏ ତୀବ୍ର ଯନ୍ତ୍ରଣାର ଦହନ ଥିଲା । ଏହି ଦୁଃସମ୍ବାଦ ଭୀଷ୍ମଙ୍କୁ କାତର କରି ତୋଳିଥିଲା । ତାଙ୍କ ମୁଖମଣ୍ଡଳ ମଳିନ ଓ ବିମର୍ଷ ଦିଶୁଥିଲା । ମୁଖରେ ଉଦ୍‌ବେଗ, ଭ୍ରୂଯୁଗଳ ଚିନ୍ତାରେ କୁଞ୍ଚିତ-ପାଣ୍ଡୁଙ୍କ ମୃତ୍ୟୁ ସଂବାଦର ଆଚ୍ଛନ୍ନ ଭାବ ଅନେକ ସମୟ ଧରି ତାଙ୍କୁ ଗଭୀର ଶୋକରେ ଜଡ଼ କରି ପକାଇଥିଲା ।

ହଠାତ୍ ଭିଡ଼ ଭିତରୁ ରବ ଉଠିଲା- 'ଏଇ ଆସୁଛନ୍ତି, ଏଇ ଆସୁଛନ୍ତି । କୌତୂହଳୀ ଜନତାମୁଖର ସେଇ ସ୍ୱରଧ୍ୱନି ସାଗର କଲ୍ଲୋଳ ପରି ବହୁଦୂର ପର୍ଯ୍ୟନ୍ତ ଶୁଣାଗଲା । ରାଜସଭାରେ ମଧ୍ୟ ସେଇ ଧ୍ୱନି ଯାଇ ଆଘାତ କଲା । ଜଣେ ପରିଚାରିକା କାନ୍ଦି କାନ୍ଦି ଘର ଭିତରୁ ଛୁଟି ଆସିଲା । ଭୀଷ୍ମ, ଧୃତରାଷ୍ଟ୍ର, ଶକୁନି ମୁହଁ ଉଠାଇ ଚାହିଁଲେ । କଣିକ ବାମ, ଡାହାଣକୁ ମୁଣ୍ଡ ହଲେଇ ହଲେଇ ଶକୁନିଙ୍କୁ କିଛି ଗୋଟାଏ ଇଙ୍ଗିତ କଲା ।

ପରିଚାରିକାର କ୍ରନ୍ଦନଧ୍ୱନି ସ୍ତବ୍‌ଧତାକୁ ଭାଙ୍ଗି ଖିନ୍‌ଭିନ୍ କରି ପକାଇଲା । ବୁକୁ ଚିରି ଛୁଟି ଆସିଲା ଦୀର୍ଘଶ୍ୱାସଟିଏ ଭୀଷ୍ମଙ୍କର । ସେଇ ଦୀର୍ଘଶ୍ୱାସ ଭିତରେ ଜମାଟ ବାନ୍ଧା ଦୁଃଖ ବେଦନା, ଯନ୍ତ୍ରଣା ସବୁ ଏକାଠି ମିଶି ଯେମିତି ବାହାରି ଆସିଲା । ଟିକିଏ ହାଲୁକା ଲାଗିଲା ଛାତି ଭିତରଟା । ଗମ୍ଭୀର ଗଳାରେ ଭୀଷ୍ମ କହିଲେ- ବସ ଧୃତରାଷ୍ଟ୍ର ! ଏଭଳି ଗୋଟିଏ

ଦାରୁଣ ଦୁଃଖ ମୁହୂର୍ତ୍ତରେ ଆମର କଥାବାର୍ତ୍ତା ଓ ଆଚରଣ ଖୁବ୍ ନମ୍ର ଓ ଆନ୍ତରିକ ହେବା ଉଚିତ । ପାଣ୍ଡୁ ମହିଷୀ ଦ୍ୱୟ ଏଇ ପରିବାର ଓ ବଂଶର ବଧୂ । ସେ ଦୁହେଁ ଶୋକାର୍ତ୍ତ । ସେମାନଙ୍କ ପ୍ରତି ଆମ୍ଭମାନଙ୍କର ସହାନୁଭୂତି ଏବଂ ମନୋବେଦନା ରହିବା ନିହାତି ଆବଶ୍ୟକ । ଉଦାର ପୁରୁବଂଶର କୌଣସି ନିନ୍ଦା, ଦୁର୍ନାମ ରଟିଲା ଭଳି କେହି କୌଣସି କାର୍ଯ୍ୟ କରିପାରିବେ ନାହିଁ । ଶୁଣାଯାଉଛି, ଏମାନଙ୍କ ସହିତ ବାହାର ରାଜ୍ୟର ଗଣ୍ୟମାନ୍ୟ ମୁନିଋଷି, ବ୍ରାହ୍ମଣ ଓ ଦେବ ପ୍ରତିନିଧିଗଣ ଆସୁଛନ୍ତି । ବିପନ୍ନ ପରିବାରର ବନ୍ଧୁ ହୋଇ ଏମାନେ ସମସ୍ତେ ଆସୁଛନ୍ତି ସାହାଯ୍ୟ କରିବା ଅଭିପ୍ରାୟ ନେଇ । ଏମାନଙ୍କ ସମ୍ମୁଖରେ ଆମ୍ଭେମାନେ ଯେପରି ପାରିବାରିକ ଦ୍ୱିଧା-ଦ୍ୱେଷ ବିଦ୍ୱେଷର ଶିକାର ନ ହେଉ । ଏସବୁ ଅତିଥିମାନଙ୍କର ଆଦର ଯତ୍ନ, ଆପ୍ୟାୟନ, ଆତିଥ୍ୟରେ ଯେପରି କୌଣସି ତ୍ରୁଟି ନ ହୁଏ, ସେ ସଂପର୍କରେ ସଚେତନ ହେବା ଉଚିତ । ଆହୁରି ଗୋଟାଏ କଥା ମନେରଖିବାକୁ ହେବ, ପାଣ୍ଡୁ ପୁତ୍ରମାନଙ୍କ ସଂପର୍କରେ ଆମର ଯେତେ ସଂଶୟ, ଅଭିଯୋଗ, ଅଥବା ପ୍ରତିବାଦ ଥାଉ ନା କାହିଁକି, ବର୍ତ୍ତମାନ ପାଇଁ ତାହା ଯେମିତି ବାହାରେ ପ୍ରକାଶ ନପାଏ । ଏମାନଙ୍କୁ କୌଣସି ଦୁଃଖ, ବ୍ୟଥା ବା ମନସ୍ତାପ ଆମେ ଦେବା ନାହିଁ । ବତ୍ସ ଧୃତରାଷ୍ଟ୍ର ! ଦେଶ ନିକଟରେ କଠିନ ଏକ ପରୀକ୍ଷା ଦେବାର ସମୟ ଆଜି ଆସିଛି । ସହିଷ୍ଣୁତାର ମୂଲ୍ୟ ଦେଇ ଆମେ ଏହି ସଂକଟରୁ ଉତ୍ତୀର୍ଣ୍ଣ ହେବାକୁ ଶପଥ ନେବା । ମହାରାଜ ଧୃତରାଷ୍ଟ୍ରଙ୍କର ଜୟ ହେଉ ।

କେହି କୌଣସି କଥା କହିନଥିଲେ । ମନେହେଲା, ଗଭୀର ବିଷାଦ ଓ ଶୋକରେ ସ୍ତବ୍ଧ ହେଇଯାଇଛି ରାଜସଭା ।

ବେଶ୍ କିଛିକ୍ଷଣ ଧରି ଏହି ନିରବତା ବିରାଜମାନ କଲା ରାଜସଭାରେ । ଗୁଡ଼ିଏ ଓଜନିଆ ନିଃଶ୍ୱାସର ଶବ୍ଦ ବ୍ୟତୀତ ଆଉକିଛି ଶୁଣାଯାଉ ନ ଥିଲା । ଏଇମିତି କଟିଗଲା କେଇ ମୁହୂର୍ତ୍ତ । ତା'ପରେ ବିଦୂର କପଟ ଗମ୍ଭୀର ଗଳାରେ କହିଲେ, ପିତୃବ୍ୟଙ୍କ ଇଙ୍ଗିତ ସ୍ୱଷ୍ଟ ଓ ପ୍ରାଞ୍ଜଳ । ମୁଁ ମଧ୍ୟ ଅବାକ୍ ହେଉଛି କୋଉ ଯାଦୁବଳରେ ରାତାରାତି ଏତେବଡ଼ ଗୋଟିଏ ଜନସମାବେଶ କରିବା ସଂଭବ ହେଲା ? ଏହା କ'ଣ ନିଛକ ଜନତାର କୌତୂହଳ, ନା ପାଣ୍ଡୁଙ୍କ ପ୍ରତି ସେମାନଙ୍କର ଆନ୍ତରିକ ସ୍ନେହଶ୍ରଦ୍ଧା ଆଉ ସମର୍ଥନ ? ଦୀର୍ଘ ଅଠରବର୍ଷ ଧରି ପାଣ୍ଡୁ ରାଜନୀତି ଭିତରେ ନ ଥିଲେ । ତଥାପି ତାଙ୍କ ପଛରେ ଏତେ ଜନସମର୍ଥନ ରହିଲା କିମିତି ? ପ୍ରାଜ୍ଞ ପିତୃବ୍ୟଙ୍କ ଇଙ୍ଗିତରୁ ସ୍ୱଷ୍ଟ ଜଣାଯାଉଛି ଯେ, ଅନେକେ ଏଇ ବିପୁଳ ଜନତାର ପ୍ରତିକ୍ରିୟା ସଂପର୍କରେ ନାନାପ୍ରକାର ଆଶଙ୍କା କରୁଛନ୍ତି । ପାଣ୍ଡୁ ପୁତ୍ରମାନଙ୍କର ପ୍ରତ୍ୟାଖ୍ୟାନ ଜନତାଙ୍କ ରୋଷାଗ୍ନିରେ ଘୃତାହୁତି ଭଳି କାମ କରିବ । ମୋର ମଧ୍ୟ ବିଶ୍ୱାସ ଜନତାର ଆବେଗରେ ଆଘାତ ଲାଗିଲେ ସେମାନେ ନିଆଁଭଳି ଜଳି ଉଠିବେ । ପାଣ୍ଡୁଙ୍କ ମରଶରୀର ଯେତେ ପର୍ଯ୍ୟନ୍ତ ଆଖି ଆଗରେ ଅଛି, ସେତେ ପର୍ଯ୍ୟନ୍ତ ଜନତାର ଆବେଗର

ଶେଷ ହେବ ନାହିଁ । ସମସ୍ତ ପ୍ରକାରର ବିରୁଦ୍ଧତାକୁ ଜୟ କରିବାକୁ ହେଲେ ଏବଂ ସମସ୍ତ ପ୍ରତିକୂଳତାକୁ ଜ୍ୟେଷ୍ଠଙ୍କର ଅନୁକୂଳତା ଆଡ଼କୁ ବଦଳେଇ ଦେବାକୁ ହେଲେ ପାଣ୍ଡୁଙ୍କ କ୍ଷେତ୍ରଜ ପୁତ୍ରମାନଙ୍କୁ ଆମକୁ ସ୍ୱୀକାର କରିବାକୁ ହିଁ ହେବ । କେବଳ ଆଜି ପାଇଁ ନୁହେଁ, ସବୁଦିନ ପାଇଁ । କେତେଜଣ ଦେବପ୍ରତିନିଧିଙ୍କର ଉପସ୍ଥିତିକୁ ମୁଁ ଅବଶ୍ୟ ଭଲ ଆଖିରେ ଦେଖିପାରୁନି ।

କଣିକ ବେଶ୍ କେତେଥର ମୁଣ୍ଡ ହଲେଇ ବିଦୂରଙ୍କ କଥାକୁ ସମର୍ଥନ କରି କହିଲେ, ମହାମାନ୍ୟ ବିଦୂରଙ୍କର ଅନୁମାନର ଗୋଟିଏ ରାଜନୈତିକ ଦିଗ ଅଛି । ପାଣ୍ଡୁପୁତ୍ରମାନେ ବର୍ତ୍ତମାନ ଆଉ ଏକା ନୁହନ୍ତି, ଅସହାୟ ମଧ୍ୟ ନୁହନ୍ତି । ସେମାନେ ଦେବତାମାନଙ୍କର ପୁତ୍ର । ସେମାନଙ୍କ ପଛରେ ଦେବ-ନରପତିମାନଙ୍କର ସମର୍ଥନ ଅଛି ବିପୁଳ ମାତ୍ରାରେ । ଏହିକଥା ଜଣାଇଦେବାପାଇଁ ଦେବପ୍ରତିନିଧିମାନେ ତାଙ୍କ ସହିତ ଆସିଛନ୍ତି । ଏହା ଆମ ଉପରେ ପରୋକ୍ଷ ଭାବେ ଏକ ପ୍ରକାର ରାଜନୈତିକ ଚାପ ।

ଧୃତରାଷ୍ଟ୍ର ଭୀଷଣ ଚିନ୍ତିତ ଓ ଉଦ୍‌ବିଗ୍ନ ଦିଶୁଥିଲେ । ଗୋଟାଏ ଅଜଣା ଭୟ ତାଙ୍କ ମୁଣ୍ଡରେ ଜମାଟ ବାନ୍ଧି ବସିଲା । ସ୍ୱଷ୍ଟ, ପରିଷ୍କାର ଭବିଷ୍ୟତର କୌଣସି ଏକ ନିଶ୍ଚିତ ରୂପ ସେ ଚିନ୍ତା କରିପାରୁନଥିଲେ । ସିଂହାସନର ପଛପଟକୁ ଆଉଜି ସେ ଚିନ୍ତା କରୁଥିଲେ । ଅଧାବୁଜା ଆଖି ଓ ଆଖିପତାରେ କ୍ଳାନ୍ତି ଓ ଅବସନ୍ନତାର ଗଭୀର ନୀଳରେଖା ଫୁଟି ଉଠିଥିଲା । ଓଠ ଶୁଖିଲା ଦିଶୁଥିଲା । ଏହି ଦୃଶ୍ୟ ଦେଖି ଶକୁନିର ଛାତି ଭିତରଟା ଥରିଉଠିଲା ।

ସଂଦେହ ଗଳାରେ ଶକୁନି କଣିକ କଥାର ଉତ୍ତର ଦେଲେ । ଚାପା ଗଳାରେ କହିଲେ- ତା'ର ମାନେ ହେଲା, ଧୃତରାଷ୍ଟ୍ର ହସ୍ତିନାପୁରରେ ସେମାନଙ୍କୁ ସ୍ଥାନ ନ ଦେଲେ ସେମାନେ ଦେବପ୍ରତିନିଧିମାନଙ୍କ ସାହାଯ୍ୟ ଚାହିଁବେ । ଦେବପ୍ରତିନିଧିଗଣ ସେମାନଙ୍କ ହିତୈଷୀ ଭାବେ ଏ ସମସ୍ତ ଘଟଣାବଳୀର ପ୍ରତ୍ୟକ୍ଷ ତଦନ୍ତ କରିବାପାଇଁ ଆସିଛନ୍ତି । ଏସବୁର ଅର୍ଥ ହେଲା, ଗୋଟାଏ ରାଜନୈତିକ ଗଣ୍ଡଗୋଳକୁ ପରିପକ୍ୱ ରୂପ ଦେବା । ଏହା ନିଶ୍ଚୟ ଆଶଙ୍କାର କଥା । ତଥାପି ମୁଁ ଏଇ ଭୟ ଦେଖାଇବା ରାଜନୀତିରେ ବିଶ୍ୱାସ କରେ ନାହିଁ । ଏହି ଧରଣର ରାଜନୀତି ଜାଲରେ ପାଦ ଥୋଇଲେ, ସେମାନଙ୍କର ନିତ୍ୟନୂତନ ଦାବିଗୁଡ଼ିକୁ ପୂରଣ କରୁ କରୁ ଆମେ ନିଃସ୍ୱ ହେଇଯିବା । ରାଜନୀତିରେ ଆଗେଇବାର କୌଣସି ସ୍ଥାନ ନାହିଁ ।

ତତ୍‌କ୍ଷଣାତ୍ ଭୀଷ୍ମ କହିଲେ, ତୁମ କଥା ସତ୍ୟ । କିନ୍ତୁ ବର୍ତ୍ତମାନ କ୍ଷମତାର ଲଢ଼େଇରେ ଜଡ଼ିତ ହେଇପଡ଼ିଲେ, ଜିତିବା ପାଇଁ ଅନେକ ମୂଲ୍ୟ ଦେବାକୁ ହେବ । ରାଜନୀତିରେ କୌଶଳଟା ହିଁ ତ ସବୁଠୁ ବଡ଼କଥା । ଜୟଲାଭ ପାଇଁ ସମୟ ଓ ସୁଯୋଗକୁ ଅପେକ୍ଷା କରିବାକୁ ପଡ଼ିବ ।

ଭୀଷ୍ମଙ୍କ କଥା ଶୁଣି ଧୃତରାଷ୍ଟ୍ର କେମିତି ଟିକିଏ ନିଶ୍ଚିନ୍ତବୋଧ କଲେ । ଅନେକ ସମୟ ପର୍ଯ୍ୟନ୍ତ ନିରବ ରହିବା ପରେ କିଛି କହିବାକୁ ଯାଇ ଦୀର୍ଘଶ୍ୱାସଟିଏ ପକାଇଲେ । ସେହି ନିଶ୍ୱାସ ସହିତ ତାଙ୍କର ଉତ୍କଣ୍ଠା, ଉଦ୍‌ବେଗ ମଧ୍ୟ ଅନେକାଂଶରେ ବାହାରିଗଲା । ଗମ୍ଭୀର କଣ୍ଠରେ ସେ କହିଲେ, ଶକୁନି ପିତୃବ୍ୟ ଠିକ୍ ହିଁ କହୁଛନ୍ତି । ଏହି ସଂଘର୍ଷରେ ଜିତିବାକୁ ହେଲେ ଆମକୁ ଛଳ, ବଳ, କୌଶଳ, କୂଟନୀତି, ଶଠତା ସବୁ କିଛିର ଆଶ୍ରୟ ନେବାକୁ ପଡ଼ିବ । ଆମର କାର୍ଯ୍ୟକଳାପ ବର୍ତ୍ତମାନ ମଧ୍ୟ ନିଶ୍ଚିନ୍ତ ନୁହେଁ । ଘଟଣାର ଆକସ୍ମିକତାରେ ଯାହା ସବୁ ଘଟିଯାଉଛି, ସେଥିପ୍ରତି ଦୃଷ୍ଟି ନିକ୍ଷେପ କଲେ, ସେଥିରେ ଥିବା ବଡ଼ ବଡ଼ ଫାଙ୍କ ଓ ଫାଙ୍କ ସବୁ ଦୃଷ୍ଟିପଥକୁ ଆସେ । ଏଇ ମୁହୂର୍ତ୍ତରେ ସଂଘର୍ଷ ଭିତରେ ଜଡ଼ିତ ହୋଇଗଲେ, ସେ ସବୁର ରୂପ ପ୍ରକୃତିକୁ ଖୋଜି ବାହାର କରିବାପାଇଁ ଆମକୁ ଅବକାଶ ମିଳିବ ନାହିଁ । ପ୍ରଦୀପର ଆଲୋକ ଯେତେବେଳେ ନିଷ୍ପ୍ରଭ ହୋଇଆସେ, ସେତେବେଳେ ତୈଳ ନ ଦେଲେ ତାହା ଆଉ ଜଳେନା । ଏହି ଜ୍ଞାନ ନ ଥିଲେ ରାଜନୈତିକ ହଠକାରିତା କେବଳ ଧ୍ୱଂସକୁ ହିଁ ଆମନ୍ତ୍ରଣ କରେ । ତା'ପରେ ବିଦୂର ଆଡ଼କୁ ଚାହିଁ କହିଲେ, ବିଦୂର ! ସମସ୍ୟାଗୁଡ଼ିକ ଯେ ଏତେମାତ୍ରାରେ ଜଟିଳ ହୋଇପଡ଼ିବ, ଏକଥା ମୁଁ ସ୍ୱପ୍ନରେ ମଧ୍ୟ ଭାବିପାରିନଥିଲି । ତେଣୁ ଏହି କୌଶଳଗତ ପରାଜୟ ଆମକୁ ମାନି ନେବାକୁ ହେଲା । ବର୍ତ୍ତମାନ ଯାହା କଲେ ହସ୍ତିନାପୁରର ପାରିବାରିକ ସମ୍ମାନ ଏବଂ ରାଜନୈତିକ ଗୌରବ ବୃଦ୍ଧି ପାଇବ, ତୁମେ ସେହିଭଳି ଆୟୋଜନ କର । ପାଣ୍ଡୁଙ୍କ ମରଦେହ ରାଜନୈତିକ ମର୍ଯ୍ୟାଦାର ସହ ସତ୍କାର କରିବା ପାଇଁ ବ୍ୟବସ୍ଥା କର । ପାରଲୌକିକ କ୍ରିୟା ମଧ୍ୟ ସେହିପରି ସମ୍ପନ୍ନ କର ।

ପାଣ୍ଡୁଙ୍କ ପାରଲୌକିକ କ୍ରିୟା କର୍ମରେ ଯୋଗଦେବା ପାଇଁ ବ୍ୟାସଦେବ ହସ୍ତିନାପୁରକୁ ଆସିଥିଲେ । ବେଶ୍ କିଛିଦିନ ହସ୍ତିନାପୁରର ଅତିଥି ଗୃହରେ କଟେଇ ଯିବାପାଇଁ ସେ ନିଜକୁ ପ୍ରସ୍ତୁତ କଲେ । ବିଦାୟ ନେବାପାଇଁ ଜନନୀ ସତ୍ୟବତୀଙ୍କ ଗୃହରେ ପ୍ରବେଶ କଲେ ବ୍ୟାସଦେବ ।

ସ୍ତବ୍‌ଧ କକ୍ଷ ।

ସତ୍ୟବତୀ ମୁଦ୍ରିତ ଚକ୍ଷୁରେ ଏକାଗ୍ର ମନରେ ପ୍ରାତଃ ଆହ୍ନିକ ସଂପନ୍ନ କରୁଥିଲେ । ବ୍ୟାସଙ୍କ ଆଗମନର ସୂଚନା ପାଇ ମଧ୍ୟ ତାଙ୍କ ଆଡ଼କୁ ଚାହିଁ ଆହ୍ନିକରେ ବ୍ୟାଘାତ ଘଟାଇବାକୁ ଚାହୁଁ ନ ଥିଲେ ସେ । କିନ୍ତୁ ସମଗ୍ର ଶରୀର କମ୍ପିଉଠିଲା ପଲକ ମାତ୍ରେ । ଯଥାଶୀଘ୍ର ଆହ୍ନିକ ଶେଷ କରି ଦୁଇ ହାତ କପାଳକୁ ଉଠାଇ ଇଷ୍ଟଦେବଙ୍କୁ ପ୍ରଣାମ କଲେ ।

ଜନନୀଙ୍କର ଶାନ୍ତ, ପବିତ୍ର ମୁଖଶ୍ରୀର ସ୍ନିଗ୍ଧ ମାଧୁର୍ଯ୍ୟ ଦର୍ଶନ କରି ବ୍ୟାସଦେବଙ୍କ ହୃଦୟ ପରିପୂର୍ଣ୍ଣ ହେଇଗଲା । ନିର୍ନିମେଷ ନୟନରେ ସେ ଜନନୀଙ୍କ ଆଡ଼କୁ ଚାହିଁରହିଲେ ।

ଅବରୁଦ୍ଧ ଗଳାରେ ଅସ୍ପଷ୍ଟ ସ୍ୱରରେ ସତ୍ୟବତୀ ଉଚ୍ଚାରଣ କଲେ, ପୁତ୍ର, ଶୁଣିଲି ତୁମେ ଆଜି ହିଁ ହସ୍ତିନାପୁର ଛାଡ଼ି ଯାଉଛ ?

ବ୍ୟାସଦେବ ସତ୍ୟବତୀଙ୍କ ଆଖିରେ ଆଖି ରଖି ଉତ୍ତର ଦେଲେ, ଯିବାକୁ ତ ହେବ ମାତା, ଯେତେ ଶୀଘ୍ର ଏହି ସ୍ଥାନ ତ୍ୟାଗ କରିବି ସେତେ ମଙ୍ଗଳ ହେବ ।

ଚମକି ଉଠିଲେ ସତ୍ୟବତୀ । ଆଶଙ୍କା ଓ ଉଦ୍‌ବେଗରେ ହୃଦୟ ତାଙ୍କର ଭାରାକ୍ରାନ୍ତ ହେଇ ଉଠିଲା । ଭୟାତୁର କଣ୍ଠରେ କହିଲେ; କାହିଁକି, ପୁଣି କ'ଣ ହେଲା ?

ଭିତରେ ଭିତରେ ବ୍ୟାସଦେବଙ୍କର ଅସ୍ଥିରତାର ଢେଉ ବହି ଯାଉଥିଲା । ତାଙ୍କର ସୂକ୍ଷ୍ମ ଅନୁଭୂତି ଦେଇ ଛାତି ଭିତରେ ନାନା ପ୍ରକାର ମିଶ୍ର ଅନୁଭୂତି ପ୍ରତିକ୍ରିୟାଶୀଳ ହେଇ ଉଠୁଥିବାର ଅନୁଭବ କରିପାରିଲେ ସେ । ମୁହୂର୍ତ୍ତକରେ ଦ୍ୱିଧା କଟେଇ କହିଲେ, 'ହେଇନି, ତେବେ ଶୀଘ୍ର ହିଁ କିଛି ଗୋଟାଏ ହେବ ।'

ଉତ୍କଣ୍ଠାରେ ସତ୍ୟବତୀଙ୍କ ଛାତି ଭିତରଟା ଶୁଖିଗଲା । ଦୃଷ୍ଟିରେ ଅନୁସନ୍ଧିତ୍ସା ନିବିଡ଼ ହେଇ ଉଠିଲା । ବିଭ୍ରାନ୍ତ ଗଳାରେ ସତ୍ୟବତୀ କହିଲେ, ପାଣ୍ଡୁପୁତ୍ରମାନେ ଏଠାରେ ଭଲରେ ହିଁ ଅଛନ୍ତି । ସେମାନଙ୍କର କୌଣସି ଅଯତ୍ନ ହେବ ନାହିଁ ଏଠି । ଅଳ୍ପଦିନ ଭିତରେ ସେମାନେ ସମସ୍ତଙ୍କର ପ୍ରିୟ ହେଇ ଉଠିଛନ୍ତି । କାହିଁକି ବି ନ ହେବେ ? ପିଲାଗୁଡ଼ିକ ଶାନ୍ତ, ନମ୍ର, ବିନୟୀ ଏବଂ ମିଷ୍ଟଭାଷୀ । ସେଥିପାଇଁ ଚୁମ୍ବକ ଭଳି ସମସ୍ତଙ୍କୁ ଆକର୍ଷଣ କରିପାରିଛନ୍ତି ସେମାନେ । ଗୁରୁଜନଙ୍କ ପ୍ରତି ସେମାନଙ୍କର ଶ୍ରଦ୍ଧା, ଭକ୍ତି ଓ ଅନୁରାଗର କୌଣସି ତୁଳନା ନାହିଁ । ସେମାନେ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କର ନୟନମଣି । ଧୃତରାଷ୍ଟ୍ର, ଦୁର୍ଯ୍ୟୋଧନ, ଦୁଃଶାସନ, ବିକର୍ଣ୍ଣ ଏବଂ ପାଣ୍ଡୁପୁତ୍ରମାନେ ତ ହରିହର ଆତ୍ମା । କେହି କାହାର ବିଚ୍ଛେଦ ଦଣ୍ଡକ ପାଇଁ ମଧ୍ୟ ସହ୍ୟ କରିପାରୁ ନାହାନ୍ତି । ଗୋଟିଏ ବୃନ୍ତରେ ଯେମିତି ଦୁଇଟି କୁସୁମ ଏଇ ପାଣ୍ଡବ ଏବଂ କୌରବ । ଭାଇ ଭାଇ ମଧ୍ୟରେ ଏହି ସଦ୍‌ଭାବ ଦେଖି ମୋ'ଛାତି କୁଣ୍ଢେମୋଟ ହୋଇଯାଉଛି । ହସ୍ତିନାପୁରକୁ ଆଜି ସତେଯେମିତି ସ୍ୱର୍ଗସୁଖ ଓହ୍ଲେଇ ଆସିଛି । ମୃତ୍ୟୁ ପୂର୍ବରୁ ଯାହାହେଉ ଏହି ଅନାବିଳ ସୁଖ, ଶାନ୍ତି ଏବଂ ଆନନ୍ଦକୁ ମୁଁ ଦେଖି ଯାଇପାରିବି ବୋଲି ଭାବୁଛି ।

ବ୍ୟାସଦେବଙ୍କ ଅଧରରେ ତେରଛା ହସଟିଏ ଫୁଟିଉଠିଲା । ଆଖିରେ କୌତୁକ ଭରି ମୃଦୁମଧୁର ସ୍ୱରରେ କହିଲେ, ମାତଃ, ଫୁଲରେ କେବଳ ମହୁ ଥାଏନା, କୀଟ ମଧ୍ୟ ରହେ । ବର୍ତ୍ତମାନ ଏମାନେ ଛୋଟ । ଯୁଧିଷ୍ଠିରର ବୟସ ପନ୍ଦର, ଦୁର୍ଯ୍ୟୋଧନର ତେର । ସ୍ୱାର୍ଥ ନେଇ କୌଣସି କନ୍ଦଳ ଉପୁଜି ନାହିଁ ସେମାନଙ୍କ ମଧ୍ୟରେ ଅଦ୍ୟାବଧି । କିଛି ଦିନପରେ ରାଜପୁତ୍ରମାନଙ୍କର ବିଦ୍ୟାଶିକ୍ଷା ଏବଂ ଅସ୍ତ୍ରଶିକ୍ଷା ଆରମ୍ଭ ହୋଇଯିବ । ଯୋଗ୍ୟତା, ପାରଦର୍ଶିତା କାହାର କେତେ ବେଶି ତାକୁ ନେଇ ପ୍ରତିଯୋଗିତା ଏବଂ ବାଦବିବାଦ, ଟଣାଓଟରା ଆରମ୍ଭ

ହେଇଯିବ । ସେ'ଦିନ ଯେଉଁମାନେ ପ୍ରତିଯୋଗିତାରେ ପଛରେ ପଡ଼ିବେ, ସେମାନଙ୍କ ଅନ୍ତରର ବିରୋଧ, ବିଦ୍ୱେଷ ଓ ଈର୍ଷା ଏହି ମଧୁର ପ୍ରୀତିର ସଂପର୍କକୁ ହୁଏତ ବିଷାକ୍ତ କରିଦେଇପାରେ । ସେହି ଦିନରୁ ପରିବାରର ସ୍ୱାସ୍ଥ୍ୟ ଭଙ୍ଗ ହେବ । ତାପରେ ହିଁ ସିଂହାସନର ଦାବି ଏବଂ ସାମ୍ରାଜ୍ୟ ଅଧିକାର ନେଇ ଭାଇ ଭାଇଙ୍କ ମଧ୍ୟରେ ବିବାଦ, ବିରୋଧ, ବିଦ୍ୱେଷ ଏବଂ ବାଦବିସମ୍ବାଦ ଯେ ଭୟଙ୍କର ଭାବେ ଫଣାଟେକି ନ ଉଠିବ ତା' କିଏ କହିବ ? ହସ୍ତିନାପୁରର ପାରିବାରିକ ପରିବେଶ ପାଣ୍ଡବ କୌରବଙ୍କ ବିଷାଦ ବିଭେଦର ଅନ୍ତଃସ୍ରୋତରେ ଯଦି ଉତ୍ତପ୍ତ ହୋଇଉଠେ ଏଥିରେ ଆଶ୍ଚର୍ଯ୍ୟ ହେବାର ତ କିଛି ନାହିଁ । ତା'ଫଳରେ ଆରମ୍ଭ ହୋଇଯାଇପାରେ ଏକ ସଂଘାତ । କୌଣସି ପ୍ରତିବେଶୀ କିମ୍ବା ବିଦେଶୀ ସହିତ ଏଇ ସଂଘାତ ନୁହେଁ । ତାହା ହେବ ଅଧିକାର ପାଇଁ ଦ୍ୱନ୍ଦ୍ୱ, କ୍ଷମତା ଏବଂ ଦାବିର ଲଢ଼େଇ । ନିଜ ନିଜ ମଧ୍ୟରେ ଗୋଟାଏ ପରିବାର ସହିତ ଆଉ ଏକ ପରିବାରର, ଭାଇ ଭାଇର, ଏଇ ନିଆଁର ଉତ୍ତାପ ପରିବାରର ଅଭ୍ୟନ୍ତରକୁ ପଶି ଯେ ଧ୍ୱଂସ ନ କରିବ, କିଏ କହିବ ସେ କଥା ? ଏକପକ୍ଷ ସହିତ ଆଉ ଏକପକ୍ଷ ମଧ୍ୟ ବିରୋଧୀ ହେଇ ଉଠିବେ । ଏହି ବିରୋଧ ଭାବ ବନ୍ଧୁ ବନ୍ଧୁ ଭିତରେ, ସହକର୍ମୀ ସହକର୍ମୀ ଭିତରେ । ଏହି ଆତ୍ମଘାତୀ ଅନ୍ତର୍ଯୁଦ୍ଧରୁ ଏଇ ପରିବାରକୁ, ବଂଶକୁ ରକ୍ଷା କରିବା ପାଇଁ କୌଣସି ରାସ୍ତା ଆଉ ହୁଏତ ଖୋଲା ନ ଥିବ । ଦୁହେଁ ଜୟଲାଭ ପାଇଁ ମନର ଗୋପନ ଅନ୍ଧକାର ଭିତରେ ପ୍ରତିହିଂସାର ଛୁରୀକୁ ଶାଣିତ କରିବେ ।

ସତ୍ୟବତୀଙ୍କ ମୁଖମଣ୍ଡଳରେ ଅବ୍ୟକ୍ତ ଯନ୍ତ୍ରଣାର ଚିହ୍ନ ଫୁଟିଉଠିଲା । ଉଦ୍‌ଗତ ନିଃଶ୍ୱାସ ସତେ ଯେମିତି ଛାତିର ପଞ୍ଜରା ଭିତରେ ଅଟକି ଗଲା । ଗଭୀର ଅନ୍ତର୍ଦାହରେ ଛଟପଟ ହେଇଉଠିଲେ ସେ । ବିକଳରେ କାନ୍ଦିଲେ । କାଳକୁ ଗିଳିବାକୁ ପ୍ରୟାସ କରି ବହୁ କଷ୍ଟରେ ବ୍ୟାକୁଳ କଣ୍ଠରେ ମୃଦୁ ଆର୍ତ୍ତନାଦ କରି କହିଲେ, ପୁତ୍ର, ଏଭଳି ଅମଙ୍ଗଳର ସ୍ୱପ୍ନ ଦେଖନ୍ତି ନାହିଁ । ମୋର ଭୟ ହେଉଛି ପୁତ୍ର ।

ବ୍ୟାସଦେବଙ୍କ ଦୁଇ ଆଖିରେ ଘୃଣା ଚମକିଉଠିଲା । କହିଲେ, ଦମ୍ଭ, ଘୃଣା, ଲୋଭ, ବିଶ୍ୱାସଘାତକତାର ମୂଲ୍ୟ ନ ଦେଇ ଧୃତରାଷ୍ଟ୍ର ରାଜତ୍ୱ କରୁଛି । ମହାକାଳ ସେଇ ରାଜତ୍ୱ କରିବାର ମୂଲ୍ୟ ଯେ ତା ନିକଟରୁ ସୁଧମୂଳ ହିସାବରେ ଆଦାୟ କରି ନେବାକୁ ଚାହେଁ ମା ।

ବ୍ୟାସଦେବଙ୍କ କଥାରେ ଶାନ୍ତ, ନିଥର ସ୍ତବ୍‌ଧତା ମଧ୍ୟ ପ୍ରକମ୍ପି ଉଠିଥିଲା କ୍ଷଣିକ ପାଇଁ । ସତ୍ୟବତୀଙ୍କ ଦୁଇ ଆଖିରେ କେମିତି ଗୋଟାଏ ନିବିଡ଼ ବ୍ୟଥାର ଭାବ ଫୁଟି ଉଠିଲା । ନିଶା ଲାଗିବା ଭଳି ଗୋଟିଏ ଆଚ୍ଛନ୍ନତା ଭିତରେ, ଶଙ୍କିତ କଣ୍ଠରେ କହିଲେ, ପୁତ୍ର ମୁଁ ହତଭାଗିନୀଟିଏ । ଜୀବନରେ ଅନେକ ଦୁଃଖ, ଶୋକ, ତାପ, କ୍ଲିଷ୍ଟ ଭୋଗ କରିଛି । ଏଇ ସୁଖ ଓ ଶାନ୍ତିର ସ୍ମୃତିଟିକକୁ ନେଇ ମୁଁ ଯେମିତି ଆଖିବୁଜିବି ସେଇ କାମନା କରୁଛି । ଅମଙ୍ଗଳ, ଅକଲ୍ୟାଣର ସୂଚନା ପାଇବା ଆଗରୁ ମୋତେ ତୁ ଅନ୍ୟ କୋଉଠିକୁ ନେଇଚାଲ ପୁତ୍ର ।

ଅନ୍ତହୀନ ବିସ୍ମୟ ନେଇ ଜନନୀଙ୍କ ମୁଖକୁ ଚାହିଁ ରହିଲେ ବ୍ୟାସଦେବ । ସତ୍ୟବତୀଙ୍କୁ ହସ୍ତିନାପୁରରୁ ଅନ୍ୟ କୋଉଠିକୁ ନେଇଯିବାର ଉଦ୍ଦେଶ୍ୟ ନେଇ ହିଁ ସେ ଆସିଥିଲେ । କାରଣ, ସତ୍ୟବତୀଙ୍କ ମନୋଭାବ ବର୍ତ୍ତମାନ ବାର୍ଦ୍ଧକ୍ୟ ହେତୁ ଯେମିତି କିଛି ବଦଳି ବଦଳି ଯାଉଛି । ବୃଦ୍ଧ ବୟସରେ ପ୍ରତ୍ୟେକ ମଣିଷର ଅନ୍ତର ସ୍ନିଗ୍ଧ ହେଇଉଠେ । ନିରୁଦ୍‌ବେଗ ଚିତ୍ତରେ ସବୁକିଛିକୁ ନିର୍ବିକାର ଭାବେ ଗ୍ରହଣ କରିନିଏ । ଅଶାନ୍ତି ଓ ବିରୋଧ ଭିତରେ କ୍ଳାନ୍ତି ଅନୁଭବ କରେ ସେ । ପାରିବାରିକ ଛୋଟ ଛୋଟ ସୁଖ, ଆନନ୍ଦ ଓ ଶାନ୍ତି ହିଁ ତାର ଏକାନ୍ତ କାମ୍ୟ ହେଇପଡ଼େ । କିନ୍ତୁ ଆଗାମୀ ଦିନଗୁଡ଼ିକରେ କ୍ରମବର୍ଦ୍ଧମାନ ରାଜନୈତିକ ଅଶାନ୍ତି, ବିଶୃଙ୍ଖଳା, ଉତ୍ତେଜନା ଓ ସଂକଟ ସତ୍ୟବତୀଙ୍କ ସୁଖଶାନ୍ତି ଓ ପ୍ରତ୍ୟାଶାରେ ବ୍ୟାଘାତ ଜନ୍ମେଇବ । ସେଥିପାଇଁ ବାକି ଦିନଗୁଡ଼ିକ ଯେଭଳି ସେ ଈଶ୍ୱରଙ୍କ ଆରାଧନାରେ କଟେଇପାରିବେ, ସେଇଥିପାଇଁ ତାଙ୍କୁ ସ୍ଥାନାନ୍ତରିତ କରିବା ଏକାନ୍ତ ପ୍ରୟୋଜନ । କିନ୍ତୁ ଏହି କାର୍ଯ୍ୟ ଯେ ଏତେ ସହଜରେ ଏବଂ ଅନାୟାସରେ ସଂପନ୍ନ ହେବ, ବ୍ୟାସଦେବ ଭାବିପାରିନଥିଲେ । ମାୟା ମୋହ ତ ମଣିଷର ଜନ୍ମଗତ । ବିଶେଷକରି ନାରୀ ଜାତିର ମାୟା ମୋହ ତ କୌଣସି ପ୍ରକାରେ କଟେନା ସହଜରେ । କିନ୍ତୁ ଦୈବ ତାକୁ ତ୍ୟାଗ ନିମନ୍ତେ ହୁଏତ ଉନ୍ମୁଖ ରଖିଥିଲା । ବ୍ୟାସଦେବଙ୍କ ଇଚ୍ଛା ସେଇ ଦୈବ ବାଟ ଦେଇ ପରିପ୍ରକାଶ ହେଇଗଲା ମାତ୍ର ।

ଆଶ୍ଚର୍ଯ୍ୟ ଓ ଅଦ୍ଭୁତ ଗୋଟାଏ ଅନୁଭୂତିରେ ବ୍ୟାସଦେବଙ୍କ ଅନ୍ତର ଉଚ୍ଛୁଳି ଉଠିଥିଲା । ସ୍ୱପ୍ନାତୁର ଦୁଇ ଆଖିରେ ଯେମିତି ଗୋଟାଏ ନିଶା ଲାଗିବା ଭଳି ଆଚ୍ଛନ୍ନ ଭାବ । ଅମ୍ବିକାର ଘୃଣାଭରା ମୁଖ ଖଣ୍ଡିକ ମନେ ପଡ଼ିଯାଉଥିଲା । ତା' କଥାଗୁଡ଼ିକ ଛାତି ଭିତରେ ଝଙ୍କାର ତୋଳି ବାଜି ଉଠୁଥିଲା । ଆଶ୍ଚର୍ଯ୍ୟ ଲାଗିଲା ବ୍ୟାସଙ୍କୁ ଯେ କେତେକାଳ ହୋଇଗଲା, ସେଇ ଅପମାନଟା ତାଙ୍କ ଛାତି ଭିତରେ ବସାବାନ୍ଧି ରହିଛି ଆହୁରି ।

ବ୍ୟାସଦେବଙ୍କୁ ନିରବ ଦେଖି ସତ୍ୟବତୀ ପୁନରାୟ କହିଲେ, ପୁତ୍ର, ତୁମେହିଁ ମୋର ଚିରକାଳ ଓ ପରକାଳ । ତୁମ ବ୍ୟତୀତ ମୋର ଆଉ କିଏ ଅଛି ? ଏହି ବୃଦ୍ଧ ବୟସରେ ମୋତେ ଟିକିଏ ଶାନ୍ତିରେ ରହିବାପାଇଁ ବ୍ୟବସ୍ଥା କରିଦିଅ ।

ବ୍ୟାସଦେବ ଭୀଷଣ ଭାବେ ଚମକି ଉଠିଲେ । ତାଙ୍କ ଦୃଷ୍ଟିର ରୂପ ବଦଳିଗଲା । ସତ୍ୟବତୀଙ୍କ ଆଖି ଉପରେ ନିଜର ମୁଗ୍ଧ ଦୃଷ୍ଟି ନିବଦ୍ଧ କରି ଧୀର ମନ୍ଥର ସ୍ୱରରେ କହିଲେ, ତାହାହିଁ ଠିକ୍ ହେବ ଜନନୀ । ସ୍ୱବଂଶର ବିନାଶ ଦେଖିବା ଅପେକ୍ଷା ବଣରେ ବାସ କରିବା ଅନେକ ଭଲ । ଅରଣ୍ୟ କେବେବି ବିଶ୍ୱାସଘାତ କରେନା । ସର୍ବଜୀବର ଆଶ୍ରୟସ୍ଥଳୀ ସେ । ସେଠି କୌଣସି ଦୁଃଖ ନାହିଁ । ଅନାବିଳ ସୁଖ ଶାନ୍ତି ଓ ଆନନ୍ଦ ନିମିତ୍ତ ତୁମକୁ ମୁଁ ଅରଣ୍ୟର ମୁକ୍ତ ପ୍ରକୃତି ଭିତରକୁ ନେଇଯିବି... ନେଇଯିବି ବଦ୍ରିକାଶ୍ରମକୁ । ତୁମେ ସେଠାରେ ଅନେକ ସୁଖଶାନ୍ତିରେ ରହିପାରିବ ।

ଦ୍ୱୈପାୟନଙ୍କ ଆଶଙ୍କା ସତ୍ୟ ହେଲା । ରାଜପରିବାରର ଅଭ୍ୟନ୍ତରରେ ପାଣ୍ଡବ ଓ ଧୃତରାଷ୍ଟ୍ରମାନଙ୍କ ମଧ୍ୟରେ ଅଚିରେ ଏକ ଶୀତଳଯୁଦ୍ଧ ଦେଖାଦେଲା । ପାଣ୍ଡୁପୁତ୍ରମାନେ ବିନୟୀ, ନମ୍ର, ଶାନ୍ତ, ଉଦାର ଓ ସହିଷ୍ଣୁ ମନୋଭାବର । ତା' ସହିତ ଧାର୍ତ୍ତରାଷ୍ଟ୍ରୀମାନଙ୍କ ଗର୍ବିତ, ଉଦ୍ଧତ ସ୍ୱଭାବ ଓ ପ୍ରକୃତିର ଏଭଳି ଏକ ବୈଷମ୍ୟ ଥିଲା ଯାହା ସେମାନଙ୍କ ପାଇଁ ଈର୍ଷାର କାରଣ ହେଇପଡ଼ିଲା । ପାଣ୍ଡୁପୁତ୍ରଙ୍କ ଜନପ୍ରିୟତା ଏବଂ ଲୋକରଂଜନୀ କ୍ଷମତା ସେମାନଙ୍କ ଅନ୍ତରରେ ଯେଉଁ ଈର୍ଷା ଓ ବିଦ୍ୱେଷ ସୃଷ୍ଟି କଲା ତାହା କାଳକ୍ରମେ ପ୍ରକାଶ୍ୟ ଭାବେ ବିବାଦ ଓ ସଂଘାତର ରୂପ ନେଇ ଠିଆ ହେଲା । ଭ୍ରାତୃପ୍ରେମଜନିତ ବିଦ୍ୱେଷରୁ ଯେଉଁ ହଳାହଳ ଉପୁଜିଲା ତାହା ଥିଲା ପାଣ୍ଡବ ଓ କୌରବ ନାମରେ ଦୁଇ ବିବଦମାନ ଗୋଷ୍ଠୀ ।

ହସ୍ତିନାପୁର ପ୍ରାସାଦରେ ପାଣ୍ଡବମାନେ ଅତ୍ୟନ୍ତ ଅସହାୟ, ବିପନ୍ନ ହେଇପଡ଼ିଥିଲେ ଏବଂ ଆତ୍ମୀୟ ଓ ବାନ୍ଧବହୀନ ସେମାନେ- ଏଭଳି ଏକ ଧାରଣା ଲୋକଙ୍କ ମନରେ ଓ ପାଣ୍ଡୁପୁତ୍ରଙ୍କ ଅନ୍ତରରେ ସୃଷ୍ଟି କରିବା ପାଇଁ ବିଦୂର ଗୋପନରେ ଦୁର୍ଯ୍ୟୋଧନ ପ୍ରମୁଖ ଭ୍ରାତାମାନଙ୍କ କ୍ରୀଡ଼ାଙ୍ଗନରେ ପାଣ୍ଡବମାନଙ୍କ ଉପରେ ହେଉଥିବା ବହୁବିଧ ଲାଞ୍ଛନା, ଅପମାନ ଓ ଅତ୍ୟାଚାରକୁ ପରୋକ୍ଷରେ ପ୍ରୋତ୍ସାହିତ କଲେ ।

ପିତୃହୀନ ଅନାର୍ଯ୍ୟ ପାଣ୍ଡୁପୁତ୍ରମାନେ ଧୃତରାଷ୍ଟ୍ରଙ୍କ ନିକଟରେ ଅବାଞ୍ଛିତ ବୋଲି ପୁତ୍ରମାନଙ୍କ ଦ୍ୱାରା ନାନାରକମର ଅତ୍ୟାଚାର କରି ସେମାନଙ୍କ ଜୀବନକୁ ଅତିଷ୍ଠ କରି ତୋଳିଥିଲେ । ଦୁର୍ଯ୍ୟୋଧନର ସିଂହାସନକୁ ନିଷ୍କଣ୍ଟକ କରିବା ଅଭିପ୍ରାୟରେ ଏ ସମସ୍ତ କାର୍ଯ୍ୟ ଧୃତରାଷ୍ଟ୍ର ହିଁ କରୁଛନ୍ତି ବୋଲି ସମସ୍ତେ କାନକୁ କାନ କୁହାକୁହି ହେଉଥିଲେ । ନାନା ପ୍ରକାରର ନିର୍ଯାତନା ଓ ପୀଡ଼ନ ଦେବାକୁ ଆରମ୍ଭ କଲେ । କାହାକୁ କାହାକୁ କେଶପାଶ ଧରି ଏମିତି ଟଣାଓଟରା କଲେ ଯେ, ସେ ମୁହଁମାଡ଼ି ପଡ଼ିଥିଲେ । ହାତଗୋଡ଼ ଛିଣ୍ଡିଲା, ରକ୍ତାକ୍ତ ହେଲା । ଭୀମ ଧାର୍ତ୍ତରାଷ୍ଟ୍ରୀଙ୍କ ପାଇଁ ଏକ ଆତଙ୍କ ହେଇ ଠିଆ ହେଲେ । ଅବଶେଷରେ ଏଭଳି ପରିସ୍ଥିତି ସୃଷ୍ଟି ହେଲା ଯେ, ଦୁର୍ଯ୍ୟୋଧନ ସମବୟସୀ ହୋଇ ମଧ୍ୟ ଭୀମଙ୍କୁ ଦେଖି ଭୟ କଲେ ।

ଭୀମଙ୍କ ଦୌରାତ୍ମ୍ୟ ନିବାରଣ ପାଇଁ କୌଣସି ପ୍ରଚେଷ୍ଟା କରିନଥିଲେ କୁନ୍ତୀ । ବରଂ ତାଙ୍କୁ ପ୍ରଶ୍ରୟ ଦେଇ ପ୍ରଶଂସା କରି ଇନ୍ଧନ ଯୋଗାଉଥିଲେ । ପାଣ୍ଡୁ ପୁତ୍ରମାନଙ୍କର ଏଇ ଉତ୍ପାତ ଓ ଦୌରାତ୍ମ୍ୟରେ ଅତିଷ୍ଠ ଓ ଉତ୍ତେଜିତ ହୋଇ ଧୃତରାଷ୍ଟ୍ର ଯେମିତି ସେମାନଙ୍କୁ ଶାସନ କରନ୍ତୁ, ତାଡ଼ନା କରନ୍ତୁ, ତିରସ୍କାର, ଭର୍ତ୍ସନା କରନ୍ତୁ- ଏହାହିଁ ଥିଲା ବିଦୂରଙ୍କ ଉଦ୍ଦେଶ୍ୟ । ତାହେଲେ ଧୃତରାଷ୍ଟ୍ର ବିରୋଧୀ ପ୍ରଚାର ପାଇଁ କିଛିଟା ସୁବିଧା ତିଆରି ହେଇଯିବ ।

ଏହାପରେ କ୍ଷୁବ୍ଧ ଧାର୍ତ୍ତରାଷ୍ଟ୍ରୀମାନେ ସେମାନଙ୍କ ଉପରେ ଭୀମଙ୍କ ଅତ୍ୟାଚାର ବନ୍ଦ କରିବା ପାଇଁ ସଂଘବଦ୍ଧ ଭାବେ କୌଶଳରେ ଭୀମଙ୍କୁ ରଜ୍ଜୁବଦ୍ଧ କରି ନିଦ୍ରାବସ୍ଥାରେ

ସରୋବରରେ ନିକ୍ଷେପ କଲେ । ଦୈବକ୍ରମେ ଅବଶ୍ୟ ଭୀମ ରକ୍ଷା ପାଇଗଲେ । କିନ୍ତୁ ଲୋକମୁଖରେ ସେଇ ଦୁଃସମ୍ବାଦ ପ୍ରଚାର ହେବାପାଇଁ ବେଶି ସମୟ ଲାଗିନଥିଲା । ଧୃତରାଷ୍ଟ୍ରଙ୍କ କାନରେ ମଧ୍ୟ ସେ କଥା ପହଞ୍ଚିଥିଲା । କିନ୍ତୁ ଅନ୍ଧ ସ୍ନେହରେ ସେ କିଛି କହିଲେ ନାହିଁ ପୁତ୍ରମାନଙ୍କୁ କିମ୍ବା କିଛି କଲେ ନାହିଁ ମଧ୍ୟ ।

କିନ୍ତୁ ବାହାରେ ପ୍ରଚାର ହେଲା ଦୁର୍ଯ୍ୟୋଧନ ସିଂହାସନର ଦାବିକୁ ନିଷ୍କଣ୍ଟକ କରିବା ପାଇଁ ଗୋପନ ଏବଂ କୌଶଳରେ ଭୀମଙ୍କୁ ଗୁପ୍ତଭାବରେ ହତ୍ୟା କରିବାକୁ ଚାହିଁଥିଲେ । ପାଣ୍ଡବମାନଙ୍କୁ ରାଜ୍ୟରୁ ବିତାଡ଼ିତ କରିବା ପାଇଁ ଏହା ଏକପ୍ରକାର ଷଡ଼ଯନ୍ତ୍ର ଓ ପାଣ୍ଡବମାନେ ଶତ୍ରୁ ପରିବେଷ୍ଟିତ ହୋଇ ରାଜପ୍ରାସାଦରେ ବାସ କରୁଛନ୍ତି । ସେଠାରେ ସେମାନେ ବିପନ୍ନ, ଅସହାୟ, ଆତ୍ମୀୟସ୍ୱଜନହୀନ । ସେମାନଙ୍କ ଜୀବନ ଆଦୌ ନିରାପଦ ନୁହେଁ । ଏଭଳି ଗୋଟାଏ ଅପପ୍ରଚାର ଅନବରତ ସବୁଆଡ଼େ ହେବାକୁ ଲାଗିଲା । ଅସହାୟ ନିର୍ଯାତିତମାନଙ୍କ ପାଇଁ ଲୋକମାନସରେ ଯେଉଁ ସାଧାରଣ ସହାନୁଭୂତି, ସମବେଦନା ଗଚ୍ଛିତ ରହିଛି ତାହା ପାଣ୍ଡବମାନେ ପ୍ରଚୁର ପରିମାଣରେ ଲାଭ କଲେ ।

ବିଦ୍ୱେଷର ନିଆଁ ପାଣ୍ଡବ ଓ କୌରବଙ୍କ ମନ ଭିତରେ ହୁତୁହୁତୁ ହୋଇ ଜଳି ଉଠିଲା । ନିଜ ଅସ୍ତିତ୍ୱକୁ ବଞ୍ଚେଇ ରଖିବା ପାଇଁ ଏବଂ ଅନ୍ୟମାନଙ୍କଠାରୁ ସମାଦର ଓ ଶ୍ରଦ୍ଧା ଅର୍ଜନ ପାଇଁ ପାଣ୍ଡୁପୁତ୍ରଗଣ ନିଷ୍ଠାର ସହିତ ବିଦ୍ୟାଶିକ୍ଷା ଓ ଅସ୍ତ୍ରଶିକ୍ଷା କଲେ । ଏହି କ୍ଷେତ୍ରରେ ମଧ୍ୟ ସେମାନଙ୍କ ପାରଦର୍ଶିତା, ପଟୁତା, କୌରବମାନଙ୍କର ଈର୍ଷାର କାରଣ ହୋଇ ଠିଆ ହେଲା । ପିତାମହ ଭୀଷ୍ମ, ଆଚାର୍ଯ୍ୟ ଦ୍ରୋଣ, କୃପ, ପାଣ୍ଡବମାନଙ୍କ ଅସାଧାରଣ କୃତିତ୍ୱ ଓ ବ୍ୟକ୍ତିତ୍ୱରେ ଆକର୍ଷିତ ଓ ମୁଗ୍ଧ ହେଇ ସେମାନଙ୍କ ପ୍ରତି ଅତିମାତ୍ରାରେ ଶ୍ରଦ୍ଧାଶୀଳ ହେଇପଡ଼ିଲେ । ଫଳରେ ଦୁର୍ଯ୍ୟୋଧନ ଆଦି ଭ୍ରାତାମାନେ କ୍ଷୁବ୍ଧ ହେଲେ ।

ଉତ୍ତେଜିତ ଓ କ୍ଷୁବ୍ଧ ଦୁର୍ଯ୍ୟୋଧନ ମାତୁଳ ଶକୁନିଙ୍କୁ କହିଲେ, ମାତୁଳ ! ଏସବୁ ଆଉ ସହ୍ୟକରି ହେଉନି, ମୋ ହୃଦୟ ଜଳୁଛି । ଏଇ ଆପଦ ଦୂର କରିବା ପାଇଁ ବ୍ୟବସ୍ଥା କର ।

ଶକୁନିର ଅଧରରେ ମୃଦୁହସ ଫୁଟି ଉଠିଲା । ବିସ୍ମିତ ସ୍ୱରରେ ସେ କହିଲେ- ଏ କ'ଣ କହୁଛ ଭାଗିନେୟ ? ଏମାନେ ତୁମର ଆପଣାର, ବିଶ୍ୱସ୍ତ । ସେମାନଙ୍କୁ... ନା, ନା ତୁମେ ଏ କ'ଣ କହୁଛ ?

ମାତୁଳ, ତୁମର ପରିହାସ ନିର୍ମମ । ଦିନେ ସତରେ ସେମାନେ ଆମର ଅତ୍ୟନ୍ତ ପ୍ରିୟ ଖେଳସାଥି ଥିଲେ । ସେମାନେ ନ ହେଲେ ଚଳୁ ନ ଥିଲା । ସେଦିନ ସେମାନଙ୍କୁ ପାଇ ହାତରେ ସ୍ୱର୍ଗ ପାଇଛି ବୋଲି ଭାବୁଥିଲି, ହେଲେ ଆଜି ସେ ସ୍ୱପ୍ନ ମୋର ଭାଙ୍ଗିଯାଇଛି । ଈର୍ଷାରେ, ଘୃଣାରେ, ବିଦ୍ୱେଷରେ ମନ ତିକ୍ତ ହେଇଯାଇଛି । ତାଙ୍କ ନାଁ ଶୁଣିଲେ ମୋ ରକ୍ତ

ତାତିଉଠୁଛି । ତୁମ ବ୍ୟତୀତ ମୋର ଆଉ କେହି ନାହିଁ, ଯିଏ କି ମୋତେ ଏଇ ଅସ୍ୱସ୍ତିକର ଯନ୍ତ୍ରଣାରୁ ମୁକ୍ତି ଦେବ । ଆମକୁ ଏଥିରୁ ବଞ୍ଚାଅ....

ଶକୁନିର ମୁଖରେ ଚତୁର ହସ । ଆଖିରେ କୌତୁକ । କହିଲେ ବତ୍ସ !

ଦୁର୍ଯ୍ୟୋଧନର ଭିତରଟା କ୍ରୋଧ ଆଉ ଉତ୍ତେଜନାରେ ଜଳି ଉଠୁଥିଲା । କିଛି ଗୋଟାଏ ଗଭୀର ଭାବେ ଚିନ୍ତା କରିବା ଭଳି ମନର ଅବସ୍ଥା ନ ଥିଲା । ନିର୍ବିକାର ଭାବେ ତତ୍‌କ୍ଷଣାତ୍ ଉତ୍ତର ଦେଇ କହିଲେ 'ଦୂର କର ତାକୁ ।'

ରାଜନେୟର ଉତ୍ତେଜନାରେ ହସ ଲାଗିଲା ଶକୁନିଙ୍କୁ । କହିଲେ, ତୁମର ଖୁଲ୍ଲଣତ ବିଦୂର ମହାରାଜାଙ୍କର ଅତି ଘନିଷ୍ଠ ଓ ବିଶ୍ୱାସଭାଜନ । କିନ୍ତୁ ସତତାର ନାମାବଳୀ ଦେହରେ ଘୋଡ଼େଇ ହୋଇ ସେ ପ୍ରଚ୍ଛନ୍ନଭାବେ ଆମର ଶତ୍ରୁତା କରୁଛନ୍ତି ବୋଲି ମୋର ଧାରଣା ହେଉଛି । ଦିନେ ତୁମର ନିର୍ବାସନର କଥା ଉଠିଥିଲା, କିନ୍ତୁ କିଛି କହିଲେ ନାହିଁ । ତେବେ ମୋର ବିଶ୍ୱାସ ବିଦୂର ଏ ଭିତରେ ଅଛନ୍ତି ।

ମାତୁଳ ! ତୁମେ ଏ କ'ଣ କହୁଛ ?

ବତ୍ସ ! ବିସ୍ମିତ ହୁଅ ନାହିଁ । ରାଜନୀତିରେ ବନ୍ଧୁ, ଭ୍ରାତା କିଛି ବୋଲି କିଛି ନାହିଁ । ବିଶ୍ୱାସ, ଆନୁଗତ୍ୟ କିଛି ନାହିଁ । ଅଛି କେବଳ ସ୍ୱାର୍ଥ, ଲୋଭ ଆଉ ଅନ୍ଧ ଉନ୍ମତ୍ତତା । ମାତୁଳ ! ତା'ହେଲେ ପାଣ୍ଡବମାନଙ୍କ ସହିତ ତାଙ୍କୁ ମଧ୍ୟ ନିର୍ବାସନରେ ପଠାଇ ଦିଅ ।

ଭାଗିନେୟ । ତୁମର ଉଚ୍ଚାଶା ଯେତିକି, ବୁଦ୍ଧି ତା'ଠାରୁ କମ୍ । ବିଦୂରଙ୍କୁ ଏଇ ମୁହୂର୍ତ୍ତରେ ହାତଛଡ଼ା କରିବା ଉଚିତ ନୁହେଁ । ତାଙ୍କୁ ହଟେଇଲେ ଶତ୍ରୁର ହାତ ଶକ୍ତ ହେବ । ସେତେବେଳକୁ ଆଉ ପ୍ରକାଶ୍ୟଭାବେ ବିରୋଧ କରିବାରେ କୌଣସି ପ୍ରତିବନ୍ଧକ ରହିବନି । ତେଣୁ ହିଁ ତାଙ୍କୁ ଆମ ସହିତ ରଖିବାକୁ ହେବ । ତା'ହେଲେ ସଂଘାତକୁ କିଛି ମାତ୍ରାରେ ଏଡ଼ାଇ ଦେଇପାରିବା । ମୁଖ୍ୟ ଅଙ୍ଗଟିକୁ କାଢ଼ିନେଇ ତାଙ୍କୁ ଅକାମି କରିଦେବା ହେଉଛି ପ୍ରକୃଷ୍ଟ ରାଜନୀତି । ପାଣ୍ଡବମାନେ ହେଲେ ବିଦୂରଙ୍କ ଶ୍ରେଷ୍ଠ ହତିଆର । ସେଇ ଅସ୍ତ୍ରଟିକୁ କାଢ଼ି ନେବାକୁ ହେବ ବିଦୂରଙ୍କ ହାତରୁ ।

ଦୁର୍ଯ୍ୟୋଧନ ଉତ୍ସାହିତ ହୋଇ ମୁଣ୍ଡ ଟୁଙ୍ଗାରିବାକୁ ଲାଗିଲେ ଓ ପ୍ରଶ୍ନ କଲେ- ତା'ହେଲେ କଣ କରିବାକୁ ହେବ ?

କେବଳ ପାଣ୍ଡୁ ପୁତ୍ରମାନଙ୍କୁ ଏହି ରାଜ୍ୟରୁ ଅନ୍ୟତ୍ର ହଟେଇ ଦେବାକୁ ହେବ । ସେଇଠାରେ ସେମାନଙ୍କୁ ହତ୍ୟାକରି ଶତ୍ରୁ ନିର୍ବଂଶ କରିବାକୁ ହେବ ।

ପୁଣି ହତ୍ୟା !

ହଁ ଭାଗିନେୟ । ରାଜନୀତିରେ ହତ୍ୟା, ସେ ତ କିଛି ନୁହେଁ । ଯେ କୌଣସି ଉପାୟରେ କ୍ଷମତାକୁ କରାୟତ୍ତ କରିବା ହେଲା ଏକମାତ୍ର ମୁଖ୍ୟ ଉଦ୍ଦେଶ୍ୟ । ଏମିତିକି ରାମ ମଧ୍ୟ ଯୁଦ୍ଧରେ

ନିଜେ ଜିତିବା ପାଇଁ ନିରପରାଧ ବାଳୀଙ୍କୁ ହତ୍ୟା କରିବା ପାଇଁ କୁଣ୍ଠିତ ହୋଇନଥିଲେ । ରାବଣ ମଧ୍ୟ ପ୍ରତିଦ୍ୱନ୍ଦ୍ୱୀ ହେବାର ଆଶଙ୍କା କରି ନିଜର ଭଗ୍ନିପତି ବିଦ୍ୟୁଜ୍ଜିହ୍ୱାକୁ ହତ୍ୟା କରିବା ପାଇଁ ପଛଘୁଞ୍ଚା ଦେଇନଥିଲା । ରାଜନୀତି ମାନେ ହିଁ ଛନ୍ଦ, ଚାତୁରୀ ଓ ଶଠତା । ରାଜନୀତିରେ ଏକତ୍ର ଏଗୁଡ଼ିକୁ ମିଶାଇ ଦେଇ 'କୂଟନୀତି' ବୋଲି କୁହାଯାଏ ।

ଛାତି ଭିତରୁ ସ୍ୱସ୍ତିର ନିଃଶ୍ୱାସ ଛୁଟି ଆସିଲା । ନିଃଶ୍ୱାସ ସହିତ କିଛି କଥା ମଧ୍ୟ... 'ତା'ହେଲେ ତୁମ କୂଟ କୌଶଳ କ'ଣ ?

ଶକୁନି ଗମ୍ଭୀର ଭାବେ ଭାବିବାକୁ ଲାଗିଲେ । ଗଭୀର ଅନ୍ୟମନସ୍କତା ଭିତରେ ସେ ମୁଣ୍ଡ ହଲାଇଲେ ଦି'ଚାରିଥର । ଯା'ର ଅର୍ଥ ଅସ୍ପଷ୍ଟ, ଅପରିଚ୍ଛନ୍ନ । ଦୁର୍ଯ୍ୟୋଧନ ଶକୁନି ମୁହଁକୁ ଅପଲକ ଚକ୍ଷୁରେ କିଛି ସମୟ ଚାହିଁ ରହିଲେ । କିଛି ସମୟ ଏମିତି ନିରବତାରେ କଟିଗଲା । ତା'ପରେ ଧୀର ସ୍ୱରରେ କହିଲେ, ଲୋକାଳୟର ବାହାରେ ନିର୍ଜନ କୌଣସି ମନୋରମ ପ୍ରାକୃତିକ ପରିବେଶରେ ଦାହ୍ୟବସ୍ତୁ ଦେଇ ସୁଦୃଶ୍ୟ ଆରାମଦାୟକ ରମଣୀୟ ଅଟ୍ଟାଳିକା ନିର୍ମାଣ କରି ଭ୍ରମଣପ୍ରିୟ ବୈଚିତ୍ର୍ୟଲୋଭୀ ପାଣ୍ଡୁପୁତ୍ରମାନଙ୍କୁ ସହଜରେ ପ୍ରଲୁବ୍ଧ କରାଯାଇପାରେ । ତାପରେ ଦିନେ ପ୍ରତିଶୋଧର ନିଆଁ ଦପ୍ କରି ଜଳିଉଠିବ ଗୃହରେ । ସେତେବେଳେ ଆଉ କୌଣସି ଶତ୍ରୁ ମୋ ଭାଗିନେୟର ରହିବେ ନାହିଁ ।

|| ଆଠ ||

ବାରୁଣାବତର ଜତୁଗୃହ ସୁଡ଼ଙ୍ଗ ଦେଇ ପାଣ୍ଡବମାନେ ପଳାଇଯାଇ ଗହନ ଅରଣ୍ୟର ପଥେ ପଥେ ଘୂରିବୁଲିଲେ । ଅକସ୍ମାତ୍ ବ୍ୟାସଦେବଙ୍କ ସହିତ ଦିନେ ସାକ୍ଷାତ୍ ହୋଇଗଲା ସେମାନଙ୍କର । ପ୍ରକୃତରେ ବ୍ୟାସଦେବ ସେମାନଙ୍କ ସଂଧାନରେ ହିଁ ସେଠାକୁ ଆସିଥିଲେ ।

ନିଃସଙ୍ଗ ଅସହାୟ ଅବସ୍ଥା ମଧ୍ୟ ଦେଇ ପାଣ୍ଡବମାନେ ଦିନ କାଟୁଥିଲେ । ସେମାନଙ୍କ ଆଗରେ ବର୍ତ୍ତମାନ, ଭବିଷ୍ୟତ ବୋଲି କିଛି ନ ଥିଲା । କୁଆଡ଼େ ସେମାନେ ଚାଲିଛନ୍ତି ଠିକଣା ନ ଥିଲା କିଛି । କେବଳ ଗୋଟିଏ ଗୁଣ ଥିଲା ସେମାନଙ୍କର, ତାହାହେଲା- ସମସ୍ତ ବିରୁଦ୍ଧତାକୁ ଜୟ କରିପାରିବାର । ସମସ୍ତ ପ୍ରତିକୂଳତାକୁ ନିଜ ଅନୁକୂଳରେ ଘୂରେଇ ଆଣିପାରିବାର । ଏଥିପାଇଁ ଯୁଆଡ଼େ ଯାଆନ୍ତୁ ସେଠାକାର ମଣିଷମାନେ ସେମାନଙ୍କୁ ଶ୍ରଦ୍ଧା କରୁଥିଲେ, ଭଲ ପାଉଥିଲେ । ଏଭଳି କିଛି ଗୋଟାଏ ମୋହରେ ବନ୍ଧା ପଡ଼ିଗଲା କି ଆଉ ତାଙ୍କ ହୃଦୟ ? ନିଜକୁ ନିଜେ ହିଁ ପ୍ରଶ୍ନକଲେ ବ୍ୟାସଦେବ ।

ପଞ୍ଚପାଣ୍ଡବଙ୍କ ନିଷ୍ପାପ ସରଳ ମୁଖକୁ ଚାହିଁଦେଲେ ଛାତି ଭିତରଟା କିମିତି ଘାଣ୍ଟି ହେଇଯାଉଥିଲା । କିଏ ଯେମିତି ସେତେବେଳେ ଭିତରେ ରହି ପ୍ରବଳବେଗରେ ତାଙ୍କୁ ଟାଣୁଥିଲା । ମାୟା ମୋହ ମଣିଷର ଜନ୍ମଗତ ଟାଣ, ସହଜରେ କଟେନା । ସଂସାର ଉଦାସୀ, ସନ୍ନ୍ୟାସୀ ମଣିଷ ହେଲେ କ'ଣ ହେଲା, ତାଙ୍କ ମନ ଭିତରେ ମଣିଷର ସହଜାତ ପ୍ରବୃତ୍ତିର ବେଗ – ଗୋଟିଏ ଅଦୃଶ୍ୟ ଟାଣୁଆ ବନ୍ଧନକୁ ସେ ଅନୁଭବ କରିପାରୁଥିଲେ ପାଣ୍ଡବମାନଙ୍କ ପାଇଁ ନିଜ ଭିତରେ । କାହିଁକି ? ଦୁର୍ଯ୍ୟୋଧନର ଭାଇମାନଙ୍କ ସଙ୍ଗେ ମଧ୍ୟ ତାଙ୍କର ସମାନ ସଂପର୍କ । ତଥାପି ସେମାନଙ୍କ ପ୍ରତି ଏହି ଧରଣର କୌଣସି ଆତ୍ମିକ ଟାଣ ତାଙ୍କ ଭିତରେ କାହିଁକି ଜାଗ୍ରତ ହୁଏ ନାହିଁ । କାହିଁକି ?

ମୁଗ୍ଧ ଦୃଷ୍ଟିରେ ପଞ୍ଚପାଣ୍ଡବଙ୍କ ଆଡ଼କୁ ଚାହିଁ ରହିଥିଲେ ବ୍ୟାସଦେବ । ପ୍ରତ୍ୟେକ ଭାଇଙ୍କ ଆଖିର ଦୃଷ୍ଟି ଗଭୀର, ଶାନ୍ତ ଅଥଚ ଶାଣିତ । ବୁଦ୍ଧିଦୀପ୍ତ ଚେହେରା । ଦେଖିଲେ ହିଁ ହୃଦୟ ପୂରିଉଠେ ଶ୍ରଦ୍ଧା ଓ ଅନୁରାଗରେ, ସ୍ନେହରେ । ଆଉ ସେତେବେଳେ ଏହି ସ୍ନେହ କାଙ୍ଗାଳ ଅନ୍ତର ସେମାନଙ୍କ ପାଇଁ ଉଦ୍‌ବେଗରେ, ଦୁର୍ଭାବନାରେ ଅସ୍ଥିର ହୋଇଉଠେ ।

କେବଳ ପାଣ୍ଡବମାନଙ୍କ ପାଇଁ କାହିଁକି ଏମିତି ହୁଏ ? ଏହି ଗଭୀର ଅଥଚ ଏକାତ୍ମତାର ମୂଳ ଉତ୍ସ କେଉଁଠି ? ସହସା ମନର ଗଭୀରତମ ପ୍ରଦେଶରୁ ଉତ୍ତରଟା ଯେମିତି ଝଂକୃତ ହେଇ କାନରେ ବାଜିଲା, ଏ ହେଉଛି ଜାରଜ ପ୍ରତି ଜାରଜର ସମବେଦନା ।

ବ୍ୟାସଦେବ ସ୍ୱପ୍ନାତୁର ଚକ୍ଷୁରେ ନିଷ୍ପଲକ ଭାବେ କିଛିକ୍ଷଣ ଚାହିଁରହିଲେ ଯୁଧିଷ୍ଠିରଙ୍କ ଆଡ଼କୁ । ଆଖିରେ ତାଙ୍କର ମମତାର ନିବିଡ଼ ସ୍ପର୍ଶ । ଦୁଃସମୟରେ ବ୍ୟାସଦେବଙ୍କୁ ପାଇ ପଞ୍ଚପାଣ୍ଡବ ଏବଂ ସେମାନଙ୍କ ଜନନୀ କୁନ୍ତୀଙ୍କ ହୃଦୟ ଅପାର ରହସ୍ୟମୟ ଆନନ୍ଦରେ ପୂରି ଉଠିଲା । ଏକ ଅଦ୍ଭୁତ ଅନୁଭୂତି ସୃଷ୍ଟି ହେଲା ଅନ୍ତରରେ । କିନ୍ତୁ ଯୁଧିଷ୍ଠିରଙ୍କ ମନରେ ହଜାରେ ଜିଜ୍ଞାସା ସୃଷ୍ଟି ହେଲା । କେମିତି ଜାଣିଲେ ବ୍ୟାସଦେବ ସେମାନେ ଗହନ ଅରଣ୍ୟର ଜନବିରଳ ଅଞ୍ଚଳରେ ଏକ ଦରିଦ୍ର ଅଖ୍ୟାତ ପଲ୍ଲୀରେ ଅବସ୍ଥାନ କରୁଛନ୍ତି ବୋଲି ? ସମସ୍ତେ ତ ଜାଣନ୍ତି ସେମାନେ ମୃତ । ବାରୁଣାବନ୍ତର ଅଗ୍ନିକାଣ୍ଡରେ ଜଳିପୋଡ଼ି ଯାଇଛନ୍ତି ବୋଲି । ସର୍ବତ୍ର ପ୍ରଚାରିତ ହେଇଛି ମଧ, ଭଗ୍ନସ୍ତୂପ ମଧ୍ୟରୁ ପାଞ୍ଚଟି ପୁରୁଷ ଏବଂ ଜଣେ ନାରୀର ଦଗ୍ଧ ଶରୀର ଉଦ୍ଧାର କରାଯାଇଛି । ତେବେ ବ୍ୟାସଦେବ କିଭଳି ଜାଣିଲେ ଯେ ସେମାନେ ଜୀବିତ ଅଛନ୍ତି ? କେମିତି ଜାଣିଲେ ? ସେମାନେ ତ କେବେ ବି ଏକାଦିକ୍ରମେ ଗୋଟାଏ ସ୍ଥାନରେ ଅବସ୍ଥାନ କରି ନାହାନ୍ତି । ନବାଗତାଙ୍କ ସଂପର୍କରେ ଆଗ୍ରହ, କୌତୂହଳ କିମ୍ବା ସଂଦେହ ଉଦ୍ରେକ ହେବାର ବହୁ ପୂର୍ବରୁ ସେମାନେ ସେଇ ସ୍ଥାନ ତ୍ୟାଗକରି ସାରିଥାନ୍ତି । ଅଳ୍ପ ସମୟ ଭିତରେ କେତେ ନଗର, ରାଜଧାନୀ, ଗ୍ରାମ, ଅରଣ୍ୟ ସେମାନେ ଘୂରିବୁଲିଲେଣି । ଫଳରେ ସେମାନଙ୍କ ଗତିବିଧି ଉପରେ ଶତ୍ରୁର ଦୃଷ୍ଟି ରଖିବା ଅସମ୍ଭବ ଥିଲା । ତଥାପି ବ୍ୟାସଦେବଙ୍କ ସହିତ ସେମାନଙ୍କର ସାକ୍ଷାତ୍ ହେଲା କିମିତି କେଜାଣି ? ଇଏ କ'ଣ ଘଟଣାଚକ୍ରରେ ନା, ଏହା ମଧ୍ୟରେ କିଛି ରହସ୍ୟ ଲୁଚି ରହିଛି ?

ଘଟଣାର ଆକସ୍ମିକତାରେ କଥା କହିବାକୁ ଭୁଲିଯାଇଥିଲେ ଯୁଧିଷ୍ଠିର, ଠିକ୍ ଡାକ ଭୁଲିଯାଇଥିବା ପକ୍ଷୀଟିଏ ଭଳି ତାଙ୍କର ଅବସ୍ଥା । ବିସ୍ମୟବୋଳା ଆନନ୍ଦରେ ସେ କେବଳ ବ୍ୟାସଦେବଙ୍କ ମୁଖମଣ୍ଡଳକୁ ଚାହିଁ ରହିଥିଲେ । ଛାତି ଭିତରଟାରେ ସତେକି ଗୋଟାଏ ନୁହେଁ ଦୁଇ ଦୁଇଟା ହୃତ୍‌ପିଣ୍ଡ ଯେମିତି ଧକ୍ ଧକ୍ କରୁଥିଲା

ପ୍ରଥମ ଦର୍ଶନର ବିସ୍ମୟ କଟିବାକୁ କିଛି ସମୟ ଲାଗିଗଲା ଭୟଙ୍କର । ଅପରାହ୍ନର ରୌଦ୍ର ଗଛପତ୍ରର ଫାଙ୍କ ଦେଇ ପୁଣ୍ୟାଲୋକ ଭଳି ଝରିପଡ଼ିଲା ବ୍ୟାସଦେବଙ୍କ ମୁଖମଣ୍ଡଳରେ ଏବଂ ସେଇ ଆଲୋକରେ ବ୍ୟାସଦେବଙ୍କ ମୁଖମଣ୍ଡଳର ଚତୁର୍ଦ୍ଦିଗରେ ଜ୍ୟୋତିର୍ବଳୟ ଭଳି ଏକ ଔଜ୍ଜ୍ୱଲ୍ୟ ଫୁଟି ଉଠୁଥିଲା ସତେ ଯେମିତି । ସେଇ ଅପାର୍ଥିବ ଅଲୌକିକ ଦିବ୍ୟ ଘଟଣାକୁ ଅବାକ୍ ଦୃଷ୍ଟିରେ ଚାହିଁରହି ପ୍ରଶ୍ନକଲେ ଯୁଧିଷ୍ଠିର : ପିତାମହ, କେତେକାଳ ପରେ ଆମର ସାକ୍ଷାତ୍ ହେଲା କୁହନ୍ତୁତ ? ବ୍ୟାସଦେବଙ୍କ ସମ୍ମୁଖ ଭାଗରେ ଗହନ ଅରଣ୍ୟ ଭଳି ଅସଂଖ୍ୟ

ବିଶାଳ ବିଶାଳ ବୃକ୍ଷର ଛାୟା, କେତେ ଲତା ଲତିକାରେ ଫୁଲ ଫୁଟି ବିକଶି ଉଠୁଛି ମଧ୍ୟ, ଏକ ଅବିଶ୍ୱାସ୍ୟ ରୂପମୟ ଜଗତରେ ବିସ୍ମୟ ତାଙ୍କ ଦୁଇ ଆଖିର ଚାହାଣିକୁ ଦ୍ୟୁତିମୟ କରି ତୋଳିଲା । ଯୁଧିଷ୍ଠିରଙ୍କ ପ୍ରଶ୍ନରେ ତାଙ୍କ ମୁହଁରେ ଫୁଟିଉଠିଲା ମନ୍ଦହାସର ଝଲକଟିଏ । ମନେ ମନେ ହିସାବ କରି ମୃଦୁମନ୍ଦ ସ୍ୱରରେ କହିଲେ, ଚଉଦବର୍ଷ ପରେ ଆମେ ପୁଣି ଏକାଠି ହେଲେ ବତ୍ସ !

କେମିତି ଗୋଟିଏ ବିଚିତ୍ର ଦୃଷ୍ଟି ତୋଳି ବ୍ୟାସଦେବଙ୍କ ମୁଖକୁ ଚାହିଁ ସବିସ୍ମୟରେ ଉଚ୍ଚାରଣ କଲେ ଯୁଧିଷ୍ଠିର : 'ଚଉଦବର୍ଷ' !

'କାହିଁକି' ସନ୍ଦେହ ହେଉଛି ନା କ'ଣ ? ତୁମେମାନେ ଯେତେବେଳେ ହସ୍ତିନାପୁର ଗଲ ସେତେବେଳେ ତୁମ ବୟସ ଷୋହଳ, ଭୀମ ଚଉଦ ବର୍ଷର, ଅର୍ଜୁନର ତେର, ନକୁଳ ସହଦେବ ସେତେବେଳେ ମାତ୍ର ବାରବର୍ଷର ଥିଲେ । ତା'ପରେ ହସ୍ତିନାରେ ତୁମେମାନେ ତେରବର୍ଷ ରହିଥିଲ । ଛ'ମାସ ରହିଥିଲ ଜତୁଗୃହରେ, ତାପରେ ଆଉ କିଛି ମାସ କଟେଇଛ ବଣରେ ବଣରେ... ।

ବ୍ୟାସଦେବଙ୍କ କଥା ଶୁଣି କୁନ୍ତୀ ଦୀର୍ଘଶ୍ୱାସ ଛାଡ଼ିଲେ । ଅନୁଭୂତିର ରନ୍ଧ୍ରେ ରନ୍ଧ୍ରେ ଯେଉଁ ଗଭୀର ଦୁଃଖବୋଧ, ନିବିଡ଼ି ବେଦନା ସହିତ ମିଶି ରହିଥିଲା, ତାହା ଗଭୀର ହତାଶାରେ ଦୀର୍ଘଶ୍ୱାସ ହୋଇ ବାହାରିଆସିଲା । ସେ କହିଲେ- ପିଲାଙ୍କର ବୟସ ହିସାବ କରିବାପାଇଁ କେତେବେଳେ ଆଉ ସମୟ ହେଲା ? ମୋର ତ କପାଳ ମନ୍ଦ- କେବଳ କଷ୍ଟ ହିଁ ଲେଖାଅଛି କପାଳରେ । କେବେ ତାର ଅନ୍ତ ହେବ ଜାଣେନା । ପୁତ୍ରମାନଙ୍କର କୌଣସି ଭବିଷ୍ୟତ ଏଯାଏ ମୁଁ ଦେଖିପାରୁନି । ଯାଯାବର ଭଳି ଦିନ କଟୁଛି, ଆଜି ଏଇଠି ତ କାଲି ଆଉ କୋଉଠି । ଯାକୁ କଣ ବଞ୍ଚିବା କହନ୍ତି ?

କୁନ୍ତୀଙ୍କ ବାକ୍ୟ, ନିଥର ନିସ୍ତବ୍ଧତାକୁ ଦୋହଲେଇ ଦେଲା । ବ୍ୟାସଦେବ କ୍ଷଣିକ ପାଇଁ ଦିଗହରା ହେଇଗଲେ । କଣ ଜବାବ ଦେବେ ସେ କୁନ୍ତୀଙ୍କ କଥାର, ଭାବିପାରୁ ନ ଥିଲେ । ଛାତି ଭିତରଟା କିମିତି ହୋଇଯାଉଥିଲା ତାଙ୍କର ।

ଯୁଧିଷ୍ଠିର ନୀରବ । ଭୀମ ଅର୍ଜୁନ କରୁଣ ଦୃଷ୍ଟିରେ ଜନନୀଙ୍କୁ ଚାହିଁଥିଲେ । ଥମ୍‌ଥମ୍ ହେଉଥିବା ଆଖି ଦୁଇଟିରେ କେମିତି ଗୋଟାଏ ଆଚ୍ଛନ୍ନ ଭାବ ଫୁଟି ଉଠୁଥିଲା ।

ନିସ୍ତବ୍ଧ କୁଟୀରରେ ସମସ୍ତଙ୍କର ମିଳିତ ବିଷଣ୍ଣତା ଲହଡ଼ି ଭାଙ୍ଗୁଥିଲା । ନିଃଶ୍ୱାସର ଶବ୍ଦ ବ୍ୟତୀତ ଆଉ କିଛି ଶୁଣାଯାଉନଥିଲା । ବ୍ୟାସଦେବଙ୍କ ସମଗ୍ର ଚେତନା ଉପରେ ନଇଁ ଆସୁଥିଲା ଏକ ବିହ୍ୱଳ ଭାବ । ଅଭିଭୂତ ଆଚ୍ଛନ୍ନତା ଭିତରେ ଆବିଷ୍ଟ ହେଇଗଲେ ସେ । ମୃଦୁ ସ୍ୱରରେ କହିଲେ : ପୃଥା ! ଈଶ୍ୱରଙ୍କ ଉଦ୍ଦେଶ୍ୟ କିଏ ବୁଝିପାରିବ ? ହସ୍ତିନାପୁରର ଖଣ୍ଡିଏ ଛୋଟ ରାଜ୍ୟ ପରିବର୍ତ୍ତେ ଈଶ୍ୱର ତୁମ ପୁତ୍ରମାନଙ୍କପାଇଁ ଲେଖି ଦେଇଛନ୍ତି ଏକ

ବିଶାଳ ଭୁବନ । ଧୃତରାଷ୍ଟ୍ର ତ କେବଳ ହସ୍ତିନାର ଶାସକ । ଆଉ ତୁମ ପୁତ୍ରମାନେ ସମଗ୍ର ମଣିଷ ହୃଦୟର ରାଜା - ଏକ ବିଶାଳ ପୃଥିବୀର ରକ୍ଷକ । ଗୋଟାଏ ନିର୍ଦ୍ଦିଷ୍ଟ ଗଣ୍ଡି ଭିତରେ ବିଧାତା ସେମାନଙ୍କ ହାତଗୋଡ଼ ବାନ୍ଧି ଦେଇ ନାହିଁ । ନିଜ କର୍ମଜଗତରେ ସେମାନେ ସ୍ୱାଧୀନ ଓ ସ୍ୱତନ୍ତ୍ର ।

ବଞ୍ଚନାର କଷ୍ଟରେ କୁନ୍ତୀଙ୍କ ଆଖି ଛଳଛଳ ହେଇଉଠିଲା । ଅବ୍ୟକ୍ତ ଯନ୍ତ୍ରଣାର ଚିହ୍ନ ଫୁଟିଉଠିଲା ମୁହଁରେ । ବହୁ କଷ୍ଟରେ କ୍ରନ୍ଦନକୁ ଚାପି କଣ୍ଠରୁଦ୍ଧ ସ୍ୱରରେ କହିଲେ- ମହର୍ଷି, ଆଉ କିଏ ଏକଥା କହିଥିଲେ ମୁଁ ହସରେ ଉଡ଼େଇ ଦେଇଥାନ୍ତି । କିନ୍ତୁ ଆପଣ କ'ଣ ଭାବି ଏକଥା କହି ମୋତେ ସାନ୍ତ୍ୱନା ଦେଲେ ମୁଁ ଜାଣେନା । ସବୁ ମା'ଭଳି ପୁତ୍ରମାନଙ୍କୁ ନେଇ ମୁଁ ସ୍ୱପ୍ନ ଦେଖିଛି । କିନ୍ତୁ ସ୍ୱପ୍ନର ସେଇ ଆକାଶ ଖଣ୍ଡିକ ହତାଶାର ଗଭୀର ଅନ୍ଧକାର ଭିତରେ କୋଉଠି ହଜିଯାଇଛି ।

କୁନ୍ତୀଙ୍କ ମୁହଁ ଉପରେ ବ୍ୟାସଙ୍କର ଦୃଷ୍ଟି ସ୍ଥିର, ନିଶ୍ଚଳ । ସମବେଦନାରେ ମୁଣ୍ଡ ହଲେଇଲେ ସେ । କିଛିକ୍ଷଣ ପରେ ଆବେଗ ଗାଢ଼ ସ୍ୱରରେ କହିଲେ- ପୃଥା, ତୁମ ଜୀବନ ନିୟତି ଭଳି ଏକ ଅମୋଘ ସଂକେତରେ ରହସ୍ୟମୟ । ପ୍ରକୃତିର ନିୟମରେ ଫୁଲ ଫୁଟେ, ଫଳ ଧରେ, ବୀଜ ହୁଏ । ବୀଜରୁ ଜନ୍ମ ହୁଏ ଗଛ । ଠିକ୍ ସେହି ପ୍ରକାରେ ତୁମର ଦୁଃଖଦୁର୍ଦ୍ଦଶା । ଦୁର୍ଭାଗ୍ୟ ଭିତରେ ଗୋଟାଏ ରହସ୍ୟମୟ କାର୍ଯ୍ୟକାରଣର ସଂପର୍କ ରହିଛି । ଏହା ଆଖିରେ ଦେଖିଲା ଭଳି ବସ୍ତୁ ନୁହେଁ । ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ବ୍ୟତୀତ ତାକୁ ଅନୁଭବ କରିବା ସମ୍ଭବ ନୁହେଁ । ତେବେ ମୁଁ ଏତିକି ବୁଝିଛି । ବିଶାଳ ପୃଥିବୀ ପ୍ରତି ମୁହୂର୍ତ୍ତରେ ତୁମ ପୁତ୍ରମାନଙ୍କୁ ହାତଠାରି ଡାକୁଛି ।

କୁନ୍ତୀଙ୍କ ମୁଖମଣ୍ଡଳରେ ଏମିତି ବି କଷ୍ଟ, ଯନ୍ତ୍ରଣାର ଛିଟା ଲାଗି ରହିଥିଲା । ବ୍ୟାସଦେବଙ୍କ କଥା ଶୁଣି ଭ୍ରୂଯୁଗଳ କିଞ୍ଚିତ୍ କୁଞ୍ଚି ହେଇଗଲା । ଦୀର୍ଘଶ୍ୱାସ ଛୁଟି ଆସିଲା । ସହସା ସ୍ଖଳିତ ହେଇଗଲା କଣ୍ଠସ୍ୱର । କହିଲେ- ମହର୍ଷି, ପାଣ୍ଡବମାନଙ୍କୁ ଆପଣ ଖୁବ୍ ସ୍ନେହ କରନ୍ତି । ସେଥିପାଇଁ ମୋପରି ଆଶ୍ଚର୍ଯ୍ୟ ଆଶ୍ଚର୍ଯ୍ୟ ସ୍ୱପ୍ନ ସବୁ ଆପଣଙ୍କ ମନ ଭିତରେ ସୃଷ୍ଟି ହେଉଛି । ନିଜ ସହିତ ନିଜର ଏଇ ଛଳନାରେ ମୁଁ କ୍ଳାନ୍ତ । ଭବିଷ୍ୟତର କୌଣସି ରୂପଛବି ମୋ ଆଖିରେ ଆଜି ନାହିଁ ।

ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଲେ ବ୍ୟାସଦେବ କୁନ୍ତୀ ଆଡ଼କୁ । ତାଙ୍କର ମୁଖ ଗମ୍ଭୀର ହୋଇଉଠିଲା । କପାଳରେ ଚିନ୍ତାର ରେଖାବଳୀଗୁଡ଼ିକ ସ୍ପଷ୍ଟ ଓ ଗଭୀର ଦିଶିଲା । ବିଚିତ୍ର ଦୃଷ୍ଟି ନେଇ ସେ ପଞ୍ଚପାଣ୍ଡବଙ୍କ ଆଡ଼କୁ ଚାହିଁଲେ ଏବଂ ଗୁରୁଗମ୍ଭୀର ସ୍ୱରରେ କହିଲେ- ବେଶ୍, ମୋର ଦୁଇଟି ପ୍ରଶ୍ନର ଉତ୍ତର ଦିଅ । ହିଡ଼ିମ୍ବ ଆଉ ବକରାକ୍ଷସକୁ କାହିଁକି ହତ୍ୟା କରାଗଲା ? ଭୀମ ହିଡ଼ମ୍ବାକୁ କାହିଁକି ବିବାହ କଲା ?

କୁନ୍ତୀ ବିସ୍ମୟରେ ଚମକି ଉଠିଲେ । ମୁହଁର ଭାବ ବଦଳିଗଲା ତାଙ୍କର । ବଜ୍ରାହତ ଭଳି ସ୍ତବ୍ଧ ବିସ୍ମୟରେ ଚାହିଁରହିଲେ ବ୍ୟାସଦେବଙ୍କ ମୁହଁକୁ । ବୋଧହୁଏ ତାଙ୍କର କୌଣସି ଅନୁଭବ ସେତେବେଳେ ନ ଥିଲା । ଶୁଷ୍କ ଅଧର ଉତ୍ତେଜନାରେ, ଉତ୍କଣ୍ଠାରେ ଥରିଉଠୁଥିଲା ମୃଦୁ ମୃଦୁ ହୋଇ । ବେଶ୍ କିଛି ସମୟ ଧରି ନିରବ ରହିବା ପରେ ବିବ୍ରତ ଗଳାରେ ସେ କହିଲେ- 'ଏ ସବୁ କଥାର ମାନେ କ'ଣ ମହର୍ଷି ?'

ମୋ ପ୍ରଶ୍ନର ଉତ୍ତରକୁ ଏଡ଼ାଇ ଯାଅନା ।

ମହର୍ଷି !

ପୃଥା ! ବ୍ୟାସଦେବଙ୍କ କଣ୍ଠସ୍ୱର ତୀକ୍ଷ୍ଣ ଶୁଭିଲା । ସେଇ ସ୍ୱରରେ ବଣର ନିଥର ସ୍ତବ୍‌ଧତା ଥରିଉଠିଲା ମୁହୂର୍ତ୍ତକ ପାଇଁ ।

କୁନ୍ତୀଙ୍କ ଦୁଇ ଆଖିରେ ଫୁଟି ଉଠିଥିଲା ଅସହାୟତା । କାତର ହୋଇ ସେ କହିଲେ ମହର୍ଷି, କିଏ କହିଲା ଏସବୁ କଥା ଆପଣଙ୍କୁ ? ତୁମେ ମୋ' ପ୍ରଶ୍ନର ଉତ୍ତର ଦିଅ ।

ଭାବିଚିନ୍ତି ତ କିଛି କରାଯାଇନି ।

ତେବେ କିଛି ଗୋଟେ ତ ଭାବିଚିନ୍ତି କହିଥିଲ ?

କୁନ୍ତୀଙ୍କ ଆଖିରେ ଭାସିଉଠିଲା ତାର ଛବି । ସେତେବେଳେ ନିଶାନ୍ତର କୁହେଳୀ ଭରା ଅନ୍ଧକାର ଚାରିଦିଗରୁ ଅପସରି ଯାଉଥିଲା ଧୀରେ ଧୀରେ ଜଳସ୍ଥଳ ଅନ୍ତରୀକ୍ଷର ସ୍ୱଚ୍ଛ ଛବିଟିଏ ବାସ୍ତବ ହେଇଉଠୁଥିଲା ଏକ ରହସ୍ୟମୟ କୁହେଳିକା ଭିତରୁ- ଏଇଟା ଯେମିତି ଏକ ସ୍ୱପ୍ନ ଭଳି ଦୃଶ୍ୟ ।

ଭାଗୀରଥୀର ଅନ୍ୟ ପ୍ରାନ୍ତରେ ପଞ୍ଚପାଣ୍ଡବଙ୍କ ସହିତ କୁନ୍ତୀ ଆସି ଠିଆ ହେଲେ । ଅରୁଣାଲୋକର ରକ୍ତିମ ଆଭାରେ ବିଭାସିତ ହୋଇ ଉଠୁଥିଲା ଧରିତ୍ରୀ । ପକ୍ଷୀମାନେ ସୂର୍ଯ୍ୟବନ୍ଦନା କରି ନୀଳଆକାଶରେ ଡେଣା ମେଲି ଦେଇଥିଲେ ।

କଣ ଭାବି କୁନ୍ତୀ ପୁତ୍ରମାନଙ୍କ ସହିତ ଭାଗୀରଥୀର ଶୀତଳ ଜଳରେ ଅବଗାହନ କଲେ । ସେଥିରେ ଶରୀର ମନ ଉଭୟେ ସ୍ନିଗ୍ଧ ଓ ପବିତ୍ର ହେଇଉଠିଲା । ତା'ପରେ ନବୋଦିତ ସୂର୍ଯ୍ୟଆଡ଼କୁ ଏକ ଲୟରେ ଚାହିଁ କୁନ୍ତୀ ଉଚ୍ଚାରଣ କଲେ ଏବଂ ପଞ୍ଚପାଣ୍ଡବ ମଧ ସମସ୍ୱରରେ ତାଙ୍କ ସହିତ ଉଚ୍ଚାରଣ କଲେ-

ସମ ହେଉ ମନ୍ତ୍ର ମୋର, ପ୍ରାପ୍ତି ହେଉ ସଭିଙ୍କୁ ସମାନ
ସମାନ ସେ ମନ ହେଉ- ସମଚିତ୍ତ ହେଉ ସମଜ୍ଞାନ
ସଭିଏଁ ଆମେ ସମମନ୍ତ୍ରେ ଦୀକ୍ଷିତ-
ସମଭାବେ ସମହବିଧାରେ ଯଜ୍ଞ ଆଚରିବୁ ।

ଏହି ବାକ୍ୟ ପ୍ରତିଷ୍ଠିତ ହେଉ ମନେ, ମନ ହେଉ ବାକ୍ୟେ ପ୍ରତିଷ୍ଠିତ । ତାପରେ ନିଃଶବ୍ଦରେ ଗୋଟି ଗୋଟି ହୋଇ ସେମାନେ ଚାଲିବାକୁ ଲାଗିଲେ । ଗଛପତ୍ରର ଛାଇ ଭିତରେ ସରୁ ପାଦଚଲା ରାସ୍ତା ଦେଇ ସେମାନେ ଗଭୀର ଅରଣ୍ୟ ଭିତରକୁ ପ୍ରବେଶ କଲେ । ଚାଲୁ ଚାଲୁ ଅଟକିଗଲେ ଗୋଟାଏ ସ୍ଥାନରେ । ସେଇ ପଥ ଥିଲା ଜନପଦ ଆଡ଼କୁ । ଏଇ ସମୟରେ ମଣିଷମାନଙ୍କ ମେଳରେ ଜନବସତି ମଧ୍ୟରେ ରହିବା ଉଚିତ ହେବ ନାହିଁ ଭାବି ପଥ ପରିବର୍ତ୍ତନ କଥା ଚିନ୍ତା କରୁଛନ୍ତି ସେମାନେ... ଠିକ୍ ସେଇ ସମୟରେ ହଳଦୀବସନ୍ତଟିଏ ଡାକି ଡାକି ଉଡ଼ିଗଲା ଗୋଟାଏ ଥୁଣ୍ଟା ଗଛର ଡାଳ ଉପରୁ ଭାଗୀରଥୀର ତୀର ଦେଇ ଗଭୀର ଜଙ୍ଗଲ ଭିତରକୁ । କୁନ୍ତୀ ଆଉ ଯୁଧିଷ୍ଠିର ଚାହିଁ ରହିଲେ ସେଇ ଦିଗକୁ । ଅବଶ୍ୟ ଆଖି ପକ୍ଷୀଟିର ଗତିକୁ ଅନୁସରଣ କରିଥିଲା ଯେତେଦୂର ପର୍ଯ୍ୟନ୍ତ ସେ ଦେଖାଯାଉଥିଲା । ତାପରେ କୁନ୍ତୀ କହିଥିଲେ ନିଜେ, 'ପକ୍ଷୀଟି ଯେଉଁ ଦିଗକୁ ଯାଇଛି, ଆମେ ସେଇ ଦିଗକୁ ଯିବା ।'

ସମସ୍ତଙ୍କୁ ଭାରି ଭଲ ଲାଗୁଥିଲା । କେତେ ପ୍ରକାରର ଶବ୍ଦ, କେତେ କାକଳି, କେତେ ଗନ୍ଧ, କେତେ ଦୃଶ୍ୟ, ଅନାଘ୍ରାତ, ଅଶ୍ରୁତ, ଅଦେଖା । ବହୁବାର ଅରଣ୍ୟଦୃଶ୍ୟ ଦେଖିବାର ସୁଯୋଗ ପାଇଛନ୍ତି କୁନ୍ତୀ । ଅନେକ ରୂପରେ, ବର୍ଷର ବିଭିନ୍ନ ଋତୁରେ, ତଥାପି ଲୋଭ ସରେନି, ପିପାସା ମେଣ୍ଟି ନାହିଁ । ଚାଲୁ ଚାଲୁ ଅନେକ କଥା ଭାବି ଯାଉଥିଲେ କୁନ୍ତୀ । ହଠାତ୍ ଗୁଡ଼ାଏ ପଦଶବ୍ଦରେ ଚମକି ଉଠିଲେ ସେମାନେ । ନିଘଞ୍ଚ ଲଟା ଭିତରେ ଗଲେ ହରିଣ ବାହାରି ଆସି ଠିଆ ହେଲେ ତଟସ୍ଥ ହୋଇ । ସେମାନଙ୍କର ବଡ଼ ବଡ଼ ଆଖିରେ ବିସ୍ମୟର ଚିହ୍ନ । କିଏ ଏହି ନବାଗତ ଅତିଥିମାନେ ? ଚାହିଁରହିଲେ କିଛି ସମୟ, ତା'ପରେ କ'ଣ ଭାବି ଚକିତ ଓ ସନ୍ତ୍ରସ୍ତ ଭାବେ ସେଇ ଲଟାଗୁଳ୍ମ ଭିତରକୁ ପୁଣି ଥରେ ଦୌଡ଼ି ଚାଲିଗଲେ ।

ଦିନ ପରେ ଦିନ... ସେମାନେ ଚାଲୁଥିଲେ । କେବଳ ରାତ୍ରୀକାଳରେ କୌଣସି ଲୋକାଳୟର ନିକଟବର୍ତ୍ତୀ ଅଞ୍ଚଳରେ ଅବସ୍ଥାନ କରି ପୁଣି ଚାଲୁଥିଲେ । ସକାଳୁ ଗଛତଳେ ଶୋଇଲାବେଳେ କୁନ୍ତୀଙ୍କର ମନେ ହେଉଥିଲା ଦେବତାମାନେ ଆକାଶରେ ଲକ୍ଷ ଲକ୍ଷ ଆଖି ମେଲି ସେମାନଙ୍କ ଆଡ଼କୁ ଚାହିଁ ରହିଛନ୍ତି । ପହରା ଦେଉଛନ୍ତି ସେମାନଙ୍କୁ । ବୃକ୍ଷଲତା, ପାହାଡ଼ ପର୍ବତ, ନଦୀଝରଣା ସମସ୍ତେ ଚାହିଁ ରହିଛନ୍ତି ଅଷ୍ଟପ୍ରହର । ପଞ୍ଚପାଣ୍ଡବଙ୍କୁ ନେଇ ସେମାନେ ବି ତ ସେମାନଙ୍କ ସାଥିରେ ବଞ୍ଚିଛନ୍ତି, ବଞ୍ଚିରହିବେ ମଧ୍ୟ ଚିରଦିନ ପାଇଁ । ଏହି ପ୍ରତ୍ୟୟରେ ମନ ଦୃଢ଼ ହୁଏ । ପ୍ରତିଦିନ ଅନ୍ତରର ଗଭୀରତମ ପ୍ରଦେଶରେ ଶକ୍ତି ଆହରଣ ଉଦ୍ଦେଶ୍ୟରେ ପ୍ରାର୍ଥନା କରୁ କରୁ ନିଦ୍ରାରେ ଅଭିଭୂତ ହୁଅନ୍ତି ସେମାନେ । ପୁଣି ସକାଳର ସୂର୍ଯ୍ୟାଲୋକ ଆଉ ପକ୍ଷୀର ଡାକରେ ନିଦ୍ରା ଭଙ୍ଗ ହୁଏ ।

ପାହାଡ଼ର ଉଠାପକା ରାସ୍ତା ଦେଇ ସେମାନେ ତ୍ରିଗର୍ତ୍ତଦେଶ ଆଡ଼କୁ ଆଗେଇ ଚାଲିଥିଲେ । ହଠାତ୍ ଅରଣ୍ୟର ନିଘଞ୍ଚ ପ୍ରଦେଶରୁ ଭାସି ଆସିଲା ବାହାର ବଜ୍ରନିର୍ଘୋଷ କଣ୍ଠସ୍ୱର- "କୁଆଡ଼େ ଚାଲିଛ ଭୀମସେନ ଆଉ ଅର୍ଜୁନ ?" କଥା ଶେଷ ନ ହେଉଣୁ, ବଣମଇଁଷି ଭଳି ପ୍ରକାଣ୍ଡକାୟ ମଣିଷଟିଏ ବଳିଷ୍ଠ ପାଦରେ ଜଙ୍ଗଲ ମାଡ଼ି ଠିଆ ହେଇଗଲା ନିର୍ଭୟରେ ପଞ୍ଚଭ୍ରାତା ସମ୍ମୁଖରେ । ଶାଳତରୁ ଭଳି ଦୀର୍ଘବପୁ ତପସୀବହୁଳ ବଳିଷ୍ଠ ବହୁ ଉଦ୍ଦୀପ୍ତ ଚେହେରା, କଳାମୁଗୁନି ପଥରରେ କୁନ୍ଦିହେଲା ଭଳି ନିର୍ଘାତ ବଳିଷ୍ଠ ମହାକାୟ ମୂର୍ତ୍ତି । ଗୋଟାଏ ପଥର ଚଟାଣ ଉପରେ ଠିଆ ହେଇ ଭୀମ, ଅର୍ଜୁନ, ଯୁଧିଷ୍ଠିର ପ୍ରମୁଖ ଭାଇମାନଙ୍କ ଆଡ଼କୁ ସେ ଚାହିଁବାକୁ ଲାଗିଲା । ଜଙ୍ଗଲର ବନ୍ୟମଣିଷ, ଆଖିରେ ଆଖି ରଖି ଠିଆ ହେଲା । ନାକରୁ ଅଦ୍ଭୁତ ଶବ୍ଦ ବାହାରୁଥିଲା ତାର । କହିଲା- ମୁଁ ଏଇ ଅରଣ୍ୟର ଅଧିପତି, ହିଡ଼ିମ୍ବ । ମୁଁ ତୁମମାନଙ୍କୁ ଚିହ୍ନିଛି । ଏକଲବ୍ୟର ଗୁରୁଦକ୍ଷିଣା ଅନୁଷ୍ଠାନରେ ତୁମ୍ଭଙ୍କୁ ଦେଖିଛି ।

କୁନ୍ତୀଙ୍କ ଦୁଇ ଆଖିରେ ଯୁଗପତ୍ ବିସ୍ମୟ ଓ ଭୟ । ପୁତ୍ରମାନଙ୍କୁ ଇଙ୍ଗିତରେ କଥା କହିବାକୁ ବାରଣ କରି ସେ ଟିକିଏ ଅବାକ୍ ହେବାର ଚେଷ୍ଟା କଲେ । ତାପରେ ନିରୀହ ଭାବେ କହିଲେ- ପୁଅ ! ତୁମେ ବୋଧେ ଭ୍ରାନ୍ତିରେ ପଡ଼ିଛ, ଆମ୍ଭେମାନେ ତୀର୍ଥଯାତ୍ରୀ ।

କୁନ୍ତୀଙ୍କ କଥା ଶୁଣି ହିଡ଼ିମ୍ବ ଦାନ୍ତ କଡ଼ମଡ଼ କରି କହିଲା- ଅରଣ୍ୟର ମଣିଷମାନଙ୍କ ଆଖି ବ୍ୟାଘ୍ର ଭଳି । ଶିକାର ଖୋଜିବାରେ ଭୁଲ କରେନା ।

ଭୟରେ କୁନ୍ତୀଙ୍କ ଛାତି କମ୍ପି ଉଠିଲା । ହିଡ଼ିମ୍ବର କର୍କଶ ହିଂସ୍ର, ବେସୁରା କଣ୍ଠସ୍ୱର ତାଙ୍କ ଭିତରର ଚେତନାକୁ ଥବିର କରିଦେଲା । ସ୍ତବ୍ଧ କରିଦେଲା ସମସ୍ତଙ୍କୁ ସେ କେଇ ମୁହୂର୍ତ୍ତ ପାଇଁ । ଯେମିତି ରକ୍ତର ପ୍ରବହମାନତା ଥମିଗଲା । ତାପରେ ମନଅଭ୍ୟନ୍ତରରୁ ସାହସ ସଞ୍ଚୟ କରି ମଳିନ ଭାବରେ ହସିଉଠି ସ୍ନେହାର୍ଦ୍ର କଣ୍ଠରେ କହିଲେ, ବାପ, ତୁମେ ତ ମୋର ପୁଅ ସମାନ । ତୁମକୁ ମୁଁ ମିଛ କହିବି କାହିଁକି ? ଠକିବି ବି କାହିଁକି ? ତୁମେ ଯେଉଁମାନଙ୍କ ନାମ ଉଚ୍ଚାରଣ କଲ, ସେଇ ନାମ ତ ମୁଁ କାହିଁ କେବେ ଶୁଣିନି । କିଏ ସେମାନେ ? କଣ କରନ୍ତି ? ବୋଧହୁଏ ତୁମର ଶତ୍ରୁ ?

ସହସା କଲିଜା ଥରିଉଠିଲା ଭଳି ଗର୍ଜିଉଠିଲା ହିଡ଼ିମ୍ବ । ହୁଙ୍କାର ଦେଇ କହିଲା ଠିଆ ହୁଅ । ତୁମର କୌଣସି କଥାରେ ମୁଁ ଭୁଲିବିନି । ଜତୁଗୃହରେ ତୁମେ କେହି ପୋଡ଼ି ମରି ନାହଁ । ତଥାପି ଭସ୍ମସ୍ତୂପ ମଧ୍ୟରୁ ଛ'ଟି ମୃତ ଶରୀର ମିଳିଥିଲା । ଏହା ସେମିତି କିଛି ବଡ଼ ଆଶ୍ଚର୍ଯ୍ୟର କଥା ନୁହେଁ । ବଡ଼ କୌଶଳରେ କାର୍ଯ୍ୟଟି ସଂପନ୍ନ କରିଛ । ହେଲେ, ସେଇ ଲୋକଗୁଡ଼ାକ କିଏ ? ଯେଉଁମାନେ ସଶରୀରେ ଜୀବନ୍ତ ଦଗ୍ଧ ହେଇଛନ୍ତି ? ନା ତାଙ୍କୁ ହତ୍ୟାକରି ନିଆଁରେ ପକାଇ ଦେଇଛ ?

କୁନ୍ତୀଙ୍କ ମଥା ଘୂରିବାକୁ ଲାଗିଲା । ଦୁଃଶ୍ଚିନ୍ତାରେ ଭିତରଟା ନିଷ୍ଫଳ ବଧିରା ପାଲଟି ଯାଉଥିଲା । କିଛି ସମୟ ପୁତ୍ରମାନଙ୍କ ଆଡ଼କୁ ଚାହିଁରହିଲେ ସେ । ମୁଣ୍ଡ ହଲାଉ ହଲାଉ ସତର୍କତାମୂଳକ ଶବ୍ଦକରି ଚାପାଗଳାରେ କହିଲେ- "ଯାହା କହୁଛି ଏସେ ଶୁଣିଯାଅ । କ୍ରୋଧରେ କିଛି ଗୋଟାଏ ଅଘଟଣ ଘଟାଇ ଚିହ୍ନା ପକାଅ ନାହିଁ ନିଜକୁ । କିଛି ମଧ କୁହ ନାହିଁ ଲୋକଟାକୁ । ସଂଯତ ରୁହ ।"

ବ୍ୟାସଦେବଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କୁନ୍ତୀଙ୍କର ଏ ସମସ୍ତ କଥା ଓ ଘଟଣା ମନେପଡ଼ିଯାଇଥିଲା ଗୋଟି ଗୋଟି ହୋଇ । ହେଲେ ଏସବୁ ଗଳ୍ପ କହିଲା ଭଳି ମାନସିକ ସ୍ଥିତି ତାଙ୍କର ନ ଥିଲା । ତେଣୁ ହିଁ କୁନ୍ତୀ ମୁହୂର୍ତ୍ତକ ଭିତରେ ମନେ ମନେ କଣ ଉତ୍ତର ଦେବେ ସ୍ଥିର କରିନେଲେ । ମୁଖମଣ୍ଡଳର ଶୂନ୍ୟତାକୁ ଲକ୍ଷ୍ୟକରି ବ୍ୟାସଦେବ ଟିକିଏ ହଲିଲା ଆଖିରେ କୁନ୍ତୀଙ୍କୁ ଚାହିଁଲେ । ସହସା ବ୍ୟାସଦେବଙ୍କ ଆଖିରେ ପଡ଼ିଲା କୁନ୍ତୀଙ୍କ ଆଚ୍ଛନ୍ନ ଭାବ କଟି କଟି ଆସୁଛି ଧୀରେ ଧୀରେ । ବିସ୍ମୃତି ଦୂର ହେଉଛି । ସେ ଯେମିତି ସ୍ୱପ୍ନ ଭିତରୁ ଉଠି ଆସୁଛନ୍ତି ବାସ୍ତବତା ଭିତରକୁ । ବିବର୍ଣ୍ଣ ମୁଖରେ ଟିକିଏ ମଳିନତା ଫୁଟାଇ କହିଲେ, ଭାଗୀରଥୀ ପାରିହୋଇ ଗହନ ଅରଣ୍ୟ ଭିତରକୁ ପ୍ରବେଶ କରିବାର ଅଳ୍ପ କିଛି ଦିନ ପରେ ହିଁ ହିଡ଼ିମ୍ବର ମୁହଁରେ ପଡ଼ିଗଲୁ । ସେ ଭୀମ ଅର୍ଜୁନକୁ ଚିହ୍ନି ପାରିଥିଲା । ଆମ ନିରାପତ୍ତା ବିପନ୍ନ ହେଲା । ଅର୍ଥଲୋଭରେ ସେ ଭୀମ ଅର୍ଜୁନକୁ ହତ୍ୟା କରିବାର ପରିକଳ୍ପନା କରୁଥିଲା । ଭଗିନୀ ହିଡ଼ିମ୍ବାକୁ ଦେଇ ଭୀମକୁ ପ୍ରଲୁବ୍ଧ କରିବାକୁ ଚାହିଁଲା । କିନ୍ତୁ ହିଡ଼ିମ୍ବା ଭୀମର ପ୍ରେମରେ ପଡ଼ିଯାଇଥିଲା । ପ୍ରେମ ପାଇଁ ହେଉ କିମ୍ବା ଭୀମକୁ ଲାଭ କରିବା ଉଦ୍ଦେଶ୍ୟରେ ହେଉ ହିଡ଼ିମ୍ବା ଭାଇର ଉଦ୍ଦେଶ୍ୟ ଏବଂ ମନୋଭାବକୁ ଭୀମସେନ ନିକଟରେ ଖୋଲି କହିଲା । ଶତ୍ରୁକୁ ଶତ୍ରୁ ଭଳି ଆଚରଣ କରିବାକୁ ହିଁ ସବୁବେଳେ ମୁଁ ପୁତ୍ରମାନଙ୍କୁ ଶିଖାଇ ଆସିଛି । ଭୀମ ହିଡ଼ିମ୍ବକୁ ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ଆହ୍ୱାନ କଲା । ସେଇ ଭୟଙ୍କର ଯୁଦ୍ଧରେ ହିଡ଼ିମ୍ବର ମୃତ୍ୟୁ ହେଲା । ହିଡ଼ିମ୍ବର ମୃତ୍ୟୁ ପରେ ଆମେ ସଂପୂର୍ଣ୍ଣ ବିପଦମୁକ୍ତ ହେଲୁ ନାହିଁ । ତାର ଭଗିନୀ ଆମ ନିରାପତ୍ତାର ଆଉ ଏକ ପ୍ରତିବନ୍ଧକ ହୋଇ ଠିଆ ହେଲା । ସେ ନାରୀ ! ତା ସହିତ ଯୁଦ୍ଧ କରିବା ମଧ ସମ୍ଭବ ନୁହେଁ କିମ୍ବା ହତ୍ୟା ମଧ କରାଯାଇପାରେନା । ଏଭଳି ପରିସ୍ଥିତିରେ ତାର ସରଳ ପ୍ରେମ ପ୍ରତ୍ୟାଖ୍ୟାତ ହୁଏ ତେବେବି ଆମେ ବିପନ୍ନ ହେବୁ । ସେଇ ଦାରୁଣ ସଂକଟରୁ ଉଦ୍ଧାର ପାଇବାର ଏକମାତ୍ର ପଥ ଥିଲା ହିଡ଼ିମ୍ବାକୁ ନିଜ ଅଧୀନରେ ରଖିବା । ତେଣୁ ହିଁ ଏକ ମାନବିକ କର୍ତ୍ତବ୍ୟବୋଧରୁ ପିତୃମାତୃହୀନା ଅନାଥ ହିଡ଼ିମ୍ବାକୁ, ହିଡ଼ିମ୍ବ ହତ୍ୟାକାରୀ ଭୀମ ସହିତ ବିବାହ ଦେଲି ।

ବ୍ୟାସଦେବ ଉତ୍‌ଫୁଲ୍ଲ ହୋଇ କହିଲେ : ଚମତ୍କାର ତୁମ ସିଦ୍ଧାନ୍ତ । ଏହି ବିବାହରେ ତୁମେ ଗୋଟିଏ ଟେକାରେ ଦୁଇଟି ପକ୍ଷୀକୁ ମାରିଲ । ହିଡ଼ିମ୍ବାକୁ ବଧୂର ସମ୍ମାନ ଦେଇ ତୁମେ ଅନାର୍ଯ୍ୟ କୁଳର ଚିତ୍ତ ଜୟ କଲ । ବର୍ତ୍ତମାନ ଅରଣ୍ୟ ତୁମର ନିରାପଦ ଆଶ୍ରୟସ୍ଥଳି

ହେଲା । ବିଦେଶ ଭୂଇଁରେ ତୁମର ମହାସଂପଦ- ଆତ୍ମୀୟ ବନ୍ଧୁ ପରିଜନ କେହି ନ ଥିଲେ । ହିଡ଼ିମ୍ବାକୁ ଲାଭକରି ସେ ସବୁ ତୁମେ ଅକ୍ଷମ ଅନାୟାସରେ ପାଇଗଲ । ସେ ସଙ୍କଟରୁ ଉତ୍ତୀର୍ଣ୍ଣ ହେଲ । ରାଜ୍ୟ ପୁନରୁଦ୍ଧାର କାର୍ଯ୍ୟରେ ହିଡ଼ିମ୍ବା ତୁମ ପାଦତଳର ମାଟି ହେଇରହିଲା ।

କୁନ୍ତୀ ବିସ୍ମୟରେ ନିର୍ବାକ୍ ନିଶ୍ଚଳ । ସ୍ଥିର ଅପଲକ ଦୃଷ୍ଟି । କେବଳ ନିଃଶ୍ୱାସର ମୃଦୁ ମନ୍ଥର ଗତିର ଢେଉ ଛାତି ଉପରେ ଉଠୁଥିଲା ପଡୁଥିଲା । ତା ପରେ ମୁଣ୍ଡ ଧୀରେ ଧୀରେ ହଲାଇଲେ ସେ । ଦୀର୍ଘଶ୍ୱାସ ଛାଡ଼ିଲେ । ଏଥର ବୁକୁଭରା ନିଃଶ୍ୱାସ ନେଇ ଗମ୍ଭୀର କଣ୍ଠରେ କହିଲେ, ମହର୍ଷି ! ବକରାକ୍ଷସ ସଂପର୍କରେ କଣ ବା ଆଉ କହିବାର ଅଛି ? ତାର ଦସ୍ୟୁପଣ ଓ ଅତ୍ୟାଚାରରେ ଜନଜୀବନ ଅତିଷ୍ଠ ହେଇ ଉଠୁଥିଲା । ସାଧାରଣ ମଣିଷର ସାହସ ନ ଥିଲା ସେଇ ଦସ୍ୟୁକୁ ସାମ୍ନା କରିବାକୁ । ସେମାନଙ୍କର ଅସହାୟ ଆତ୍ମ ସମର୍ପଣ ଭାବ, ଦସ୍ୟୁର ଆସ୍ଫାଳନ, ସ୍ପର୍ଦ୍ଧା, ଅତ୍ୟାଚାରକୁ ଆହୁରି ପ୍ରୋତ୍ସାହିତ କଲା । ମୋର ପୁତ୍ରମାନେ ସେଇମାନଙ୍କ ଭଳି ଦୁଃଖୀ, ଲାଞ୍ଛିତ । ସାଧାରଣ ମଣିଷର ନିରାପତ୍ତା ଏବଂ ଅଧିକାରର ସୁରକ୍ଷା ପାଇଁ ଆଗେଇଗଲେ । ବକ ରାକ୍ଷସ ଭୀମର ଶକ୍ତି ସଂପର୍କରେ ଅବହିତ ନ ଥିଲା । ତେଣୁ ମୂର୍ଖ ଭଳି ତାକୁ ଆକ୍ରମଣ କରି ବସିଲା । ଆଉ ତାର ପରିଣାମରେ ଯାହା ହେବା କଥା ତାହାହିଁ ହେଲା । ବକ ରାକ୍ଷସର ବିନାଶ ଘଟିଲା । ଲୋକେ ସ୍ୱସ୍ତିରେ ନିଃଶ୍ୱାସ ମାରି ବଞ୍ଚିଲେ ।

ବ୍ୟାସଦେବଙ୍କ ମୁଖରେ ସ୍ନିଗ୍ଧ ହସର ଦ୍ୟୁତି । ଶାନ୍ତ ମାଦକତାମୟ ଆଖିର ଚାହାଣିରେ ଏଭଳି ନିବିଡ଼ ତନ୍ମୟତା ଓହ୍ଲେଇ ଆସିଥିଲା ଯେ, ତାଙ୍କ ମୁଖମଣ୍ଡଳର ଭାବରୂପ ହିଁ ବଦଳିଗଲା । ମୃଦୁମଧୁର ସ୍ୱରରେ ସେ କହିଲେ : ପୃଥା ବକରାକ୍ଷସକୁ ନିଧନ କରି ତୁମେ ପ୍ରମାଣ କରିଦେଲ ଯେ, 'ପାଣ୍ଡବମାନେ ଦୁଃଖୀ ମଣିଷର ଆଶ୍ରୟ ଓ ସାନ୍ତ୍ୱନା ।' ଦୁର୍ଗତ ମଣିଷର ବନ୍ଧୁ ଓ ପରିତ୍ରାଣ ଏବଂ ଅତ୍ୟାଚାରୀ ପାଇଁ ଯମ । ଲୋକଙ୍କ ଆଖିରେ ସେମାନେ ସାର୍ଥକ ପୁରୁଷ । ତାଙ୍କ ପୁରୁଷାର୍ଥର ସେଇ ଗୌରବ ହିଁ ଆମ ମନର ପ୍ରତ୍ୟୟକୁ ଆହୁରି ଦୃଢ଼ୀଭୂତ କରିଛି । ସତରେ ସେମାନଙ୍କୁ ନେଇ ମୁଁ ସ୍ୱପ୍ନ ଦେଖେ । ଉଚ୍ଚାଦର୍ଶର ଆଲୋକ ଦେଖାଇ ତୁମେ ସେମାନଙ୍କର ଅନ୍ତଃକରଣକୁ ଆହୁରି ବିଶାଳ କରିବାକୁ ଶିକ୍ଷା ଦେଇଛ । ବିଧାତା ହୁଏତ ସମସ୍ତଙ୍କ ଆଗରେ ତୁମକୁ ଓ ତୁମ ପୁତ୍ରମାନଙ୍କୁ ଆହୁରି ବଡ଼ କରି ଥୋଇବା ପାଇଁ ଏକ ଅପୂର୍ବ ସୁଯୋଗ ସୃଷ୍ଟି କରିବାକୁ ଚାହୁଁଛନ୍ତି । ମାନରେ, ସମ୍ମାନରେ, ଐଶ୍ୱର୍ଯ୍ୟରେ, କ୍ଷମତାରେ କେବଳ ବଡ଼ ହେବାପାଇଁ ନୁହେଁ । ତ୍ୟାଗରେ, ଦୁଃଖରେ, ବେଦନାରେ, ବୀର୍ଯ୍ୟରେ, ଅନ୍ୟାୟ ବିରୋଧରେ ମୁଣ୍ଡଟେକି ଠିଆ ହେବାର ଯେଉଁ ସତ୍‌ସାହସ ସେଥିପାଇଁ ଜୀବନକୁ ମଧ୍ୟ ତୁଚ୍ଛ କରାଯାଇପାରେ- ତାହାହିଁ ମଣିଷକୁ ବଡ଼ କରି ତୋଳେ । ଏଭଳି କାର୍ଯ୍ୟକୁ ଆହ୍ୱାନ ଜଣେଇବା ପାଇଁ ହିଁ ଈଶ୍ୱର ତୁମକୁ ଓ ତୁମ ପୁତ୍ରମାନଙ୍କୁ ନିର୍ବାସନରେ ପଠେଇଛନ୍ତି ।

କୁନ୍ତୀ ଡାକ ଭୁଲିଯାଇଥିବା ପକ୍ଷୀ ଭଳି ସ୍ୱପ୍ନାଳୁ ଆଖିରେ ବ୍ୟାସଦେବଙ୍କ ମୁହଁକୁ ସେଇମିତି ଚାହିଁ ରହିଥିଲେ । ପ୍ରଶ୍ନ କରିବାକୁ କିମ୍ବା ବିସ୍ମୟ ପ୍ରକାଶ କରିବାକୁ ସେ ଭୁଲି ଯାଇଥିଲେ । ବ୍ୟାସଦେବଙ୍କ ଅଧରକୋଣରେ ସ୍ମିତହସର ରେଖା ଆଖିର ତାରାରେ ରହସ୍ୟର ଦ୍ୟୁତି ଉଜ୍ଜ୍ୱଳ କରୁଥିଲା ମୁଖମଣ୍ଡଳକୁ । ମଧୁର କଣ୍ଠରେ କହିଲେ- 'ଏ ତ ହେଲା ବିଧାତାର ରହସ୍ୟ । ମଣିଷର ସାଧ କାହିଁ ତାର ସେହି ରହସ୍ୟର ଗଭୀରତାକୁ ଖୋଜିବ ।'

ବ୍ୟାସଦେବଙ୍କ ଆଖିରେ ଅନ୍ତର୍ଭେଦୀ ନିବିଡ଼ତା ଓହ୍ଲେଇ ଆସିଥିଲା । କୁନ୍ତୀଙ୍କୁ ଚାହିଁ ସେ କହିଲେ : ପୃଥା, ଏଥର ଅରଣ୍ୟ ଛାଡ଼ି ତୁମେମାନେ ଜନପଦରେ ଅବସ୍ଥାନ କର । ମଣିଷର ଘନିଷ୍ଠ ସାନ୍ନିଧ୍ୟରେ ନ ଆସିଲେ ତୁମ ପୁତ୍ରମାନେ ଜାଣିପାରିବେନି କିଭଳି ଭାବରେ ସାଧାରଣ ମଣିଷକୁ ପ୍ରତିଟି ମୁହୂର୍ତ୍ତରେ ପାରିପାର୍ଶ୍ୱିକ ପରିସ୍ଥିତି ସହିତ ଲଢ଼ିବାକୁ ହୁଏ । ଲଢ଼ିବାକୁ ପଡ଼େ ଦୁର୍ଭାଗ୍ୟ ସହିତ । ସେମାନଙ୍କ ସଂଗ୍ରାମଦୀପ୍ତ ଜୀବନର ସେଇ ଗୌରବ, ବ୍ୟର୍ଥତା, ହତାଶା ଓ ଦୀର୍ଘଶ୍ୱାସକୁ ହୃଦୟଙ୍ଗମ କରିବାପାଇଁ ତୁମେମାନେ ବର୍ତ୍ତମାନଠାରୁ ଏକଚକ୍ର ନଗରରେ ବସବାସ କର । ମୋର ନିର୍ଦ୍ଦେଶ ନ ପାଇବା ଯାଏ, ସେଇ ନଗରୀ ତ୍ୟାଗକରି କୁଆଡ଼େ ଯାଅ ନାହିଁ । ଦିନରେ ଭିକ୍ଷୁକମାନଙ୍କ ଭଳି ଗ୍ରାମରେ, ନଗରରେ ଭିକ୍ଷା ସଂଗ୍ରହ କରିବାକୁ ଘୂରିବୁଲିବ । ଚାରିଆଡ଼କୁ ନଜର ରଖିବ- କିଏ କ'ଣ କହୁଛି, କ'ଣ କରୁଛି, କ'ଣ ହେଉଛି ଏବଂ ତାହା ଦେଖିବାକୁ, ଜାଣିବାକୁ ମଧ୍ୟ ଚେଷ୍ଟା କରିବ ।

ବିସ୍ମୟରେ ପଞ୍ଚପାଣ୍ଡଙ୍କ ଆଖି ବିସ୍ଫାରିତ ହେଇଗଲା ।

ଯେତେଦିନ ଗତ ହେବାକୁ ଲାଗିଲା, ବ୍ୟାସଦେବ ଭିତରେ ଭିତରେ ସେତିକି ଅସ୍ଥିର ହେବାକୁ ଲାଗିଲେ । ଛାତିତଳେ କଣ୍ଟା ଫୋଡ଼ି ହେବାର ଯେଉଁ ଯନ୍ତ୍ରଣା ଜମାଟ ବାନ୍ଧି ଏତେ ଦିନ ଯାଏ ରହି ଆସିଛି ସେକଥା ତ କାହାକୁ ସେ କହିପାରୁ ନ ଥିଲେ । ମନର ଅନ୍ଧାରରେ ବସି ନିଜ ମନକୁ ମନ ତାର ପ୍ରତିକାରର କେତେକଣ ପରିକଳ୍ପନା କରୁଥିଲେ । କିନ୍ତୁ ପାଣ୍ଡବମାନେ ଅକସ୍ମାତ୍ ଆଶ୍ରୟଚ୍ୟୁତ ହେଇଯିବାରୁ ଏକ ବିରାଟ ଶୂନ୍ୟତା ଓ ସମସ୍ୟା ସୃଷ୍ଟି ହେଲା । ତା'ପରଠାରୁ ଧ୍ୟାନରେ ମଧ୍ୟ ମନ ଲାଗୁନଥିଲା । ଧ୍ୟାନରେ ବସିଲେ ଅମ୍ବିକାର ମୁହଁଟା ମନେ ପଡ଼ିଯାଉଥିଲା । ଆଖି ବୁଜିଲେ ଅମ୍ବିକାର ନିଷ୍ଠୁରତା, ପ୍ରତ୍ୟାଖ୍ୟାନ, ଘୃଣା, ଅପମାନ ଓ ପଦାଘାତର ଦୃଶ୍ୟ ହିଁ ଜଳଜଳ ହେଇ ଦିଶୁଥିଲା । ଏମିତିକି ପ୍ରତିହିଂସାର ଝଲକରେ ଝଲସି ଉଠୁଥିବା ଧୃତରାଷ୍ଟ୍ରର ମୁହଁଟା ମଧ୍ୟ ।

ଅମ୍ବିକାର ଅପମାନ ପାଇଁ ତାଙ୍କର କୌଣସି ଗ୍ଲାନିବୋଧ ନ ଥିଲା । ହେଲେ ସେ କୃଷ୍ଣକାୟ ବୋଲି ଯେଉଁ ଘୃଣା ଓ ଅପମାନ ଭୋଗ କରିଥିଲେ ସେଇ ନିଷ୍ଠୁର ଯନ୍ତ୍ରଣାକୁ ସେ ଭୁଲିପାରୁ ନ ଥିଲେ । କଣ୍ଟାଭଳି ଫୋଡ଼ି ହୋଇ ଯାଉଥିଲା ସେଇଟା ତାଙ୍କ ମନରେ । ଯାର ହୃଦୟର ମାଧୁର୍ଯ୍ୟକୁ ଅନୁଭବ କରିଥିଲେ ଜୀବନଟା ଧନ୍ୟ ହେଇଯାଇଥାନ୍ତା । ସେ କାହିଁକି

ଘୃଣା କରି ତାଙ୍କୁ ପ୍ରତିହିଂସାର ଅଗ୍ନି ଭିତରକୁ ନିକ୍ଷେପ କଲା ? ଏହି ଏକମାତ୍ର ନାରୀର ଘୃଣା, ଲାଞ୍ଛନା, ଅପମାନ, ପଦାଘାତର ବିଷମୟ ଜ୍ୱାଳାରେ ଜୀବନଟା ତାଙ୍କର ଏଭଳି ଅସ୍ଥିର ଓ ବିବ୍ରତ ହୋଇପଡ଼ିଲା ସିନା । ଭୀଷ୍ମଙ୍କ ଅହମିକା, ନାରୀର ଉପେକ୍ଷା ଓ ଅସମ୍ମାନ ମଧ୍ୟ ତାଙ୍କ ଛାତିରେ ତୀରଭଳି ବିଦ୍ଧ ହୋଇ ରହିଛି । ଏମାନଙ୍କର ଅପମାନ ଓ ଅସମ୍ମାନ ଯେତେଦିନ ଯାଏ ମନେରହିବ, ସେତେଦିନ ଯାଏ ଭୀଷ୍ମ ଏବଂ ଧୃତରାଷ୍ଟ୍ର ସହିତ ସଂଘର୍ଷର ଅନ୍ତ ହେବ ନାହିଁ । ମନର ନିଆଁ ଲିଭିବ ନାହିଁ । ଏଇ ନିଆଁକୁ ଜଳେଇ ରଖିବା ପାଇଁ ଇନ୍ଧନ ଆବଶ୍ୟକ । ପାଣ୍ଡବଗଣ ହିଁ ତାଙ୍କ ପ୍ରତିହିଂସାର ଇନ୍ଧନ । ଶତ୍ରୁ ନିପାତର ଅସ୍ତ୍ର ।

କିନ୍ତୁ ପାଣ୍ଡବମାନେ ଯେ ବର୍ତ୍ତମାନ ଅସହାୟ । ସେମାନଙ୍କର ସମ୍ବଳ ପାଥେୟ ବୋଲି କିଛି ନାହିଁ । ଧୃତରାଷ୍ଟ୍ରଙ୍କ ସୈନ୍ୟ, ଅସ୍ତ୍ର, ଅର୍ଥ, ଅଶ୍ୱ, ଗଜ, ରଥ, ଲୋକବଳ, ବାହୁବଳ ତଥା ଆତ୍ମୀୟସ୍ୱଜନ ତ ପାଣ୍ଡବମାନଙ୍କ ପାଖରେ କିଛି ନାହିଁ । ଅଥଚ ରାଜଶକ୍ତି ଅର୍ଜ୍ଜନ ପାଇଁ ଆବଶ୍ୟକ । ଏଗୁଡ଼ିକର ପ୍ରୟୋଜନ ଓ ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ । ନିଃସହାୟ ପାଣ୍ଡବଙ୍କର ଏସବୁ ସଂଗ୍ରହ କରିବା ଏକାନ୍ତ ଦୁରୂହ ବ୍ୟାପାର ଥିଲା । ସେମାନଙ୍କ ପାଖରେ ଠିଆ ହେବା ଭଳି ଜଣେ ମହାନ୍ ରାଜାଙ୍କର ସନ୍ଧାନ ମଧ୍ୟ ବ୍ୟାସଦେବ ଖୋଜି ଖୋଜି ପାଇ ନ ଥିଲେ ସମଗ୍ର ଭାରତବର୍ଷରେ ।

ଅବଶେଷରେ ବ୍ୟାସଦେବଙ୍କର ମନେହେଲା, ଦେବଲୋକର ସାହାଯ୍ୟ ନେଇ, ମର୍ତ୍ତ୍ୟଭୂମିରେ ପାଣ୍ଡବମାନଙ୍କ ପାଇଁ ଏକ ପୃଥକ୍ ରାଜ୍ୟ ସ୍ଥାପନ କରିବା ଉଚିତ ହେବ । କିନ୍ତୁ ସେଥିରେ ପାଣ୍ଡବମାନଙ୍କର ଭିତ୍ ଅପେକ୍ଷା ଅହିତ ହେବାର ସଂଭାବନା ବେଶି ଥିଲା । ମଣିଷ ଓ ଦେବତା ଦୁଇ ପୃଥକ୍ ନରଗୋଷ୍ଠୀର ଲୋକ । କ୍ଷମତା ଓ କର୍ତ୍ତୃତ୍ୱ ନେଇ ସେମାନଙ୍କର ସଂଘର୍ଷ ଅନେକ ପୁରୁଣା ଏବଂ ନିତିଦିନର । ସ୍ୱର୍ଗଲୋକର ବାସିନ୍ଦା । ଅନ୍ୟ ମତରେ : ପାମିର ବା ପୂର୍ବ ତୁର୍କୀସ୍ଥାନ ନେଇ ସ୍ୱର୍ଗର ପରିକଳ୍ପନା : ଏଠାରେ ଦେବତା ନାମରେ ଏକ ଜାତି ବାସ କରନ୍ତି । ଦେବତାପଣ ମଣିଷଙ୍କୁ ଶତ୍ରୁ ଆଖିରେ ଦେଖନ୍ତି । ସୁତରାଂ ସେମାନଙ୍କ ଉପସ୍ଥିତିର ଅନେକ ଝମେଲା ପାଣ୍ଡବମାନଙ୍କୁ ହିଁ ସମ୍ଭାଳିବାକୁ ପଡ଼ିବ । ମଣିଷର ବିଷାକ୍ତ ସନ୍ଦେହ ଏବଂ ଅସହଯୋଗିତା ପାଣ୍ଡବମାନଙ୍କ ଜୀବନରେ ମହାସର୍ବନାଶକୁ ଡାକି ଆଣିବ । ଅକାରଣରେ ରାଜନୈତିକ ଉତ୍ତାପ ଉତ୍ତେଜନା କେବଳ ସେଥିରେ ବୃଦ୍ଧି ପାଇବ । ଏଥିରେ ନିଜ ଉଦ୍ଦେଶ୍ୟ ବି ସିଦ୍ଧ ହେବନି ତାଙ୍କର । ପାଣ୍ଡବମାନେ ମଧ୍ୟ ଲାଭବାନ୍ ହେବେ ନାହିଁ । ଦୁର୍ଗମଗିରି, ଗହନ ଅରଣ୍ୟ ଅତିକ୍ରମ କରି ଦେବଲୋକରୁ ନିତ୍ୟସାହାଯ୍ୟ ଓ ସହଯୋଗିତା ଲାଭ କରିବା ଏକ କଠିନ ସମସ୍ୟା । ପ୍ରତିବେଶୀ ଦେଶ ଦ୍ୱାରା ଆକ୍ରାନ୍ତ ହେଲେ ରାତାରାତି ଦେବଗଣଙ୍କ ସାହାଯ୍ୟ ପାଇବା ଏବଂ ଯୁଦ୍ଧର ସରବରାହ ଯୋଗାଡ଼ କରିବା ଏକ ଦୁରୂହ ବ୍ୟାପାର । ସୁତରାଂ ବାହାର ଦେଶ, ଦେବଲୋକରୁ ସାହାଯ୍ୟ କିଛି ପାଇବା ପାଇଁ ବ୍ୟବସ୍ଥା କରିବା ଏକ ବିଡ଼ମ୍ବନା ଓ ବିପଜ୍ଜନକ ବ୍ୟାପାର ।

ତେଣୁ ବ୍ୟାସଦେବ ତାଙ୍କର ରାଜନୈତିକ କୌଶଳ ବଦଳେଇବା କଥା ଚିନ୍ତା କଲେ । ପାଣ୍ଡବମାନଙ୍କର ଆତ୍ମପ୍ରକାଶର ଉପଯୁକ୍ତ ନିରାପଦ କ୍ଷେତ୍ର ସୃଷ୍ଟି କରିବାପାଇଁ ପାଞ୍ଚାଳରାଜ ଦ୍ରୁପଦଙ୍କର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ ବୋଲି ତାଙ୍କର ମନେହେଲା ।

ଦ୍ରୋଣ ଓ ଦ୍ରୁପଦଙ୍କ ବିରୋଧକୁ ଏକ ଉତ୍ତେଜକ ରାଜନୈତିକ ରୂପ ଦେଲେ ଧୃତରାଷ୍ଟ୍ର । ପାଣ୍ଡୁ ପୁତ୍ରମାନଙ୍କର ସିଂହାସନ ଏବଂ ରାଜ୍ୟର ଉତ୍ତରାଧିକାରରୁ ବଞ୍ଚିତ କରିବା ଅଭିପ୍ରାୟରେ ଧୃତରାଷ୍ଟ୍ର ଦ୍ରୋଣଙ୍କୁ ରାଜନୈତିକ ଆଶ୍ରୟ ଦେଲେ । ତା'ଫଳରେ ହସ୍ତିନାପୁର ସହିତ ପାଞ୍ଚାଳର କୂଟନୈତିକ ସଂପର୍କର ଅବନତି ଘଟିଲା । ପାଣ୍ଡୁମହିଷୀ ପୃଥାଙ୍କର ପାଳକ ପିତା କୁନ୍ତୀଭୋଜଙ୍କ ସହିତ ଦ୍ରୁପଦଙ୍କର ଘନିଷ୍ଠ ବନ୍ଧୁତ୍ୱ ଥିଲା । କିନ୍ତୁ ଦ୍ରୋଣ, ପାଣ୍ଡବମାନଙ୍କର ଅସ୍ତ୍ରଗୁରୁ ହେବାରୁ ଦ୍ରୁପଦଙ୍କ ସହିତ ପାଣ୍ଡବମାନଙ୍କର ମିଳାମିଶାର ପଥ ସଂପୂର୍ଣ୍ଣ ବନ୍ଦ ହେଇଗଲା । ଦ୍ରୁପଦଙ୍କ ସହିତ ପାଣ୍ଡବଙ୍କର ଶତ୍ରୁତାକୁ ସ୍ଥାୟୀ କରିବା ନିମନ୍ତେ ତରୁଣ ବାଳକ ଅର୍ଜୁନଙ୍କ ମାଧ୍ୟମରେ ଦ୍ରୁପଦଙ୍କୁ ଲାଞ୍ଛିତ କରିଥିଲେ । ଦ୍ରୁପଦଙ୍କ ମନରେ ଅର୍ଜୁନ ପ୍ରତି ବିରାଗ ଓ ବିଦ୍ୱେଷ ସୃଷ୍ଟି କରିବା ଏବଂ ପାଣ୍ଡବଙ୍କର ଜଣେ ପ୍ରିୟ ବାନ୍ଧବଙ୍କୁ ଶତ୍ରୁ ଭାବେ ଗଢ଼ିତୋଳିବା ହିଁ ଥିଲା ଦ୍ରୋଣଙ୍କର ଦ୍ରୁପଦ ଲାଞ୍ଛନାର ନେପଥ୍ୟ ଇତିହାସ । ଧୃତରାଷ୍ଟ୍ର ମନେ ମନେ ପାଞ୍ଚାଳ ସହିତ ହସ୍ତିନାପୁର ଏବଂ ପାଣ୍ଡବଙ୍କର ବ୍ୟବଧାନ ସୃଷ୍ଟି ପାଇଁ, ଯାହା ବି ପରିକଳ୍ପନା କରିଥା'ନ୍ତୁ ନା କାହିଁକି ବିଧାତା କିନ୍ତୁ ତାକୁ ଅନ୍ୟ ପ୍ରକାରେ ରୂପ ଦେଲେ । ଦ୍ରୁପଦ, ଦ୍ରୋଣ ଲାଞ୍ଛନାର ପ୍ରତିଶୋଧ ନେବାପାଇଁ କଣ୍ଟା ଦ୍ୱାରା କଣ୍ଟାକୁ କାଢ଼ିବା ନୀତି ଗ୍ରହଣ କଲେ । ଏହି କାର୍ଯ୍ୟପାଇଁ ତାଙ୍କର ସହାୟ ହେଲେ ବ୍ୟାସଦେବ । ଦ୍ରୋଣଙ୍କ ପ୍ରିୟ ଶିଷ୍ୟ ଅର୍ଜୁନ ମାଧ୍ୟମରେ ଦ୍ରୋଣ ଅପମାନର ପ୍ରତିଶୋଧ ନେବା ପାଇଁ ଏକ ସ୍ୱପ୍ନ ଦ୍ରୁପଦଙ୍କ ମନରେ ବ୍ୟାସଦେବ ଭରିଦେଲେ । ସେଇ ସୁଦୂର ଅତୀତ ବ୍ୟାସଦେବଙ୍କ ଆଖିରେ ଭାସିଉଠିଲା ।

ଘଟଣାକ୍ରମେ ବ୍ୟାସଦେବ ସେଦିନ ହସ୍ତିନାପୁରରେ ହିଁ ଉପସ୍ଥିତ ଥିଲେ । ଶିକ୍ଷା ସମାପନାନ୍ତେ କୌରବ ଓ ପାଣ୍ଡବମାନେ ଗୁରୁଦକ୍ଷିଣା ଦେବାପାଇଁ କୁଟୀରରେ ଉପସ୍ଥିତ ହେଲେ । ସେମାନଙ୍କ ଅଭିଳାଷର କଥା ଶୁଣି ଆଶ୍ଚର୍ଯ୍ୟ ହୋଇ ଦ୍ରୋଣ କହିଲେ : ବତ୍ସଗଣ, ଏକ କଠିଣ ଗୁରୁଦକ୍ଷିଣା ତୁମକୁ ଦେବାପାଇଁ ପଡ଼ିବ । ଗୁରୁ ଗୃହରେ ମୁଁ ଏବଂ ପାଞ୍ଚାଳରାଜ ଦ୍ରୁପଦ ଦୁହେଁ ଆମେ ଅନ୍ତରଙ୍ଗ ଘନିଷ୍ଠ ବନ୍ଧୁ ଥିଲୁ । ସ୍ନେହବଶରେ ଦ୍ରୁପଦ କହିଥିଲେ, ରାଜା ସେ ମୋତେ ତାଙ୍କ ରାଜ୍ୟକୁ ନେଇଯିବେ । ଦୁଇବନ୍ଧୁ ମିଶି ରାଜକାର୍ଯ୍ୟ ସଂପନ୍ନ କରିବୁ । କିନ୍ତୁ ସେ ଯେ, କେଡ଼େ ମିଥ୍ୟାବାଦୀ, ମିଥ୍ୟା କଥା କହିଥିଲେ ତାହା ତାଙ୍କ ରାଜସଭାକୁ ଆସି ବୁଝିପାରିଲି । ମୋଭଳି ଗରିବ ବ୍ରାହ୍ମଣକୁ ବନ୍ଧୁ ବୋଲି ସମ୍ବୋଧନ କରିବାପାଇଁ ମଧ୍ୟ ତାଙ୍କୁ ଲଜ୍ଜା ଲାଗିଥିଲା, ଅପମାନ ମନେ ହୋଇଥିଲା । ଭ୍ରୂକୁଟୀ କରି ସେ ପଚାରିଲେ, 'ବନ୍ଧୁ ? କିଏ ତୁମର ବନ୍ଧୁ ?'

ତାପରେ ଅକାରଣରେ ହୋ ହୋ ହୋଇ ହସିଉଠିଲେ । ହସରେ ବିଦ୍ରୂପର ଝଲକ ଫୁଟି ଉଠୁଥିଲା । କହିଲେ- ବଂଧୁର କାହିଁ ଐଶ୍ୱର୍ଯ୍ୟବାନ୍, ବିଭବବାନ୍, ବୀର୍ଯ୍ୟବାନ୍ ରାଜା ଦ୍ରୁପଦ ଆଉ ଦୀନହୀନ ଏଇ ବ୍ରାହ୍ମଣ- ? ଏମାନଙ୍କ ଭିତରେ କେବେ ବନ୍ଧୁତ୍ୱ ସମ୍ଭବ ? ବନ୍ଧୁତ୍ୱ ତ ହୁଏ ସମାନ ସମାନରେ । ତୁମେ ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଇଛ ବ୍ରାହ୍ମଣ ।

ସ୍ତମ୍ଭୀଭୂତ ହେଇଗଲେ ଦ୍ରୋଣ ମୁହୂର୍ତ୍ତକ ପାଇଁ । ଆଖିକୋଣରେ ଲୁହ ଜକେଇ ଚିକ୍‌ଚିକ୍ ଦିଶିଥିଲା । ଛାତି ଭିତରୁ ଉଠିଆସୁଥିବା କୋହକୁ ଚାପି ରଖିବା ପାଇଁ ସେ କେତେଥର ଢୋକ ଗିଳି ପକାଇଥିଲେ । ତାପରେ ଆସ୍ତେ ଆସ୍ତେ କହିଲେ- ପୁତ୍ରଗଣ ! ମୋର ସେଇ ଅପମାନ ଓ ଲାଞ୍ଛନାର ଦୁଃଖ ଯଦି ଘୁଞ୍ଚେଇପାର ତେବେ ତାହା ହିଁ ହେବ ତୁମର ଶ୍ରେଷ୍ଠ ଦକ୍ଷିଣା । ଯୁଦ୍ଧ କରି ପାଞ୍ଚାଳ ରାଜ୍ୟର ରାଜା ଦ୍ରୁପଦଙ୍କୁ ପରାଜିତ ଓ ବନ୍ଦୀକରି ପାରିଲେ । ଜାଣି ବି ଗୁରୁଦକ୍ଷିଣା ତୁମେ ମୋତେ ଉପଯୁକ୍ତ ଭାବେ ଦେଇଛ ।

ଶ୍ରେଷ୍ଠ ଗୁରୁଦକ୍ଷିଣା ଦାନ କରିବାର ଗୌରବ ଅର୍ଜନ କରିଥିଲେ ଅର୍ଜୁନ । ଯୁଦ୍ଧରେ ଦ୍ରୁପଦଙ୍କ ସୈନ୍ୟବାହିନୀଙ୍କୁ ବିପର୍ଯ୍ୟସ୍ତ କରି ଦ୍ରୁପଦଙ୍କୁ ଗୁରୁ ଦ୍ରୋଣଙ୍କ ପଦତଳେ ସମର୍ପଣ କରିଥିଲେ । ଶୃଙ୍ଖଳବଦ୍ଧ ଦ୍ରୁପଦଙ୍କ ମୁହଁକୁ ଚାହିଁ ଦ୍ରୋଣ କୃପାମିଶ୍ରିତ କୌତୁକରେ ମୃଦୁମୃଦୁ ହସି ବ୍ୟଙ୍ଗର ତୀରାଗ୍ର ବିଦ୍ଧ କରି କହିଲେ : 'ତୁମେ ଆଉ ରାଜା ନୁହଁ ଦ୍ରୁପଦ । ତୁମ ରାଜା ବର୍ତ୍ତମାନ ମୁଁ, ଆମେ । ତୁମେ ଜଣେ ଭିକାରୀ ମାତ୍ର । ତୁମର କିଛି ନାହିଁ । 'ରାଜା ଓ ଅରାଜା ତ କେବେ ବି ସଖା ହେଇନପାରନ୍ତି ।

କ୍ରୋଧ ଏବଂ ଅପମାନରେ ଥରିଗଲେ ଦ୍ରୁପଦ । ଶାଣିତ କଣ୍ଠରେ କହିଲେ, କିଏ ଚାହୁଁଛି ତୁମର ବନ୍ଧୁତ୍ୱ ? କ୍ଷତ୍ରୀୟ ଏବଂ ଅକ୍ଷତ୍ରୀୟ ମଧ୍ୟରେ କେବେ ବନ୍ଧୁତା ହୁଏନା । କୃପା ମଧ୍ୟ ଚାହେଁନା ।

ଗମ୍ଭୀର କଣ୍ଠରେ ଦ୍ରୋଣ କହିଲେ, ମୁଁ ମଧ୍ୟ ତୁମର ବନ୍ଧୁତ୍ୱ ସ୍ୱୀକାର କରେ ନାହିଁ । ପୂର୍ବ ବନ୍ଧୁତ୍ୱର ମର୍ଯ୍ୟାଦା ଓ ଗୌରବକୁ ଅକ୍ଷୁଣ୍ଣ ରଖି ଅର୍ଦ୍ଧେକ ରାଜ୍ୟ ଏହି ମୁହୂର୍ତ୍ତରେ ତୁମକୁ ମୁଁ ପ୍ରଦାନ କଲି । ବର୍ତ୍ତମାନ ତୁମର ମୋର ସମାନ ମର୍ଯ୍ୟାଦା ହେଲା । ଏଥରକ ତୁମର ମୋର ସଖା ହେବାରେ କୌଣସି ବାଧା ନାହିଁ ।

ଦ୍ରୁପଦଙ୍କ ଚକ୍ଷୁ ସିକ୍ତ ହେଇ ଆସିଲା । ଅନେକ ସମୟ ପର୍ଯ୍ୟନ୍ତ ସେ କିଛି କହିପାରିଲେ ନାହିଁ । ତାପରେ ମନେ ମନେ ଟିକିଏ ହସି କହିଲେ, ତୁମର ବନ୍ଧୁପ୍ରୀତିର ଏଇ ନିଦର୍ଶନ ଜୀବନକାଳରେ କେବେ ଭୁଲିପାରିବିନି; କିନ୍ତୁ ଏଥିରେ ମୋପାଇଁ କୌଣସି ସାନ୍ତ୍ୱନା ରହିଲା ନାହିଁ ।

ଦ୍ରୁପଦଙ୍କ କଥାର ମର୍ମ ସେଦିନ ବୁଝିପାରିଥିଲେ ବ୍ୟାସଦେବ । ଦ୍ରୋଣଙ୍କର ଏଇ ଅନୁକମ୍ପା ଆଉ କୌଣସି ଦିନ ମଧ୍ୟ ଦ୍ରୁପଦଙ୍କ ମନରୁ ଲିଭିବନି । ଦ୍ରୋଣ ଦ୍ରୁପଦଙ୍କର ଚିରଦିନ

ଶତ୍ରୁ ହୋଇ ରହିବେ । କେବଳ ଦ୍ରୋଣଙ୍କ ପାଇଁ ହସ୍ତିନା ରାଜ୍ୟ, ତାଙ୍କ ପାଇଁ ବୈରୀରାଜ୍ୟରେ ପରିଣତ ହେଲା । ଯେତେଦିନ ଦ୍ରୋଣଙ୍କ ଅପମାନ ଦ୍ରୁପଦ ମନରୁ ପୋଛି ହେବନି, ସେତେଦିନ ଯାଏ ଦ୍ରୋଣଙ୍କ ସହିତ, ହସ୍ତିନାପୁର ସହିତ ତାଙ୍କର ବିରୋଧର ଅନ୍ତ ବି ହେବ ନାହିଁ ।

ବ୍ୟାସଦେବ ତାଙ୍କ ନିଜ ଅଭିଜ୍ଞତା ଓ ଦୃଷ୍ଟି ଦେଇ ମନେ ମନେ ସମସ୍ତ ଘଟଣା ପର୍ଯ୍ୟାଲୋଚନା କରିସାରି, କିଛି ଦିନ ଅନ୍ତରେ ଦ୍ରୁପଦଙ୍କ ସହିତ ସାକ୍ଷାତ୍ କରିବାକୁ ପାଞ୍ଚାଳ ଗଲେ ।

ସେତେବେଳକୁ ଅପରାହ୍ନ ।

କଳା କଳା ମେଘସବୁ ଏକାଠି ଜମି ସ୍ତୂପୀକୃତ ହୋଇ, ସୂର୍ଯ୍ୟଙ୍କୁ ସେଇ କଳାମେଘ ଆଢୁଆଳରେ ଲୁଚେଇ ଦେଉଥିଲେ । ଆକାଶଟା ଗୁମ୍‌ମାରି ରହିଥିଲା । କିଛି ସଂକୋଚରେ ହିଁ ବ୍ୟାସଦେବ ରାଜନବରରେ ପ୍ରବେଶ କଲେ । ତରତର ହୋଇ ପାହାଚ ଉପରକୁ ଉଠି ଯାଉଥିଲେ ସେ । ହଠାତ୍ ମୁହୂର୍ତ୍ତେ ଠିଆ ହେଇଗଲେ ଦ୍ୱାରଦେଶରେ । ବାରଣ୍ଡାରେ ଠିଆ ହେଇ ଦ୍ରୁପଦ ଆକାଶକୁ ଚାହିଁଥିଲେ । ପବନରେ ତାଙ୍କର ଦୀର୍ଘ କେଶରାଶି ଫୁର୍‌ଫୁର୍ ହେଇ ଉଡୁଥିଲା । ହୁଏତ ଅନ୍ତରର କ୍ଷତଚିହ୍ନଗୁଡ଼ିକ ତାଙ୍କୁ ଚିନ୍ତାରେ ପକେଇ ଦେଇଥିଲା । ସେ ଅତ୍ୟନ୍ତ ବିମର୍ଷ ଓ ହତାଶ ଦିଶୁଥିଲେ । ତାଙ୍କର ଘନଘନ ନିଃଶ୍ୱାସ ସହିତ ମନର ଯନ୍ତ୍ରଣାର ଅଭିବ୍ୟକ୍ତିକୁ ବୁଝିପାରୁଥିଲେ ବ୍ୟାସଦେବ ।

ଦ୍ରୁପଦଙ୍କ ଖୁବ୍ ନିକଟକୁ ଯାଇ ଠିଆହେଲେ ବ୍ୟାସଦେବ । ତାଙ୍କର ଦୃଷ୍ଟି ଆକର୍ଷଣ କରିବାପାଇଁ ଏକ ଦୀର୍ଘନିଃଶ୍ୱାସ ତ୍ୟାଗ କଲେ । ସେଇଥିରେ ଚମକି ଉଠିଲେ ଦ୍ରୁପଦ । ପ୍ରଥମ ଦେଖାରେ ବିସ୍ମୟର ସୀମା ରହିଲା ନାହିଁ । କେମିତି ଗୋଟାଏ ବିମର୍ଷ, ହତାଶ ଭାବ ତାଙ୍କର ମୁଖମଣ୍ଡଳକୁ ଗ୍ରାସ କରି ରଖିଥିଲା । ଦ୍ରୁପଦ କିଛି କହିବା ପୂର୍ବରୁ ବ୍ୟାସଦେବ କହିଲେ, ପାଞ୍ଚାଳରାଜ ଦୁଃଖଯନ୍ତ୍ରଣା ଆଉ ପରିତାପର ଦହନରେ ଜଳିପୋଡ଼ି ନିଜକୁ ନିଃଶେଷ କରି ତୁମର କଣ ବା ଲାଭ ହେଉଛି ? ବରଂ ସେଥିରେ ଶତ୍ରୁର ହିଁ ଲାଭ । ତୁମେ କ'ଣ ଥରେ ଭାବି ଦେଖିଛ, ଦ୍ରୋଣ ଓ ଧୃତରାଷ୍ଟ୍ର ମିଶି ଯେଉଁ ନିଆଁ ତୁମ ଅନ୍ତରରେ ଜାଳି ଦେଇଛନ୍ତି ତାହା କେବେହେଲେ ବ୍ୟର୍ଥତାର ଅଙ୍ଗାର ନୁହେଁ ବରଂ ପୂର୍ଣ୍ଣତାର ଶିଖା । ପ୍ରତିହିଂସାର ପ୍ରତୀକ । ସେହି ନିଆଁରେ ତୁମେ କେବେ ଜଳିପୋଡ଼ିଯିବନି ବରଂ ଅନ୍ୟକୁ ଜାଳିପୋଡ଼ି ଦେଇପାରିବ । ଏହି ନିଆଁରେ ହସ୍ତିନାପୁର ମଧ୍ୟ ଜଳି ଉଠିପାରେ ।

ସ୍ତବ୍‌ଧ ବିସ୍ମୟରେ ବ୍ୟାସଦେବଙ୍କ ମୁଖକୁ ଚାହିଁ ରହିଲେ ଦ୍ରୁପଦ । ତାପରେ ଖୁବ୍ ଧୀରେ ବିମର୍ଷ ଗଳାରେ କହିଲେ : ମନ ମୋର ଭାଙ୍ଗିଯାଇଛି, କାର୍ଯ୍ୟ କରିବାରେ କିଛି ବି ଉଦ୍ଦାମତା ନାହିଁ । ଉତ୍ସାହ ଆସୁନି । ମନେ ହେଉଛି ମୋର ସମୟ ସରିଆସୁଛି ।

ବ୍ୟାସଦେବ ବେଶ୍ କିଛି ରୁକ୍ଷ ଗଳାରେ କହିଲେ : ଦୁଃଖ, ହତାଶା ଜୀବନର ଦୁର୍ବିଷହ ଅଭିଶାପ । ବୀର୍ଯ୍ୟବାନ୍ ପୁରୁଷ ନିକଟରେ ଏ ପ୍ରକାର ବିଳାସିତାର କୌଣସି ଅର୍ଥ ନାହିଁ ଦ୍ରୁପଦ । ଦୁଃଖ ଲାଞ୍ଛନାରେ ବୀର କେବେହେଲେ ହତାଶ ହୁଏନା, ନିରାଶ ହୁଏ ନାହିଁ । ଦୁର୍ବାର ପ୍ରତିଜ୍ଞାରେ ସେ କେବଳ ଜଳିଉଠେ । ଦାବାନଳ ଭଳି ବିସ୍ତାରି ହେଇପଡ଼େ ଚାରିଆଡ଼େ । ଝଞ୍ଜା ଭଳି ମାଡ଼ିଯାଏ ସମୁଦ୍ର ଆଡ଼କୁ ।

ଦ୍ରୁପଦ ମୂକ । ବିଷଣ୍ଣ ମନରେ କେବଳ ମୁଣ୍ଡ ହଲେଇଲେ । ଦୀର୍ଘଶ୍ୱାସଟିଏ ଛୁଟି ଆସିଲା । ତା'ପରେ ଖୁବ୍ କାତର କଣ୍ଠରେ କହିଲେ, କେବଳ ଟିକିଏ କିଏ ଚାହିଁଦେଲେ, ହାତ ବଢ଼େଇ ଦେଲେ, ବୋଧହୁଏ ମୁଁ ସବୁ ଦୁଃଖ ଅପମାନ ଆଉ ଆତ୍ମଗ୍ଲାନି ଭିତରେ ବି ପୁଣି ବଞ୍ଚି ଉଠିପାରନ୍ତି ମହର୍ଷି ।

ବ୍ୟାସଦେବ ଅକସ୍ମାତ୍ ଗମ୍ଭୀର ହେଇଉଠିଲେ । ମୃଦୁ ଦୀର୍ଘଶ୍ୱାସ ତ୍ୟାଗ କରି କହିଲେ : ବିଶ୍ୱାସ, ଆତ୍ମବଳ କିଏ କାହାକୁ ଦେଇପାରେନା, ମନର ଅଭ୍ୟନ୍ତରରେ ପ୍ରତିକୂଳ ଚାପରେ କେବେ କେବେ କ୍ଳାନ୍ତିରେ ଶୋଇପଡ଼ିଲା ପରେ ନିଜକୁ ବଡ଼ ବିପନ୍ନ ଆଉ ଅସହାୟ ମନେହୁଏ । କିନ୍ତୁ ଅହଂର ଅହଂକାର, ସ୍ପର୍ଦ୍ଧା, ଔଦ୍ଧତ୍ୟ, ଦମ୍ଭ, କ୍ରୋଧ, ଘୃଣା, ପ୍ରତିହିଂସାରେ ମନ ଯଦି ଫାଟି ପଡୁଥାଏ, ତେବେ କାହାର ସାଧ ଅଛି ତାକୁ ରୋକିବାକୁ ? କ୍ରୋଧ, ଘୃଣା, ବିଦ୍ୱେଷ, ହିଂସାର ତ କେବେ ଅନ୍ତ ହିଁ ହୁଏନା । କେବଳ ପୁନରାବୃତ୍ତି ହୁଏ ଏଗୁଡ଼ିକ । ମଣିଷକୁ ଉଜ୍ଜୀବିତ କରେ, ଅହଂର ନିଦ ଭାଙ୍ଗେ । ତୁମକୁ ମଧ୍ୟ କ୍ରୋଧ, ଅପମାନ, ବିଦ୍ୱେଷ ତତେଇ ଦେବ । ଦ୍ରୋଣଙ୍କ ପ୍ରତିଶୋଧ ପାଇଁ ଅସ୍ତ୍ର ହେଲା ଅର୍ଜୁନ । ତାକୁ ତୁମେ ତୁମ ଅପମାନ୍ ଓ ପ୍ରତିଶୋଧର ଅସ୍ତ୍ର ଭାବେ ବ୍ୟବହାର କର । କଣ୍ଟା ଦ୍ୱାରା କଣ୍ଟା କଢ଼ାଯାଏ । ଏହାଠୁ ବଳି ଶ୍ରେଷ୍ଠ କୂଟନୀତି ଆଉ କିଛି ନାହିଁ ।

ଦ୍ରୁପଦଙ୍କ ମନରେ ସହସା ଅର୍ଜୁନ ସଂପର୍କରେ ଗୋଟାଏ ଆବେଗ ସୃଷ୍ଟି ହେଲା । ନିଜ ଭିତରେ ହିଁ ଛାତିଟା ଥରିଉଠି ଦୀର୍ଘଶ୍ୱାସଟିଏ ନିର୍ଗତ ହେଇଗଲା । ମନ ଦୀନଦରିଦ୍ରଟିଏ ହେଇଗଲା ଆବେଗରେ । ମୃଦୁ ମଧୁର କଣ୍ଠରେ ସେ କହିଉଠିଲେ- ମହର୍ଷି ! ଅର୍ଜୁନର ପରାକ୍ରମରେ ମୁଁ ଅତ୍ୟନ୍ତ ମୁଗ୍ଧ । ତା' ନିକଟରେ ପରାଜୟ ସ୍ୱୀକାର କରି ମଧ୍ୟ ମୋର କୌଣସି କ୍ଷୋଭ ନାହିଁ, କଷ୍ଟ ନାହିଁ କିମ୍ବା ଦ୍ୱିଧା ନାହିଁ । ଥରେ ବି ମୁଁ ତାକୁ ଶତ୍ରୁ ବୋଲି ଭାବିନି । ବରଂ ଗୋଟିଏ ଅଦ୍ଭୁତ ବାତ୍ସଲ୍ୟ ଭାବର ସଞ୍ଚାର ଘଟିଛି ମୋ ଅନ୍ତରରେ । ଯୁଦ୍ଧ ସମୟରେ ତା ଆଡ଼କୁ ନିରେଖି ଚାହିଁବାକୁ ମୁଁ ଯେତେଥର ପ୍ରୟାସ କରିଛି, ସେତେଥର ମୋ ଆଖିରେ ଭାସିଉଠିଛି ପାଞ୍ଚାଳୀର ମୁହଁ ଖଣ୍ଡିକ । ପାଞ୍ଚାଳୀ ସହିତ ଅର୍ଜୁନ ବେଶ ସାଜିବ । ମୋର ଛାତି ଭିତରେ କେମିତି ଗୋଟାଏ ଭାବ ଉଛୁଳି ଉଠେ ସେତେବେଳେ । ମନକୁ ମନ ପ୍ରଶ୍ନ କରିଛି, ଯୁଦ୍ଧକ୍ଷେତ୍ରରେ ଏ ପ୍ରକାର ଚିତ୍ତ ଦୌର୍ବଲ୍ୟର କୌଣସି ସ୍ଥାନ ନାହିଁ । ତଥାପି ଶର ନିକ୍ଷେପ କଲାବେଳେ ମୋ ହାତ କମ୍ପିଉଠିଛି ।

ବ୍ୟାସଦେବ ବେଶ୍ ଲମ୍ୱା ଦୀର୍ଘଶ୍ୱାସଟିଏ ପକେଇଲେ । ମୃଦୁ ମଧୁର ହସଟିଏ ଉଙ୍କୁଟି ଉଠିଲା ତାଙ୍କର ଅଧର କୋଣରେ । ବିଧାତା ପୁରୁଷ ବଡ଼ ରସିକ । ତା'ର ସବୁ କାର୍ଯ୍ୟର ତାତ୍ପର୍ଯ୍ୟ ବୁଝିବା ଆବଶ୍ୟକ । ଏ ହୁଏତ ତୁମର ଭାଗ୍ୟଲିପି । ମଣିଷର ମନ ଅନେକ ସମୟରେ ଅନେକ କିଛି ଆଗରୁ ହିଁ ସୂଚନା ପାଇଥାଏ ।

ଦ୍ରୁପଦ ଆଖି ବୁଜି ଗୋଟାଏ ଦୀର୍ଘଶ୍ୱାସ ନେଲେ । ନିମିଷେ ଆଖିର ପଲକ ପକାଇ ଅର୍ଜୁନର ମୁହଁଟାକୁ କଳ୍ପନାରେ ଦେଖିନେଲେ । ବିମୂଢ଼ଙ୍କ ଭଳି ବ୍ୟାସଦେବଙ୍କ ଆଡ଼କୁ ଟିକିଏ ଉତ୍‌ଫୁଲ୍ଲ ମନରେ ଚାହିଁଲେ । ଆତ୍ମବିସ୍ମୃତି ଘଟିଥିଲା ଦ୍ରୁପଦଙ୍କର । ବିମୁଗ୍ଧ କଣ୍ଠରେ କହିଲେ, ମହର୍ଷି ! ଅର୍ଜୁନଙ୍କୁ ମନେମନେ ଜାମାତା କରିବାର ସ୍ୱପ୍ନ ଦେଖୁଛି ମୁଁ, ସେଇଟା କ'ଣ ମୋର ଗୋଟାଏ ଅପରାଧ ?

ବ୍ୟାସଦେବଙ୍କ ଧମନୀରେ ରକ୍ତର ସ୍ରୋତ ସହସା ଉଦ୍ଦାମ ହୋଇଉଠିଲା । ଛାତି ଭିତରଟା ଗୁରୁଗୁରୁ କଲା । ହସ ଲାଗିଲା ତାଙ୍କୁ । ହସହସ ମୁଖରେ ହିଁ ସେ କିଛି ସମୟ ଭାବିଲେ । ତା'ପରେ ମୃଦୁକଣ୍ଠରେ କହିଲେ- 'ମଣିଷର ସ୍ୱପ୍ନ ଦେଖିବା ଛଡ଼ା ଆଉ କ'ଣ ଅଛି ଯେ ?'

ଦ୍ରୁପଦଙ୍କର ସବୁଠାରୁ ବେଶି ସ୍ପର୍ଶକାତର ମନଟି ତାଙ୍କୁ ବିଶେଷକରି ଉଦ୍ଦୀପିତ କଲା । ସ୍ପର୍ଶ କଲା ମନର ତଳିତଳାନ୍ତକୁ । ସେତେବେଳେ ଆଉ କେହି ଆତ୍ମୀୟସ୍ୱଜନ କି ସୁହୃଦ ନୁହେଁ, କେବଳ ବ୍ୟାସଦେବଙ୍କୁ ହିଁ ଅତି ଆପଣାର ମନେହେଲା । କେବଳ ବ୍ୟାସଦେବଙ୍କ ନିକଟରେ ହିଁ ମନର କଥାକୁ ବ୍ୟକ୍ତ କରାଯାଇପାରେ, ଏଭଳି ପ୍ରତ୍ୟୟ ମଧ୍ୟ ସୃଷ୍ଟି ହେଲା । ଦ୍ୱିଧା ଏବଂ ସଂଶୟ କଟେଇ ସେ କହିଲେ- ମହର୍ଷି ! ଆପଣ ହିଁ ମୋ ମନରେ ସ୍ୱପ୍ନ ସୃଷ୍ଟି କରିଛନ୍ତି । ବର୍ତ୍ତମାନ ଆଦେଶ କରନ୍ତୁ କ'ଣ କଲେ ମୋ ସ୍ୱପ୍ନ ସାର୍ଥକ ରୂପ ପରିଗ୍ରହ କରିବ ?

ବ୍ୟାସଦେବ ହଠାତ୍ କିଛି ଉତ୍ତର ଦେଇପାରିଲେ ନାହିଁ । ଅବାକ୍ ହୋଇ କିଛି ସମୟ ସେ ଭାବିଲେ । କୋଉ ପଥରେ ନିୟତି ଆସି ମଣିଷକୁ ନିୟନ୍ତ୍ରଣ କରୁଛି ତାହା ଜାଣିବା ଦୁଃସାଧ୍ୟ । ଦ୍ରୁପଦଙ୍କ କ୍ଷେତ୍ରରେ ଏଇ ନିୟତି ଦ୍ରୋଣ ରୂପ ଧରି ଆସିଛି; ଅନୁକମ୍ପାର ରନ୍ଧ୍ର ପଥରେ ।

ମନେ ମନେ ଘଟଣାଗୁଡ଼ିକୁ ବିଶ୍ଳେଷଣ କରୁ କରୁ କେତେବେଳେ ଯେ ତାଙ୍କୁ ନିଦ ଲାଗିଯାଇଥିଲା ଜାଣି ପାରିନଥିଲେ ବ୍ୟାସଦେବ । ସକାଳର ସୂର୍ଯ୍ୟ ଯେତେବେଳେ ପକ୍ଷୀର କାକଳୀରେ ତାଙ୍କ ନିଦ ଭାଙ୍ଗିଲା, ସେତେବେଳେ ଆଖି ମେଲି ସେ ଦେଖିଲେ ଯେ, ସାରା ରାତି ସେ ଉନ୍ମୁକ୍ତ ଆକାଶ ତଳେ ବେଦୀ ଉପରେ ହିଁ କଟେଇ ଦେଇଛନ୍ତି ।

ପାଣ୍ଡବମାନଙ୍କର ଆତ୍ମପ୍ରକାଶ ଦିଗକୁ ଦୃଷ୍ଟି ରଖି ବ୍ୟାସଦେବ ଦ୍ରୁପଦଙ୍କୁ ନେଇ ତାଙ୍କର ଏକ ରାଜନୈତିକ ସନ୍ଧିକ୍ଷଣ ସୃଷ୍ଟି କଲେ । ଏହି କାର୍ଯ୍ୟ ନିମନ୍ତେ ସହାୟ ହେଲା ଦ୍ରୁପଦଙ୍କ ଅଲିଅଳୀ ଅସାଧାରଣ ରୂପବତୀ କନ୍ୟା କୃଷ୍ଣା । କୃଷ୍ଣାର ଅନିନ୍ଦ୍ୟ ରୂପକୁ ବ୍ୟାସଦେବ ରାଜନୈତିକ ମୂଳଧନ କରି ଥୋଇଲେ ।

କୃଷ୍ଣାର ଭୁବନମୋହିନୀ ରୂପର ତୁଳନା ନାହିଁ । ନୀଳ ନବଘନ ମେଘପୁଞ୍ଜ ଭଳି ତା ଦେହର ଲାବଣ୍ୟ । ନିବିଡ଼ କୁଞ୍ଚିତ କେଶରାଶି ଠିକ୍ କଜ୍ଜଳକଳା ରାତ୍ରୀ ଭଳି । ବିସ୍ତୃତ ଦୁଇ ଆଖି ସରୋବରରେ ଫୁଟିଥିବା ନୀଳକମଳ କଳି ଭଳି ପ୍ରତୀୟମାନ ହେଉଥିଲା । ଫାଲ୍‌ଗୁନ ଭଳି ଯୌବନର ସୁଷମା, ଦେହର ଦ୍ୟୁତି ଅବର୍ଣ୍ଣନୀୟ, କି ଦୃପ୍ତ ଠାଣି । କୃଷ୍ଣା କେବଳ ସୁନ୍ଦରୀଶ୍ରେଷ୍ଠା ନୁହେଁ । ସବୁ ଦୃଷ୍ଟିରୁ ସେ ଅନୁପମା ।

କୃଷ୍ଣା ଯେ ପରମ ରୂପବତୀ, ଏକଥା ତ ସମଗ୍ର ବିଶ୍ୱ ଜାଣେ । ତାଙ୍କୁ ପାଇବା ପାଇଁ ସମସ୍ତେ ପାଗଳ । ବ୍ୟାସଦେବଙ୍କ ଦୃଢ଼ ବିଶ୍ୱାସ କୃଷ୍ଣା ବୀର୍ଯ୍ୟଶୁଳ୍‌କା ହେଲେ ଦ୍ରୁପଦଙ୍କ ବଂଶ ଗରିମା ସହିତ କୃଷ୍ଣାର ଗରିମା ଆହୁରି ଶତଗୁଣିତ ହେଇଯିବ । ଯିଏ ତାର ପାଣିଗ୍ରହଣ କରିବ ଅର୍ଥାତ୍ ମର୍ଯ୍ୟାଦାର ବୀର୍ଯ୍ୟବତ୍ତାରେ ସେଇ ନିମନ୍ତ୍ରଣ ଅତିଥି ପ୍ରତିଯୋଗୀମାନଙ୍କ ଭିତରେ ଏକକ ଭାବେ ବାଛି ହୋଇପଡ଼ିବ । ଶ୍ରେଷ୍ଠ ପୁରୁଷର ସମ୍ମାନ ଓ ଗୌରବ ଅର୍ଜନ କରିବ-ସମସ୍ତଙ୍କର ଈର୍ଷାର ପାତ୍ର ହେବ ।

ଏଭଳି ବରପାତ୍ର କୃଷ୍ଣା ପାଇଁ ଆସିବ କେଉଁଠୁ ? ନିଜକୁ ନିଜେ ପ୍ରଶ୍ନ କଲେ ବ୍ୟାସଦେବ ଏବଂ ଉତ୍ତର ବି ଦେଲେ ନିଜେ । ଏକଚକ୍ରା ନଗରୀରେ ଦରିଦ୍ର ବ୍ରାହ୍ମଣ କୁଟୀରରୁ ଆସିବ ସେ ।

ପାଞ୍ଚାଳରାଜ୍ୟରେ ପାଣ୍ଡବଙ୍କର ସୌଭାଗ୍ୟର ସୂର୍ଯ୍ୟୋଦୟ ହେବ । କୃଷ୍ଣାର ସ୍ୱୟଂବର ସଭାରେ ତାର ସୂଚନା ମିଳିବ । କାର୍ଯ୍ୟତଃ ତାର ଆୟୋଜନ ବିରାଟ । ସମଗ୍ର ଭାରତର ରାଜନ୍ୟବର୍ଗ ଜାଣନ୍ତି ପାଣ୍ଡବମାନେ ମୃତ । ଜତୁଗୃହରେ ଭସ୍ମୀଭୂତ ହେଇଛନ୍ତି । ଦ୍ରୁପଦ ମଧ୍ୟ ଏହାହିଁ ଜାଣନ୍ତି । କିନ୍ତୁ ବ୍ୟାସଦେବ ଭିନ୍ନ ଭାବରେ କଥାଟା ବୁଝାଇ ଦେଲେ । ପାଣ୍ଡବମାନଙ୍କର ଜନ୍ମ ନକ୍ଷତ୍ର ଯଦି ନିର୍ଭୁଲ ହୁଏ, ତାହେଲେ ସେମାନେ ବଞ୍ଚିରହିବା ସୁନିଶ୍ଚିତ । ଅବଶ୍ୟ ଏହି ସମୟଟା ଶତ୍ରୁ ଭୟରେ ଆତ୍ମଗୋପନ କରିବାର ବେଳ ସେମାନଙ୍କର । ସୁତରାଂ ଦ୍ରୁପଦଙ୍କର ନିରାଶ ହେବାର କିଛି ନାହିଁ । ବ୍ୟାସଦେବଙ୍କର ଏହି ଆଶାସୂଚକ ବାଣୀ ହିଁ ଦ୍ରୁପଦଙ୍କ ଏକମାତ୍ର ସମ୍ବଳ ଓ ପାଥେୟ ଥିଲା । ବ୍ୟାସଦେବଙ୍କ ନିର୍ଦ୍ଦେଶରେ ଦ୍ରୁପଦ ସ୍ୱୟଂବର ସଭାର ଆୟୋଜନ କଲେ । ଯେଭଳି କଲେ ଭଲ ହେବ, କୌଣସି ଫାଙ୍କ ନ ରଖି ଦ୍ରୁପଦ ସମସ୍ତ ଆବଶ୍ୟକତାକୁ ସଂପନ୍ନ କଲେ । ସ୍ୱୟଂବର ସଭାରେ ଅର୍ଜୁନଙ୍କ ଉପସ୍ଥିତିକୁ ଆଖି ଆଗରେ ରଖି ସମଗ୍ର ଭାରତବର୍ଷରେ କୃଷ୍ଣା-ସ୍ୱୟଂବର-ସଂବାଦ ପ୍ରଚାର ଓ

ପ୍ରସାର କରାଗଲା । ସବୁ ଶ୍ରେଣୀର, ସବୁ ବର୍ଗର, ସବୁ ଧର୍ମର ନରପତି, ବ୍ରାହ୍ମଣ ଏବଂ ସାଧାରଣ ଜନତାଙ୍କୁ ନିମନ୍ତ୍ରଣ କରାଗଲା । ପ୍ରତିଯୋଗିତାରେ ପ୍ରତ୍ୟେକେ ଅବାଧରେ ଭାଗ ନେଇପାରିବେ ବୋଲି ଉଦ୍‌ଘୋଷଣା କରାଗଲା ଓ ସମସ୍ତଙ୍କର ଭାଗ ନେବାର ଅଧିକାର ରହିଲା । ଏହାର ଅର୍ଥ ସାଧାରଣ ଲୋକ ଛଦ୍ମବେଶରେ ଯଦି ଏହି ସଭାରେ ଉପସ୍ଥିତ ହୁଏ, ତା'ହେଲେ ମଧ୍ୟ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିବାରେ ତାର କୌଣସି ବାଧା ରହିବ ନାହିଁ ।

ପ୍ରତିଯୋଗୀଙ୍କ ସଂଖ୍ୟା ବିପୁଳ ହେଲା ।

କିନ୍ତୁ କୃଷ୍ଣା କାହାକୁ ସ୍ୱାମୀ ନିର୍ବାଚନ କରିବେ, ସେଇଟା ତାଙ୍କର ନିଜସ୍ୱ ଇଚ୍ଛା । ପ୍ରେମ ନୁହେଁ, ନିଜର ପସନ୍ଦ ନୁହେଁ, କୌଣସି ଆବେଗପ୍ରବଣତାରେ ମଧ୍ୟ ନୁହେଁ, ବରଂ ନିଜ ବୁଦ୍ଧି ଆଉ ବିଚକ୍ଷଣତା ଦେଖାଇବା ପାଇଁ ଅଖଣ୍ଡ ସ୍ୱାଧୀନତା ତାଙ୍କର ଥିଲା । ସ୍ୱୟଂବରରେ ଅଦ୍ଭୁତ ଦର୍ଶନ କନ୍ୟା ଲାଭ ପାଇଁ ପଣ ଥିଲା, ଆହୁରି ବିଚିତ୍ର ଏବଂ ଆଶ୍ଚର୍ଯ୍ୟକର ।

ବ୍ୟାସଦେବଙ୍କ ପରାମର୍ଶରେ ଦ୍ରୁପଦ ବିଶେଷ ଧରଣର ଏକ ଧନୁ ନିର୍ମାଣ କଲେ । ସେଥିରେ ଗୁଣ ଚଢ଼େଇ ଶର ନିକ୍ଷେପ କରିବା ଖୁବ୍ କଠିଣ କାର୍ଯ୍ୟ । ବ୍ୟାସଙ୍କ ବିଶ୍ୱାସ ଅର୍ଜୁନ ବ୍ୟତୀତ ଅନ୍ୟ କେହି ସେହି ଧନୁ ବ୍ୟବହାର କରିବା ତ ଦୂରର କଥା, ଉତ୍ତୋଳନ ମଧ୍ୟ କରିପାରିବନି । ପ୍ରତିଯୋଗୀକୁ ସଭାମଧ୍ୟସ୍ଥ ଲୌହଶକଟରୁ ଏହି ଧନୁ ଉଠାଇ ଶର ସଂଯୋଗ କରିବାକୁ ହେବ । ତା'ପରେ ସଭାକକ୍ଷର ସର୍ବୋଚ୍ଚ ବିନ୍ଦୁରେ ସୁରକ୍ଷିତ ଲକ୍ଷ୍ୟବସ୍ତୁଟି ଘୂର୍ଣ୍ଣାୟମାନ ଛିଦ୍ରପଥ ଦେଇ ପର ପର ପାଞ୍ଚୋଟି ଶର ଦ୍ୱାରା ଲକ୍ଷ୍ୟଭେଦ କରିବାରେ ସମର୍ଥ ହେବ, ତା'ହେଲେ କୃଷ୍ଣା ତାର ଜୟଲବ୍ଧ ହେବ । ତାରି କଣ୍ଠରେ ବରମାଲ୍ୟ ଦେବେ କୃଷ୍ଣା । ସ୍ୱୟଂବର ସଭାର ସମସ୍ତ ଆୟୋଜନ ଏବଂ ପ୍ରୟୋଜନ ନିରୁଦ୍ଦିଷ୍ଟ ପାଣ୍ଡବମାନଙ୍କ ଆତ୍ମପ୍ରକାଶ ଦିଗକୁ ଆଖିରେ ରଖି ହିଁ ଦ୍ରୁପଦ କରିଥିଲେ । କିନ୍ତୁ ବାହାରୁ କେହି ଦ୍ରୁପଦଙ୍କ ମନର ସଂଗୋପିତ ଇଚ୍ଛାକୁ ଜାଣିପାରି ନ ଥିଲେ, ଅନୁମାନ କରି ପାରିନଥିଲେ ମଧ୍ୟ । ଖୋଲା ଆଖି, ଖୋଲା ମନ ନେଇ ସେ ସମସ୍ତ କାର୍ଯ୍ୟ ସଂପାଦିତ କରିଥିଲେ । ତେଣୁ ଛିଦ୍ରଟିଏ ମଧ୍ୟ କେହି ଖୋଜି ବାହାର କରିପାରି ନ ଥିଲେ ।

ସମସ୍ତଙ୍କର ଦୃଷ୍ଟି ଆଢୁଆଳରେ ସ୍ୱୟଂବର ସଭା ଗୋଟିଏ ରାଜନୈତିକ ମଞ୍ଚରେ ପରିଣତ ହେଇଥିଲା । ବୃହତ୍ ଶକ୍ତି ଗୋଷ୍ଠୀର ରାଷ୍ଟ୍ରନେତା ଜରାସନ୍ଧ, ଶ୍ରୀକୃଷ୍ଣ ଏବଂ ଦେବଲୋକର ଇନ୍ଦ୍ର ପ୍ରମୁଖାଦି ଦେବତା, ବ୍ରାହ୍ମଣ, ମୁନିଋଷିଗଣ, ଆର୍ଯ୍ୟାବର୍ତ୍ତର ନୃପତିକୁଳ, ଦକ୍ଷିଣର ସମସ୍ତ ଅନାର୍ଯ୍ୟ ନରପତିଗଣ- ଏକ କଥାରେ କହିବାକୁ ଗଲେ ସମଗ୍ର ଭାରତବର୍ଷର ନୃପତିମାନଙ୍କର ସମାବେଶ ଥିଲା ଏଇଟା ।

ବ୍ୟାସଦେବ ମନେ ମନେ ପର୍ଯ୍ୟାଲୋଚନା କରି ଦେଖିଲେ, କୃଷ୍ଣାର ସ୍ୱୟଂବର ସଭା ଏକ ଅଦ୍ଭୁତ ରାଜନୈତିକ ସମ୍ମେଳନ ହେଉଛି । ଅମ୍ବାଲିକା-ଭୀଷ୍ମଙ୍କ ଆର୍ଯ୍ୟ ବିଦ୍ୱେଷର ବହ୍ନିରେ ସମଗ୍ର ଭାରତବର୍ଷର ଆର୍ଯ୍ୟ ସନ୍ତାନମାନଙ୍କୁ ଆହୂତି ଦେବାପାଇଁ, ମହାସଂକଳ୍ପର ଯେମିତି ଏକ ଭବିଷ୍ୟତ ପ୍ରସ୍ତୁତି- ଏହି ସ୍ୱୟଂବର ସଭା । ପତଙ୍ଗ ଯେପରି ମରଣଟାଣରେ ହୁତାଶନ ଆଡ଼କୁ ଆକର୍ଷିତ ହୋଇଯାଏ, ସେହିପରି ନିମନ୍ତ୍ରିତ ଅତିଥି ନୃପତିକୁଳ ଧ୍ୱଂସର ଅନିବାର୍ଯ୍ୟ ଆକର୍ଷଣରେ ସମବେତ ହୋଇଛନ୍ତି । ଏଇ ସଭାରେ କାହା ମନରେ କୌଣସି ପ୍ରଶ୍ନ ନାହିଁ, ସଂଶୟ ନାହିଁ, ଗୋଷ୍ଠୀ ଅଗୋଷ୍ଠୀ ନାହିଁ, ରାଜନୈତିକ ସ୍ୱାର୍ଥ-ଦ୍ୱନ୍ଦ୍ୱ ନାହିଁ । ଶତ୍ରୁ ମିତ୍ରର ଭେଦାଭେଦ ନାହିଁ । କନ୍ୟାପଣର ବିଚିତ୍ର ସର୍ତ୍ତ ଚୁମ୍ବକ ଭଳି ଆକର୍ଷିତ କରିଛି ସଭିଙ୍କୁ ।

ନିରାପଦ ଆତ୍ମପ୍ରକାଶର କ୍ଷେତ୍ର ପ୍ରସ୍ତୁତ କରି ବ୍ୟାସଦେବ ଛ'ମାସ ପରେ ପୁନରାୟ ପାଣ୍ଡବମାନଙ୍କ ସହିତ ସାକ୍ଷାତ୍ କରିବା ପାଇଁ ଏକଚକ୍ରା-ନଗରୀକୁ ଯାତ୍ରା କଲେ ।

ସ୍ୱୟଂବର ସଭା ଶେଷ ।

ଦ୍ରୁତଧାବମାନ ରଥର ଘରଘର୍ ଶବ୍ଦ ଆଉ ଅଶ୍ୱଖୁରାର ଧ୍ୱନି ଶୁଣି ପାରୁଥିଲେ ବ୍ୟାସଦେବ । ଦୁଇଟି ଶବ୍ଦ ପୃଥକ୍ ପୃଥକ୍ ଭାବେ ଏକାସଙ୍ଗେ ତାଙ୍କ କାନରେ ବାଜୁଥିଲା । ଘୋଡ଼ା ଟାପୁର ଖଟ୍‌ଖଟ୍ ଶବ୍ଦ କ୍ରମଶଃ ନିକଟତର ହେଲା । ବ୍ୟାସଦେବଙ୍କ ଛାତିର ଦୁକ୍‌ଦୁକି ଶବ୍ଦ ଦ୍ରୁତ ହେବାକୁ ଲାଗିଲା । ଅବୋଧ ଏକ ତୀବ୍ର ଯନ୍ତ୍ରଣାକୁ ସେ ନିଜ ଛାତି ଭିତରେ ଅନୁଭବ କରିପାରୁଥିଲେ । ସେ ବ୍ୟଥା ଥିଲା ଅମ୍ବିକାର, ତା ଘୃଣା, ବିଦ୍ୱେଷ, କ୍ରୋଧ, ପ୍ରତିହିଂସା ଆରୋପିତ ହୋଇଥିଲା ସେଇ ବ୍ୟଥା ଭିତରେ । ତାଙ୍କର କେଇ ମୁହୂର୍ତ୍ତର ଜୀବନ୍‌ପାଇଁ ଅମ୍ବିକା ଥିଲା ଏକ ଅଭିଶାପ । ଆଜି ଅମ୍ବିକା ତ ନାହିଁ । କିନ୍ତୁ ତାର ଛାୟା ଅଛି । ସେଇ ଛାଇ ଧୃତରାଷ୍ଟ୍ର ଯୁଦ୍ଧ ବର୍ତ୍ତମାନ ତାଙ୍କ ସହିତ । ତାଙ୍କର ସମସ୍ତ ସତ୍ତା ଏକମୁଖୀ ସ୍ରୋତ ଭଳି ଦୁରନ୍ତ ଏକ ଗତି ନେଇ ଆଗେଇ ଯାଉଛି କାଳସମୁଦ୍ରର ମହାସଂଗମ ଆଡ଼କୁ । ଧୀରେ ଧୀରେ ଟିକିଏ ଟିକିଏ ହୋଇ, ତାର ସମସ୍ତ ଆୟୋଜନ ଯେମିତି ନେପଥ୍ୟରେ ନିଃଶବ୍ଦ ଭାବେ ବହୁବିଧ ଘଟଣା ଭିତରେ ସଂପାଦିତ ହୋଇଚାଲିଛି । ବୁଦ୍ଧି ଦେଇ ତାର କୌଣସି ବ୍ୟାଖ୍ୟା କରାଯାଇପାରେନା । ତଥାପି ସବୁକିଛି ତାଙ୍କୁ ନେଇ ଆଶ୍ଚର୍ଯ୍ୟ ଭାବେ ହିଁ ଘଟିଯାଉଥିଲା ।

ପ୍ରତିକୂଳରେ ଯିବାପାଇଁ ତାଙ୍କର ଶକ୍ତି ନ ଥିଲା । କାଳସ୍ରୋତ ତାଙ୍କୁ ଆକୃଷ୍ଟ କରୁଥିଲା ଏବଂ ସେ ଆଗେଇ ଚାଲିଲେ ଏକ ଅମୋଘ ଲକ୍ଷ୍ୟରେ, ନିୟତିର ନିର୍ଦ୍ଦେଶରେ । ଛାତି ଭିତରେ ସେ ଘୋଡ଼ାଦୌଡ଼ର ତୀବ୍ର ପଦଧ୍ୱନି ଶୁଣୁଥିଲେ, ନା ସେ ଧ୍ୱନି ତାଙ୍କ ନିଜ ହୃତ୍‌ପିଣ୍ଡର – ସେ ନିରୂପଣ କରିନପାରି ଛଟପଟ ହେଇ ପଡ଼ିଥିଲେ ।

କୁଟୀର ଆଡ଼କୁ କିଏ ଜଣେ ଆସୁଥିବା ଲକ୍ଷ୍ୟ କଲେ ବ୍ୟାସଦେବ । ଦ୍ରୁପଦଙ୍କର କୌଣସି ଦୂତ ହୁଏତ ତାଙ୍କ ପାଖକୁ ଆସୁଛି । କିନ୍ତୁ କି ବାର୍ତ୍ତା ନେଇ ସେ ଆସୁଛି ଅନୁମାନ କରିପାରୁଥିଲେ ସେ ।

ବ୍ୟାସଦେବଙ୍କ ମନଭିତରେ ନାନା ପ୍ରକାର କଥାର ଢେଉ ।

ଧ୍ୟାନରେ ବସିଲେ ବ୍ୟାସଦେବ । ବେକ ଆଉ ମସ୍ତକ ସିଧା, ମୁଦ୍ରିତ ନୟନ । ହେଲେ ମନ ଲାଗୁନଥିଲା । ହୃଦ ଅଭ୍ୟନ୍ତରରେ ଅପ୍ରତିହତ ଆନ୍ଦୋଳନକୁ ଦମନ କରିବାପାଇଁ ସେଇଭଳି ସେ ଆଖିବୁଜି ବସି ରହିଲେ । ଆଖି ବୁଜିଲେ ହିଁ କଳ୍ପନାରେ ସେସବୁ କିଛି ଦେଖିପାରୁଥିଲେ ।

ସ୍ୱୟଂବର ସଭା । ଅର୍ଜୁନର ଲକ୍ଷ୍ୟଭେଦ । କର୍ଣ୍ଣ, ଦୁର୍ଯ୍ୟୋଧନ ଏବଂ ବିକ୍ଷୁବ୍ଧ ନୃପତିଗଣଙ୍କ ଦ୍ରୁପଦଙ୍କୁ ଆକ୍ରମଣ, ଅର୍ଜୁନର ପ୍ରତିରୋଧ, ଭୀମର ଶତ୍ରୁଦମନ, ଶ୍ରୀକୃଷ୍ଣଙ୍କ ମଧ୍ୟସ୍ଥତା, ପ୍ରତିଯୋଗୀମାନଙ୍କର ବିଦାୟ । ପାଣ୍ଡବମାନଙ୍କର ଭାର୍ଗବ କୁଟୀରକୁ ପ୍ରତ୍ୟାଗମନ; ଶ୍ରୀକୃଷ୍ଣ ଓ କୁନ୍ତୀଙ୍କର ସାକ୍ଷାତ୍, ପାଣ୍ଡବଙ୍କ ସହିତ ଶ୍ରୀକୃଷ୍ଣଙ୍କ ଆତ୍ମୀୟ ସଂପର୍କର ପୁନଃସ୍ଥାପନ ପ୍ରଭୃତି ଦୃଶ୍ୟ ଗୋଟିଏ ପରେ ଗୋଟିଏ ଭାସିଯାଉଥିଲା ତାଙ୍କ ଆଖି ସାମ୍ନାରେ ।

ଏକ ଅଜଣା ସ୍ପନ୍ଦନରେ ବ୍ୟାସଦେବଙ୍କ ହୃଦୟ ଆନ୍ଦୋଳିତ ହେବାକୁ ଲାଗିଲା । କିଛି ଆନନ୍ଦ, କିଛି ଭୟ, କିଛି ଶିହରଣ ଜାଗ୍ରତ ହେଇଥିଲା ତାଙ୍କ ଭିତରେ । ସ୍ୱୟଂବର କଥା ମନେପଡ଼ିଲେ ହିଁ ବ୍ୟାସଦେବଙ୍କ ସର୍ବାଙ୍ଗ କଣ୍ଟକିତ ହେଇଉଠୁଥିଲା ପୁଲକରେ । ଗୌରବର ଆନନ୍ଦରେ ତାଙ୍କ ପରାମର୍ଶରେ ଆୟୋଜିତ ହୋଇଥିଲା ସ୍ୱୟଂବର ସଭା କିନ୍ତୁ ବିଧାତାର ନିର୍ଦ୍ଦେଶରେ ତା ନିଜ ବାଟରେ ପରିସମାପ୍ତି ହେଲା । ସମାପ୍ତିଟା କେତେ ମାତ୍ରାରେ ରହସ୍ୟମୟ ହେଇଉଠିଥିଲା, ସେ କଥା ଭାବିବା ପାଇଁ ଅବକାଶ ନ ଥିଲା କାହାର ।

କୃଷ୍ଣା ଅର୍ଜୁନର ଜୟଲବ୍‌ଧ ହେଲା । କିନ୍ତୁ ଏକୁଟିଆ ଅର୍ଜୁନର ନୁହେଁ ସେ । ପଞ୍ଚପାଣ୍ଡବଙ୍କ ପତ୍ନୀ । ସକଳ ପାଣ୍ଡବଙ୍କର ସମାନ ଦାବୀ ଓ ଅଧିକାର ରହିବ କୃଷ୍ଣା ଉପରେ । ଯୁଧିଷ୍ଠିରଙ୍କ ଏହି ଅଦ୍ଭୁତ ପ୍ରସ୍ତାବରେ ବି ଦ୍ରୁପଦଙ୍କର ସମ୍ମତି, ବ୍ୟାସଦେବ ଆଶ୍ଚର୍ଯ୍ୟ ଚକିତ ହୋଇ ଘଟଣାଟିକୁ ଭାବି ବସିଲେ ଗଭୀର ଭାବେ ।

'ପାଞ୍ଚଜଣ ମିଶି ଭାଗ କରିନିଅ'– ଏହି ଆଦେଶ ଜନନୀ କୁନ୍ତୀଙ୍କର । ତାକୁ ଶିରୋଧାର୍ଯ୍ୟ କରିବାକୁ ଯାଇ ଜଣେ ଭ୍ରାତାର ଜୟଲବ୍‌ଧ ପତ୍ନୀକୁ ପାଞ୍ଚଜଣ ମିଶି ବିବାହ କରିବା ଭଳି ସମାଜ ବହିର୍ଗତ ପ୍ରସ୍ତାବରେ ଧୀର, ସ୍ଥିର, ସଂଯତ, ବୁଦ୍ଧିମାନ୍, ନୀତିନିଷ୍ଠ, ଶାନ୍ତ, ଧର୍ମଜ୍ଞ ଜିତେନ୍ଦ୍ରିୟ ପୁରୁଷ ଯୁଧିଷ୍ଠିର କିଭଳି ଅଟଳ ଅଚଳ ରହିଲା ? ଏହି ପ୍ରଶ୍ନ ବ୍ୟାସଦେବଙ୍କ ମନକୁ ବାରମ୍ବାର ଘାରିଲା । ଅନେକ ଅନେକ କଥା ସେ ଭାବିଗଲେ ।

ଯୁଧିଷ୍ଠିରଙ୍କ ଭଳି ରାମଚନ୍ଦ୍ର ମଧ୍ୟ ପିତୃସତ୍ୟ ପାଳନରେ ଅଟଳ ଥିଲେ । ପିତାଙ୍କର ସହସ୍ର ଆବେଦନ, ନିବେଦନ, ନିଷେଧ ସତ୍ତ୍ୱେ ରାମଚନ୍ଦ୍ର ରୁଗ୍‌ଣ ମୁମୂର୍ଷୁ ପିତାଙ୍କୁ ତ୍ୟାଗ କରି ବଣକୁ ଚାଲିଯାଇଥିଲେ । ଅଯୋଧ୍ୟା ତ୍ୟାଗ ଭଳି ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ସଂପର୍କରେ ଶତ୍ରୁର ସଂଦେହକୁ ଘୋଡ଼େଇ ଦେବାକୁ ଯାଇ ସରଳ ପିତୃଭକ୍ତିକୁ ଏବଂ କୈକେୟୀଙ୍କ ନିର୍ବାସନ ପ୍ରସ୍ତାବକୁ ସେ ଆତ୍ମଗୋପନର ଗୋଟାଏ ସୁନ୍ଦର ଉପାୟଭାବେ ଗ୍ରହଣ କରିନେଲେ । ଏହା ଫଳରେ ଲୋକେ ଠକି ହେଲେ, ବିଭ୍ରାନ୍ତ ହେଲେ; କିନ୍ତୁ ତାଙ୍କର ନିଜ ଗୌରବ ଓ ମର୍ଯ୍ୟାଦା ବଢ଼ିଲା । ଯୁଧିଷ୍ଠିର ରାମଚନ୍ଦ୍ରଙ୍କ ଜୀବନରୁ ଅନୁରୂପ କୌଣସି ଶିକ୍ଷା ଲାଭ କରିଛି କି ଆଉ ?

ମଣିଷ ନିୟତିର ଅଧୀନ । ନୟତିକୁ କିଏ କେବେ ଅତିକ୍ରମ କରିଛି ? ରାମଚନ୍ଦ୍ରଙ୍କ ନିୟତି ତାଙ୍କୁ ଅଭିଷେକ ଦିନ ନିର୍ବାସିତ କରିଥିଲା ଏବଂ ଏହି ନିର୍ବାସନ ସତେ ଯେମିତି ରାବଣର ନିୟତି ରୂପ ନେଇ ଆସିଲା । ଆଚମକା କଥାଟା ମନେପଡ଼ିବା ସଙ୍ଗେ ସଙ୍ଗେ ଚମକି ଉଠିଲେ ବ୍ୟାସଦେବ । କୃଷ୍ଣା ସହିତ ପଞ୍ଚପାଣ୍ଡବଙ୍କ ବିବାହ ଅନୁରୂପ କୌଣସି ଘଟଣାକୁ ଇଙ୍ଗିତ ଦେଉଛି କି ? ପ୍ରଶ୍ନଟି ବ୍ୟାସଦେବଙ୍କ ଛାତି ଭିତରେ ଦୁର୍ ଦୁର୍ କରି ଉଠିଲା ।

ବ୍ୟାସଦେବ ଖୁବ୍ ଗମ୍ଭୀର ଭାବେ ମନୋଯୋଗ କରି କଳ୍ପନା ଚକ୍ଷୁରେ କୃଷ୍ଣାଙ୍କୁ ନିରୀକ୍ଷଣ କଲେ । ଅସାମାନ୍ୟା ସୁନ୍ଦରୀ କୃଷ୍ଣା । ଜ୍ୟୋସ୍ନାର କମନୀୟତା ବୋଳି ହୋଇ ରହିଛି ତା ଉଜ୍ଜ୍ୱଳ ଶ୍ୟାମାଙ୍ଗରେ । ବହ୍ନିଭଳି ଜଳୁଛି ଦାଉ ଦାଉ ହେଇ ତାର ଯୌବନ । ଜ୍ୱଳନ୍ତ ଶିଖାଟିଏ ଯେମିତି ରୂପର ନିଆଁରେ ଜଳଜଳ କରୁଛି । ଆଖିକୁ ଆକର୍ଷଣ କଲାଭଳି ରୂପ ଯେକୌଣସି ପୁରୁଷ ମନରେ କାମନାଗ୍ନିକୁ ଜାଳିଦେବ । ସେଥିପାଇଁ କେବଳ ତାର ରୂପବହ୍ନିରେ ଆହୂତି ଦେବାପାଇଁ ବୀରମାନେ ସ୍ୱୟଂବର ସଭାକୁ ଛୁଟି ଆସିଥିଲେ । କେତେ ତରବାରି ଉନ୍ମୁକ୍ତ ହୋଇଛି । କେତେ ଆହତ ହେଇଛନ୍ତି । କୃଷ୍ଣର ରମଣୀୟ ରୂପର ମଦିର ଆକର୍ଷଣ ଏତେ ଗଭୀର ଏବଂ ସୂକ୍ଷ୍ମ ଯେ, କୌଣସି ଅନୁଶାସନ ସେ ମାନେନା । ଯୁଧିଷ୍ଠିର ଭଳି ଆତ୍ମସଂଯମୀ ପୁରୁଷର ନିର୍ବିକାର ଚିତ୍ତ ମଧ୍ୟ ପାବକଶିଖାରୂପିଣୀ କୃଷ୍ଣାର ରୂପାଗ୍ନିରେ ଉଦ୍‌ଭାସିତ ହେଇଉଠିଛି । କୃଷ୍ଣା ରୂପ ଓ ଯୌବନର ପ୍ରତିଦ୍ୱନ୍ଦ୍ୱୀ ନୃପତିକୁଳର ନିଭୃତ ମନ ଭିତରେ ଯେଉଁ ଅଗ୍ନି ପ୍ରଜ୍ୱଳିତ ହେଇଛି ତାହା ଯେ ରାଜ୍ୟ ରାଜ୍ୟରେ ଦାବାଗ୍ନି ରୂପେ ଜଳି ଉଠିବନି କିଏ କହିବ ଏ କଥା ? ବ୍ୟାସଦେବଙ୍କ ମନ ଭିତରଟା ଖୁସି ଖୁସି ହେଇଗଲା । ହଁ, କୃଷ୍ଣାର ରୂପାଗ୍ନିରେ କେବଳ କୌରବ ବଂଶ ନିପାତ ହେବନି, ସମଗ୍ର ଭାରତବର୍ଷ ଦିନେ ମହାଶ୍ମଶାନରେ ପରିଣତ ହେଇଯିବ । ମହାକାଳର ଏହି ଅମୋଘ ଦାବି ପରିପୂରଣ ପାଇଁ ହିଁ କୃଷ୍ଣାର ଜନ୍ମ ।

ନିର୍ଜନ କୁଟୀରରେ ଓଜନିଆ ନିଃଶ୍ୱାସର ଉଠାପକା ଶବ୍ଦରେ ସଚକିତ ହୋଇ ସେ ଧୀରେ ଧୀରେ ଆଖି ଖୋଲିଲେ । ଦ୍ରୁପଦ ଓ କୃଷ୍ଣାଙ୍କୁ ଏକାଠି ଦେଖି ତାଙ୍କ ଶରୀରରେ ବିଦ୍ୟୁତ୍ ଖେଳିଗଲା । ଶ୍ରୀକୃଷ୍ଣଙ୍କ ମୁଖରେ ଅପାର୍ଥିବ ମୁଗ୍ଧତା ଆଖିରେ ଗଭୀର ସମ୍ମୋହନ ।

ବ୍ୟାସଦେବଙ୍କ ଭିତରେ ଏକ ଶିହରିତ ଆନନ୍ଦର ଉଜ୍ଜୀବକ ସ୍ପର୍ଶ ତାଙ୍କ ଆଖି ଏବଂ ମୁଖକୁ ଉଜ୍ଜ୍ୱଳ କରିଦେଲା । ହଠାତ୍ ସେ ମୂକ ପାଲଟିଗଲେ । ଦୃଷ୍ଟି ସ୍ଥିର ରହିଗଲା ଶ୍ରୀକୃଷ୍ଣଙ୍କ ଉପରେ । ଛାତି ଭିତରେ ସମୁଦ୍ରର ଅସ୍ଥିରତା । କେତେ କେତେ ଘଟଣା ମନକୁ ଛୁଇଁ ଯାଉଥିଲା । ସବିସ୍ମୟରେ ହିଁ ସେ ଉଚ୍ଚାରଣ କଲେ- ଯଦୁପତି ତୁମେ ? ମୁଁ ସ୍ୱପ୍ନ ଦେଖୁନି ତ ! ତୁମ ପଦଧୂଳି ପଡ଼ି ମୋ କୁଟୀର ଆଜି ଧନ୍ୟ ହେଇଗଲା । ମୁଁ ମଧ ଧନ୍ୟ ହେଇଗଲି । ମୋର ଯେ ଆଜି କି ଆନନ୍ଦ ହେଉଛି ବାସୁଦେବ, ତୁମକୁ ବୁଝାଇ ପାରୁନି ।

ଶ୍ରୀକୃଷ୍ଣଙ୍କ ଅଧରରେ ମନ୍ଦହାସ । ଉତ୍ତର ଦେଲେ; ମନଗହନର ଇଚ୍ଛାକୁ ମହାନ୍ ଭାବେ ପ୍ରକାଶ କରି ଆପଣ କେବଳ ମୋତେ ଲଜ୍ଜିତ କରିଛନ୍ତି । ବ୍ୟାସଦେବ ମଧ କହିପାରିଲେ ଯେ, ମଣିଷର ମହାନ୍ କର୍ମକୁ ମନେରଖିବାଠାରୁ ସତ୍‌କର୍ମ ଆଉ କିଛି ନାହିଁ ।

ଶ୍ରୀକୃଷ୍ଣଙ୍କ ମୁଖମଣ୍ଡଳ ଏକ ଅନିର୍ବଚନୀୟ ହସରେ ଦୀପ୍ତିମୟ ହେଇଉଠିଲା । ଦ୍ରୁପଦ ଏସବୁ ପ୍ରତି ଦୃଷ୍ଟି ରଖି ନ ଥିଲେ । ତାଙ୍କ ଭିତରଟା ଛଟପଟ କରୁଥିଲା । ବିନା ଭୂମିକାରେ ସେ କହିଲେ, ମହର୍ଷି ! କୃଷ୍ଣାର କଷ୍ଟ ମୁଁ ଆଉ ଦେଖିପାରୁନି । ପଞ୍ଚପାଣ୍ଡବଙ୍କ ଆଖିରେ ସେ ଜଣେ ନାରୀ ମାତ୍ର; ସେମାନଙ୍କର ସଙ୍ଗିନୀ । ଝିଅର ଏଇ ଅମର୍ଯ୍ୟାଦା ମୁଁ ପିତା ହୋଇ କେମିତି ସହ୍ୟ କରିବି ? ଅଥଚ ଦିନେ ଆପଣ ହିଁ ପରାମର୍ଶ ଦେଇଥିଲେ ଯେ, ଅର୍ଜୁନ ତାର ଯୋଗ୍ୟ ବର ବୋଲି । ଅର୍ଜୁନ ମାଧମରେ ଦ୍ରୋଣ ଅପମାନର ପ୍ରତିଶୋଧ ନେବାର ଶ୍ରେଷ୍ଠ ଅସ୍ତ୍ର ରୂପେ କୃଷ୍ଣାକୁ ବ୍ୟବହାର କର । ଆପଣଙ୍କ ପରାମର୍ଶ ଅନୁଯାୟୀ ମୁଁ ଧନୁର୍ବାଣ ଏବଂ ଲକ୍ଷ୍ୟ ନିର୍ମାଣ କଲି । ଧନୁର୍ବାଣର ପ୍ରୟୋଗ ଆପଣ ହିଁ ତାଙ୍କୁ ଶିଖେଇଥିଲେ । ତୃତୀୟ ପାଣ୍ଡବ ବୀର । ମହାଶକ୍ତିଶାଳୀ । କର୍ଣ୍ଣ ତାଙ୍କର ସମକକ୍ଷ । ତାଙ୍କୁ ଆପଣଙ୍କର ଭୟ ଥିଲା । ତାଙ୍କ ପ୍ରତି ବିରାଗ ସୃଷ୍ଟି ପାଇଁ କୃଷ୍ଣାକୁ କହିଥିଲି କୁଳଶୀଳ ଓ ମାନରେ ଯିଏ ନିକୃଷ୍ଟ ତାଙ୍କୁ ପତି ରୂପେ ବରଣ କର ନାହିଁ । ମୋର ସେଇ ଇଚ୍ଛା କୃଷ୍ଣା ପୂରଣ କରିଛି ମହର୍ଷି । କିନ୍ତୁ ଆପଣଙ୍କର ମନୋନୀତ ତୃତୀୟ ପାଣ୍ଡବ ତାକୁ କଣ ବା ଆଉ ଅଧିକା ଦେଲେ ? କୃଷ୍ଣାର ହୃଦୟରେ ବଳିଦାନର ଝାଞ୍ଜ ବାଜୁଛି । ପିତା ହୋଇ ମୁଁ କେମିତି ସ୍ଥିର ରହିବି ? ଜଣେ ନାରୀର ପଞ୍ଚସ୍ୱାମୀ ଭଳି ଅସାମାଜିକ ଆଚରଣ ବ୍ୟବସ୍ଥାକୁ ରାଜା ହୋଇ ମୁଁ କିଭଳି ସମର୍ଥନ କରିବି ? ସତ୍ୟାଶ୍ରୟୀ ଯୁଧିଷ୍ଠିର ଜନନୀଙ୍କର ସତ୍ୟଭଙ୍ଗ କେବେବି କରିବେନି । ଜନନୀଙ୍କ ଆଦେଶ ଶିରୋଧାର୍ଯ୍ୟ କରିବାରେ ସେ ବଦ୍ଧ ପରିକର । ଆପଣ ପାଣ୍ଡବଙ୍କ ପିତାମହ । ଆପଣ ହିଁ ସେମାନଙ୍କୁ ଏଥିରୁ ନିବୃତ୍ତ କରିପାରିବେ । ଏକା ସଙ୍ଗେ ଏତେ ଗୁଡ଼ାଏ ପ୍ରଶ୍ନ ଓ

ଅଭିଯୋଗ କରିସାରି ଦ୍ରୁପଦ ଉତ୍ତେଜନାରେ ଧଇଁସଇଁ ହେଇଗଲେ । ଶ୍ୱାସପ୍ରଶ୍ୱାସ ଜୋରରେ ପଡୁଥିଲା । ଭିତରଟା କାନ୍ଦି ଉଠୁଥିଲା ନିରବରେ ।

ବ୍ୟାସଦେବ ଟିକିଏ ସଂକୁଚିତ ହେଇଗଲେ । ଗଭୀର ମୁଖରେ କିଛିକ୍ଷଣ ନିରବ ରହିବା ପରେ ଦୀର୍ଘଶ୍ୱାସ ନେଇ ଚିନ୍ତିତ ସ୍ୱରରେ କହିଲେ, ଯଦୁପତି ତୁମେ କିଛି କହିବ ନାହିଁ ?

ଶ୍ରୀକୃଷ୍ଣ ଟିକିଏ ଚିନ୍ତା କରି କହିଲେ, ବିଧିର ବିଧାନକୁ କିଏ ଅତିକ୍ରମ କରିପାରିଛି ମହର୍ଷି ? ଅଯୋଧ୍ୟାର ରାଜା ରାମଚନ୍ଦ୍ର ଅଭିଷେକ ଦିନ ନିର୍ବାସିତ ହେଲେ । ମଣିଷ ଭାଗ୍ୟର କ୍ରୀଡ଼ନକ । ପାଣ୍ଡବଙ୍କ କଥା ହିଁ ଧରନ୍ତୁ- ସେମାନେ ରାଜପୁତ୍ର ଏବଂ ରାଜ୍ୟର ଉତ୍ତରାଧିକାରୀ ହୋଇ ମଧ୍ୟ ରାଜ୍ୟହୀନ, ବନବାସୀ, ଭିକାରୀ । ଅଦୃଷ୍ଟ ହିଁ ତ ସେମାନଙ୍କୁ ଭିକାରୀ କରିଛି । ସେଥିପାଇଁ କାହାକୁ ଦୋଷ ଦେଇ ଲାଭ ନାହିଁ । ଅଦୃଷ୍ଟ ହେତୁ ସେମାନେ କଷ୍ଟ ଭୋଗ କରୁଛନ୍ତି । ଭାଗ୍ୟକୁ କେବଳ ମାନିବାକୁ ହୁଏ । ବିଧାତାର ଇଚ୍ଛାକୁ ବଦଳେଇବା ମଣିଷ ଶକ୍ତିର ବାହାରେ । ତେବେ ଏତିକି ମୁଁ ବୁଝିପାରୁଛି ଯେ, ସେମାନେ ମାଟିରୁ ଉଠିଆସିଛନ୍ତି । ଭାଗ୍ୟର ବିପର୍ଯ୍ୟୟ ନ ଘଟିଲେ ଏହି ଆଶ୍ଚର୍ଯ୍ୟ ଅଭିଜ୍ଞତା ସେମାନଙ୍କର ହେଇନଥାନ୍ତା ।

ଦ୍ରୁପଦ ନିରୁତ୍ତର । ଉଦ୍ଦୀପ୍ତ ଆଖିରେ ବିସ୍ମୟର ଚିହ୍ନ । ଛାତି ଭିତରେ ଅସହାୟ ଯନ୍ତ୍ରଣା । ଶ୍ରୀକୃଷ୍ଣଙ୍କ କଥା ଶୁଣି ଦ୍ରୁପଦ ଖୁବ୍ ଧୀର ସ୍ଥିର ହୋଇ କୃଷ୍ଣଙ୍କୁ ଲକ୍ଷ୍ୟ କରି କହିଲେ- ଯଦୁପତି, ତିଳୋତ୍ତମାର ଅସାମାନ୍ୟ ରୂପ ଲାବଣ୍ୟ । ସୁନ୍ଦ-ଉପସୁନ୍ଦର ଭ୍ରାତୃପ୍ରୀତିରେ ସଂକଟ ଉପୁଜାଇ ଥିଲା । ଭ୍ରାତୃପ୍ରୀତିଠାରୁ ବଡ଼ ହେଇ ଠିଆ ହେଲା ଜୀବନର ଦାବୀ । ଜୀବନରେ ସବୁକିଛି ସମାନ ଭାବେ ଭାଗ ଦିଆଯାଇଥାଏ ସତ, କିନ୍ତୁ ନାରୀର ସଙ୍ଗ, ତାର ପ୍ରେମ, ଭଲପାଇବାରେ କୌଣସି ଭାଗ କିମ୍ବା ଅଂଶୀଦାର କଥା କଳ୍ପନା କରାଯାଇପାରେନା । ସୁନ୍ଦ-ଉପସୁନ୍ଦର ସେହି ପୁନରାବୃତ୍ତି ପାଣ୍ଡବଙ୍କ ଜୀବନକୁ ବିଷମୟ କରି ତୋଳିବ ।

କୃଷ୍ଣ ଟିକିଏ ଥମକି ଚାହିଁରହିଲେ । ପର ମୁହୂର୍ତ୍ତରେ କ'ଣ ଭାବି କେଜାଣି ସ୍ନିଗ୍ଧ ସୁନ୍ଦର ମୁଗ୍ଧ ହସଟିଏ ହସି କହିଲେ, ମହାରାଜ, ପାଣ୍ଡବମାନଙ୍କ ସହିତ ସୁନ୍ଦ-ଉପସୁନ୍ଦଙ୍କର କୌଣସି ତୁଳନା କରିବା ଉଚିତ ନୁହେଁ । ପାଣ୍ଡବମାନେ ଜୀବନ ଭିତରୁ ଶିକ୍ଷାଲାଭ କରିଛନ୍ତି । ସେମାନଙ୍କ ଜୀବନର ବେଶି ଭାଗ ସମୟ ରାଜପ୍ରାସାଦ ବାହାରେ ଅରଣ୍ୟ ପରିବେଶରେ କଟିଛି । ଅରଣ୍ୟର ଜୀବନ ମୁକ୍ତ, ସ୍ୱାଧୀନ ଏବଂ ଉଦାର । ସେଠି କୌଣସି ଅବଗୁଣ୍ଠନ ନାହିଁ । ଛଳନା, ପ୍ରତାରଣା, ମାତ୍ସର୍ଯ୍ୟ କିଛି ନାହିଁ । ଏଇ ଅରଣ୍ୟ ପରିବେଶ ଭିତରେ ହିଁ ଉପଲବ୍ଧି କରିବା ସଂଭବ ଯେ, ମଣିଷର ବଞ୍ଚିରହିବା ପାଇଁ ଐକ୍ୟ ଓ ସହଯୋଗିତା ଆବଶ୍ୟକ । ବନବାସୀଙ୍କ ସମାଜରେ କୌଣସିଥିରେ କାହାର ଏକଚାଟିଆ କର୍ତ୍ତୃତ୍ୱ, ସତ୍ତ୍ୱ ବା ସ୍ୱାମିତ୍ୱ କିଛି ନାହିଁ । ସବୁ ସଂପଦ ଉପରେ ଗୋଷ୍ଠୀର ସମସ୍ତଙ୍କର ସମାନ ଅଧିକାର,

ସମାନ ଭାଗ । କୁନ୍ତୀ ପିଲାଦିନରୁ ସେମାନଙ୍କୁ ଏଇକଥା ଶିକ୍ଷା ଦେଇଛନ୍ତି । ଯାହା କିଛି ଭୋଗ୍ୟ, ତାହା ପାଞ୍ଚଜଣ ଭୋଗ କରିନେବେ । ଯାହା ବି ଶକ୍ତି ତାହା ମଧ୍ୟ ପାଞ୍ଚଜଣଙ୍କର । ଏହି ଐକ୍ୟବୋଧ ହିଁ ଦୁର୍ଦ୍ଦିନରେ ଓ ବିପଦରେ ସେମାନଙ୍କୁ ରକ୍ଷା କରିବ । ଏହି ଶିକ୍ଷା ପାଣ୍ଡବମାନଙ୍କ ପାଇଁ ରକ୍ଷାକବଚ ହୋଇ ରହିବ । ଦ୍ରୌପଦୀ ସେମାନଙ୍କ ବିଶ୍ୱସ୍ତତା ଏବଂ ଭ୍ରାତୃପ୍ରେମର ଏକ ଦୁରନ୍ତ ପରୀକ୍ଷା ।

ବ୍ୟାସଦେବ ନିଜ ଭିତରେ ନିଜେ ମୁଣ୍ଡ ହଲାଇ କଥାକୁ ସମର୍ଥନ କଲେ । କୃଷ୍ଣ ଯେ ତାଙ୍କ ଭଳି ପଞ୍ଚପାଣ୍ଡବଙ୍କ ସହିତ ଦ୍ରୌପଦୀଙ୍କ ବିବାହକୁ ସମର୍ଥନ କରୁଛନ୍ତି । ଏକଥା ତାଙ୍କ ବକ୍ତବ୍ୟରୁ ବୁଝିବା ପାଇଁ କଷ୍ଟ ହେଲା ନାହିଁ । ତେବେ ଜଣେ ନାରୀର ବହୁ ପତି ରହିବାରେ ଅନେକ ସମସ୍ୟା ଦେଖାଦେବ - ସେ ବିଷୟରେ ବ୍ୟାସଦେବଙ୍କ ମନରେ ଅସ୍ପଷ୍ଟ ଛାଇ ଆଲୁଅଘେରା ସୀମାରେ ଅନେକ ପ୍ରଶ୍ନ ଉଠି ଉତ୍ତର ନ ପାଇ ଫେରି ଯାଉଥିଲା । ବ୍ୟାସଦେବଙ୍କୁ ଅମ୍ବିକାର ଘୃଣା ପ୍ରେମ ପ୍ରତ୍ୟାଖାନର ଅଭିଜ୍ଞତା ଯେମିତି ଦିନରାତି ଜଳାଉଥିଲା, ସେହିଭଳି ପଞ୍ଚସ୍ୱାମୀ ଦ୍ରୌପଦୀର ନିଭୃତ ମନରେ ଏକ ଗୋପନ ଜ୍ୱାଳା ଅହରହ ଜଳି ରହିବ । ସେଇ ଦହନକୁ ଶୀତଳ କରିବ କିମିତି ? ଦ୍ରୌପଦୀ ଅନ୍ତରର ଜ୍ୱାଳା ଓ ଯନ୍ତ୍ରଣା କେବଳ ପାଣ୍ଡବଙ୍କୁ ବିବ୍ରତ କରିବନି । ତାର ଚତୁଃପାର୍ଶ୍ୱକୁ ମଧ୍ୟ ବିଷାକ୍ତ କରି ତୋଳିବ । ସ୍ୱୟଂବରରେ ଯେଉଁ ବିରୋଧ, ବିଦ୍ୱେଷ, ପ୍ରତିହିଂସା ଓ ଘୃଣା ଦାନା ବାନ୍ଧିଥିଲା ପାଣ୍ଡବ ଓ କୌରବ ମଧ୍ୟରେ ଏବଂ ଅନ୍ୟ ପ୍ରତିଦ୍ୱନ୍ଦ୍ୱୀ ନୃପତିଙ୍କ ମଧ୍ୟରେ, ତାର ଇନ୍ଧନ ଯୋଗାଇବ ଦ୍ରୌପଦୀ ସବୁଦିନ ପାଇଁ । ଗୋଟାଏ ଭାରତବର୍ଷରେ ପ୍ରତିହିଂସା, ବିଦ୍ୱେଷର ନିଆଁ ବିଛେଇ ହେଇପଡ଼ିବ । ଆର୍ଯ୍ୟାବର୍ତ୍ତର ଘରେ ଘରେ ବହ୍ନି ହୋଇ ପ୍ରଜ୍ୱଳି ଉଠିବ, ଏକଥା ଭାବିଲା ବେଳକୁ ତାଙ୍କ ରକ୍ତସ୍ରୋତ ଉଦ୍ଦାମ ହେଇ ଉଠୁଥିଲା । ଆଖିବୁଜି ସେଇ ଅପ୍ରତିରୋଧ ଆନନ୍ଦର ଢେଉକୁ ନିଜ ଭିତରେ ଚୁପ୍‌ଚାପ୍ ଲୁଚେଇ ରଖିବାକୁ ଚେଷ୍ଟା କଲେ । ମୁହୂର୍ତ୍ତକ ପାଇଁ ବ୍ୟାସଦେବ ଆଖିବୁଜି କୃଷ୍ଣା ମୁହଁକୁ କଳ୍ପନାରେ ଦେଖିବାକୁ ଲାଗିଲେ । କନ୍ୟାରତ୍ନଟି ସତେଯେମିତି ଅନ୍ୟ ଏକ ପରିମଣ୍ଡଳରୁ, ଭିନ୍ନ ଏକ ଜଗତରୁ ଓହ୍ଲେଇ ଆସିଛି । ବଡ଼ ଅଚିହ୍ନା, ଅନ୍ୟ ରକମର ଲାଗୁଛି !

ବ୍ୟାସଦେବ ମୌନ ବିସ୍ମୟରେ ଦ୍ରୁପଦଙ୍କ ମୁଖକୁ ଚାହିଁ ଟିକିଏ ହସିଲେ । କହିଲେ, ଦ୍ରୁପଦ, ଅଦୃଷ୍ଟକୁ ତ କେହି ଫାଙ୍କି ଦେଇ ପାରିବାନି । ଯୁଧିଷ୍ଠିରର ପ୍ରସ୍ତାବ ନିହାତି ଅଶାସ୍ତ୍ରୀୟ ନୁହେଁ । ଅସାମାଜିକ ମଧ୍ୟ ନୁହେଁ । ବୈଦିକ ଯୁଗରେ ଏକ ନାରୀ ବହୁପତି ଗ୍ରହଣର ବ୍ୟବସ୍ଥା ଥିଲା । ମୁନିକନ୍ୟା ବ୍ରାହ୍ମୀ ଏକା ସଂଗେ ଦଶଜଣଙ୍କୁ ପତି ରୂପେ ବରଣ କରିଥିଲେ । ଅର୍ବାଚୀନ କାଳରେ ଗୌତମୀ ଜଟିଳା ସାତଜଣ ଋଷିଙ୍କୁ ପତିରୂପେ ଗ୍ରହଣ କରିଥିଲେ । ସୁତରାଂ ଏହି ବିବାହ ଶାସ୍ତ୍ରସିଦ୍ଧ ଏବଂ ନିୟତି ନିର୍ଦ୍ଧାରିତ । ତୁମେ, ମୁଁ ତ ନିମିତ୍ତ ମାତ୍ର । ଆମେ କେବଳ କାଳ ଦ୍ୱାରା, ନିୟତି ଦ୍ୱାରା ଆକର୍ଷିତ ହେଉଛେ । ଦ୍ୱିଧା ତ୍ୟାଗ କରି ମହାକାଳର ସନ୍ତୁଷ୍ଟି ପାଇଁ ପୂଜାର ଆୟୋଜନ କର ।

ଦ୍ରୁପଦ ଖୁବ୍ ବିସ୍ୱାଦ ଅନୁଭବ କଲେ ନିଜ ଭିତରେ । ତାଙ୍କ ଭିତରେ ଅବ୍ୟକ୍ତ ଦହନ । କହିବା ପାଇଁ କିନ୍ତୁ କିଛି ଯୁକ୍ତି ନ ଥିଲା । ବିମୂଢ଼ଙ୍କ ଭଳି ବ୍ୟାସଦେବଙ୍କ ମୁହଁକୁ ହତାଶ ଭାବରେ ଚାହିଁ କହିଲେ, ହୁଏତ ଏହାହିଁ ଭବିତବ୍ୟ । ତେବେ ଆଶଙ୍କା, ଉତ୍କଣ୍ଠା, ମୋତେ ନିଶ୍ଚିତ ରହିବାକୁ ଦେଉନି । ଅନ୍ଧାର ଦିଶୁଛି ସବୁ ମୋତେ । ଝିଅକୁ ମୁଁ ଅନ୍ଧାର ଭିତରେ ହିଁ ନିକ୍ଷେପ କରିଦେଉଛି । ମୁଁ କେବଳ ଉପଲକ୍ଷ୍ୟ ।

ଶ୍ରୀକୃଷ୍ଣ କରୁଣ ଭାବରେ ମୁଣ୍ଡ ହଲେଇଲେ । ନୀରବରେ ଭାବିଲେ ମୁହୂର୍ତ୍ତେ । ତାପରେ ଦୀର୍ଘଶ୍ୱାସ ତ୍ୟାଗ କରି କହିଲେ- ଏଭଳି ଭାବେ ଚାହଁନା ବନ୍ଧୁ । କହିବା ପାଇଁ କିଛି ନାହିଁ ସତ ? କ'ଣ ବା କହିବି ? ପାଣ୍ଡବଙ୍କର ସୌଭାଗ୍ୟଲକ୍ଷ୍ମୀ, ବିଜୟଲକ୍ଷ୍ମୀ କୃଷ୍ଣାଙ୍କୁ ସେମାନେ ପାଞ୍ଚୋଟି ହୃଦୟ ଶତଦଳ ଦେଇ ଆରତି କରିବାକୁ ଚାହୁଁଛନ୍ତି । ପ୍ରେମ କେବଳ ଚିତ୍ତକୁ ନନ୍ଦିତ କରେନା, ଚିତ୍ତକୁ ନିବେଦିତ କରିବା ମଧ୍ୟ ପ୍ରେମର ଅନ୍ୟତମ ଧର୍ମ । ପଞ୍ଚପାଣ୍ଡବଙ୍କର କଣ୍ଠହାର ହୋଇ କୃଷ୍ଣା ସେମାନଙ୍କର ସମଗ୍ର ଭାରତର ଅଚଳ-ପଙ୍ଗୁ-ଜନରଥକୁ ଟାଣି ନେବାପାଇଁ ଶକ୍ତି ଓ ପ୍ରେରଣାକୁ ଜାଗ୍ରତ କରିବାର ମନ୍ତ୍ର ଯୋଗାଇବେ । ସେଇ ମନ୍ତ୍ରର ଶକ୍ତି, ତାଙ୍କ ରୂପର ଔଜ୍ଜ୍ୱଲ୍ୟରେ, ବ୍ୟକ୍ତିତ୍ୱର ତେଜରେ, ମୋହର ଆକର୍ଷଣରେ, ପ୍ରେମର ଦୀପ୍ତିରେ ପୁଞ୍ଜୀଭୂତ ହେଇ ରହିଛି । ସଖା, କୃଷ୍ଣା କେବଳ ତୁମ ପ୍ରତିହିଂସାର ବହ୍ନିକୁ ଜାଳିବାର ଶିଖାଟିଏ ନୁହେଁ, ସେ ଲାଞ୍ଛିତ, ବଞ୍ଚିତ, ଅତ୍ୟାଚାରିତ ଭାଗ୍ୟହରା ମଣିଷର ମୁକ୍ତିମଶାଲ । ତୁଚ୍ଛ ମାନୁଷୀ ବାସନା, ଅଦୃଷ୍ଟର କରୁଣାର ଫଳ କିଛି ରହିଯାଇଛି, ତେଣୁ ଦୈବଶକ୍ତିରେ ସେ ବଡ଼ । ଆହୁରି ବଡ଼ ରିପୁର ଆକର୍ଷଣରେ । ଏଇ କୃଷ୍ଣା ଜୀବନରେ କେତେବେଳେ ଆଶୀର୍ବାଦ ତ କେତେବେଳେ ଅଭିଶାପ । କିନ୍ତୁ ମଣିଷ ଜୀବନରେ ସବୁ ପ୍ରଚେଷ୍ଟା ଆଉ ପୁରୁଷାକାର ପଶ୍ଚାତ୍‌ରେ ବିଧାତାର ମନ୍ଦହାସ ଭଳି ନିୟତି ରହିଛି । ନିୟତିକୁ ବାଦ୍ ଦେଇ କୌଣସି ମଣିଷ ନାହିଁ । ଦୈବୀ ଇଚ୍ଛା ଉପରେ ମଣିଷର କୌଣସି ହାତ ନାହିଁ । କୌଣସି ଶକ୍ତି ନାହିଁ ସେଇ ଇଚ୍ଛାକୁ ଅବମାନନା କରିବ । କହିବାକୁ ଗଲେ ଇହଲୋକର ଭାଗ୍ୟରେ ଦୈବ ଇଚ୍ଛାର ଫଳ ହେଲା କୃଷ୍ଣା ଏବଂ ତାଙ୍କର ପଞ୍ଚସ୍ୱାମୀ । ମୁକ୍ତ ମନରେ ତୁମେ ଏହି ବିବାହର ଆୟୋଜନ କର ।

ବୃଦ୍ଧ ବୟସରେ କନ୍ୟା ପାଇଁ ଉଦ୍‌ବେଗରେ ଦ୍ରୁପଦଙ୍କର ମନ କେମିତି ହେଇଗଲା । ଦୁଇ ହାତରେ ଛାତିକୁ ଚାପିଧରି ଦ୍ରୁପଦ ଉଦ୍‌ଗତ ଯନ୍ତ୍ରଣାକୁ ନିବାରଣ କରିବାକୁ ପ୍ରୟାସ କରିଥିଲେ ।

ଶ୍ରୀକୃଷ୍ଣ ଦ୍ରୁପଦଙ୍କର ମଳିନ ମୁଖକୁ ଚାହିଁ କ୍ଷଣିକପାଇଁ ତୀବ୍ର ବେଦନା ଅନୁଭବ କଲେ ନିଜ ଭିତରେ । ତା'ପରେ ଧୀର ସ୍ୱରରେ କହିଲେ ସଖା ପାଣ୍ଡବମାନଙ୍କ ରାଜନୈତିକ ଅଧିକାର ଲାଭର ମଶାଲଧାରୀ ଭାବେ ଇତିହାସର ପୃଷ୍ଠାରେ ତୁମ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ

ହୋଇ ରହିବ । ବର୍ତ୍ତମାନ ତୁମ ସମ୍ମୁଖରେ ଅନେକ ଦାୟିତ୍ୱ ଓ କର୍ତ୍ତବ୍ୟ ରହିଛି । ତୁଚ୍ଛ ବ୍ୟାପାରରେ ମନକଷ୍ଟ କଲେ କଣ ଆଉ ହେବ ।

ରଥ ପୁଣି ଚାଲିବାକୁ ଲାଗିଲା । ସରସ୍ୱତୀର ଧାରେ ଧାରେ ଯାଉ ଯାଉ ଚଳନ୍ତି ରଥ ଉପରୁ ପ୍ରକୃତିର ମୁଗ୍ଧସୁନ୍ଦର ରୂପକୁ ଉପଭୋଗ କରୁଥିଲେ ଦ୍ରୁପଦ । ଏତେ ଯନ୍ତ୍ରଣା ଭିତରେ ମଧ୍ୟ ପ୍ରକୃତିର ଅପରୂପ ଶୋଭା ତାଙ୍କର ଦେହ ମନକୁ ସ୍ନିଗ୍ଧ କରି ଦେଉଥିଲା ।

କକ୍ଷର ଏକ ପାର୍ଶ୍ୱରେ ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ଶାଗୁଆନକାଠର ମନୋରମ ଆରାମଦାୟକ ଆସନ ଉପରେ ନିଜ ଶରୀରକୁ ଅଜାଡ଼ି ଦେଇ ବସିଥିଲେ କୁରୁପତି ଧୃତରାଷ୍ଟ୍ର । ଅନ୍ୟ ପାର୍ଶ୍ୱରେ ସୁବର୍ଣ୍ଣପଲଙ୍କ ଉପରେ ଉପବେଶନ କରିଥିଲେ ମହାରାଣୀ ଗାନ୍ଧାରୀ । ଦୁହିଁଙ୍କ ମଧ୍ୟରେ କୌଣସି ବାକ୍ୟାଳାପ ହେଉନଥିଲା । ଗାନ୍ଧାରୀ ଦ୍ୱାର ଦେଶକୁ ମୁହଁ ବୁଲାଇ ଚାହିଁଥିଲେ । ଆଖିରେ ଅନ୍ଧପୁଟୁଳି ବାନ୍ଧିବା ପାଇଁ ମୁହଁକୁ ନୁଆଁଇ ରଖିଥିଲେ । ଧୃତରାଷ୍ଟ୍ରଙ୍କ ଦୃଷ୍ଟିହୀନ ଚକ୍ଷୁ ଦୁଇଟି ଗାନ୍ଧାରୀଙ୍କ ଉପରେ ନ୍ୟସ୍ତ ଥିଲା । ଅନ୍ୟମନସ୍କ ଭାବ, ଶୂନ୍ୟଦୃଷ୍ଟି । କ'ଣ ଯେମିତି ଭାବୁଛନ୍ତି । କିଏ ଜାଣେ କ'ଣ ଭାବୁଛନ୍ତି ?

କକ୍ଷ ଭିତରେ ପ୍ରବେଶ କରୁ କରୁ ବିଦୁରଙ୍କ ଛାତି ଥରିଉଠିଲା । ତାଙ୍କର ନିଃଶ୍ୱାସ ପ୍ରଶ୍ୱାସର ମୃଦୁ ଶବ୍ଦ ମଧ୍ୟ ଧୃତରାଷ୍ଟ୍ର ନିଜ ପଞ୍ଚେନ୍ଦ୍ରିୟ ଦେଇ ଅନୁଭବ କରିପାରୁଥିଲେ । ଭିତରେ ଭିତରେ ଅସ୍ଥିରତାର ଢେଉ ବହିଯାଉଥିଲା । ଉତ୍କଣ୍ଠିତ ମନରେ ସେ ପ୍ରଶ୍ନ କଲେ- କିଏ ? ବିଦୁର ? ବିଦୁର ଆସିଛ ? ଆସ ଭାଇ । ମୁଁ ଓ ଗାନ୍ଧାରୀ ତୁମ ପ୍ରତୀକ୍ଷାରେ ହିଁ ବସିଛୁ । ସମୟ କଟୁନି । ବଡ଼ ଦୀର୍ଘ ଓ ଦୁଃସହ ମନେହେଉଛି । ଦୁର୍ଯ୍ୟୋଧନ ଆଉ କର୍ଣ୍ଣ ଫେରିଛନ୍ତି ? ପାଞ୍ଚାଳ ରାଜକନ୍ୟା କାହାକୁ ପ୍ରାପ୍ତ ହେଲେ ? ଦୁର୍ଯ୍ୟୋଧନ ନା କର୍ଣ୍ଣର ?

ବିଦୁର ଆଖିବୁଜି ମଧ୍ୟ ନିଜ ଶରୀରର ଗଭୀରତର ମହାରାଜ ଧୃତରାଷ୍ଟ୍ରଙ୍କର ବ୍ୟଗ୍ର ବ୍ୟାକୁଳ ଜିଜ୍ଞାସାର ପ୍ରତିଟି ଶବ୍ଦର ଝଙ୍କାରକୁ ସ୍ପର୍ଶ କରିଯାଉଥିଲେ । ନିମିଷକ ପାଇଁ ପରଦା ଖୋଲି ସତେକି ଧୃତରାଷ୍ଟ୍ରଙ୍କ ହୃଦୟକୁ ଦେଖିନେଲେ । ତାପରେ ଆଖି ଖୋଲି ବିଦୁର ଟିକିଏ ହସିଲେ । କିନ୍ତୁ ସେଇ ହସକୁ ଦେଖିବାପାଇଁ କାହାର ଆଖି ନ ଥିଲା । ଇତସ୍ତତଃ ଭାବକୁ କଟେଇ ବିଦୁର କହିଲେ, ମହାରାଜ, ସ୍ୱୟଂବର ସଭାରେ ଏକ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଲା । ଯାହା ମୁଁ ଦେଖିଲି, ନିଜ ଆଖିକୁ ବିଶ୍ୱାସ କରିପାରିଲି ନାହିଁ । ବାରୁଣାବତର ଜତୁଗୃହରେ ଆମେ ଯେଉଁ ଛ'ଜଣଙ୍କ ଦଗ୍ଧଶରୀର ଉଦ୍ଧାର କରିଥିଲୁ, ସେ ସବୁ କାହାର ? ପାଞ୍ଚାଳୀର ସ୍ୱୟଂବର ସଭାରେ ବ୍ରାହ୍ମଣମାନଙ୍କ ମଧ୍ୟରେ ପାଞ୍ଚଜଣ ତରୁଣ ବସିଥିଲେ । କିଏ ସେମାନେ ? ନିଜ ଆଖି ନିଜ ସହିତ ବିଶ୍ୱାସଘାତ କଲା କି ଆଉ ? କେମିତି ସବୁ ଗୋଳମାଳିଆ ହେଇଯାଉଛି ମହାରାଜ । ସେଦିନ ବୋଧହୁଏ ମୋର ଦେଖିବାର ଭ୍ରମ ଜନ୍ମିଛି । କିଏ ଜାଣେ ?

ବିଦୂର କ'ଣ ସବୁ କହିଯାଉଛନ୍ତି, କିଛି ବୋଧଗମ୍ୟ ହେଉନଥିଲା ଧୃତରାଷ୍ଟ୍ରଙ୍କର । ସେ ତ ଧୀରସ୍ଥିର ମଣିଷ । ବେଶି କଥା କହିବା କିମ୍ବା ବିତର୍କ କରିବା ତାଙ୍କର ସ୍ୱଭାବ ବିରୁଦ୍ଧ । ତେଣୁ କିଛିକ୍ଷଣ ବିସ୍ମିତ ହୋଇ ତାଙ୍କ ଆଡ଼କୁ ଚାହିଁ ନିରବ ରହିଲେ ସେ । ମନଟା ବିସ୍ୱାଦ ଲାଗୁଥିଲା । ମୁଣ୍ଡ ହଲେଇ ସେ କହିଲେ- ମୁଁ କିଛି ବୁଝିପାରୁନି ?

ଗାନ୍ଧାରୀ ମଧ୍ୟ ଧୃତରାଷ୍ଟ୍ରଙ୍କ ଭଳି ମୁଣ୍ଡ ହଲାଇ ସେଇ କଥା କହିଲେ କ୍ଷୁବ୍ଧ ହୋଇ । ଦେବର, କୌଣସି କଥା ସହଜ ସରଳ ଭାବେ ତୁମେ କହିପାରନା ? ଏଇଟା ଆଜି ନୁହେଁ ସବୁଦିନର ଅଭ୍ୟାସ ତୁମର ।

ଅଧୀର ଉତ୍କଣ୍ଠାରେ ଧୃତରାଷ୍ଟ୍ର ଭିତରେ ଭିତରେ ତାତି ଉଠୁଥିଲେ । ତେଣୁ ଟିକିଏ ରୁଷ୍ଟଗଳାରେ କହିଲେ, 'ମୁଁ ଚାହୁଁଛି ଗୋଟାଏ ଉତ୍ତର, ତୁମେ ଦେଉଛ ଆଉ ଗୋଟିଏ ଉତ୍ତର । ପରିଷ୍କାର କରି କୁହ ପାଞ୍ଚାଳୀ କାହାକୁ ପ୍ରାପ୍ତ ହେଲେ" ?

ବିଦୂର ଅପ୍ରସ୍ତୁତ ଭାବେ ନିରବ ରହିଗଲେ । ତାପରେ କହିଲେ, ମହାରାଜ ମୋତେ ଅବାକ୍ ଲାଗୁଛି, ଦୁର୍ଯ୍ୟୋଧନ ଭଳି ବୀର ଲୌହଶକଟରେ ସୁରକ୍ଷିତ ଥିବା ଗୋଟାଏ ଧନୁ ଆଉ ଶରକୁ ଉଠାଇପାରିଲାନି କାହିଁକି ? କେବଳ ଦୁର୍ଯ୍ୟୋଧନ କାହିଁକି କିଏ ଜଣେ ହେଲେ ସେଇ ମାୟା ଧନୁକୁ ଉଠାଇପାରିଲେନି । କିନ୍ତୁ କର୍ଣ୍ଣ ବେଳକୁ ଆଉ ଗୋଟାଏ ଘଟଣା ଘଟିଲା । ଲୌହଶକଟର ଚତୁଃପାର୍ଶ୍ୱ ପ୍ରଦକ୍ଷିଣ କରି କର୍ଣ୍ଣ ଯେତେବେଳେ ଧନୁଶର ଉଠାଇବାକୁ ଯାଉଛନ୍ତି... ଠିକ୍ ସେତିକିବେଳେ କୃଷ୍ଣା ଘୋଷଣା କଲେ ଯେ, ସୂତପୁତ୍ରଙ୍କୁ ମୁଁ କେବେହେଲେ ବରଣ କରିବି ନାହିଁ । ଅପମାନରେ କର୍ଣ୍ଣଙ୍କ ମଥାନତ ହେଇଗଲା । ମୁଖ ଲଜ୍ଜାରେ ଆରକ୍ତ ହୋଇଉଠିଲା । ଆହା କି ରୂପ ! ତଥାପି ବୀରର ମଳିନ ମୁଖମଣ୍ଡଳରେ ଲାଖିହେଇ ରହିଥିଲା ଗୋଟିଏ ବିଷଣ୍ଣ ହସ । କର୍ଣ୍ଣଙ୍କ ସେଇ ହସ ଓ ଚାହାଣି ମୁଁ କେବେ ଭୁଲିପାରିବିନି ମହାରାଜ । କର୍ଣ୍ଣଙ୍କ ପାଇଁ ମୋର ଭୀଷଣ କଷ୍ଟ ହେଲା ।

ଧୃତରାଷ୍ଟ୍ରଙ୍କର ଦୀର୍ଘଶ୍ୱାସ ପଡ଼ିଲା । ଗାନ୍ଧାରୀ ଗମ୍ଭୀର ହୋଇ ନିରବ ରହିଲେ । ଦୁହିଁଙ୍କ ମୁହଁରେ ଦୁଃଶ୍ଚିନ୍ତାର ବାଦଲ । ବିଦୂର ଲକ୍ଷ୍ୟ କରିପାରିଥିଲେ ସେଇଟା । କିନ୍ତୁ ଆଶ୍ଚର୍ଯ୍ୟର କଥା, ବିଦୂର ଭିତରେ ଭିତରେ କେମିତି ଗୋଟାଏ ଭୟରେ ଆତଙ୍କିତ ହେଇଉଠୁଥିଲେ । ନିଜ ଭିତରର ଏଇ ପରିବର୍ତ୍ତନରେ ନିଜେହିଁ ସେ ଅବାକ୍ ହୋଇଯାଇଥିଲେ । ବେଶ୍ କିଛି ସମୟ ନିରବତାରେ କଟିଗଲା ପରେ, ଗମ୍ଭୀର ମୁଖରେ ଧୃତରାଷ୍ଟ୍ର ପଚାରିଲେ 'ତା'ହେଲେ କୃଷ୍ଣା କାହାର ଉପଲବ୍ଧ ହେଲେ ?'

ବିଦୂର ଖୁବ୍ ସହଜ ଭାବେ ଉତ୍ତର ଦେଲେ- କୌରବଙ୍କର । ହସ୍ତିନାପୁରର ରାଜଲକ୍ଷ୍ମୀ ହେଲେ ସେ ।

ଚମକି ଉଠିଲେ ଧୃତରାଷ୍ଟ୍ର । କୌରବର ? ତାଙ୍କ ଭିତରେ ଗୋଟାଏ ପ୍ରତିକ୍ରିୟା ଆରମ୍ଭ ହେଇଯାଇଥିଲା । ଏଇ ମୁହୂର୍ତ୍ତରେ...ବର୍ତ୍ତମାନ... ନିଜ ଭିତରେ ସେ ଥରିଉଠୁଥିଲେ । ସର୍ବାଙ୍ଗରେ ଏକ ଅବ୍ୟକ୍ତ ଆନନ୍ଦର ଯନ୍ତ୍ରଣା । ବ୍ୟସ୍ତ ବ୍ୟାକୁଳ କଣ୍ଠରେ ଉଚ୍ଚାରଣ କଲେ, ସେଇ ଭାଗ୍ୟବାନ୍ କଣ ତା'ହେଲେ ଦୁଃଶାସନ ? ବିଦୂର ଏ କଥାର କୌଣସି ଜବାବ ଦେଲେ ନାହିଁ । ମନକୁ ମନ ଟିକିଏ ହସିଦେଲେ । ସାମାନ୍ୟ ଟିକିଏ କଥା, ହେଲେ ମଣିଷର ମନ ଭିତରେ କେତେବଡ଼ ଗୋଟାଏ ଝଡ଼ ସୃଷ୍ଟି କରିଦେଇପାରେ । ତା ସଙ୍ଗେ ସଙ୍ଗେ ନିଜ ସହିତ ମଧ୍ୟ ଦୂରତ୍ୱ ରଚନା କରି ଅନ୍ୟର ଗଭୀରତମ ପ୍ରଦେଶରେ ଭାଷାକୁ ଆଶ୍ଚର୍ଯ୍ୟ ଭାବେ ପହୁଞ୍ଚେଇ ଦେବାର ଅଭିନବ କୌଶଳ ମଧ୍ୟ ତାଙ୍କୁ ଜଣା । ବିଦୂର ନିଜର ସ୍ନେହମୟ ହସ୍ତ ଧୃତରାଷ୍ଟ୍ରଙ୍କ କେଶରାଶି ଭିତରେ ଧୀରେ ଅତି ଧୀରେ ସଞ୍ଚାଳନ କରିବାକୁ ଲାଗିଲେ । ତା'ପରେ ଧୀର କଣ୍ଠରେ କହିଲେ, ବ୍ରାହ୍ମଣମାନଙ୍କ ଆସନରୁ ଜଣେ ତରୁଣ ଉଠିଆସିଲା ଏବଂ ସେ ହିଁ ବୀର୍ଯ୍ୟଶୁଳ୍କା ପାଞ୍ଚାଳୀଙ୍କୁ ଜୟ କରିନେଲା ।

ଧୃତରାଷ୍ଟ୍ର ନିଜ ଭିତରେ ଟିକିଏ ଶୀତଳତା ଅନୁଭବ କଲେ । କାରଣ ଭିତରଟା ତାଙ୍କର ଅପମାନରେ ପୋଡ଼ି ଯାଉଥିଲା । ଦୀର୍ଘଶ୍ୱାସ ତ୍ୟାଗକରି କହିଲେ- ବ୍ରାହ୍ମଣ ?

ବିଦୂର ଟିକିଏ ହସିବା ପାଇଁ ଚେଷ୍ଟା କଲେ । କହିଲେ, ଜଣେ ନୁହଁ, ସମଗ୍ର ସ୍ୱୟଂବର ସଭାର ମଧ୍ୟ ଏହି ପ୍ରଶ୍ନ, କିଏ ଏଇ ବ୍ରାହ୍ମଣ ? ଦ୍ରୁପଦଙ୍କର ମଧ୍ୟ ବିସ୍ମୟର ଅନ୍ତ ନ ଥିଲା । ବିଜୟୀ ବ୍ରାହ୍ମଣ ପାର୍ଶ୍ୱରେ ଏହି ସ୍ୱାସ୍ଥ୍ୟବାନ୍, ବିଶାଳ ବପୁ ଯୁବାପୁରୁଷଟି କିଏ ? ବ୍ରାହ୍ମଣଙ୍କ ଧାଡ଼ିରେ ତିନିଜଣ ବ୍ରାହ୍ମଣ ଯୁବକ ଉତ୍‌ଫୁଲ୍ଲିତ ହୋଇ ନୃତ୍ୟ କରୁଥିଲେ । ସେମାନେ ବା କିଏ ? ଦେବୀ ! ଆମ ସମସ୍ତଙ୍କ ମନ ଆନ୍ଦୋଳିତ ହେଇଉଠିଲା । ଜତୁଗୃହରେ ତା'ହେଲେ ପାଣ୍ଡବମାନେ ଦଗ୍‌ଧ ହୋଇ ନାହାନ୍ତି ? ପାଞ୍ଚାଳୀ-ଜୟଲବ୍‌ଧ ଏହି ବିପ୍ରଜଣକ ଯେ ଅର୍ଜୁନ ସେଥିରେ ଆଉ ସନ୍ଦେହ ନଥିଲା ଦେବୀ !

ଧୃତରାଷ୍ଟ୍ର ଉତ୍ତେଜିତ ହୋଇ ଆସନରେ ସିଧାସଳଖ ବସିପଡ଼ିଲେ ଓ ତ୍ରସ୍ତ ଭାବେ ପ୍ରଶ୍ନ କଲେ, ପାଣ୍ଡବମାନେ ଜୀବିତ ?

ଧୃତରାଷ୍ଟ୍ରଙ୍କ ମୁଖମଣ୍ଡଳରେ ଭୟ ଓ ଆତଙ୍କ । କିଭଳି ଗୋଟିଏ ଅସ୍ଥିରତା ତାଙ୍କ ଭିତରଟାକୁ ଚଞ୍ଚଳ କରିପକାଉଥିଲା । ଧୃତରାଷ୍ଟ୍ରଙ୍କର ଏଇ ଭାବାନ୍ତର ଲକ୍ଷ୍ୟ କରି ବିଦୂର ହସିଉଠିଲେ ଏବଂ ଭାବିଲେ ମଧ୍ୟ ଟିକିଏ । କହିଲେ, କର୍ଣ୍ଣ ହିଁ ତାଙ୍କର ପ୍ରତିଦ୍ୱନ୍ଦ୍ୱୀଙ୍କୁ ଚିହ୍ନି ପାରିଲେ । ବାସ୍ତବ ସତ୍ୟ କଥାକୁ ସେ ହିଁ କହିପାରିଲେ । ଦ୍ରୁପଦ ଜାଣିଶୁଣି ରାଜନ୍ୟବର୍ଗଙ୍କୁ ଅପମାନିତ କରିଛନ୍ତି । ପାଣ୍ଡବମାନେ ବଞ୍ଚିଛନ୍ତି । ଏହି ସତ୍ୟକୁ ପ୍ରକାଶ କରିବାପାଇଁ କେବଳ ଏତେ ସବୁ ଆୟୋଜନର ଆଡ଼ମ୍ବର । କନ୍ୟାପଣର ସର୍ତ୍ତ ମଧ୍ୟ ବିଚିତ୍ର ଥିଲା । ସବୁ ପାଣ୍ଡବଙ୍କ ସ୍ୱାର୍ଥ ପାଇଁ ଏବଂ ସେମାନଙ୍କର ନିରାପଦ ଆତ୍ମପ୍ରକାଶର ଏହି ପଟ୍ଟଭୂମି ଦ୍ରୁପଦଙ୍କ ଦ୍ୱାରା ସୃଷ୍ଟ ।

'ଠିକ୍ କହିଛ, ଠିକ୍ କହିଛ'- ମନକୁ ମନ ଉଚ୍ଚାରଣ କଲେ ଧୃତରାଷ୍ଟ୍ର । ତା'ପରେ ଟିକିଏ ଗମ୍ଭୀର ଓ ମ୍ଲାନ ମୁଖରେ କହିଲେ, କିନ୍ତୁ ବିଦୂର, ପାଣ୍ଡବମାନଙ୍କୁ ତ କେବେ ଶତ୍ରୁର ଦୃଷ୍ଟିରେ ମୁଁ ଦେଖିନି । ସେମାନଙ୍କର କୌଣସି ଅନିଷ୍ଟ ମଧ୍ୟ ଚିନ୍ତା କରିନି । ତଥାପି ଲୋକଚକ୍ଷୁରେ ମୋତେ ସେମାନେ ଅପରାଧୀ କରି ଥୋଇଲେ । ଜତୁଗୃହରୁ ପରିତ୍ରାଣ ପାଇ ସେମାନେ ହସ୍ତିନା ଫେରିଲେ ନାହିଁ କାହିଁକି ? ଆତ୍ମଗୋପନ କରିବାର ଉଦ୍ଦେଶ୍ୟ କ'ଣ ଥିଲା ? ତେବେ କ'ଣ ବୁଝିବାକୁ ହେବ ଯେ, ଭିତରେ ଭିତରେ ସେମାନେ ସଂଗଠିତ ହୋଇ କୌଣସି ରାଜନୈତିକ ଅଭ୍ୟୁତ୍ଥାନ ଘଟାଇବା ପାଇଁ ଆତ୍ମଗୋପନ କରି ରହିଥିଲେ ? ଦ୍ରୁପଦଙ୍କର ଛତ୍ରଛାୟାରେ ଏହି ପ୍ରକାର ଆତ୍ମପ୍ରକାଶ ତାଙ୍କର ଗୌରବକୁ କିଛି ବଢ଼େଇନି ବରଂ ସତ୍ୟକୁ ପ୍ରକାଶ କରିଛି । ସେମାନେ ହସ୍ତିନାପୁର ସହିତ ବିରୋଧ ଚାହାନ୍ତି । ହସ୍ତିନା ରାଜସିଂହାସନକୁ ନେଇ ରାଜନୈତିକ ପ୍ରତିଦ୍ୱନ୍ଦ୍ୱିତା ଭିତରକୁ ଅବତୀର୍ଣ୍ଣ ହେବାର ଏହା କେବଳ ସୂଚନା ମାତ୍ର । ଦ୍ରୁପଦ ନିଜ ପ୍ରତିହିଂସା ଚରିତାର୍ଥ କରିବାକୁ ଯାଇ ପାଣ୍ଡବମାନଙ୍କ ରାଜନୈତିକ ଉଚ୍ଚାକାଂକ୍ଷାକୁ ପ୍ରୋତ୍ସାହିତ କରିଛନ୍ତି । ପାଣ୍ଡୁ ପୁତ୍ରମାନଙ୍କର ଏଇ ଆସ୍ପର୍ଦ୍ଧାରେ ମୁଁ ବିଚଳିତ ।

ବିଦୂର କିଛି ସମୟ ପାଇଁ ମଥାପୋତି କଥାଗୁଡ଼ାକୁ ସଜାଡ଼ି ନେଲେ । ତାପରେ କହିଲେ, ମହାରାଜଙ୍କର କ୍ଷୋଭ ହେବା ସ୍ୱାଭାବିକ । ହେଲେ ସବୁ ପଛରେ କିଛି ନା କିଛି କାରଣ ଥାଏ । ହୁଏତ ଏହି ଘଟଣା ପାଇଁ ଆମେ ଦାୟୀ ହୋଇଥିବା ।

ଧୃତରାଷ୍ଟ୍ରଙ୍କ ଭୂଲତା କୁଞ୍ଚି ହେଇଗଲା । ଦୀର୍ଘଶ୍ୱାସଟିଏ ପକାଇ ସେ ପଚାରିଲେ ତାର ଅର୍ଥ କଣ ବିଦୂର ?

ବିଦୂର କିଞ୍ଚିତ୍ ଭ୍ରୂକ୍ଷେପ ନ କରି କହିଲେ, ସବୁବେଳେ ମୁଁ ସତ୍ୟ କହିଆସିଛି, ହିତୈଷୀ ହୋଇଛି । ଧର୍ମପଥରେ ଚାଲିଛି । ଆଜି ସମସ୍ତେ ଜାଣନ୍ତି କୁରୁବଂଶ ଭାଗ ହେଇଯାଇଛି । ପାଣ୍ଡୁପୁତ୍ରମାନେ, ପାଣ୍ଡବ ନାମରେ ପରିଚିତ ହେଲେ କାହିଁକି ? ଖୁବ୍ କୌଶଳତାର ସହ ପାଣ୍ଡବମାନଙ୍କୁ କୁରୁବଂଶରୁ ଅଲଗା କରି ଦିଆଗଲା । ସେମାନେ କେହି କୌରବ ବଂଶର ହେଲେନି । ଏକଥା ବୁଝାଇବାପାଇଁ ତାଙ୍କୁ ବାରୁଣାବତ ପଠାଇ ଦିଆଯାଇଥିଲା ।

ଅସ୍ୱସ୍ତି ଭିତରେ ଧୃତରାଷ୍ଟ୍ର କୌଣସି କଥା କହିପାରିଲେ ନାହିଁ କିଛି ସମୟ ପର୍ଯ୍ୟନ୍ତ । ଅବାକ୍ ହେଇଯିବାର ଅଭିନୟ କରି କହିଲେ 'ଏସବୁ ତୁମର କଳ୍ପନା ବିଦୂର । ସେମାନେ ତ ମୋର ସ୍ନେହପାତ୍ର । ସେମାନଙ୍କୁ ଅନ୍ୟ ଦୃଷ୍ଟିରେ ମୁଁ ଦେଖିନି କେବେ' ।

ବିଦୂର ଟିକିଏ ହସିଲେ । ମଣିଷ ମଣିଷ ଭିତରେ କୌଣସି ସ୍ଥାୟୀ ସଂପର୍କ ନାହିଁ । ଆତ୍ମୀୟତା ଗୋଟାଏ ସଂସ୍କାର ମାତ୍ର । ମୁଁ ଏଇ ଜୀବନରେ ତାର ବହୁବାର ପରୀକ୍ଷା କରିଛି । ଟିକିଏ ଆଗରୁ ମହାରାଜାଙ୍କ ପ୍ରଶ୍ନ ଥିଲା- ପାଞ୍ଚାଳୀ କାହାର ଜୟଲବ୍ଧା ହେଲେ ? ମୁଁ

କହିଲି କୌରବର । ହସ୍ତିନାପୁର ରାଜଲକ୍ଷ୍ମୀ ସେ । ବିପ୍ରବେଶୀ ଯେଉଁ ଯୁବକ ଲକ୍ଷ୍ୟଭେଦ କରିବାରେ ସମର୍ଥ ହୋଇଥିଲା ତାକୁ ନିରୁଦ୍ଦିଷ୍ଟ ପାଣ୍ଡବଙ୍କ ଭିତରୁ ଜଣେ ବୋଲି ମନେ ହେଲାନି କାହିଁକି ? ମୁଁ ତ କେବେ ଜ୍ୟେଷ୍ଠଙ୍କ ସହିତ ରସିକତା କରେ ନାହିଁ । ରାଜାର ପ୍ରାପ୍ୟ ମର୍ଯ୍ୟାଦା ହିଁ ସବୁବେଳେ ଦେଇଥାଏ । ତେବେ ପାଞ୍ଚାଳୀକୁ ହସ୍ତିନାପୁର ରାଜଲକ୍ଷ୍ମୀ ବୋଲି ମାନିନେବାରେ ଆପଣ ଏତେ ବିଚଳିତ କାହିଁକି ? ବାସ୍ତବରେ କହିବାକୁ ଗଲେ ଆପଣଙ୍କ ହୃଦୟରେ ସେମାନଙ୍କ ପାଇଁ କିଛି ସ୍ଥାନ ନାହିଁ । ପାଣ୍ଡବମାନେ ନିଜ ଅନୁଭୂତିରୁ ହୁଏତ ସେକଥା ଉପଲବ୍‌ଧି କରିଛନ୍ତି । ସେମାନେ ହସ୍ତିନାପୁର ପାଇଁ ପର, ଏଇ ବଂଶର କେହି ନୁହନ୍ତି । ତେଣୁ ସେମାନଙ୍କର ମୋହଭଙ୍ଗ ହେଇଛି । ମାୟା ମମତା ନ ରହିବା କିଛି ଆଶ୍ଚର୍ଯ୍ୟ ନୁହେଁ । ହଠାତ୍ ଘରର ଛାତ ଉଡ଼ିଗଲେ ମଣିଷକୁ ଯେମିତି ଅସହାୟ ଲାଗେ, ସେମିତି ବାରୁଣାବତ ଯାଇ ସେମାନଙ୍କୁ ଲାଗିଥିବ ଯେ, ସେମାନେ ହସ୍ତିନାପୁରରୁ ବିଚ୍ଛିନ୍ନ ହେଇଗଲେ । ସେଥିପାଇଁ ହୁଏତ ଅଭିମାନରେ ଜତୁଗୃହ ଭିତରୁ ଉଦ୍ଧାର ପାଇ ପିତୃବ୍ୟଙ୍କ ନିକଟକୁ ଆସି ନାହାନ୍ତି । ଆପଣ ମୋ ଉପରେ, ପିତୃବ୍ୟ ଭୀଷ୍ମଙ୍କ ଉପରେ ଅଭିମାନ କରି ହୁଏତ ସେମାନେ ନୂଆ ବନ୍ଧୁ ଅନ୍ୱେଷଣରେ ଲାଗିଛନ୍ତି । ନିଜ ପୌରୁଷ ବଳରେ ଭାଗ୍ୟକୁ ଫେରେଇ ଆଣିବାକୁ ଚାହୁଁଛନ୍ତି । ଏହାକୁ ଦୋଷଗୁଣ ନ କହି ଅଭିମାନ ବୋଲି କହିଲେ ଠିକ୍ ହେବ ।

ପାଣ୍ଡବଙ୍କ ପ୍ରତି ଧୃତରାଷ୍ଟ୍ର ସେଭଳି କିଛି କର୍ତ୍ତବ୍ୟ କରିନଥିବାରୁ ଭିତରେ ଭିତରେ ନିଜକୁ ଅପରାଧୀ ମନେକଲେ । କେମିତି ଗୋଟାଏ ଅସ୍ୱସ୍ତି ଲାଗିଲା । ତୀବ୍ର ଅପମାନରେ ଛାତି ଫାଟିପଡୁଥିଲା । ଟିକିଏ ବିଦୂର ମୁହଁକୁ ଚାହିଁ ହଠାତ୍ ମୁହଁ ବୁଲେଇ ଥମ୍ ଥମ୍ ହୋଇ କହିଲେ, ଯଦି ମୋତେ ଦୋଷୀ ଭାବି ତୁମକୁ ଟିକିଏ ସ୍ୱସ୍ତି ଲାଗୁଛି ତ ଠିକ୍ ଅଛି, ସେଇୟା ହେଉ ।

ବିଦୂର ତତ୍‌କ୍ଷଣାତ୍ ଉତ୍ତର ଦେଲେ, ଠିକ୍ ଏଭଳି ଗୋଟିଏ ନିର୍ବିକାର ଔଦାସୀନ୍ୟରେ ଆପଣ ସେମାନଙ୍କୁ ଦୂରେଇ ଦେଇଛନ୍ତି । ଅକୃତଜ୍ଞତା ପାଣ୍ଡବମାନଙ୍କ ସ୍ୱଭାବ ନୁହଁ । ସେମାନେ ଆତ୍ମମର୍ଯ୍ୟାଦାସଂପନ୍ନ ମଣିଷ ବୋଲି ହସ୍ତିନାପୁର ନିକଟରେ କେବେ କୌଣସି ପ୍ରାର୍ଥନା କରି ନାହାନ୍ତି ।

ତୀକ୍ଷ୍ଣ କଣ୍ଠରେ ଧୃତରାଷ୍ଟ୍ର କହିଲେ, ମୋତେ ଅସମ୍ମାନ ଆଉ ଅପଦସ୍ତ କରିବା ପାଇଁ ସେମାନେ ବାରୁଣାବତରେ ନିଆଁ ଲଗାଇ ଦେଇ ନିଜେ ଖସିଯାଇଛନ୍ତି । ମୋର ଗୌରବ, ମର୍ଯ୍ୟାଦାକୁ କଳଙ୍କିତ କରି ସେମାନେ ହସ୍ତିନାପୁରର ଶତ୍ରୁ ଦ୍ରୁପଦ ନିକଟରେ କୃପା ପ୍ରାର୍ଥୀ ହେଇଛନ୍ତି । ତାପରେ ସହସା ଗୋଟିଏ ଦୀର୍ଘଶ୍ୱାସ ପକାଇ ବିଷଣ୍ଣ କଣ୍ଠରେ କହିଲେ- ମଣିଷ ନିକଟରେ ସବୁଠାରୁ ବଡ଼ ବେଦନା ବୋଧହୁଏ ପ୍ରିୟଜନ ନିକଟରୁ ଅକାରଣରେ ଆଘାତ

ପାଇବାର ବେଦନା । ମୁଁ ଜାଣେ ତୁମେ ଆମଠାରୁ ଅଧିକ ପାଣ୍ଡବମାନଙ୍କୁ ଶ୍ରଦ୍ଧା କର, ଭଲପାଅ । କିନ୍ତୁ ଏତେ ମାତ୍ରାରେ ସେମାନେ ସ୍ନେହର ପାତ୍ର ନୁହନ୍ତି । ତୁମେ ମଧ ନିଶ୍ଚୟ ବୁଝିପାରୁଥିବ ଯେ, ପାଣ୍ଡବମାନେ ଯାହା କଲେ ସେଥିରେ ହସ୍ତିନାପୁରର ମାନସମ୍ମାନରେ ଆଞ୍ଚ ଆସିଲା । ଆଉ ମୋତେ ମଧ ଲୋକଚକ୍ଷୁରେ ଚୂଡ଼ାନ୍ତ ଭାବେ ଅପମାନିତ ହେବାକୁ ପଡ଼ିଲା । ମୁଁ ସେମାନଙ୍କର ଶତ୍ରୁ, ଆତ୍ମପ୍ରକାଶର ବିଘ୍ନ । ଏହି ଧାରଣା ନେଇ ତ ବାହାର ରାଜ୍ୟର ମଣିଷମାନେ ଫେରିଗଲେ । ଏହାପରେ ଯଦି ଅସନ୍ତୁଷ୍ଟ ହୋଇ ରାଜସିଂହାସନର ଅଧିକାର ସେମାନଙ୍କ ହାତରେ ଛାଡ଼ି ନ ଦେଉଛି ତାପରେ ତୁମେ ଅସନ୍ତୁଷ୍ଟ ହେବ ।

ବିଦୂର ସ୍ତବ୍ଧ ହେଇଗଲେ ମୁହୂର୍ତ୍ତକ ପାଇଁ । ଧୃତରାଷ୍ଟ୍ର ଇଚ୍ଛା କରି ତାଙ୍କ ମନର ଗତିବିଧି ଜାଣିବା ପାଇଁ ପ୍ରଶ୍ନଟା ତାଙ୍କ ଆଡ଼କୁ ଛାଡ଼ି ଦେଇଛନ୍ତି । ବର୍ତ୍ତମାନ ସେ କଣ କହିବେ ? ତାଙ୍କ ମୁଣ୍ଡ ଝାଇଁ ଝାଇଁ କରିଗଲା ।

ବିଦୂର ଜାଣନ୍ତି ଧୃତରାଷ୍ଟ୍ର ଦୁର୍ବଳ ପ୍ରକୃତିର ମଣିଷ ନୁହନ୍ତି । ଅନ୍ୟକୁ କଥା ଛଳରେ କଥାର ଜାଲରେ ନିଜ ଆୟତ୍ତକୁ ଆଣିବାରେ ଧୃତରାଷ୍ଟ୍ର ଜଣେ ଚମତ୍କାର ଖେଳୁଆଡ଼ । ଧୃତରାଷ୍ଟ୍ରଙ୍କର ଏଭଳି ଚତୁର କୂଟନୈତିକ ପ୍ରଶ୍ନରେ ସେ ଅବଶ୍ୟ ମୁହୂର୍ତ୍ତେ ଅଟକି ଗଲେ । ଦୀର୍ଘଶ୍ୱାସ ତ୍ୟାଗ କରି ଏବଂ ନିରବତା ଭଙ୍ଗକରି କହିଲେ- 'ସେମାନଙ୍କ ଉପରେ ଏତେ ନିଷ୍ଠୁର ହୁଅନ୍ତୁ ନାହିଁ ମହାରାଜ, ଆପଣ କଠିଣ ହେଲେ ସେମାନେ କୋଉଠି ଠିଆ ହେବେ ? ବିଦୂରଙ୍କ କଣ୍ଠସ୍ୱର ଟିକିଏ ଦୁର୍ବଳ ଶୁଭିଲା ।

## ।। ନଅ ।।

ବିଦୂର ଏବଂ ଶ୍ରୀକୃଷ୍ଣଙ୍କ ମଧ୍ୟସ୍ଥତାରେ ଧୃତରାଷ୍ଟ୍ର ହସ୍ତିନାପୁର ବାହାରେ ଯମୁନା ତୀରବର୍ତ୍ତୀ ବିସ୍ତୀର୍ଣ୍ଣ ଅରଣ୍ୟାଞ୍ଚଳ ଖାଣ୍ଡବ ବନରେ ଯୁଧିଷ୍ଠିରଙ୍କ ନୂତନ ରାଜ୍ୟ ସ୍ଥାପନର ଅନୁମତି ପ୍ରଦାନ କଲେ । ଶ୍ରୀକୃଷ୍ଣ ପରାମର୍ଶ ଓ ଉତ୍ସାହରେ ଭାରତର ଶ୍ରେଷ୍ଠ ସ୍ଥପତିମୟ ଦାନବର ପରିକଳ୍ପନାରେ ଏବଂ ପାଣ୍ଡବଙ୍କ ଉଦ୍ୟୋଗରେ ନୂତନ ରାଜ୍ୟ ଓ ତାର ରାଜଧାନୀ ଇନ୍ଦ୍ରପ୍ରସ୍ଥ ବିଶ୍ୱର ଏକ ଶ୍ରେଷ୍ଠ ନଗରୀ ଭାବେ ପରିଗଣିତ ହେଲା । ନବନିର୍ମିତ ରାଜ୍ୟର ଅଧୀଶ୍ୱର ଯୁଧିଷ୍ଠିରଙ୍କ ଖ୍ୟାତି ଓ ଗୌରବ ଯେତିକି ବ୍ୟାପ୍ତ ହେବାକୁ ଲାଗିଲା, ସେତିକି ମାତ୍ରାରେ ଦେଶଦେଶାନ୍ତରରୁ ବହୁ ଶ୍ରେଣୀର, ବହୁ ବର୍ଣ୍ଣର ମଣିଷ ଆସି ସେଠାରେ ବସବାସ କରିବାକୁ ଲାଗିଲେ । ଖୁବ୍ କମ୍ ସମୟ ମଧ୍ୟରେ ଇନ୍ଦ୍ରପ୍ରସ୍ଥ ଏକ ବିରାଟ ଜନପଦରେ ପରିଣତ ହେଲା ।

ଦେଖୁ ଦେଖୁ ଇନ୍ଦ୍ରପ୍ରସ୍ଥର ବୟସ ହେଇଗଲା କୋଡ଼ିଏ ବର୍ଷ । ଦ୍ରୌପଦୀ ବିବାହ ପରେ ପାଣ୍ଡବଙ୍କ ଜୀବନରେ ଆହୁରି ପଚିଶ ବର୍ଷ ବିତିଗଲା । ଯୁଧିଷ୍ଠିର କୋଡ଼ିଏ ବର୍ଷ ରାଜତ୍ୱ କଲେ । ବର୍ତ୍ତମାନ ଇନ୍ଦ୍ରପ୍ରସ୍ଥ ଆଉ ଶିଶୁ ଅବସ୍ଥାରେ ନ ଥିଲା । ଐଶ୍ୱର୍ଯ୍ୟ, ପ୍ରାଚୁର୍ଯ୍ୟ, ସମୃଦ୍ଧି ଓ ବ୍ୟାପ୍ତିରେ ତା ଯୌବନ ଢଳଢଳ । ସୁଖ ସମୃଦ୍ଧିରେ ସେ ସମଗ୍ର ଭାରତର ରାଜ୍ୟଗୁଡ଼ିକୁ ପରିବ୍ୟାପ୍ତ ହୋଇଗଲା । ଭୀମ ଅର୍ଜୁନ ଭଳି ବୀର ତାର ଅଛନ୍ତି । ସେମାନଙ୍କ ଦ୍ୱାରା ସୁଗଠିତ ଓ ସୁଶିକ୍ଷିତ ଚତୁରଙ୍ଗ ସେନା ମଧ୍ୟ ଅଛନ୍ତି ଇନ୍ଦ୍ରପ୍ରସ୍ଥର ବିଶ୍ୱସ୍ତ ପ୍ରହରୀ ହୋଇ । ତଥାପି ଯୁଧିଷ୍ଠିର କେବେ ପ୍ରୟାସ କରି ନାହାନ୍ତି କୌଣସି ବିଶାଳ ରାଜ୍ୟ ଆକ୍ରମଣ କରି ଇନ୍ଦ୍ରପ୍ରସ୍ଥର ରାଷ୍ଟ୍ରଭୁକ୍ତ କରିବା ପାଇଁ । କିନ୍ତୁ ଇନ୍ଦ୍ରପ୍ରସ୍ଥ ବାହାରେ ଏବଂ ଖୁବ୍ ନିକଟରେ କିଛି କିଛି ରାଜ୍ୟ ପାରସ୍ପରିକ ପ୍ରୀତି ଆଉ ମୈତ୍ରୀର ସହଯୋଗୀ ଭାବ ନେଇ ଯୁଧିଷ୍ଠିରଙ୍କ ସହିତ ନିଜ ନିଜର କ୍ଷୁଦ୍ର ପରିସୀମାରେ ବସବାସ କରି ରହିବାକୁ ଲାଗିଲେ ।

ରାଜ୍ୟ ଓ ରାଜନୀତିରେ ଯୁଧିଷ୍ଠିରଙ୍କ ଏଇ ନିର୍ଲିପ୍ତ ଓ ନିରାଡ଼ମ୍ବର ମନୋଭାବ ବ୍ୟାସଦେବଙ୍କୁ ଚିନ୍ତାରେ ପକାଇଲା । ଯେତିକି ସେ ଭାବିବାକୁ ଲାଗିଲେ ସେତିକି ଆନନ୍ଦ ବିଷାଦରେ ଆନ୍ଦୋଳିତ ହେବାକୁ ଲାଗିଲା ତାଙ୍କ ହୃଦୟ । ଆଖି ଆଗରେ ଗୋଟାଏ ଅନ୍ତହୀନ ସମୟ ବଡ଼ ମନ୍ଥର ଗତିରେ ଚାଲିଗଲା କେତେବେଳେ । ପାଣ୍ଡବମାନଙ୍କୁ ରାଜପଦରେ

ଅଭିଷିକ୍ତ କରି ଧୃତରାଷ୍ଟ୍ରଙ୍କ ଉପରେ ଅମ୍ବିକା-ଅପମାନର ଲାଞ୍ଛନାଜନିତ ପ୍ରତିଶୋଧ ନେବାପାଇଁ କେତେ ସ୍ୱପ୍ନ ଓ ପ୍ରତ୍ୟାଶା ନ ଥିଲା ତାଙ୍କ ମନରେ ? ଯେତେଦିନ ଗତ ହେବାକୁ ବସିଲା, ସେତିକି ମାତ୍ରାରେ ହତାଶା ବଢ଼ିବାକୁ ଲାଗିଲା । ମନ ଭରି ଉଠିଥିଲା ବିଷାଦରେ । ଆହୁରି କେତେ କାଳ ତାଙ୍କୁ ଅପେକ୍ଷା କରିବାକୁ ପଡ଼ିବ ? ଆହୁରି କେତେ କାଳ ? ଅଦୃଷ୍ଟ ଭାବି ଯାହାକୁ ନିଶ୍ଚିନ୍ତ ଥିଲେ, ସିଏ କଣ ତାଙ୍କର ମନଗଢ଼ା କଳ୍ପନା ? ସେଥିରେ କିଛି ସତ୍ୟ ନାହିଁ ?

ବ୍ୟାସଦେବଙ୍କୁ ଚେଷ୍ଟା କରିବାକୁ ପଡ଼ିଲା ନାହିଁ । ପ୍ରଶ୍ନର ଉତ୍ତର ତାଙ୍କ ନିଜ ଭିତରୁ, ଅନ୍ତରରୁ ଝଂକୃତ ହେଲା । ପାଣ୍ଡବମାନଙ୍କ ସମସ୍ତ କାର୍ଯ୍ୟକଳାପ ଆଶ୍ଚର୍ଯ୍ୟଜନକ ମନେହେଲା । ଦେଶ, ଜାତି, ରାଷ୍ଟ୍ର ଓ କୁଳର ଗୌରବ, ସୁନାମ ରକ୍ଷା ପାଇଁ ଗଣତାନ୍ତ୍ରିକ ଆଦର୍ଶକୁ ସର୍ବଭାରତୀୟ କରିବାପାଇଁ ଦାୟିତ୍ୱ ଦେଇ ଅର୍ଜୁନଙ୍କୁ ଇନ୍ଦ୍ରପ୍ରସ୍ଥ ବାହାରକୁ ପଠାଇଦେଲେ ଯୁଧିଷ୍ଠିର । ନିର୍ବାନ୍ଧବ ପାଣ୍ଡବଙ୍କର ମିତ୍ର ଓ ଅସ୍ତ୍ର ସଂଗ୍ରହର କୌଶଳ ଯା'ଠାରୁ ଅଧିକା କିଛି ନ ଥିଲା । ଅଥଚ ଲୋକେ ଜାଣିଲେ ପଞ୍ଚଭ୍ରାତା କୃଷ୍ଣା ସହିତ ପର୍ଯ୍ୟାୟକ୍ରମେ ସହବାସର ଯେଉଁ ନିୟମ ଓ ସର୍ତ୍ତାରୋପଣ କରିଥିଲେ, ଅର୍ଜୁନ ତାହା ଭଙ୍ଗ କରିବାରୁ ବନକୁ ନିର୍ବାସିତ ହେଇଗଲେ । କୃଷ୍ଣା ବିଜୟୀ ଅର୍ଜୁନ, ପାଣ୍ଡବଙ୍କ ଗୌରବ, ଗର୍ବ ଭରସା ଓ ଶକ୍ତି । ଯୁଧିଷ୍ଠିରଙ୍କର ସବୁଠାରୁ ପ୍ରିୟ ହେବା ସତ୍ତ୍ୱେ ନୀତିଭଙ୍ଗର କଠୋର ଶାସ୍ତି ତାଙ୍କୁ ଭୋଗ କରିବାକୁ ପଡ଼ିଲା । ଭାଇ ବୋଲି ଯୁଧିଷ୍ଠିର ତାଙ୍କୁ କ୍ଷମା କରିନଥିଲେ । ତା ଫଳରେ ସତ୍‌ଶାସନ ନୀତିର ଏକ ଉଜ୍ଜ୍ୱଳ ପ୍ରତିଶ୍ରୁତି ସୃଷ୍ଟି ହେଲା ମଣିଷ ମନରେ । ଗୋଟିଏ ଢେଲାରେ ଦୁଇଟି ପକ୍ଷୀର ଶିକାର- ଏଇ ଅଭୂତପୂର୍ବ ରାଜନୈତିକ କୌଶଳ ଓ ଚାତୁରୀ ଚମତ୍କୃତ କଲା ବ୍ୟାସଦେବଙ୍କୁ ।

ମନେ ମନେ ବ୍ୟାସଦେବ ପାଣ୍ଡବଙ୍କ କାର୍ଯ୍ୟକଳାପର ତନ୍ନତନ୍ନ ପର୍ଯ୍ୟାଲୋଚନା କଲେ । ଜାତି ଧର୍ମ ନିର୍ବିଶେଷରେ ସମସ୍ତଙ୍କ ସହିତ ବନ୍ଧୁତ୍ୱ ଆତ୍ମୀୟତା, ଭ୍ରାତୃତ୍ୱ ସ୍ଥାପନ କରି ତୃତୀୟ ପାଣ୍ଡବ କାର୍ଯ୍ୟତଃ କୃଷ୍ଣଙ୍କ ଅଖଣ୍ଡ ଭାରତ ଗଠନର ସ୍ୱପ୍ନକୁ କେବଳ ଆଗୁସାର କଲେନି, ଆର୍ଯ୍ୟାବର୍ତ୍ତର ବାହାରେ ଦକ୍ଷିଣରେ, ପଶ୍ଚିମରେ, ପୂର୍ବଦେଶୀୟ ରାଜ୍ୟଗୁଡ଼ିକରେ ନୂଆ ନୂଆ ବନ୍ଧୁଙ୍କ ସଂଧାନ କଲେ । କାର୍ଯ୍ୟତଃ ଆର୍ଯ୍ୟାବର୍ତ୍ତର ପରିଧିରେ କୌଣସି ରାଜ୍ୟ ହିଁ ନବଗଠିତ ପାଣ୍ଡବ ରାଜ୍ୟ ସହିତ ସଂପର୍କ ସ୍ଥାପନର କଳ୍ପନା କରି ନ ଥିଲେ । ଶହେଟି ଛୋଟବଡ଼ ରାଜ୍ୟ ଜରାସନ୍ଧର ରାଜଛତ୍ର ଅଧୀନରେ ଥିଲା । ଜରାସନ୍ଧ ଓ ଯୁଧିଷ୍ଠିରଙ୍କ ମଧ୍ୟରେ ଆଦର୍ଶଗତ ବିରୋଧ ଇନ୍ଦ୍ରପ୍ରସ୍ଥର ଜନ୍ମବେଳୁ ଲାଗି ରହିଥିଲା । ଦୁର୍ଯ୍ୟୋଧନର ମତିଗତି ଭଲ ନ ଥିଲା । ଅଦୂର ଭବିଷ୍ୟତରେ ତାଙ୍କର ଓ ଜରାସନ୍ଧ ସହିତ ଯୁଦ୍ଧ ଅନିବାର୍ଯ୍ୟ । ଏ ପ୍ରକାର ଚିନ୍ତା କରି ହିଁ ଯୁଧିଷ୍ଠିର ମନେ ମନେ ଗୋଟାଏ ଯୁଦ୍ଧର ପ୍ରସ୍ତୁତି ଆରମ୍ଭ କରିଥିଲେ ।

ଅର୍ଜୁନଙ୍କୁ ଗୋପନରେ ସେଇ କାର୍ଯ୍ୟ ସଂପନ୍ନ କରିବାପାଇଁ ପଠେଇଥିଲେ । ଅର୍ଜୁନ ମଧ ଆର୍ଯ୍ୟାବର୍ତ୍ତ ବାହାରେ ଅନାର୍ଯ୍ୟମାନଙ୍କ ମଧ୍ୟରେ ପାଣ୍ଡବଙ୍କ ରାଜନୀତି ଓ ଗୌରବକୁ ପ୍ରତିଷ୍ଠା କରି ଦ୍ୱାରକାରେ ଉପସ୍ଥିତ ହେଲେ । ଯାଦବଙ୍କ ସହିତ ପାଣ୍ଡବମାନଙ୍କର ରାଜନୈତିକ ମୈତ୍ରୀ ସଂପର୍କକୁ ଆହୁରି ଦୃଢ଼ୀଭୂତ ଓ ସ୍ଥାୟୀ କରିବା ପାଇଁ କୃଷ୍ଣ ଭଗିନୀ ସୁଭଦ୍ରାଙ୍କ ହୃଦୟ ଜୟ କରି ତାଙ୍କ ସହିତ ପରିଣୟ ସୂତ୍ରରେ ଆବଦ୍ଧ ହେଲେ । ତେରମାସର ବନବାସ ଜୀବନରେ ଭାରତବର୍ଷର ତିନି ପ୍ରାନ୍ତରୁ ତିନୋଟି ମୁଗ୍ଧ ରମଣୀକୁ କେବଳ ବିବାହ କଲେ ନାହିଁ, ସେମାନଙ୍କ ସହିତ ନିଜ ବଂଶର ରକ୍ତଧାରାକୁ ମିଶାଇ ଦେଲେ । ଏହାଠାରୁ ବଳି ବିଜୟ ଓ ସାଫଲ୍ୟ କଣ ଆଉ ହୋଇପାରେ ?

ବ୍ୟାସଦେବଙ୍କର ବିସ୍ମୟର ଅନ୍ତ ହେଲା ନାହିଁ । ବିରାଟ ସଂଘର୍ଷ ପାଇଁ ଗୋଟିଏ ପରିବେଶ ଟିକିଏ ଟିକିଏ ହୋଇ ଶତ୍ରୁର ଅଗୋଚରରେ ତିଆରି କରି, ଯୁଧିଷ୍ଠିର ନିର୍ଲିପ୍ତ ଓ ନିର୍ବିକାର ରହିଲେ । ରହିବା ସ୍ୱାଭାବିକ ଥିଲା । କୃଷ୍ଣ ଯାହାଙ୍କ ସହାୟ ତାର ଆଉ ଭାବନା କଣ ? କୃଷ୍ଣ ନିରବ କର୍ମୀ । ପାଣ୍ଡବଙ୍କର ପଥ ପ୍ରଦର୍ଶକ । ପାଣ୍ଡବଙ୍କ ହିତସାଧନ ପାଇଁ, ନୀତି ନିର୍ଦ୍ଧାରଣ କରିବାରେ ଯେମିତି ତାଙ୍କର ବିଳମ୍ବ ଘଟୁଛି । ସେଥିପାଇଁ ସେ ହତାଶ କିମ୍ବା ନିରାଶ ଅବଶ୍ୟ ନୁହନ୍ତି ।

ବ୍ୟାସଦେବ ନିଜ ଭାବନା ଭିତରେ ବୁଡ଼ିଯାଇ ହଠାତ୍ ଶିହରିଉଠି ଆଖି ବୁଜିଲେ । ଦୃଶ୍ୟଟି ମନଶ୍ଚକ୍ଷୁରେ ହିଁ ସେ ଦେଖୁଥିଲେ । ଭୀମସେନଙ୍କ ସର୍ବାଙ୍ଗ ତପ୍ତ ଲୌହ ଭଳି ଦାଉ ଦାଉ କରୁଛି । ଆଖିରୁ ବହ୍ନି ଛୁଟୁଛି । ନିଷ୍ଠୁରତାରେ କଠିଣ ହେଇ ଆସୁଛି ମୁଖମଣ୍ଡଳ । ଜରାସନ୍ଧ ମଧ୍ୟ ଭୟଙ୍କର ଦିଶୁଛି ରାକ୍ଷସ ଭଳି । ଦୁରନ୍ତ ବିକ୍ରମରେ ଦୁଇ ମହାବୀର ଲଢୁଛନ୍ତି । ଧରାଶାୟୀ ଜରାସନ୍ଧ ଉଠି ଠିଆହେବା ଆଗରୁ ଭୀମ ତାର ଦୁଇ ପାଦଧରି ପ୍ରାଣପଣେ ଟେକି ନେଇ ଚିରି ଫୋପାଡ଼ି ଦେଇଛନ୍ତି । ରୁଧିରସିକ୍ତ ଜରାସନ୍ଧ ତୀବ୍ର ଯନ୍ତ୍ରଣାରେ ଛଟପଟ କରୁଛି । କରୁଣଭାବେ କାତର ହୋଇ ପ୍ରାଣଭିକ୍ଷା କରୁଛି । ଭୀମ କିନ୍ତୁ ସେତେବେଳେ ଲହୁର ନିଶାରେ ଉନ୍ମାଦପ୍ରାୟ । ଏସବୁ ଦୃଶ୍ୟ ନା ସିଏ ଦେଖିପାରୁଥିଲେ ନା ଶୁଣିପାରୁଥିଲେ । ଜରାସନ୍ଧର କାତର ବାଣୀ, ଶରୀରର ପେଶୀଗୁଡ଼ିକ କେବଳ ଫୁଲିଫୁଲି ଉଠୁଥିଲା । ରକ୍ତରେ ନାଲି ହୋଇଯାଇଥିଲା ତାଙ୍କର ହାତ ଦୁଇଟି ।

ଦୃଶ୍ୟଟି ବ୍ୟାସଦେବ କଳ୍ପନା ଚକ୍ଷୁରେ ଦେଖିଲେ । ତାଙ୍କର ଅନ୍ତର ପୂରିଉଠିଲା । ଜରାସନ୍ଧର ଅସହାୟ ଭାବେ ମୃତ୍ୟୁବରଣ ଏବଂ ଭୀମଙ୍କ ନିଷ୍ଠୁରତାରେ ସେ ମୂକ ପାଲଟି ଯାଇଥିଲେ ସତେକି ! ଜଣେ ମଣିଷ ଏତେ ଶକ୍ତି ପାଏ କେଉଁଠୁ ? ଏହି ଶକ୍ତିବଳ ସେ କେବେ ଭରିଦିଏ ଶରୀରରେ ? ବ୍ୟାସଦେବଙ୍କର ମନେହେଲା ମୃତ୍ୟୁର ଏକ ଛାଇ ଅନ୍ଧାର ଜଗତରୁ ସେ ଫେରିଆସିଛନ୍ତି । ତଥାପି ସେଇ ମୃତ୍ୟୁର ହିମଶୀତଳ ସ୍ପର୍ଶ ବର୍ତ୍ତମାନ ମଧ

ମୁଣ୍ଡ ଭିତରେ ରହିଯାଇଛି କୋଉଠି । ଦୁଇ ଜଗତର ମଧ୍ୟବର୍ତ୍ତୀ ମାନସିକ ଅବସ୍ଥା ଭିତର ଦେଇ ସେ ଅନୁଭବ କରିପାରୁଥିଲେ ଯେ, ଭୀମ ତାର ସବୁ ଶକ୍ତି ଆହରଣ କରିଛି କେବଳ ଅବିଚାର, ଅତ୍ୟାଚାର, ଅପମାନ, ଲାଞ୍ଛନାର ଅନ୍ତର୍ନିହିତ ଦହନରୁ । ଅନ୍ତରର ପୁଞ୍ଜୀଭୂତ ଘୃଣା, କ୍ରୋଧ, ହିଂସା, ବିଦ୍ୱେଷ ନେଇ ସେ ଜଳିଉଠିଛି । ପାଣ୍ଡବଙ୍କ ଶକ୍ତିକୁ ତୁଚ୍ଛ କିମ୍ବା ଅବହେଳା କରାଯାଇପାରେନା । ଏଇ କଥାଟା ଜଣାଇ ଦେବାପାଇଁ ସତେଯେମିତି ସେ ଆହୁରି ଭୟଙ୍କର ଭାବେ ଅତ୍ୟାଚାରୀ ଓ ନିଷ୍ଠୁର ହେଇଉଠିଛି । ଭୀମ ତାର ବଳବିକ୍ରମ, ସାହସ ଓ ସ୍ପର୍ଦ୍ଧା ଦେଇ ଯେମିତି ଆହୁରି ପ୍ରମାଣ କରିଦେଇଛି ଯେ, ସ୍ୱଭାବରେ ନିରୀହ ପାଣ୍ଡବପଣ ଅତ୍ୟାଚାରୀଙ୍କ ପାଇଁ ବାସ୍ତବରେ କାଳଯମ ସଦୃଶ । ଅପରାଧ, ଅନ୍ୟାୟ, ଅଧର୍ମର କୌଣସି କ୍ଷମା ସେମାନେ ଜାଣନ୍ତି ନାହିଁ । ପ୍ରୟୋଜନ ହେଲେ ସେମାନେ କେତେ ନିର୍ଦ୍ଦୟ ଆଉ ନିଷ୍ଠୁର ହୋଇପାରନ୍ତି ଜରାସନ୍ଧକୁ ହତ୍ୟାକରି ତାର ସଂକେତ ଦେଇଛନ୍ତି ସେମାନେ । ଏହା ପରୋକ୍ଷଭାବେ ସେମାନଙ୍କର ଶତ୍ରୁ ପାଇଁ ପାଣ୍ଡବ ବିରୋଧିତାର ପରିଣାମ ସଂପର୍କରେ ଯଥେଷ୍ଟ ସତର୍କ ଏବଂ ସାବଧାନ ରହିବାର ସଂକେତ ।

ଏହି ସମସ୍ତ ଘଟଣା ବ୍ୟାସଦେବଙ୍କ ଭିତରେ ବିସ୍ଫୋରଣ ଘଟାଇବାକୁ ଲାଗିଲା । ଗମ୍ଭୀର, ଧୀର, ସାହସ ଓ ବିଚକ୍ଷଣତା ମିଶାଇ ବେଶ୍ ଗୋଟାଏ ଅଦ୍ଭୁତ ଭାବମୂର୍ତ୍ତି ନିର୍ମାଣ କରିଛନ୍ତି ପାଣ୍ଡବମାନେ । ବ୍ୟାସଦେବଙ୍କ ଅନ୍ତର ଉତ୍ତେଜନାରେ ତାତିଉଠୁଥିଲା । ଏକ ବିଶାଳ ଦେଶର ଅଗଣିତ ଦୁଃଖୀରଙ୍କି ମଣିଷ ସହିତ ବିଶେଷକରି ଅନାର୍ଯ୍ୟାକନ୍ୟା ହିଡ଼ିମ୍ବୀ, ଉଲୁପୀ ଏବଂ ଚିତ୍ରାଙ୍ଗଦା ସହିତ ପାଣ୍ଡବଙ୍କର ଗଭୀର ଆତ୍ମୀୟତାର ସଂପର୍କ ହଠାତ୍ ବ୍ୟାସଙ୍କ ଅନ୍ତରକୁ ଆନ୍ଦୋଳିତ କରିପକାଇଲା ।

ଅନ୍ତର୍ଗତ ଏଇ ଉତ୍ତେଜନାରେ ଆଶାରେ, ପ୍ରତ୍ୟାଶାରେ ବ୍ୟାସଦେବଙ୍କ ଛାତି ଧକପକ ହେଲା । ମନରେ ଭରସା ଅବଶ୍ୟ ଆସିଲା, ଜୋର୍ ଆସିଲା ମନକୁ । ବହୁବିଧ ଘଟଣାର ଓଲଟପାଲଟ ସ୍ରୋତ ତାଙ୍କୁ ଯେଭଳି ଭାବରେ ଭସେଇ ନେଇଥିଲା ଦୂରକୁ ଦୂରକୁ । ସେ ତ ହତାଶ ହୋଇପଡ଼ିଥିଲେ । ତେବେ ଗୋଟାଏ ପ୍ରତ୍ୟୟ ଭୂମି ସ୍ଥିର ରହିଥିଲା ପାଣ୍ଡବଙ୍କ ଉପରେ । ଆଜି ତାହା ଫେରିପାଇବାରୁ ଅସୀମ ଆନନ୍ଦରେ ତାଙ୍କର ଚକ୍ଷୁ ବାଷ୍ପାୟିତ ହେଇଉଠିଲା ।

ବ୍ୟାସଦେବ ତାଙ୍କ ଅଶାନ୍ତ ମନକୁ ସ୍ନିଗ୍ଧ ଆଉ ପ୍ରସନ୍ନ କରିବାପାଇଁ ପ୍ରକୃତିର ଅପରୂପ ଶୋଭାକୁ ଚାହିଁଥିଲେ । ଶୀତଳ ସ୍ନିଗ୍ଧପବନ ବହିଆସୁଥିଲା । ଗଭୀର ନୀଳ ଆକାଶରେ ଧଳାମେଘ ସବୁ ବିଛେଇ ହୋଇ ପଡ଼ିଥିଲେ । ଭିତରର ଯେତିକି କ୍ଷତ, ଯନ୍ତ୍ରଣା ଆଉ ରକ୍ତକ୍ଷରଣକୁ ସଂପୂର୍ଣ୍ଣଭାବେ ଭୁଲି ଯାଇଥିଲେ ବ୍ୟାସଦେବ ।

ଜରାସନ୍ଧ ନିହତ ହେବା ପରେ, ରାଜସୂୟ ଯଜ୍ଞର ଆୟୋଜନ କଲେ ଯୁଧିଷ୍ଠିର । ଯଜ୍ଞର ପ୍ରଧାନ ଋତ୍ୱିକ ହେଲେ ବ୍ୟାସଦେବ । ତେଣୁ ବ୍ୟାସଦେବଙ୍କୁ ଯୁଧିଷ୍ଠିର କହିଲେ- ପିତାମହ, ଯଜ୍ଞର ଶ୍ରେଷ୍ଠ ବ୍ୟକ୍ତିର ଅର୍ଘ୍ୟ କାହାକୁ ଦେଲେ ଭଲ ହେବ, ଯଥାର୍ଥ ହେବ, ଆପଣ ନିର୍ଣ୍ଣୟ କରି କୁହନ୍ତୁ ।

ଅବାକ୍ ହୋଇ ବ୍ୟାସଦେବ ବେଶ୍ କିଛି ସମୟ ଯୁଧିଷ୍ଠିରଙ୍କ ମୁଖର ଭାବକୁ ଲକ୍ଷ୍ୟ କଲେ । ହସିଦେଲେ ଟିକିଏ । କହିଲେ, ଏହି ଦାୟିତ୍ୱ ତୁମେ ନିଜେ ନ ନେଇ ମୋତେ କାହିଁକି ଦେଉଛ ? ଶ୍ରୀକୃଷ୍ଣ ଅଛନ୍ତି ତାଙ୍କୁ ଦେଲେ ବି ତ ହୁଅନ୍ତା ।

ଗୋଟାଏ ଆଶଙ୍କା ଯୁଧିଷ୍ଠିରଙ୍କ ମନକୁ ଛୁଇଁଗଲା । ସେଇ ଆଶଙ୍କାକୁ ଯଥାଶୀଘ୍ର ଲୁଚାଇବାକୁ ଯାଇ କହିଲେ, ପିତାମହ, ଏତେବଡ଼ ଗୁରୁଦାୟିତ୍ୱ ଆପଣଙ୍କ ଭଳି ପ୍ରାଜ୍ଞ, ପ୍ରାଚୀନ, ପ୍ରବୀଣ ଆତ୍ମୀୟ ଉପସ୍ଥିତି ଥାଉଣୁ ଯଦି ମୁଁ ବହନ କରିବି ତା'ହେଲେ ମୋର ଅହଂକାର ଓ ସ୍ପର୍ଦ୍ଧା ପ୍ରକାଶ ପାଇବ । ଶୁଭକାର୍ଯ୍ୟରେ ଆପଣଙ୍କ ଆଶୀର୍ବାଦ ଆମର ଏକାନ୍ତ କାମ୍ୟ ।

ଏହି କଥାରେ ବ୍ୟାସଦେବ କେମିତି ବିକଳ ହେଇପଡ଼ିଲେ । ଯୁଧିଷ୍ଠିରର ବିନୟ, ଶ୍ରଦ୍ଧା, ଅନୁରାଗ ଏବଂ ସ୍ନେହର ଏକ ଅଦ୍ଭୁତ ସମ୍ମୋହନୀ ଆକର୍ଷଣ ବ୍ୟାସଦେବଙ୍କୁ ଅଭିଭୂତ କରିଦେଲା । କିନ୍ତୁ ଯୁଧିଷ୍ଠିର ତାଙ୍କ ମୁଗ୍ଧତା ଆଡ଼କୁ ଚାହିଁ କହିଲେ, ସଖା କୃଷ୍ଣଙ୍କର ମନ ଅବସ୍ଥା ଭଲ ନାହିଁ । ହୁଏତ କୌଣସି ଛୋଟମୋଟର ତ୍ରୁଟି ଭୁଲଭ୍ରାନ୍ତି ବା ଅପରାଧ ଯୋଗୁଁ ତାଙ୍କ ମନ ବିଷଣ୍ଣ । ହୁଏତ ଅଭିମାନ ମଧ୍ୟ କରିଥାଇପାରନ୍ତି । ତେଣୁ କୌଣସି କଥା ନିଜ ଉପରକୁ ନେଉ ନାହାନ୍ତି । ସବୁଥିରେ କେମିତି ଗୋଟାଏ ଉଦାସୀନ, ଅନ୍ୟମନସ୍କ ଭାବ । ଏହି ସଭାରେ କୃଷ୍ଣଙ୍କ ଭଳି ଆପଣ ମଧ୍ୟ ଆମର ପରମଆତ୍ମୀୟ, ଶୁଭାକାଂକ୍ଷୀ । ଆମର ସ୍ୱାର୍ଥ ସୁବିଧା ଏବଂ ଭଲ ବୁଝିଲା, ଭଲ ଦେଖିଲା ଭଳି ଆତ୍ମୀୟ ତ ଆଉ କେହି ନାହାନ୍ତି ।

ବ୍ୟାସଦେବଙ୍କ ମୁଖରୁ କୌଣସି କଥା ସ୍ଫୁରିଲା ନାହିଁ । ଯୁଧିଷ୍ଠିର ତ ସବୁକାଳେ ଗମ୍ଭୀର, କମ୍ କଥାର ମଣିଷ । କିନ୍ତୁ କୃଷ୍ଣଙ୍କ ଭଳି ସେ ମଧ୍ୟ ଚତୁର ହେଲାଣି; ବ୍ୟାସଙ୍କୁ ଏକଥା ଜଣା ନ ଥିଲା । ତେଣୁ ବେଶ୍ କିଛି ସେ ଅବାକ୍ ହେଇ ଚାହିଁରହିଲେ ।

କୃଷ୍ଣପ୍ରାଣ ଯୁଧିଷ୍ଠିର କୃଷ୍ଣଙ୍କୁ ଶ୍ରେଷ୍ଠ ବ୍ୟକ୍ତି ନିର୍ବାଚନ କରିବାକୁ ଚାହାନ୍ତି, ଇଙ୍ଗିତରେ ସେ କଥା ଜଣାଇଦେଲେ । କିନ୍ତୁ ନିଜ ମୁଖରେ ସେକଥା ଉଚ୍ଚାରଣ କଲେ ରାଜନୈତିକ ସଂକଟ ଘନେଇ ଉଠିବ । ତୃତୀୟପକ୍ଷ ମାଧ୍ୟମରେ ଏହି ପ୍ରସ୍ତାବ ଆଣିଲେ ଯୁଧିଷ୍ଠିରଙ୍କର କୌଣସି ଦାୟିତ୍ୱ ରହିବନି । ସେଥିପାଇଁ ରାଜନୀତିର ବାହାରେ ଏଭଳି ଜଣେ ଲୋକ ନିର୍ବାଚନ କଲେ ଯୁଧିଷ୍ଠିର, ଯାହା ସଂପର୍କରେ କାହାର କିଛି ସନ୍ଦେହ ନ ଥିଲା । ଏଥିରେ ଯୁଧିଷ୍ଠିର ଗୋଟାଏ ତୀରରେ ଦୁଇଟି ପକ୍ଷୀ ଶିକାର କଲେ । ତାଙ୍କୁ ମଧ୍ୟ ସମ୍ମାନ ଜ୍ଞାପନ କରାଗଲା । ନିଜେ ମଧ୍ୟ ଦାୟିତ୍ୱମୁକ୍ତ ହେଲେ ।

ଦୀର୍ଘକାଳ ଧରି ଶ୍ରୀକୃଷ୍ଣ ଖୁବ୍ ଧୀରେ ସୁସ୍ଥେ ଯେଉଁ ମହତ୍ ମାନବିକ ମୂଲ୍ୟବୋଧ ସୃଷ୍ଟି କରି ମଣିଷ ହୃଦୟରେ ପୁରୁଷୋତ୍ତମର ଭାବମୂର୍ତ୍ତି ସୃଷ୍ଟି କରିଥିଲେ, ଯୁଧିଷ୍ଠିର ତାଙ୍କୁ ହିଁ ଶ୍ରେଷ୍ଠ ବ୍ୟକ୍ତିର ଅର୍ଘ୍ୟ ଦେଇ ଗୌରବାନ୍ୱିତ କରିବାକୁ ଚାହିଁଲେ । କୃଷ୍ଣ ହିଁ ଏକମାତ୍ର ଯୋଗ୍ୟତମ ବ୍ୟକ୍ତି ଏହି ଅର୍ଘ୍ୟ ପାଇବାକୁ । ତଥାପି କୃଷ୍ଣ ବିରୋଧୀ ରାଜନ୍ୟବର୍ଗଙ୍କ କ୍ରୋଧ, ଆକ୍ରମଣ ଓ ବିରୋଧଭାବରୁ କୃଷ୍ଣ ନିଷ୍କୃତି ପାଇବେ ନାହିଁ । ତେଣୁ ହିଁ କୃଷ୍ଣ-ବିରୋଧୀ-ରାଷ୍ଟ୍ର-ଗୋଷ୍ଠୀ ଅନ୍ତର୍ଗତ କୌଣସି କୃଷ୍ଣଭକ୍ତ ବ୍ୟକ୍ତି ମାଧ୍ୟମରେ କୃଷ୍ଣଙ୍କୁ ବାଛିଲେ ଏହି ସଂକଟକୁ ହୁଏତ ଏଡ଼େଇ ଯାଇହେବ ବୋଲି ବ୍ୟାସଦେବଙ୍କର ବିଶ୍ୱାସ ଥିଲା । କୃଷ୍ଣାନୁରାଗୀ ସେଇ ବ୍ୟକ୍ତିଜଣକ ହେଲେ ପାଣ୍ଡବ-କୌରବଙ୍କ ପିତାମହ ଭୀଷ୍ମ । ବ୍ୟାସଦେବ ତାଙ୍କ କୂଟବୁଦ୍ଧି ପ୍ରୟୋଗ କରି ବୁଝିଥିଲେ, ଆସନ୍ନ କୁରୁ-ପାଣ୍ଡବ ସଂଘର୍ଷରେ ଭୀଷ୍ମଙ୍କୁ ଜଡ଼ିତ କରି ରଖିବା ଉଚିତ କାମ ହେବ ।

କିଛିକ୍ଷଣ ନିରବରେ କଟିବା ପରେ ବ୍ୟାସଦେବ କହିଲେ, ବତ୍ସ ! ନିଜକୁ କୌଣସି ଜଟିଳ ରାଜନୀତି ଭିତରେ ମୁଁ ଜଡ଼ିତ କରିବାକୁ ଚାହୁଁନି । ଆଗକୁ ଯେଉଁ ନିଦାରୁଣ ସଂକଟ ଆସୁଛି, ସେକଥା ଭାବିଲେ ମୋ ଚିତ୍ତ ଚଞ୍ଚଳ ହେଇଉଠୁଛି । ମୁଁ ପ୍ରଚ୍ଛନ୍ନ ଭାବେ ରହିବାକୁ ଉଚିତ ମନେକରୁଛି । ତାହାହିଁ ମଙ୍ଗଳ ହେବ । ଏହି ସଭାରେ ଉପସ୍ଥିତ ବ୍ୟକ୍ତିବିଶେଷଙ୍କ ମଧ୍ୟରେ ସର୍ବପ୍ରାଚୀନ ଏବଂ ପ୍ରଧାନ ହେଲେ ମହାପ୍ରାଜ୍ଞ, ରାଜନୀତିଜ୍ଞ, ସତ୍ୟବ୍ରତ ଭୀଷ୍ମ । ବିଦୁରଙ୍କ ମୁଖରୁ ଶୁଣିଛି ଭୀଷ୍ମ କୃଷ୍ଣଙ୍କର ବ୍ୟକ୍ତିତ୍ୱ, ଚରିତ୍ର, ଶୌର୍ଯ୍ୟବୀର୍ଯ୍ୟ ଓ ମହାନୁଭବତା ପ୍ରତି ଅତ୍ୟନ୍ତ ଶ୍ରଦ୍ଧାଶୀଳ । ତୁମେ ତାଙ୍କୁ ଅର୍ଘ୍ୟଲାଭର ଅଗ୍ରଗଣ୍ୟ ବ୍ୟକ୍ତି ନିର୍ବାଚନରେ ଗୁରୁଦାୟିତ୍ୱ ଅର୍ପଣ କଲେ ସବୁ ଦିଗରୁ ଯଥାର୍ଥ ହେବ । ଅର୍ଘ୍ୟଲାଭର ଅଧିକାର ତାଙ୍କୁ ଯେମିତି ବଞ୍ଚିତ କରାଯାଇଛି, ସେଇଭଳି କୃଷ୍ଣଙ୍କୁ ମଧ୍ୟ ଏତେବଡ଼ ଦାୟିତ୍ୱରୁ ବଞ୍ଚିତ କରାଯାଇଛି - ଏହା ଭାବି ନିଜେ ଭୀଷ୍ମ ଏଇ ଦାୟିତ୍ୱ ନେଲେ ବୋଲି ଭାବିବେ । ବିରୋଧୀମାନେ ମଧ୍ୟ ଏଥିରେ ଖୁସି ହେବେ । କାହାର ଦୁଃଖ ରହିବନି । ଭୀଷ୍ମ କୃଷ୍ଣଙ୍କୁ ନିର୍ବାଚନ କଲେ ତୁମେ ବି ଅପ୍ରିୟ ହେବନି କି ବିରୋଧୀମାନେ ମଧ୍ୟ ସନ୍ଦେହ ଚକ୍ଷୁରେ ସହଜେ ଦେଖିପାରିବେନି ଘଟଣାଟିକୁ । ଭୀଷ୍ମ ଧାର୍ମିକ, ସତ୍ୟବାଦୀ, ନ୍ୟାୟପରାୟଣ, ବିବେଚକ ମଧ୍ୟ । ଭୀଷ୍ମ ତୁମମାନଙ୍କର ପିତାମହ । ଏହି ମର୍ଯ୍ୟାଦା ହିଁ ତାଙ୍କୁ ତୁମ ପ୍ରତି ଆହୁରି ସ୍ନେହ ପରାୟଣ କରି ତୋଳିବ ।

ବ୍ୟାସଦେବଙ୍କ ପରାମର୍ଶକ୍ରମେ ଯୁଧିଷ୍ଠିର ସମବେତ ରାଜନ୍ୟବର୍ଗଙ୍କୁ ଉଦ୍ଦେଶ୍ୟ କରି କୃତାଞ୍ଜଳିପୁଟରେ କହିଲେ : ସମାଗତ ମହାମାନ୍ୟ ଅତିଥି ବୃନ୍ଦ, ଆଜି ମୋର ପରମ ସୌଭାଗ୍ୟ ଓ ଗର୍ବର ଦିନ । ଆପଣମାନଙ୍କ ସହିତ ଏହି ଆନନ୍ଦ ଓ ତୃପ୍ତିକୁ ଆମେମାନେ ବାଣ୍ଟି ନେବାକୁ ଚାହୁଁ । ଈଶ୍ୱରଙ୍କ ନିକଟରେ ଆମ ପ୍ରାର୍ଥନା ଯେ, ବିଭେଦ, ବିଦ୍ୱେଷମୁକ୍ତ ରାଜନୀତିର ଅନ୍ତ ହେଉ- ପୃଥିବୀକୁ ବାସଯୋଗ୍ୟ କଲାଭଳି, ଶୁଭ ଅଙ୍ଗୀକାରକୁ ଜୟ

କରିପାରିଥିବା ଭଳି ଜଣେ ଶ୍ରେଷ୍ଠ ବ୍ୟକ୍ତିଙ୍କୁ ଏହି ରାଜସୂୟ ଯଜ୍ଞ ପ୍ରାରମ୍ଭରେ ଅର୍ଘ୍ୟ ପ୍ରଦାନ କରାଯାଉ । ଏହି ନିର୍ବାଚନର ଦାୟିତ୍ୱ ମୁଁ ପିତାମହ ଭୀଷ୍ମଙ୍କୁ ହିଁ ପ୍ରଦାନ କରୁଛି । ମୋର ଅନୁରୋଧ ପିତାମହ ଗ୍ରହଣ କରି ମୋତେ କୃତାର୍ଥ କରନ୍ତୁ ।

ଏମିତି ଯଜ୍ଞସଭାର ଚତୁର୍ଦ୍ଦିଗରେ ବେଶ୍ ଗୋଟାଏ ଉଲ୍ଲାସର ଢେଉ ଖେଳିଗଲା । ଯୁଧିଷ୍ଠିରଙ୍କ ରାଜନୈତିକ ଦୂରଭିସନ୍ଧି ମୂଳରେ ସେମାନେ ପହଞ୍ଚି ପାରିନଥିଲେ ବୋଲି ଏହି ଉତ୍‌ଫୁଲ୍ଲିତ ଭାବର ଜୁଆର ଆସି ସେମାନଙ୍କ ଖୁସିରେ ଧକ୍କା ଖାଇଲା ।

ଭୀଷ୍ମ ସହସା ଅତଳ ସାଗରରେ ବୁଡ଼ିଗଲେ । ସର୍ବାଗ୍ରଗଣ୍ୟ ବ୍ୟକ୍ତିର ଯୋଗ୍ୟତା ନିରୂପଣ କରିବା ଅତୀବ ଦୁରୂହବ୍ୟାପାର । ତଥାପି ଉପସ୍ଥିତ ବ୍ୟକ୍ତିବିଶେଷଙ୍କ ମଧ୍ୟରେ ଶ୍ରୀକୃଷ୍ଣଙ୍କୁ ହିଁ ଶ୍ରେଷ୍ଠ ବ୍ୟକ୍ତି ବୋଲି ତାଙ୍କର ହୃଦ୍‌ବୋଧ ହୋଇଥିଲା । ସେ ହିଁ ଅର୍ଘ୍ୟ ପାଇବା ପାଇଁ ଯୋଗ୍ୟ । ବାସ୍ତବରେ କୃଷ୍ଣ ହିଁ ଭେଦ-ବିଭେଦର ରାଜନୀତିରେ ଅବସାନ ଘଟାଇ ଏକ ମୁକ୍ତ ମହାନ୍ ଭାରତବର୍ଷ ଗଠନ କରିବାକୁ ଚାହୁଁଛନ୍ତି । ମଣିଷ ମଣିଷ ଓ ରାଜା ରାଜା ଭିତରେ ସ୍ନେହ, ପ୍ରୀତି, ମୈତ୍ରୀ, ସହଯୋଗିତା, ସହାବସ୍ଥାନ ଉପରେ ପ୍ରତିବେଶୀ ରାଜ୍ୟଗୁଡ଼ିକର ସଂପର୍କ ସ୍ଥାପନ ପାଇଁ ନିରନ୍ତର ଯେଉଁ ପ୍ରୟାସ ଶ୍ରୀକୃଷ୍ଣ ଚଳାଇ ଆସିଛନ୍ତି, ତାଙ୍କୁ ମନପ୍ରାଣରେ ସ୍ୱାଗତ ଜଣାଇବା ପାଇଁ ଭୀଷ୍ମ ଉନ୍ମୁଖ ହେଇଉଠିଥିଲେ । ଅକସ୍ମାତ୍ ଏପରି ଗୋଟିଏ ସୁଯୋଗ ଅବସର ପାଇ ବିନା ଦ୍ୱିଧାରେ, ଶ୍ରେଷ୍ଠ ବ୍ୟକ୍ତିର ଅର୍ଘ୍ୟ କୃଷ୍ଣ ହିଁ ପାଇବା ପାଇଁ ଯୋଗ୍ୟତମ ବ୍ୟକ୍ତି ବୋଲି ନିର୍ବାଚିତ କରିବାକୁ ସ୍ଥିର କଲେ । ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞର ଉଦ୍ଦେଶ୍ୟକୁ ତାତ୍ପର୍ଯ୍ୟପୂର୍ଣ୍ଣ କରି ଗଢ଼ିତୋଳିବାକୁ ହେଲେ କୃଷ୍ଣଙ୍କ ବ୍ୟତୀତ ଆଉ କିଏ ବା କାହାର ଏଇ ଅର୍ଘ୍ୟ ପାଇବା ପାଇଁ ପ୍ରାର୍ଥୀ ବୋଲି କଳ୍ପନା କରାଯାଇପାରେନା ।

ଯୁଧିଷ୍ଠିରଙ୍କ ଅନୁରୋଧ ପରେ ଅବଶ୍ୟ କିଛି ସମୟ କଟିଗଲା । ସଭା ଗୃହରେ ଉପସ୍ଥିତ ରାଜନ୍ୟବର୍ଗଙ୍କ ଭିତରେ ଚାପା ଗଳାରେ ନାନା ପ୍ରକାର ଆଲୋଚନା ଚାଲିଲା । ଭୀଷ୍ମ ଘୋଷଣା କରିବା ପାଇଁ ଉଠି ଠିଆ ହେବା ଦେଖି ସଭାସ୍ଥ ରାଜନ୍ୟବର୍ଗ ତତ୍‌କ୍ଷଣାତ୍ ଶାନ୍ତି ଓ ନିରବତା ରକ୍ଷା କଲେ । ଭୀଷ୍ମ ଚିନ୍ତିତ ମୁଖରେ କିଛି ସମୟ ନିମନ୍ତ୍ରିତ ଅତିଥି-ନୃପଙ୍କୁ ଚାହିଁ ରହି କହିଲେ - ମହାମାନ୍ୟ ଅତିଥିବୃନ୍ଦ, ଇନ୍ଦ୍ରପ୍ରସ୍ଥାଧିପତି ଯୁଧିଷ୍ଠିର ମୋତେ ବୟୋଜ୍ୟେଷ୍ଠର ଯେଉଁ ସମ୍ମାନ, ଗୌରବ ଏବଂ ମର୍ଯ୍ୟାଦା ଦେଇଛନ୍ତି, ସେଥିପାଇଁ ମୁଁ ଗର୍ବିତ; ଆନନ୍ଦ ଓ ତୃପ୍ତିରେ ମୋ ହୃଦୟ ଫାଟି ପଡୁଛି । ଆନନ୍ଦାଶ୍ରୁନିର୍ଗତ ହେଉଛି । ସେ ଜୟୀ ହେଉ, ସେ ରାଜା ହେଉ, ସତ୍ୟ ସୁନ୍ଦର ହେଉ, ଏହି କାମନା ମୁଁ କରୁଛି । ପଞ୍ଚ ପାଣ୍ଡବଙ୍କ ଉଦ୍ୟୋଗରେ ଓ ପ୍ରଚେଷ୍ଟାରେ କେବଳ ନୁହେଁ, ବରଂ ଯାହାର ଇଚ୍ଛାରେ ଏହି ସଭା ମହାମାନବର ତୀର୍ଥସ୍ଥଳ ହେଇଉଠିଛି, ଯାହାଙ୍କର ସାନ୍ନିଧ୍ୟ ସର୍ବଜନଙ୍କୁ ତୃପ୍ତ କରେ, ଯାହାଙ୍କ ବଚନ ଶ୍ରବଣରେ ହୃଦୟ ପରିପ୍ଲୁତ ହୁଏ, ଆକୁଳ ହୁଏ- ସେଇ କୃଷ୍ଣଙ୍କ ବ୍ୟତୀତ ଆଉ କାହା

କଥା ଆଜି ମୋ ମନକୁ ଆସୁନି । ଜ୍ୟୋତିଷ୍କଙ୍କ ମଧ୍ୟରେ ସୂର୍ଯ୍ୟ ଯେପରି, ସେହିପରି ସମାଗତ ସକଳ ଜନଙ୍କ ତେଜ, ବଳବୀର୍ଯ୍ୟ ଓ ପରାକ୍ରମ ତଥା ମାନବିକତା ଦୃଷ୍ଟିରୁ କୃଷ୍ଣ ହିଁ ଶ୍ରେଷ୍ଠ ବ୍ୟକ୍ତି । ତାଙ୍କରି ପାଇଁ ଏହି ସଭା ଆହ୍ଲାଦିତ ଓ ଆଲୋକିତ ହୋଇଛି- ତୁମେ ତାଙ୍କୁ ହିଁ ଏହି ଅର୍ଘ୍ୟ ସମର୍ପଣ କର ଯୁଧିଷ୍ଠିର ।

ବ୍ୟାସଦେବଙ୍କ ହୃଦୟର ଗଭୀରତମ ପ୍ରଦେଶରୁ ଏକ ଦୀର୍ଘଶ୍ୱାସ ଛୁଟିଆସିଲା । ଜରାସନ୍ଧର ତିରୋଧାନ ପରେ ଭାରତର ରାଜନୀତିରେ ଦୁର୍ଯ୍ୟୋଧନ ଓ ଶିଶୁପାଳଙ୍କ ଅଶୁଭ ପ୍ରଭାବ ଏବଂ ଦୌରାତ୍ମ୍ୟ କ୍ରମଶଃ ବଢ଼ିଚାଲିଛି । ଆପାତତଃ ଏସବୁରୁ ସେମାନଙ୍କୁ ଦୂରେଇ ରଖିବାର ରାସ୍ତାଟିଏ ତିଆରି ହେଇଗଲା । କିନ୍ତୁ ଏଥରକ ରାଜନୀତିରେ ନୂଆ ଖେଳ ଆରମ୍ଭ ହେବ ଯୁଧିଷ୍ଠିର ଏବଂ ଦୁର୍ଯ୍ୟୋଧନ ମଧ୍ୟରେ ।

ପାଣ୍ଡବମାନଙ୍କ ସୌଭାଗ୍ୟ ଯେ, ଦୁର୍ଯ୍ୟୋଧନ ଅନ୍ତରରେ ଯେଉଁ ଈର୍ଷାଗ୍ନି ପ୍ରଜ୍ୱଳିତ ହୋଇଛି ସେଇ ନିଆଁ କେବେବି ଲିଭିବନି । ଦୁର୍ଯ୍ୟୋଧନ ଏକ ଜ୍ୱଳନ୍ତ ମଶାଲ ନେଇ ଯାଉଛି ଇନ୍ଦ୍ରପ୍ରସ୍ଥରୁ । ଯୋଉ ନିଆଁ ସେ ନେଇଯାଉଛି ସେଥିରେ ସେ ନିଜେ ଜଳିବ ଏବଂ ଅନ୍ୟମାନଙ୍କୁ ମଧ୍ୟ ଜାଳିପୋଡ଼ି ନାରଖାର କରିଦେବ । ଅର୍ଥାତ୍ ଦୁର୍ଯ୍ୟୋଧନ ମନର ନିଆଁରେ ତାର ରାଜ୍ୟ ଓ ରାଜପରିବାର ଜଳି ଛାରଖାର ହେଇଯିବ । ଏକଥା ମନକୁ ଆସିବାମାତ୍ରେ ଗୋଟିଏ ଅଦ୍ଭୁତ ଧରଣର ପରିତୃପ୍ତି ଆସିଗଲା ତାଙ୍କ ମନକୁ । ଆଖି ବୁଜି ହେଇ ଆସିଲା ସନ୍ତୋଷରେ । ବହୁକାଳର ସଞ୍ଚିତ ଇଚ୍ଛା ବର୍ତ୍ତମାନ ଈର୍ଷାର ବହ୍ନିଶିଖା ହେଇ ଯେମିତି ଧୃତରାଷ୍ଟ୍ରଙ୍କ ଘରେ ଜଳିବାକୁ ଆରମ୍ଭ କଲା- କଳ୍ପନାଚକ୍ଷୁରେ ଦେଖିବାକୁ ଲାଗିଲେ ବ୍ୟାସଦେବ, ବିଶାଳ ହସ୍ତିନାପୁରୀରେ ସେ ନିଆଁ ଲାଗିଯାଇଛି, ଅଗ୍ନି ଶିଖାର ଲାଲିମାରେ ପଶ୍ଚାତ୍‌ପଟର ଆକାଶଟା ରକ୍ତାଭ ଦେଖାଯାଉଛି, ସାମ୍ନା ଦିଗଟା ଅନ୍ଧାର ଆଉ ଅନ୍ଧାର ।

ରାଜସୂୟ ଯଜ୍ଞରୁ କୌରବମାନେ ଯେଉଁ ଅପମାନ, ଆତ୍ମଗ୍ଲାନି ଓ ଈର୍ଷା ନେଇ ଫେରିଲେ, ସେଥିରେ ପାଣ୍ଡବ ଓ କୌରବଙ୍କ ସଂପର୍କକୁ ତିକ୍ତ କରି ତୋଳିଲା । କୌରବମାନେ ଯେ ଏହି ଅପମାନ କେବେ ଭୁଲିପାରିବେନି, ତାହା ବ୍ୟାସଦେବ ରାଜସୂୟ ଯଜ୍ଞରୁ ଫେରିବା ପରେ ତାର ସୂଚନା ପାଇଥିଲେ । ପ୍ରଚ୍ଛନ୍ନ ପ୍ରତିଦ୍ୱନ୍ଦ୍ୱିତା ଏଥରକ ପ୍ରକାଶ୍ୟ ସଂଘର୍ଷର ରୂପ ନେବ, ଏଥିରେ କୌଣସି ସନ୍ଦେହ ନ ଥିଲା ବ୍ୟାସଦେବଙ୍କର । ଖୁବ୍ ଶୀଘ୍ର ହିଁ ପାଣ୍ଡବ କୌରବଙ୍କ ବିରୋଧ ପ୍ରତିହିଂସାନଳ ହେଇ ଜଳିଉଠିବ । ଏଭଳି ଗୋଟାଏ ଛବି ନିଜ ମନ ଭିତରେ କଳ୍ପନା କରି ଇନ୍ଦ୍ରପ୍ରସ୍ଥରୁ ପ୍ରତ୍ୟାବର୍ତ୍ତନ କଲେ ବ୍ୟାସଦେବ ।

ହେଲେ ଖୁବ୍ ବେଶିଦିନ ତାଙ୍କୁ ପ୍ରତୀକ୍ଷା କରିବାକୁ ପଡ଼ିଲା ନାହିଁ । ଅଳ୍ପ କାଳପରେ ଦୂତ ଆସି ଖବର ଦେଲା, ପାଣ୍ଡବମାନେ ଦ୍ୟୁତକ୍ରୀଡ଼ାରେ ସର୍ବସ୍ୱ ହରାଇ ଦେଇ ନିଃସ୍ୱ ହୋଇଯାଇଛନ୍ତି । ବର୍ତ୍ତମାନ ରିକ୍ତହସ୍ତରେ ବଣକୁ ଯିବାପାଇଁ ସ୍ଥିର କରିଛନ୍ତି । ଧାର୍ତ୍ତରାଷ୍ଟ୍ରୀଗଣ

କ୍ରୋଧ, ଅପମାନରେ ଅନ୍ଧ ହୋଇ ଦ୍ୟୂତପଣରେ ପରାଜିତ ପାଣ୍ଡବମାନଙ୍କ ପ୍ରିୟତମା କୃଷ୍ଣାଙ୍କୁ ସଭାକକ୍ଷରେ ସର୍ବଜନ ସମକ୍ଷରେ ବିବସ୍ତ୍ର କରିବାକୁ ମଧ୍ୟ କୁଣ୍ଠିତ ହେଇ ନାହାନ୍ତି । ଏତେବଡ଼ ଗୋଟାଏ ନାରୀ ନିର୍ଯାତନାର ନିରବ ସାକ୍ଷୀ ଥିଲେ ସ୍ୱୟଂ ପିତାମହ ଭୀଷ୍ମ, ପିତୃବ୍ୟ ଧୃତରାଷ୍ଟ୍ର, ବିଦୂର, ଅସ୍ତ୍ରଗୁରୁ ଦ୍ରୋଣ, ଆଚାର୍ଯ୍ୟ କୃପ ପ୍ରମୁଖ ସମ୍ମାନନୀୟ ଗୁରୁଜନବୃନ୍ଦ । କୃଷ୍ଣାଙ୍କ କାତର ଆକୁତିରେ ପାଷାଣ ପଛକେ ବିଦୀର୍ଣ୍ଣ ହେଲା କିନ୍ତୁ ସେମାନଙ୍କ ହୃଦୟ ତରଳିଲା ନାହିଁ । ଯିଏ ଯେଉଁଠି ସେଇଠି ଠିଆ ହେଇ ରହିଲେ । ବର୍ବର ହାତରୁ କେହି ପାଞ୍ଚାଳୀଙ୍କୁ ଉଦ୍ଧାର କରିବାକୁ ଆସିଲେ ନାହିଁ । ଏମିତିକି ପଦେ ସହାନୁଭୂତି କିମ୍ବା ସାନ୍ତ୍ୱନା ମଧ୍ୟ କିଏ ଦେଇନଥିଲେ । ଅସହାୟା କୃଷ୍ଣା-ପାଣ୍ଡବଙ୍କ ପ୍ରିୟା ପଞ୍ଚପତି ସମ୍ମୁଖରେ ନିଗୃହୀତା, ଲାଞ୍ଛିତା ଏବଂ ଅପମାନିତା ହେଲେ । ପଞ୍ଚପାଣ୍ଡବଙ୍କ ଭାଷାହୀନ, ଅଭିବ୍ୟକ୍ତିହୀନ, ନିରବ କ୍ରୋଧ ଓ ଅପମାନ ଯେମିତି ସେମାନଙ୍କ ଦୀର୍ଘଶ୍ୱାସରେ ସୁସୁ ଶବ୍ଦରେ କାଳସର୍ପ ହେଇ ନିର୍ଗତ ହେଉଥିଲା । ସେମାନଙ୍କ ଉତ୍ତେଜିତ ମୁଖମଣ୍ଡଳ ଦୁର୍ଯ୍ୟୋଧନ, ଦୁଃଶାସନ ସମ୍ମୁଖରେ ସ୍ଥିର ନିଶ୍ଚଳ । ସେମାନଙ୍କ ଜ୍ୱଳନ୍ତ ଚକ୍ଷୁ ବିସ୍ଫାରିତ ହୋଇ ଆକର୍ଣ୍ଣ ପର୍ଯ୍ୟନ୍ତ ଲମ୍ୱି ଯାଇଥିଲା ।

ପ୍ରାଣପ୍ରତିଷ୍ଠିତ ପ୍ରତିମା ଭଳି ଭୟଙ୍କର ଓ ଭୀଷଣ ଦିଶୁଥିଲେ ସେମାନେ । ଏହି ଘଟଣା ଶୁଣି ବ୍ୟାସଦେବଙ୍କ ସମସ୍ତ କଳ୍ପନା, ଚିନ୍ତା ବ୍ୟତିବ୍ୟସ୍ତ ହେଇପଡ଼ିଲା । ସେ ବିଶ୍ୱାସ କରିପାରୁ ନ ଥିଲେ । ଏଭଳି ଭାଗ୍ୟ ବିପର୍ଯ୍ୟୟ ସତରେ ହୁଏ ! ଅଥବା ହେଇଛି ! ଏକଥା ପାଣ୍ଡବଙ୍କୁ ନ ଦେଖିଲେ ବ୍ୟାସଦେବଙ୍କର ସତରେ ପ୍ରତ୍ୟୟ ହୁଅନ୍ତା ନାହିଁ । କେମିତି ବା ହେଇଥାନ୍ତା ? କେତେ ଦୁଃଖ କଷ୍ଟ, ଦୁର୍ଭାଗ୍ୟ ଆଉ ପ୍ରତିକୂଳତା ସହିତ ସଂଗ୍ରାମ କରି ସେମାନେ ସ୍ୱପ୍ନର ରାଜ୍ୟ ପ୍ରତିଷ୍ଠା କରିଥିଲେ ଇନ୍ଦ୍ରପ୍ରସ୍ଥରେ । ଇନ୍ଦ୍ରପ୍ରସ୍ଥର ରାସ୍ତାଘାଟ, ପ୍ରାସାଦ, ନଗରର ସୌନ୍ଦର୍ଯ୍ୟ ସବୁକିଛି ଥିଲା ପାଣ୍ଡବମାନଙ୍କର ଅତି ପ୍ରିୟ । ପ୍ରତିଟି ସାମଗ୍ରୀ ସଂଗ୍ରହ କରିବା ପାଇଁ ତାଙ୍କୁ ଖୁବ୍ ପରିଶ୍ରମ କରିବାକୁ ପଡ଼ିଥିଲା । ଆପଣାର ସୁନାମ, ଗର୍ବ, ଖ୍ୟାତି ଆଗାମୀ ବଂଶଧରଙ୍କ ନିକଟରେ ସୁଦୃଢ଼ କରିବା ପାଇଁ ହିଁ ସେମାନଙ୍କର ଏଇ ପ୍ରୟାସ । କିନ୍ତୁ ଏତେସବୁ କରି ମଧ୍ୟ ସେମାନେ ନିଜ ଜୀବଦ୍ଦଶାରେ ହିଁ ଇନ୍ଦ୍ରପ୍ରସ୍ଥର ଅଧିକାରରୁ ଚ୍ୟୁତ ହେବେ, ଏକଥା ସ୍ୱପ୍ନରେ ମଧ୍ୟ କଳ୍ପନା କରିପାରୁ ନ ଥିଲେ । କେମିତି ସେ ଜାଣିବେ ଯୁଧିଷ୍ଠିରଙ୍କ ଦ୍ୟୂତକ୍ରୀଡ଼ାର ଆସକ୍ତି ଏଭଳି ଭାବରେ ସେମାନଙ୍କର ସ୍ୱପ୍ନକୁ ଭାଙ୍ଗିରୁଜି ଚୂର୍ଣ୍ଣ କରିଦେବ ବୋଲି । ଏହି ସ୍ୱପ୍ନ ଭଙ୍ଗ ତ କେବଳ ପାଣ୍ଡବଙ୍କର ହେଇନି, ବ୍ୟାସଦେବଙ୍କର ନିଜର ମଧ୍ୟ ହେଲା ।

ଏଇ ମୁହୂର୍ତ୍ତରେ ବ୍ୟାସଦେବଙ୍କ ଭିତରେ ଏକପ୍ରକାର ପ୍ରତିକ୍ରିୟା ସୃଷ୍ଟି ହେଲା । କେତେ ପ୍ରତୀକ୍ଷା, କେତେ କଳ୍ପନା, କେତେ ଚାତୁରୀ ? ଶ୍ରମ, ସହିଷ୍ଣୁତା ଆଉ ଦୈବ ଆନୁକୂଲ୍ୟରେ ଅମ୍ବିକା ଉପରେ ପ୍ରତିଶୋଧର ଯେଉଁ ଦୁର୍ଗ ସେ ଗଢ଼ି ତୋଳୁଥିଲେ, ତାହା ଯେମିତି ତାସ୍‌ଘର ଭଳି ଭୁଶୁଡ଼ି ପଡ଼ିଲା । ପାଣ୍ଡବଙ୍କର ଠିଆ ହେବାପାଇଁ ପାଦତଳେ ମାଟି

ପର୍ଯ୍ୟନ୍ତ ରହିଲାନି । ରାଜ୍ୟ, ରାଜସିଂହାସନ, ରାଜମର୍ଯ୍ୟାଦା, ଗୌରବ, ଐଶ୍ୱର୍ଯ୍ୟ ସଂପଦ ସବୁ ହେଇଗଲା ଦୁର୍ଯ୍ୟୋଧନର । ଅଥଚ ଏଥିପାଇଁ ଦୁର୍ଯ୍ୟୋଧନଙ୍କୁ କୌଣସି ଯୁଦ୍ଧ, ଅଭିଯାନ କିମ୍ବା ରକ୍ତପାତ ଟିକିଏ କରିବାକୁ ମଧ୍ୟ ପଡ଼ିଲା ନାହିଁ । ବିନା ମେଘରେ ବଜ୍ରପାତ ଭଳି ଅସମ୍ଭବ, ଅକଳ୍ପନୀୟ ଘଟଣା ଧର୍ମପ୍ରାଣ ପାଣ୍ଡବମାନଙ୍କ ଜୀବନରେ କେମିତି ଘଟିଲା ? ଏକଥା ଭାବୁ ଭାବୁ ତାଙ୍କ ଛାତି ଫାଟିଯାଉଥିଲା ।

ପାଣ୍ଡବଙ୍କ ଦୈବୀ ଦୁର୍ବିପାକର ବିଡ଼ମ୍ବନା, ତାଙ୍କ ନିଜ ଭାଗ୍ୟ ବିପର୍ଯ୍ୟୟର କାରଣ ହେଲା । ବାରମ୍ବାର ତାଙ୍କର ମନେହେଲା ସତେଯେମିତି ଦୁର୍ଭାଗ୍ୟର କାଳରାତ୍ରୀ ତାଙ୍କ ଜୀବନରେ ମଧ୍ୟ ଓହ୍ଲେଇ ଆସିଛି । ଘୋର ଅନ୍ଧକାର ଭିତରେ ପାଣ୍ଡବଙ୍କ ସହିତ ପୁଣିଥରେ ନୂତନ ଭାବେ ଯାତ୍ରା ଆରମ୍ଭ କରିବାକୁ ହେବ । ଏକ ଅନିଶ୍ଚିତ ଭବିଷ୍ୟତ ପାଇଁ... ହେଲେ ସେତେଦିନ ଯାଏ ତାଙ୍କର ନିଜ ସ୍ୱପ୍ନ, ଆକାଂକ୍ଷା, ସ୍ପୃହା ବଞ୍ଚି ରହିପାରିବ ତ ? ଏଇ ଜୀବନରେ ଅମ୍ବିକା-ଅପମାନର ପ୍ରତିଶୋଧ ନିଆଯାଇପାରିବନି ? ନିଜକୁ ହିଁ ଯେମିତି ପ୍ରଶ୍ନ କଲେ ବ୍ୟାସଦେବ । ରାତ୍ରୀର ତପସ୍ୟା ଶେଷରେ ନୂତନ ସୂର୍ଯ୍ୟୋଦୟ ଦେଖିବାର ସୌଭାଗ୍ୟ ପାଣ୍ଡବମାନଙ୍କର ହେବନି ? କେବେ ହେବ ସେଇ ସୂର୍ଯ୍ୟୋଦୟ ? ଏକ, ଦୁଇ, ତିନି, ଛଅ, ନଅ ହୋଇ ବାରୋଟି ବର୍ଷ କାଟିବେ ପାଣ୍ଡବମାନେ ବଣରେ । ପୁଣି ଆହୁରି ଗୋଟାଏ ବର୍ଷ ଅଜ୍ଞାତବାସ । ଏହି ସମୟରେ କୌଣସି ପ୍ରକାରେ ଯଦି କିଏ ସେମାନଙ୍କ ଆତ୍ମଗୋପନର ସୂଚନା ପାଏ, ତା'ହେଲେ ଆହୁରି ବାରବର୍ଷ ବନବାସ ଏବଂ ବର୍ଷଟିଏ ଅଜ୍ଞାତବାସ କରିବାକୁ ପଡ଼ିବ !

ହତାଶ ହେଇ ବାରଣ୍ଡା ଉପରେ ବସିପଡ଼ିଲେ ବ୍ୟାସଦେବ । ଉଠିବା ପାଇଁ ଯେମିତି ଶକ୍ତି ନ ଥିଲା ତାଙ୍କର ।

ଅନେକ ବୟସ ହେଇଯାଇଛି ବ୍ୟାସଦେବଙ୍କୁ । ଶକ୍ତି, ସାମର୍ଥ୍ୟ, ଉଦ୍ୟମ, ତେଜ କମି ଆସିଛି । ମନ ଭିତରେ ପ୍ରତିହିଂସାର ନିଆଁ ମଧ୍ୟ ଲିଭି ଲିଭି ଆସୁଛି । ତେଜ ତ ଗଲାଣି, ଉତ୍ତାପ ଯାହା ଟିକିଏ ରହିଛି । ଅମ୍ବିକା ଅପମାନର ସ୍ମୃତି ବର୍ତ୍ତମାନ ଅସ୍ତଗାମୀ ସୂର୍ଯ୍ୟଭଳି ମନକୁ ରଙ୍ଗେଇ ରଖିଛି ମାତ୍ର, ବାର୍ଦ୍ଧକ୍ୟଜନିତ ଅକ୍ଷମତା, ଅବସାଦ, କ୍ଳାନ୍ତି ମଝିରେ ମଝିରେ ତାଙ୍କୁ ହତୋତ୍ସାହ କରିଦେଉଛି । କେବଳ ଗୋଟାଏ ଅଭ୍ୟାସ ଆଉ ଜିଦ୍‌ର ନିଶାରେ ଯେମିତି ସେ କରିବା ପାଇଁ ବାଧ ହେଉଛନ୍ତି । କିନ୍ତୁ ଭିତରର ଘୁମନ୍ତ ପ୍ରତିହିଂସାକୁ ଆଉ ସେ ଜାଗ୍ରତ କରିପାରୁ ନାହାନ୍ତି । ଅନେକବାର ଚେଷ୍ଟା କଲେଣି । ତଥାପି ପାରୁ ନାହାନ୍ତି । ଅସ୍ଥିରତା ଅଧିକରୁ ଅଧିକ ବଢ଼ିଛି । ହାରିଯାଇଛନ୍ତି ସେ । ମନ କଣ କରିବାକୁ ଚାହୁଁଛି ଭଲଭାବେ ସେ ବୁଝିପାରୁ ନାହାନ୍ତି । ମନେହୁଏ ମହତ୍ କିଛି ଗୋଟାଏ ହେବାର ଥିଲା କିନ୍ତୁ ପ୍ରତିହିଂସାର ଦ୍ୱନ୍ଦ୍ୱ, ପ୍ରତିଶୋଧର ଉନ୍ମତ୍ତତାର ତାତି ଯେମିତି ତାଙ୍କୁ ଋଷିର ଆସନରୁ ଜଣେ

ସାଧାରଣ ମଣିଷର ଆସନକୁ ଖସେଇ ଆଣିଛି । ତେବେ ସାଧାରଣ ମଣିଷଟିଏ ମଧ୍ୟ ସେ ହୋଇପାରିଲେନି ।

ପାଣ୍ଡବଙ୍କ ବାରବର୍ଷର ବନବାସ ବ୍ୟାସଦେବଙ୍କୁ କ୍ଳାନ୍ତ କରି ତୋଳିଲା । ଗୋଟାଏ ବିପର୍ଯ୍ୟୟ ପରେ ଦୀର୍ଘ ପ୍ରତୀକ୍ଷାର ଦିନଗୁଡ଼ିକ ଭୟଙ୍କର ଆଉ ଦୁଃସହ ମନେହେଲା । ଜୀବନର ଗତି କେତେ ବିଚିତ୍ର । ତାର ପ୍ରତିଟି ବାଙ୍କରେ କେତେ ଘଟଣ ଅଘଟଣ, ବିପର୍ଯ୍ୟୟ, ଝଡ଼-ଝଞ୍ଜା । କେତେ ଆଶା ନେଇ ମଣିଷ ତାର ସଂସାର ଗଢ଼େ, ଆଉ ମଣିଷର ସେଇ ସ୍ୱପ୍ନ ସଂସାରକୁ ସୃଷ୍ଟିକର୍ତ୍ତା କେତେ ନିପୁଣ ଭାବେ ଭାଙ୍ଗିଦିଏ ! ମଣିଷର ଜୀବନଟା ନଦୀର ଉଠାପକା, ହଜିଲା ଖୋଜିଲା ଭଳି କେତେବେଳେ ପୂର୍ଣ୍ଣଗର୍ଭା ତ କେତେବେଳେ ଶୁଖିଲା ଝଡ଼ । ପାଣ୍ଡବଙ୍କ ଜୀବନରେ ଯାହା ଘଟିଗଲା ତାହା ଯେ ସେମିତି ଗୋଟାଏ 'ବଡ଼ କିଛି' ଥିଲା, ଅନ୍ତତଃ ସେମାନଙ୍କୁ ଦେଖି କେବେହେଲେ ତାହା ମନେ ହେଉନଥିଲା ବ୍ୟାସଦେବଙ୍କର । ସତତା, ନିଷ୍ଠା, ବିଶ୍ୱାସ ଓ ଧୈର୍ଯ୍ୟର ସହିତ ସେମାନେ ବର୍ଷ ପରେ ବର୍ଷ ବଣରେ କଟେଇବାକୁ ଲାଗିଲେ । ଅଥଚ ସେଥିପାଇଁ କୌଣସି ପ୍ରତିବାଦ, ବିଦ୍ରୋହ କିମ୍ୱା ନିୟମ ଭାଙ୍ଗିବାର ପ୍ରବଣତା ସେମାନେ ଦେଖାଇ ନ ଥିଲେ । ଏକମାତ୍ର ଲକ୍ଷ୍ୟ ଆଡ଼କୁ ଦୃପ୍ତ ଗତିରେ ଅବିଚଳିତ ଭାବେ ଆଗେଇ ଚାଲିଲେ ।

କେତୋଟି ବର୍ଷ କଟିଗଲା । ବ୍ୟାସଦେବ ପାଣ୍ଡବମାନଙ୍କର ସଂଯମ, ନିଷ୍ଠା, ସତ୍ୟ ଓ ଧର୍ମ ପ୍ରତି ଅକୁଣ୍ଠ ଶ୍ରଦ୍ଧା ଦେଖି କେବଳ ଆଶ୍ଚର୍ଯ୍ୟ ତ ହେଲେନି ତାଙ୍କ ଭିତରେ ମଧ୍ୟ ଗୋଟିଏ କୋମଳ ଅନୁଭୂତି ସୃଷ୍ଟି ହେଲା । ସତ୍ୟ ଓ ଧର୍ମର ଯେ ନିଜସ୍ୱ ଗୋଟାଏ ଦୀପ୍ତି ଅଛି, ଶକ୍ତି ଅଛି, ସେଇ ତେଜ ପାଣ୍ଡବଙ୍କ ଆଖିରେ, ମୁହଁରେ ଉଦ୍‌ଭାସିତ ହେଉଥିବା ଦେଖିପାରିଥିଲେ ବ୍ୟାସଦେବ । ଲାଞ୍ଛନା, ଅପମାନ, ପ୍ରତିହିଂସାର ଯନ୍ତ୍ରଣାକୁ ଛାତିରେ ଚାପି ରଖି ବିପୁଳ ଶକ୍ତି ଓ ଅମିତ ତେଜରେ ସେମାନେ ଉଜ୍ଜ୍ୱଳି ଉଠୁଥିଲେ । ସେଇ ଜ୍ୟୋତିର୍ମୟ ମୁଖଶ୍ରୀ, ଦୀପ୍ତ ବରାଭୟ ରୂପ, ଗୋଟାଏ ଫୁତ୍‌କାରରେ ବ୍ୟାସଦେବଙ୍କ ଅନ୍ତରର ସବୁ ଦ୍ୱିଧା ଓ ଦ୍ୱନ୍ଦ୍ୱକୁ ଉଡ଼େଇ ନେଲା । ମନରେ ବଳ ଆସିଲା । ବୃଦ୍ଧ ବୟସରେ ମଧ୍ୟ ନୂତନ ଉତ୍ସାହରେ ସେ ତାଙ୍କ ପାଖରେ ଠିଆ ହେଲେ । ପାଣ୍ଡବଙ୍କ ସଂସ୍ପର୍ଶରେ ତାଙ୍କ ଭିତରର ତେଜ ଓ ସାହସ ପୁଣି ସଂକ୍ରମିତ ହେଲା । ମନେହେଲା ପୃଥିବୀର ଦୁଃଖ, ସନ୍ତାପ, ଦୁଃଖ ଦୁର୍ବିପାକ ସହିତ ସେମାନେ ବହୁକାଳ ପର୍ଯ୍ୟନ୍ତ ସଂଗ୍ରାମ କରିପାରିବେ । କେବଳ ଅମ୍ବିକା ଉପରେ ପ୍ରତିଶୋଧ ନେବାପାଇଁ ଯୁଦ୍ଧଟିଏ ଆବଶ୍ୟକ । ଗୋଟାଏ ଭୟଙ୍କର ଯୁଦ୍ଧ, ବଡ଼ ଯୁଦ୍ଧ । ଯେଉଁ ଯୁଦ୍ଧର ସ୍ମୃତି ଆଉ ଆଖିର ପାଣି ଆଗାମୀ ପ୍ରଜନ୍ମରେ ମଧ୍ୟ ପୋଛି ହୋଇପାରିବନି ।

ବ୍ୟାସଦେବ ଗୋଟାଏ ସ୍ଥିର ସିଦ୍ଧାନ୍ତରେ ପହଞ୍ଚିଲେ । ମନେ ମନେ କହିଲେ, ଚାଲିବାଟା ହିଁ ମୋର ଭାଗ୍ୟ । କୋଉଠି ସ୍ଥିର ହେଇ ରହିବା ପାଇଁ ମୋର ଜନ୍ମ ହେଇନି । କାହାର ଭବିଷ୍ୟତ ନଷ୍ଟ କରିବା ମଧ୍ୟ ମୋର କାମ ନୁହେଁ । ମୁଁ ଏକ ଚଳମାନ ମହାକାଳ । ଈଶ୍ୱର ମୋରି ଭିତରେ, ମୋରି ଦ୍ୱାରା ତାଙ୍କ କାର୍ଯ୍ୟ କରାଉଛନ୍ତି । ମନ ଭିତରକୁ ତାଙ୍କରି ନିର୍ଦ୍ଦେଶ ଆସୁଛି । ଆଉ ବସି ରହିବାକୁ ବେଳ ନାହିଁ । ଈଶ୍ୱର ତାଙ୍କୁ ପାଦରେ ଚାଲିବା ପାଇଁ ଶକ୍ତି ଦେଲେ ।

ବ୍ୟାସଦେବ ଉଠିଲେ ଧୀରେ ଧୀରେ । କୁଟୀରର ଦ୍ୱାରଦେଶ ବାହାରକୁ ଆସି ଠିଆ ହେଲେ । ଅନ୍ଧକାର ଫିକା ହେଇଯାଇଥିଲା । ଗଛର ଡାଳେ ଡାଳେ ପକ୍ଷୀମାନଙ୍କର କାକଳୀ ଶୁଭୁଥିଲା । ନିଦ ଭାଙ୍ଗିଯାଇଥିଲା ସେମାନଙ୍କର ।

ବ୍ୟାସଦେବଙ୍କ ଜୀବନର ଏକ ମହାସଂଗ୍ରାମ ଆରମ୍ଭ ହେଲା । ସମଗ୍ର ଜୀବନହିଁ ସେ ସଂଗ୍ରାମ କରି ଆସିଛନ୍ତି । କିନ୍ତୁ ଗୋଟାଏ ସଂଗ୍ରାମକୁ ଅତିକ୍ରମ କରିବାକୁ ଯାଇ ଆଉ ଗୋଟାଏ ସଂଗ୍ରାମର କେନ୍ଦ୍ରସ୍ଥଳରେ ପହଞ୍ଚି ଆତ୍ମପରୀକ୍ଷାର ମୁଖାମୁଖି ଠିଆ ହେଇଛନ୍ତି । ତାଙ୍କ ସଂଗ୍ରାମ କେବଳ ବାହ୍ୟଜଗତ ସହିତ ନୁହେଁ, ଭିତର ଜଗତ ସହିତ ମଧ୍ୟ ଯେଉଁ ସଂଗ୍ରାମ ଆଉ ବିରୋଧ ତାହା ସବୁଠାରୁ ବଳି ଭୟଙ୍କର ଓ କଠିଣ । ବ୍ୟାସଦେବ ସେଇ କଠୋର ସଂଗ୍ରାମର ମୁହାଁମୁହିଁ ହେବାପାଇଁ ଦ୍ୱୈତବନକୁ ଯାତ୍ରା କଲେ ।

ଦ୍ୱୈତବନର ପଥ ଚାହିଁ ବସିଥିଲେ ଯୁଧିଷ୍ଠିର । ପ୍ରତିଦିନ ଭାବୁଥିଲେ ଆଜି ହିଁ ହୁଏତ ପିତାମହ ଆସି ପହଞ୍ଚିଯିବେ । କିନ୍ତୁ ଦିନ, ମାସ, ବର୍ଷ ବଢ଼ିଯାଇଥିଲା । ବ୍ୟାସଦେବ ଆସୁନଥିଲେ । ଏହା ମଧ୍ୟରେ ସଖା କୃଷ୍ଣ, ବଳରାମ ଏବଂ ଯାଦବ ପ୍ରଧାନମାନଙ୍କୁ ନେଇ ସଦଳବଳେ ଦ୍ୱୈତବନ ଘୂରି ବୁଲିଗଲେ । ଅନେକ ବ୍ରାହ୍ମଣ, ମୁନିଋଷିଗଣ ମଧ୍ୟ ଆସିଥିଲେ । କେହି କେହି ତ ସେମାନଙ୍କ ସହିତ ରହିଗଲେ ମଧ୍ୟ । କିନ୍ତୁ ପିତାମହଙ୍କର ଦର୍ଶନ ନ ଥିଲା ।

ଅବଶେଷରେ ପ୍ରତୀକ୍ଷାର ପ୍ରହର ଶେଷ ହେଲା । ସେତେବେଳକୁ ଖରା ମଧ୍ୟାହ୍ନ ଝାଇଁ ଝାଇଁ କରୁଥିଲା । ପବନ ଗରମ ଲାଗୁଥିଲା । ବ୍ୟାସଦେବଙ୍କ ସମଗ୍ର ଶରୀରରେ ସ୍ୱେଦବିନ୍ଦୁ ଛୋଟ ଛୋଟ ମୁକ୍ତା ଭଳି ଫୁଟିଉଠିଥିଲା । ପଞ୍ଚପାଣ୍ଡବ କେହି କୁଟୀରରେ ନ ଥିଲେ । ଦ୍ରୌପଦୀ ନିଜ ହାତରେ ରନ୍ଧନ ପାଇଁ କିଛି କାଠ ସଜାଡୁଥିଲେ କୁଟୀର ଭିତରେ । ସହସା ସେହି ସ୍ଥାନରେ ମଣିଷର ଛାଇ ପଡ଼ିବା ଦେଖି ଦ୍ରୌପଦୀଙ୍କ ଛାତି ଧଡ଼ଧଡ଼ କରିବାକୁ ଲାଗିଲା । ବିଦ୍ୟୁତ୍‌ଗତିରେ ସେ କଟୁରି ଧରି ଠିଆ ହୋଇପଡ଼ିଲେ । କିନ୍ତୁ ପିତାମହଙ୍କୁ ଦେଖି ଭୀଷଣ ଲଜ୍ଜିତ ଓ ସଂକୁଚିତ ହେଇଗଲେ । ମୁଣ୍ଡ ଉପରକୁ ଓଢ଼ଣା ଟାଣି, ଗଳବସ୍ତ୍ର ହୋଇ ପ୍ରଣାମ କଲେ । ତା'ପରେ ସ୍ୱହସ୍ତରେ ପାଣି ଆଣି ପଦ ପ୍ରକ୍ଷାଳନ କରି ବାରଣ୍ଡା ଉପରେ ଆସନ ପକାଇ ଦେଇ ବସାଇଲେ ।

ଛୋଟ ଛୋଟ ଗୋଟାଏ ଦୁଇଟା ପ୍ରଶ୍ନ ଓ କୁଶଳ ଜିଜ୍ଞାସା ପରେ ବ୍ୟାସଦେବ କ'ଣ କହିବେ ବୁଝିପାରିଲେ ନାହିଁ । ଦ୍ରୌପଦୀଙ୍କ ପାଇଁ ମନଭିତରଟାରେ ସେ ଛଟପଟ କରୁଥିଲେ । ତାଙ୍କୁ ସାନ୍ତ୍ୱନା ଦେବାପାଇଁ ନୁହଁ, ତାଙ୍କ ପ୍ରତି ସହାନୁଭୂତି ଓ ସମବେଦନାରେ । ମନେ ମନେ କହିଲେ, କଲ୍ୟାଣୀ, ତୁମକଥା ଭାବିଲେ ମନରେ ମୋର କଷ୍ଟଜାତ ହୁଏ । ଛାତି ଭିତରଟା କେମିତି ହେଇଯାଏ । କିନ୍ତୁ ଏସବୁ ଯେ କାଳର ଖେଳ । ଏହିପରି ଭାବେ ମହାକାଳ ଲୋଭ, ଅହଙ୍କାର, ମାତ୍ସର୍ଯ୍ୟର ପ୍ରତିଶୋଧ ନିଏ । ଗୋଟାଏ ସଂସାର, ଗୋଟାଏ ବଂଶର ଭୂଗୋଳ, ଇତିହାସ ଏଇମିତି ପୋଛି ହେଇ ଲିଭିଯାଏ । ଗୋଟାଏ ତୁଚ୍ଛ ଭୁଲର ଉନ୍ମାଦନାରେ ମଣିଷ ସହିତ ମଣିଷର କିମ୍ବା ଗୋଟାଏ ଦେଶ ସହିତ ଦେଶର ସଂପର୍କ ତିକ୍ତ ହୁଏ । ସେଇ ଫାଙ୍କରେ ଗୋଟାଏ ଆଶ୍ୱସ୍ତିର ସର୍ବନାଶୀ ଅଙ୍କୁର ମୁଣ୍ଡଟେକି ଠିଆ ହୁଏ । ସେ ଅଙ୍କୁରଟି ଯେ କାଳର ନିୟମରେ ନିଃଶବ୍ଦ ଭାବେ ଲୋକଚକ୍ଷୁର ଅନ୍ତରାଳରେ ଗୋଟି ଗୋଟି ହୋଇ ଶାଖା ପ୍ରଶାଖା ମେଲେଇ ବିଶାଳ ଆକାର ଧାରଣ କରେ କେହି ଦେଖିପାରୁନା । ଲକ୍ଷ୍ୟ ମଧ କରୁନା । କୌରବ ପାଣ୍ଡବଙ୍କ ପୁରୁଣା ବିରୋଧର ଫାଟରେ ତୁମେ ହିଁ ସେଇ ଅଶ୍ୱତ୍ଥ ବୃକ୍ଷ । ମହାକାଳର ଇନ୍ଧନ ତୁମେ । ପାଣ୍ଡବଙ୍କର ଏଇ ବନବାସ, ଏହା ମଧ କାଳର ଗତିରେ ଏକ ଫଳଶ୍ରୁତି । କାଳ ପୂର୍ଣ୍ଣ ହେବା ପର୍ଯ୍ୟନ୍ତ ସମସ୍ତଙ୍କୁ ପ୍ରତୀକ୍ଷା କରିବାକୁ ପଡ଼ିବ । ଆଉ ଏହି ଅଶ୍ୱତ୍ଥ ବୃକ୍ଷଟି ଭଳି ନିଃଶବ୍ଦରେ ନିଜ ଭିତରର ଶକ୍ତି ଓ ତେଜ ତୁମ ଭିତରେ ରହିଛି କଲ୍ୟାଣୀ । ତୁମେ ହିଁ ପାରିବ । ମହାକାଳର ରଥରେ ସାରଥୀ ତୁମେ ।

କଥାବାର୍ତ୍ତା ଭିତରେ ଯୁଧିଷ୍ଠିର ଆସି ପହଞ୍ଚିଲେ । କୁଟୀରରେ ଦ୍ରୌପଦୀଙ୍କ ସହିତ ବ୍ୟାସଦେବ ଆଳାପରତ ଥିବା ଦେଖି ସେ ଟିକିଏ ଅବାକ୍ ହେଇଗଲେ । ଛାତି ଭିତରଟା ଶିର୍‌ଶିରେଇ ଉଠିଲା ।

ଦ୍ୱୈତବଣରେ ପାଣ୍ଡବମାନଙ୍କ ସହିତ ବେଶ୍ କିଛିଦିନ ଆନନ୍ଦରେ କଟାଇଲେ ବ୍ୟାସଦେବ । ଏତେଦିନର ଘଟଣାବଳୀ ସବୁକୁ ପର୍ଯ୍ୟାଲୋଚନା କରି, ଘଟଣାମାନଙ୍କ ଭିତରୁ ଅନେକ ବ୍ୟାଖ୍ୟା ଖୋଜିବାକୁ ଚେଷ୍ଟା କଲେ ସେ । କିନ୍ତୁ ଥରେ ମଧ ମନେହେଲାନି ଯୁଧିଷ୍ଠିର ବର୍ତ୍ତମାନର ପରିସ୍ଥିତିକୁ କଟାଇ ଉପରକୁ ଉଠିବା ପାଇଁ କିଛି ଗୋଟାଏ ବ୍ୟବସ୍ଥା କରୁଛନ୍ତି । ତେବେ ଏତିକି ଅନୁଭବ କରିପାରିଲେ ଯେ, ସଂସାରରେ ସମସ୍ତ ଦୁଃଖକଷ୍ଟକୁ ସାମ୍ନା କରି ସେ ସଂଗ୍ରାମ କରିବାକୁ ଚାହୁଁଛନ୍ତି - ଧର୍ମ ପାଇଁ, ସତ୍ୟର ପ୍ରତିଷ୍ଠା ପାଇଁ । ଏହି ଆଦର୍ଶ ନେଇ ହିଁ ସେ ବର୍ଷଗୁଡ଼ିକ କଟେଇ ଚାଲିଛନ୍ତି । କିନ୍ତୁ ଏଭଳି ଭାବେ ଦିନକ ପରେ ଦିନ କଟେଇ ଯୁଧିଷ୍ଠିର ଭୁଲ କରୁଛନ୍ତି । ହୁଏତ ଏସବୁ ତାଙ୍କ ଜୀବନର ଯୋଗ ବିଯୋଗର ଭୁଲ । ଏହି ଭୁଲକୁ ସୁଧାରିବାକୁ ହେବ ।

ବ୍ୟାସଦେବ ପାର୍ଶ୍ୱବର୍ତ୍ତୀ କୁଟୀର କକ୍ଷକୁ ଯାଇ ଡାକିଲେ- ବତ୍ସ ଯୁଧିଷ୍ଠିର ! ବ୍ୟସ୍ତ ହୋଇ କକ୍ଷ ଭିତରେ ପ୍ରବେଶ କଲେ ଯୁଧିଷ୍ଠିର । ମୁହଁରେ ଉତ୍କଣ୍ଠାର ଚିହ୍ନ । ଉଦ୍‌ବିଗ୍ନ ହୋଇ ପ୍ରଶ୍ନ କଲେ, ପିତାମହ ! ଏତେ ରାତିରେ... ଆପଣଙ୍କ ଶରୀର କ'ଣ ଅସୁସ୍ଥ... ?

ବ୍ୟାସଦେବ ଚମକିପଡ଼ି ଚାହିଁଲେ, ସେତେବେଳକୁ ସତରେ ଚାରିଆଡ଼ ଅନ୍ଧକାର । ଘଟଣାର ଆକସ୍ମିକତାରେ ଟିକିଏ ଲଜ୍ଜିତ ହେଲେ ସେ, କିନ୍ତୁ ମୁହୂର୍ତ୍ତକ ପାଇଁ । ପରକ୍ଷଣରେ ମନେ ମନେ କହିଲେ, ହେଉ ରାତି, ଯୁଧିଷ୍ଠିରର ନିଦ୍ରାରେ ଯେତେ ବ୍ୟାଘାତ ଘଟୁନା କାହିଁକି, ତାଙ୍କୁ ଲଜ୍ଜା ଲାଗିଲେ ଚଳିବନି, ସଂକୋଚ କରି ଅଟକିଗଲେ ମଧ ହେବନି । ଏହି ନିରୋଳା ନିଃଶବ୍ଦ, ନିର୍ଜନ ଅନ୍ଧକାର ହିଁ ଉପଯୁକ୍ତ । ବର୍ତ୍ତମାନ ସମସ୍ତେ ନିଘୋଡ଼ ନିଦରେ ଶୋଇଛନ୍ତି । ନିଭୃତରେ ଯୁଧିଷ୍ଠିର ସହିତ ଆଲୋଚନା ପାଇଁ ଏହାହିଁ ବୋଧହୁଏ ସବୁଠାରୁ ଉତ୍କୃଷ୍ଟ ସମୟ ।

ବ୍ୟାସଦେବଙ୍କ କଣ୍ଠସ୍ୱରରେ ଅନ୍ୟ ପାଣ୍ଡବମାନଙ୍କର ମଧ ନିଦ୍ରାଭଙ୍ଗ ହେଲା । ସେମାନେ ଉତ୍‌କଣ୍ଠିତ ହୋଇ କକ୍ଷରୁ ବାହାରକୁ ଆସିଲେ । ବ୍ୟାସଦେବ ସମସ୍ତଙ୍କୁ ନେଇ ଗୋଟିଏ ଶାଳ୍ମଳୀ ବୃକ୍ଷ ତଳକୁ ଗଲେ । ଟିକିଏ ମୃଦୁହସି କହିଲେ- 'ମୋ ଆଖିକୁ ନିଦ ନାହିଁ ବୋଲି ତୁମ ସମସ୍ତଙ୍କର ମୁଁ ନିଦ୍ରା ଭଙ୍ଗ କଲି । ଯେତେଦିନ ଏମିତି ଗଡ଼ିଚାଲୁଛି, ତମମାନଙ୍କୁ ଦେଖି ମୋତେ ଆଶ୍ଚର୍ଯ୍ୟ ହିଁ ଲାଗୁଛି । କେତେ ନିଶ୍ଚିନ୍ତ ଭାବେ ତୁମେ ସବୁ କାଳକ୍ଷେପଣ କରୁଛ । ହୃତରାଜ୍ୟର ପୁନରୁଦ୍ଧାର କଥା ଥରେ ମଧ ତୁମ ମନକୁ ତ ସ୍ପର୍ଶ କରୁନି ? କେମିତି ତାକୁ ଉଦ୍ଧାର କରିବ ? ଜାଣୁ ଜାଣୁ ଦୁର୍ଯ୍ୟୋଧନକୁ ସୁଯୋଗ ଦେଇଦେବ । ତାକୁ ଜାଣି ମଧ ଏଭଳି ଭୁଲ କଲ କାହିଁକି ? ଥରେ ଅଧିକାର ହରେଇଲେ ଫେରି ପାଇବା ବଡ଼ କଠିଣ । ତୁମେମାନେ ମଧ ଉତ୍ତମ ଭାବେ ଜାଣ, ଅଧିକାର କେହି କାହାକୁ କେବେ ଦିଏନା, ଅଧିକାର ଆଦାୟ କରିବାକୁ ପଡ଼େ । ହେଲେ ତୁମର ସେଇ ଉଦ୍ୟୋଗ କାହିଁ ?

ବେଶ୍ କିଛିକ୍ଷଣ ଧରି ଯୁଧିଷ୍ଠିର ଅନ୍ଧାର ଭିତରକୁ ଚାହିଁ ରହିଥିଲେ । ଦୀର୍ଘଶ୍ୱାସ ଟାଣି କହିଲେ, 'ବାରବର୍ଷର ବନବାସ ଏବଂ ଏକ ବର୍ଷ ଅଜ୍ଞାତବାସର ସର୍ତ୍ତ ପୂରଣ ହେଲେ, ଦୁର୍ଯ୍ୟୋଧନ ରାଜ୍ୟ ଫେରାଇଦେବା କଥା... ।'

ଗମ୍ଭୀର କଳାରେ ବ୍ୟାସଦେବ ପ୍ରଶ୍ନ କଲେ- ଯଦି ସେ ସର୍ତ୍ତ ନ ମାନିବ, କଣ କରିବ ସେତେବେଳେ - ତାହେଲେ ତ ଆମେ ଯୁଦ୍ଧ କରିବୁ ।

— ଯୁଦ୍ଧ ପାଇଁ ତୁମର ପ୍ରସ୍ତୁତି କାହିଁ ? କଣ ନେଇ, କାହାକୁ ନେଇ ତୁମେ ଯୁଦ୍ଧ କରିବ ? ସୈନ୍ୟବଳ, ଅସ୍ତ୍ରଶସ୍ତ୍ର, ରଥ, ଗଜ କାହିଁ ତୁମର ? କିଏ ତୁମକୁ ସାହାଯ୍ୟ କରିବ ? କିଏ ଅଛି ତୁମର ?

ଯୁଧିଷ୍ଠିର ଚମକି ଉଠିଲେ । ଚାହିଁଲେ ବ୍ୟାସଦେବଙ୍କୁ । ରୁଦ୍ଧ ଅଭିମାନରେ ତାଙ୍କର କଣ୍ଠସ୍ୱର ବଦଳିଗଲା ଭଳି ଶୁଭିଲା । କହିଲେ, ପାଞ୍ଚାଳ, ବୃଷ୍ଣି ଏବଂ ଯାଦବମାନେ ସମସ୍ତ

ଶକ୍ତି ଦେଇ ଆମକୁ ଯୁଦ୍ଧରେ ସାହାଯ୍ୟ କରିବେ । ସେମାନଙ୍କର ପ୍ରତିଶ୍ରୁତିକୁ ଆମେ ସଂଦେହ କରିବା କାହିଁକି ?

ବ୍ୟାସଦେବଙ୍କ ଭ୍ରୂକୁଞ୍ଚିତ ହୋଇଗଲା । ଭ୍ରୂକୁଟୀ କରି ସେ କହିଲେ- ସ୍ଥାନ, କାଳ ଓ ପରିସ୍ଥିତି ଆଦି ଯେମିତି ଅଛି କାଲିକୁ ସେଭଳି ନ ଥାଇପାରେ । ଆଜିର ପ୍ରତିଶ୍ରୁତିକୁ ନେଇ ଆଗାମୀ କାଲିକୁ କେମିତି ବିଚାର କରିବ ତୁମେ ? ସ୍ଥାନ କାଳ ପରିସ୍ଥିତି ଭେଦରେ ମଣିଷର ଚିନ୍ତା ଚେତନା ଓ ବିଚାର ବଦଳି ଯାଇଥାଏ । ତାକୁ ପ୍ରତିଶ୍ରୁତି ଭଙ୍ଗ ବୋଲି ବିଚାର କଲେ ତା ପ୍ରତି ଅବିଚାର ହେବ ବତ୍ସ !

ଯୁଧିଷ୍ଠିର ଟିକିଏ ଅସ୍ୱସ୍ତି ଭୋଗ କରୁଥିଲେ । ଛାତି ଭିତରଟା ଆନ୍ଦୋଳିତ ହୋଇଯାଉଥିଲା । କିଛି ସମୟ ପର୍ଯ୍ୟନ୍ତ ବାକ୍ସ୍ଫୂର୍ତ୍ତି ଘଟିଲା ନାହିଁ । ତା'ପରେ ଧୀରେ ଧୀରେ କହିଲେ, ମହର୍ଷି ଏଭଳି କୌଣସି ଉତ୍କଣ୍ଠା କିମ୍ବା ସଂଶୟ ପ୍ରକାଶର କାରଣ ଅଛି କି ?

ବ୍ୟାସଦେବ ଯୁଧିଷ୍ଠିରଙ୍କ ସଂଶୟରେ କ୍ରୋଧ ପ୍ରକାଶ କରିପାରିଥାନ୍ତେ । କିନ୍ତୁ ଯୁଧିଷ୍ଠିର ଯେ ଖୁବ୍ ସହଜ ଓ ସରଳ । କୂଟନୀତିରେ ଏତେ ଅଭିଜ୍ଞ ନୁହେଁ । ତେଣୁ ହିଁ ଯଥାସମ୍ଭବ ଶାନ୍ତ ଚିତ୍ତରେ ଟିକିଏ ହସି କହିଲେ 'ସତେ ନା କ'ଣ' ? ଦୁର୍ଯ୍ୟୋଧନ ବିଶାଳ ଆର୍ଯ୍ୟାବର୍ତ୍ତର ତିନିଚତୁର୍ଥାଂଶ ନରପତିଙ୍କ ସମର୍ଥନ ଦ୍ୱାରା ପୁଷ୍ଟ । ତା'ପକ୍ଷରେ ଅଗଣିତ ବୀର । ଏହି ଅବସ୍ଥାରେ ଯେ କୌଣସି ଦେଶ ତା ପକ୍ଷରେ ବିରୁଦ୍ଧାଚରଣ କରିବା ସହଜ ନୁହେଁ । ଦୁର୍ଯ୍ୟୋଧନ ଆକ୍ରାନ୍ତ ହେଲେ ବୃହତ୍ ଆର୍ଯ୍ୟାବର୍ତ୍ତ ତାଙ୍କୁ ସାହାଯ୍ୟ କରିବାପାଇଁ ଆଗେଇ ଆସିବ । ଏହାର ଅର୍ଥ ବୃଷ୍ଣି ବା ପାଞ୍ଚାଳକୁ ଏକ ବିରାଟ ଯୁଦ୍ଧର ଘନଘଟା ମଧ୍ୟରେ ତୁମକୁ ସାହାଯ୍ୟ କରିବାକୁ ପଡ଼ିବ । ମୋର ବିଶ୍ୱାସ ଅସଲ କାର୍ଯ୍ୟ ବେଳକୁ ତୁମ ପାର୍ଶ୍ୱରେ ସେମାନେ କେବେବି ନ ଥିବେ । ନିଜେ ହିଁ ତୁମକୁ କିଛି କରିବା ପାଇଁ ପଡ଼ିବ ।

କଥାଗୁଡ଼ାକୁ ଖୁବ୍ ମନଦେଇ ଶୁଣିଥିଲେ ଯୁଧିଷ୍ଠିର । ତାଙ୍କୁ ନିରବ ରହିବା ଦେଖି ବ୍ୟାସଦେବ କହିଲେ, କୌରବ ପକ୍ଷରେ ଭୀଷ୍ମ, ଦ୍ରୋଣ, କୃପ, ଅଶ୍ୱତ୍ଥାମା, କର୍ଣ୍ଣ, ଦୁର୍ଯ୍ୟୋଧନ, ଭୂରିଶ୍ରବା, ଜୟଦ୍ରଥ, ଦୁଃଶାସନ, ଶଲ୍ୟଙ୍କ ଭଳି ଅଗଣିତ ଯୋଦ୍ଧା, ବୀରଶ୍ରେଷ୍ଠ ଅଛନ୍ତି । ଏହି ପରିସ୍ଥିତିରେ ତୁମେ ଯଦି ଶ୍ରେଷ୍ଠ, ଶକ୍ତିଶାଳୀ ଅସ୍ତ୍ରଶସ୍ତ୍ର ସଂଗ୍ରହ ନ କର, ମିତ୍ରବଂଧୁ ସ୍ଥାପନ ପାଇଁ ପ୍ରୟାସ ନକର ତାହେଲେ ତୁମେ ହୃତରାଜ୍ୟ ପୁନରୁଦ୍ଧାର କରି ପାରିବ ନାହିଁ । ବନବାସ କାଳରେ ତୁମେ ସତ୍ୟପାଳନ କରୁଛ କିନ୍ତୁ ଧର୍ମ ତ ପାଳନ କରୁ ନାହଁ । ରାଜାର ଧର୍ମ ହେଲା ରାଜ୍ୟ ଜୟ କରିବା । ବାହୁବଳ, ଅସ୍ତ୍ରବଳ, ସୈନ୍ୟବଳକୁ ସଂପ୍ରସାରିତ କରିବା । ରାଜାର ତ କର୍ମୋଦ୍ୟମ କେବେ ଅଟକେ ନାହିଁ । ରାଜା କେବେହେଲେ କ୍ଷୁଦ୍ରରାଜ୍ୟର ସୀମା ଭିତରେ ସନ୍ତୁଷ୍ଟ ରହେନା । ସେ ବିସ୍ତାର ଚାହେଁ । ନୂଆ ନୂଆ ରାଜ୍ୟ ଜୟ କରିବାକୁ ଚାହେଁ । ତୁମର ଏହି ରାଜଦର୍ପ, ଶୌର୍ଯ୍ୟବୀର୍ଯ୍ୟ, ଆଉ

ତେଜ କାହିଁ ? ବନବାସର ସମୟକୁ ତୁମେ ସବୁ ଅଳସ ଆରାମ ଭିତରେ ଅପଚୟ କରିଦେଇଛ । ଅଥଚ ତୁମର ଅନେକ କିଛି କରିବା ପାଇଁ ଅଛି । ଏତେ ଆଘାତ ସହି ମଧ୍ୟ ତୁମେମାନେ ଆତ୍ମନିର୍ଭରଶୀଳ ହୋଇପାରିଲ ନାହିଁ । ଆଜି ମଧ୍ୟ ତୁମେମାନେ ଛୋଟ ପିଲା ଭଳି ନିର୍ଭରଶୀଳ ଏବଂ ପରମୁଖାପେକ୍ଷୀ ।

ବ୍ୟାସଦେବଙ୍କ ବାକ୍ୟବାଣ ଯୁଧିଷ୍ଠିରଙ୍କ ମନକୁ ବିଦ୍ଧ କଲା । କର୍ତ୍ତବ୍ୟ ନ କରି ଥିବା ହେତୁ ଭିତରେ ଭିତରେ ନିଜକୁ ସେ ଅପରାଧୀ ମନେକରୁଥିଲେ ହୁଏତ ସତକଥା, ଏଇଟା ତାଙ୍କର ଅନ୍ୟାୟ ହୋଇଛି ଖୁବ୍ । ଉଦ୍ୟୋଗ ଓ ଉଦ୍ୟମ ହିଁ ତ ସୌଭାଗ୍ୟର ମୂଳ ହେତୁ । ଦୈବବଳ ସଂଗେ ଉଦ୍ୟୋଗ ଓ ଉଦ୍ୟମ ଯୁକ୍ତ ହେଲେ ଯାଇ ସୌଭାଗ୍ୟ ଅର୍ଜନ କରାଯାଏ । ଏସବୁ ଜାଣି ବୁଝି ମଧ୍ୟ ସେ କିଛି କରି ନାହାନ୍ତି । ନିଜେ ନିଜ ଅପରାଧ ଅନୁଭବ କରି ନିରବ ରହିଲେ ଯୁଧିଷ୍ଠିର ଏବଂ ଅନ୍ୟମନସ୍କ ଭାବେ ଦୀର୍ଘ ନିଃଶ୍ୱାସ ଛାଡ଼ିଲେ । ଅନ୍ୟ ପାଣ୍ଡବମାନେ ମୁହଁପୋତି ବସି ରହିଲେ । ସେମାନଙ୍କ ପାଖରେ କିଛି ଭାଷା ନ ଥିଲା କହିବାପାଇଁ ।

ବ୍ୟାସଦେବ କିନ୍ତୁ ଏସବୁକୁ ଭ୍ରୂକ୍ଷେପ କରୁନଥିଲେ । ଅବଲୀଳାକ୍ରମେ ଖୁବ୍ ସହଜ ଭାବେ ସେ କହିଲେ : ଶୁଣ ବତ୍ସ ! ତୁମକୁ ଓ ଅର୍ଜୁନକୁ ମୁଁ ସ୍ୱର୍ଗଲୋକର ଭାଷା (ମହାଭାରତରେ ବର୍ଣ୍ଣିତ ପ୍ରତିଶତି ବିଦ୍ୟାକୁ ହିଁ ସ୍ୱର୍ଗଲୋକର ଭାଷା ବୋଲି କୁହାଯାଇଛି) ଲେଖନ ଶିଖେଇ ଦେଇଛି । ଏହି ଭାଷାକୁ ଆୟତ୍ତ କରି ଅର୍ଜୁନ ଉତ୍ତର-ପଶ୍ଚିମରେ ଇନ୍ଦ୍ରଲୋକକୁ ଯାଇ ଶ୍ରେଷ୍ଠ ଅସ୍ତ୍ର ବିଦ୍ୟା ଶିକ୍ଷା କରି ଆସୁ ଏବଂ ସେ ସବୁ ସଂଗ୍ରହ କରି ଆଣୁ ।

ବ୍ୟାସଦେବଙ୍କ କଥାରେ ବିଦ୍ୟୁତ୍‌ର ତରଙ୍ଗ ଖେଳିଗଲା ଅର୍ଜୁନଙ୍କ ଦେହମନରେ । ଶରୀର କଣ୍ଟକିତ ହେଇଉଠିଲା । ଅଦ୍ଭୁତ ଆନନ୍ଦର ଢେଉ ଖେଳିଗଲା ଭିତରେ ଭିତରେ । ଉତ୍‌ଫୁଲ୍ଲ ହୋଇ ସେ କହିଲେ, ମହର୍ଷିଙ୍କ କଥା ଶୁଣି ମୁଁ ନୂତନ ଜୀବନ ପାଇଲି । ଜ୍ୟେଷ୍ଠଙ୍କ ଆଦେଶ ପାଇଲେ ଏହି ମୁହୂର୍ତ୍ତରେ ମୁଁ ଯାତ୍ରାରମ୍ଭ କରିବାକୁ ପ୍ରସ୍ତୁତ ଅଛି ।

ସସ୍ନେହ ଦୃଷ୍ଟିରେ ଅର୍ଜୁନ ଆଡ଼କୁ ଚାହିଁଲେ ଯୁଧିଷ୍ଠିର । ତା'ପରେ ବ୍ୟାସଦେବଙ୍କୁ ଚାହିଁ କହିଲେ : ମହର୍ଷି, ଇନ୍ଦ୍ର ବିଦେଶୀ ଅର୍ଜୁନକୁ ଅସ୍ତ୍ରଶିକ୍ଷା ବା ଦେବେ କାହିଁକି ?

ଅର୍ଜୁନ ଇନ୍ଦ୍ରଙ୍କର କ୍ଷେତ୍ରଜ ପୁତ୍ର, ସେଇଥିପାଇଁ ସେ ନିଶ୍ଚୟ ଦେବେ । ଖୁବ୍ ସହଜ କଣ୍ଠରେ ବ୍ୟାସଦେବ କଥାଟାକୁ ଉଚ୍ଚାରଣ କଲେ । ପୁଣି ଟିକିଏ ରହି କହିଲେ, ଶୁଣ ତୃତୀୟ ପାଣ୍ଡବ, ଗନ୍ଧମାର୍ଦ୍ଦନ, ଇନ୍ଦ୍ରନୀଳ ପର୍ବତ ପାରିହୋଇ ଯେତେବେଳେ ତୁମେ ଯାତ୍ରା କରିବ, ସେତେବେଳେ ପଥ ମଧ୍ୟରେ କିନ୍ନର ଦେଶର ଗନ୍ଧର୍ବଗଣଙ୍କ ସହିତ ଏବଂ କିରାତମାନଙ୍କ ସହିତ ନିଶ୍ଚୟ ବନ୍ଧୁତ୍ୱ ପ୍ରତିଷ୍ଠା କରିବ । ସେମାନଙ୍କର ଅତିଥି ହୋଇ ସଂପର୍କକୁ ଆହୁରି ଗଭୀର ଏବଂ ଅନ୍ତରଙ୍ଗ କରିନେବାକୁ ଚେଷ୍ଟା କରିବ । ପ୍ରୀତିମନ୍ତ୍ର ବଳରେ ମଣିଷର ହୃଦୟକୁ

ଜୟ କରିବାର କୌଶଳ ତୁମଠାରୁ ଅଧିକ କିଏ ଜାଣେ ? ଏହି ସବୁ ପାହାଡ଼ୀ ଅନାର୍ଯ୍ୟମାନେ ଅତ୍ୟନ୍ତ ବନ୍ଧୁବତ୍ସଳ ଏବଂ ପରୋପକାରୀ । ଏମାନଙ୍କ ସାହାଯ୍ୟ ସହଯୋଗ ବ୍ୟତିରେକେ ତୁମେ ଇନ୍ଦ୍ରଲୋକରେ ପହଞ୍ଚିପାରିବ ନାହିଁ । ସେମାନେ ତୁମ ଯାତ୍ରାର ସୁବନ୍ଦୋବସ୍ତ କରିଦେବେ । ଯୋଉଥିପାଇଁ ଇନ୍ଦ୍ର ତୁମକୁ ସବୁପ୍ରକାରେ ସାହାଯ୍ୟ କରିବେ ସେ ସବୁର ବ୍ୟବସ୍ଥା ମୁଁ କରିଆସିଛି ।

ଅଦ୍ଭୁତ । ଅଦ୍ଭୁତ । ମନେ ମନେ ବାରମ୍ବାର ଉଚ୍ଚାରଣ କଲେ ଯୁଧିଷ୍ଠିର । ବିସ୍ମୟର ଆଚ୍ଛନ୍ନଭାବ କଟୁନଥିଲା ତାଙ୍କର । ଏକ ଅପାର୍ଥିବ ମୁଗ୍ଧତାରେ ନଇଁଆସୁଥିଲା ଆଖି ଦୁଇଟି । ଏକ ପରିପୂର୍ଣ୍ଣ ଆନନ୍ଦରେ ହୃଦୟ ମଥିତ ଓ ବ୍ୟଥିତ ହେଇଯାଉଥିଲା । ଆଚ୍ଛନ୍ନ କଣ୍ଠରେ ହିଁ ସେ କହିଲେ- ଅର୍ଜୁନ ନିଶାନ୍ତରେ ମହର୍ଷିଙ୍କ ଆଶୀର୍ବାଦ ନେଇ ତୁମେ ଯାତ୍ରାକର । ଆଉ କୌଣସି କାଳକ୍ଷେପଣ ଆମର ଉଚିତ ହେବ ନାହିଁ ।

କିଛିଦିନ ଅନ୍ତରେ ଦିନେ ସଂଧ୍ୟାରେ ବ୍ୟାସଦେବ ଯୁଧିଷ୍ଠିରଙ୍କୁ ନିଜ କୁଟୀରକୁ ଡକାଇଲେ । କବାଟ ଦରଆଉଜା ଥିଲା । ସନ୍ତର୍ପଣରେ ଯୁଧିଷ୍ଠିର କବାଟ ଖୋଲି ଭିତରକୁ ଗଲେ । ମୁହୂର୍ତ୍ତେ ଠିଆ ହେଇଗଲେ । କାଷ୍ଠାସନରେ ସ୍ଥିରଭାବେ ବସିଛନ୍ତି ବ୍ୟାସଦେବ । ଆଖି ବୁଜି ହେଇଯାଇଛି । ସଳଖ ଗ୍ରୀବା । ବୋଧହୁଏ ଧ୍ୟାନସ୍ଥ ଅଛନ୍ତି । କିଛି ସମୟ ପରେ ମୃଦୁକଣ୍ଠରେ ଡାକିଲେ, ଧର୍ମପୁତ୍ର ଯୁଧିଷ୍ଠିର ଆସ, ବସ । କାଲି ପ୍ରତ୍ୟୁଷରୁ ମୁଁ ଦ୍ୱୈତବନ ଛାଡ଼ି ଚାଲିଯିବି । ତେଣୁ କିଛି କଥା ତୁମକୁ କହିବା ପାଇଁ ଡାକିଲି । ଯୁଧିଷ୍ଠିରଙ୍କ ଛାତିରେ ରକ୍ତ ଚହଲି ଉଠିଲା । କୋମଳ କଣ୍ଠରେ କହିଲେ- ଆଦେଶ କରନ୍ତୁ ।

ମୃଦୁ ହସି ବ୍ୟାସଦେବ କହିଲେ, ଯଦି ତିରସ୍କାର କରିବି !

ତାହେଲେ ତାହା ମୋର ପ୍ରାପ୍ୟ ବୋଲି ମନେକରିବି । କୋମଳ କଣ୍ଠରେ ହିଁ ଉତ୍ତର ଦେଲେ ଯୁଧିଷ୍ଠିର । କହିଲାବେଳେ ତାଙ୍କ ମୁଖମଣ୍ଡଳ କରୁଣ ଦିଶୁଥିଲା ।

ତାଙ୍କ ମୁହଁକୁ ଚାହିଁ ବ୍ୟାସଦେବ ମୁହୂର୍ତ୍ତଟିଏ ସ୍ଥିର ହୋଇଗଲେ । ତାପରେ ହସି ହସି କହିଲେ- ଏଠାରେ ତୁମେ ବହୁ ଅନୁରାଗୀ ପ୍ରଜାଙ୍କୁ ନେଇ ଯେଉଁ ବିରାଟ ସଂସାର ପାତି ବସିଛ, ତାହା ତୁମ ପାଇଁ ଆଉ ଅନୁକୂଳ ନୁହେଁ ବତ୍ସ ! ତୁମର ଏହି ବଣରେ ବାସ କରିବା ଆଉ ଉଚିତ ହେବ ନାହିଁ । ଗୋପନୀୟ ରାଜନୈତିକ କାର୍ଯ୍ୟକଳାପ ପାଇଁ ଏହା ମୋଟେ ଉପଯୁକ୍ତ ନୁହେଁ । ଏମାନଙ୍କୁ ଇନ୍ଦ୍ରପ୍ରସ୍ଥ ଓ ହସ୍ତିନାପୁରକୁ ଫେରିଯିବା ପାଇଁ କୁହ । ଯଦି କିଏ ସେଠାକୁ ଫେରିଯିବା ପାଇଁ ଭରସା ପାଉ ନାହାନ୍ତି ତା'ହେଲେ ପାଞ୍ଚାଳକୁ କିମ୍ବା ଦ୍ୱାରକାକୁ ଯାଇ ରହିବା ପାଇଁ କୁହ । ତୁମେମାନେ ତୀର୍ଥଯାତ୍ରା କରିବା ଆଳରେ ଏହି ଅରଣ୍ୟ ତ୍ୟାଗ କରି କୌଣସି ଉଚ୍ଚ ପର୍ବତଦେଶରେ ଯାଇ ବାସକର । ନୈମିଷାରଣ୍ୟ ଅତିକ୍ରମ କରି, ଗୋମତୀ ନଦୀ ପାରି ହୋଇ କନ୍ୟାତୀର୍ଥ, ଅଶ୍ୱତୀର୍ଥ, ଗୋତୀର୍ଥ ହୋଇ କାଳକୋଟି ଏବଂ

ବିଷଗ୍ରସ୍ତ ପର୍ବତରେ ଯାଇ ବାସକର । ସେଠି ଲୋମଶ ଋଷି ଅଛନ୍ତି । ତାଙ୍କ ନିକଟରୁ ବହୁ ଶାସ୍ତ୍ର ଶିକ୍ଷା କରିପାରିବ ଏବଂ ଶ୍ରେଷ୍ଠ ଓ ଦୁଷ୍ପ୍ରାପ୍ୟ ଦେବାସ୍ତ୍ରଗୁଡ଼ିକୁ ସଂଗ୍ରହ କରି ପ୍ରତ୍ୟାବର୍ତ୍ତନ କରିବ । ତୁମେ ସବୁ ଏହା ସହିତ ବଦରିକାରେ ନରନାରାୟଣଙ୍କ ଆଶ୍ରମରେ ମିଳିତ ହେବ । ଯେତେବେଳେ ସେଇ ଅଞ୍ଚଳ ଅତିକ୍ରମ କରିବ ସେତେବେଳେ ସେହିସବୁ ଅଞ୍ଚଳରେ ଅନାର୍ଯ୍ୟ ପାହାଡ଼ୀ ମଣିଷଙ୍କ ସହିତ ସଂପର୍କ ସ୍ଥାପନ କରି ଆସିବ । ବିଶାଳ ଭାରତ ଭୂଖଣ୍ଡରେ ଏଇମାନଙ୍କ ସଂଖ୍ୟା ସବୁଠାରୁ ବେଶି । ଏମାନେ ଖୁବ୍ ବିଶ୍ୱସ୍ତ ଓ ହୃଦୟବାନ୍ । ତୁମର ଅନାର୍ଯ୍ୟ ପ୍ରୀତି ସମଗ୍ର ଭାରତବର୍ଷରେ ସୁବିଦିତ ଅଛି । ଏମାନଙ୍କ ବନ୍ଧୁତ୍ୱ ଲାଭ ହିଁ ହେବ, ତୁମ ହୃତରାଜ୍ୟ ପୁନରୁଦ୍ଧାରର ଗୋଟାଏ ବଡ଼ କାର୍ଯ୍ୟ । ଯଦି ଭାରତ ଯୁଦ୍ଧ ଅନିବାର୍ଯ୍ୟ ହୁଏ ତାହେଲେ ଏମାନେ ହେବେ ତୁମର ବିଶ୍ୱସ୍ତ ଆତ୍ମନିବେଦିତ ସୈନିକ । ଅଣନିଃଶ୍ୱାସୀ ହୋଇ ଏକାଥରକେ ଅନେକଗୁଡ଼ିଏ କଥା କହି ଦେଇ ଟିକିଏ ନିଃଶ୍ୱାସ ନେଲେ ବ୍ୟାସଦେବ ।

ଉତ୍ତରରେ କଣ କହିବେ ଭାବିପାରୁ ନ ଥିଲେ ଯୁଧିଷ୍ଠିର । କୃତଜ୍ଞତାରେ, ଆନନ୍ଦାତିଶଯ୍ୟରେ ତାଙ୍କ ଛାତି କୁଣ୍ଢେମୋଟ ହେଇଯାଉଥିଲା । କିନ୍ତୁ ସେଇ ମୁହୂର୍ତ୍ତରେ କିଛିକ୍ଷଣ ପାଇଁ ନିଜ ଭାବନାରେ ଅନ୍ୟମନସ୍କ ହେଇଉଠିଲେ ସେ । ଦ୍ୟୁତ କ୍ରୀଡ଼ାରେ ସର୍ବସ୍ୱ ହରାଇ ଯେତେବେଳେ ସୁଦୂର ବଣକୁ ଆସି ବସବାସ କରିବାକୁ ଲାଗିଲେ, ସେତେବେଳେ ତାଙ୍କ ଆଖି ଆଗରେ ଭବିଷ୍ୟତ ବୋଲି କିଛି ନ ଥିଲା । ବୋଧହୁଏ ବର୍ତ୍ତମାନ ବୋଲି ମଧ୍ୟ କିଛି ନ ଥିଲା । କେବଳ ଅତୀତଟିଏ ଥିଲା । ପୁଣି ସେଇ ଅତୀତଟା ମଧ୍ୟ ଏତେ ଭୟଙ୍କର ଥିଲା ଯେ, ସ୍ମରଣ ମାତ୍ରକେ ଭୟ ଜାଗ୍ରତ ହେଉଥିଲା । ବାସ୍ତବରେ କହିବାକୁ ଗଲେ ଯାହାର ଆଶା ଥାଏ, ତାର ଭବିଷ୍ୟତ ଥାଏ । ଦିନେ କାମ୍ୟକ ବନରେ ଶ୍ରୀକୃଷ୍ଣଙ୍କୁ ନିକଟରେ ପାଇ ତାଙ୍କର ଏଇ କଥା ମନେ ହେଇଥିଲା । ତେବେ ସେଇ ଆଶାର ଆଲୋକକୁ ଜଳେଇଲା ଭଳି କୌଣସି ଇନ୍ଧନ ନ ଥିଲା । ବ୍ୟାସଦେବ ଆଜି ତାଙ୍କୁ ସେଇ ଆଶାର ଆଲୁଅ ଦେଖାଇ ଦେଇଛନ୍ତି ବୋଲି ମନେ ହେଲା । ପ୍ରତ୍ୟୟ ଆସିଲା ନିଜ ଉପରେ । ଭରସା ହେଲା କେବଳ ତାହା ନୁହେଁ ଭବିଷ୍ୟତର ଗୋଟାଏ ସ୍ପଷ୍ଟ ଛବିକୁ ସେ କଳ୍ପନା କରିପାରୁଥିଲେ ।

ଭାବୁ ଭାବୁ ଛାତି ଭିତରଟା କେମିତି ହେଇଯାଉଥିଲା । ଗଭୀର ଶ୍ରଦ୍ଧାରେ ମନ ଦୀନ ହେଇଗଲା । ଆବେଗରେ ମଥାନତ ହେଇଯାଉଥିଲା । ଅସ୍ଫୁଟ ସ୍ୱରରେ ନମ୍ର ହୃଦୟରେ ସେ କହିଲେ, ଆପଣଙ୍କ ଇଚ୍ଛା ଓ ପ୍ରଚେଷ୍ଟାରୁ ହିଁ ଯାହାସବୁ ହେଇଛି । ଆପଣ ନ ଥିଲେ, ହସ୍ତିନାରେ ଆମର ସ୍ଥାନ ହିଁ ନ ଥାନ୍ତା । ଆଜି ଯେତେବେଳେ ଇନ୍ଦ୍ରପ୍ରସ୍ଥ ପୁଣିଥରେ ହରାଇଲୁ, ସେତେବେଳେ ମଧ୍ୟ ଆପଣ ହିଁ ତାକୁ ଫେରିପାଇବାର ସ୍ୱପ୍ନକୁ ଜାଗ୍ରତ କରିଛନ୍ତି । ଆଶାର ପ୍ରଦୀପ ଜଳେଇଛନ୍ତି ଏଇ ମନରେ । ଆପଣଙ୍କର ଏଇ ଅପାର କରୁଣା ଆଉ ସ୍ନେହରେ କୌଣସି ତୁଳନା ନାହିଁ । କୃତଜ୍ଞତା ଜଣେଇବାକୁ ଭାଷା ନାହିଁ ମୋ ପାଖରେ । କେବଳ ଗୋଟାଏ ନିବେଦନ ଅଛି, ଅନୁମତି ଦେଲେ ନିବେଦନ କରିବି ।

ବ୍ୟାସଦେବ କହିଲେ, ନିର୍ଭୟରେ କୁହ ବତ୍ସ !

— ବାରବର୍ଷର ସମାପନାନ୍ତେ କୋଉଠି କିପରି ଅଜ୍ଞାତ ବାସ କରିବୁ ଆପଣ ସେଇ ସଂପର୍କରେ କିଛି ଉପାୟ ନିର୍ଦ୍ଧାରଣ କରି ଆମକୁ ନିର୍ଦ୍ଦେଶ ଦିଅନ୍ତୁ ।

ଟିକିଏ ହସି ବ୍ୟାସଦେବ କହିଲେ- ବିରାଟ ରାଜାଙ୍କ ଗୃହରେ ତୁମେମାନେ ରହିବ । ଯଥା ସମୟରେ ମୁଁ ତାଙ୍କୁ କେତେଜଣ କର୍ମୀ ନିୟୋଗ କରିବା ପାଇଁ ଅନୁରୋଧ କରିବି । ମୋ କଥା କେବେ ବିରାଟ ଅମାନ୍ୟ କରିବେ ନାହିଁ । ତୁମେମାନେ ତାଙ୍କର କର୍ମଚାରୀ ହୋଇ ପ୍ରଚ୍ଛନ୍ନ ଭାବେ ବାସ କରିବ । ଭୁଲରେ ମଧ୍ୟ ବିରାଟକୁ ତୁମର ଅସଲ ପରିଚୟ ଜଣାଇବ ନାହିଁ ।

## ।। ଦଶ ।।

ବାରବର୍ଷର ବନବାସ ଏବଂ ବର୍ଷକର ଅଜ୍ଞାତବାସ ନିର୍ବିଘ୍ନରେ ଶେଷକଲେ ପାଣ୍ଡବମାନେ । ଆତ୍ମପ୍ରକାଶ ହେଲା ଖୁବ୍ ନାଟକୀୟ ଏବଂ ରାଜକୀୟ ଭାବେ । ଯୁଦ୍ଧର ଭେରୀ ବାଜି ଉଠିଲା । ଅଗଣିତ ରଥ, ଅଶ୍ୱ, ହସ୍ତୀ, ରଥୀ, ମହାରଥୀ ନେଇ ଏକ ବିରାଟ ଯୁଦ୍ଧ ଆରମ୍ଭ ହେଲା ବିରାଟ ରାଜ୍ୟ ସହିତ କୌରବଙ୍କର । ପାଣ୍ଡବମାନେ ବିରାଟ ରାଜ୍ୟରେ ଆଶ୍ରିତ । ବିପନ୍ନ ବିରାଟ ରାଜାଙ୍କୁ ରକ୍ଷା କରିବା ପାଇଁ ପାଣ୍ଡବମାନେ ସେଇ ଯୁଦ୍ଧରେ ଏକ ମହାବଳୀ ଦାନବ ଭଳି ଶୌର୍ଯ୍ୟବୀର୍ଯ୍ୟ, ପରାକ୍ରମ ତେଜ ଏବଂ ରଣକୌଶଳ ଦେଖାଇ ପ୍ରମାଣ କରିଦେଲେ ଯେ, ସେମାନେ ବଞ୍ଚିଛନ୍ତି । ସେତିକିରେ ସମସ୍ତେ ଜାଣିଗଲେ । ପାଣ୍ଡବମାନେ ରାଜ୍ୟ ଲାଭର ଆଶା ତ୍ୟାଗ କରି ନାହାନ୍ତି । ଏହି ଯୁଦ୍ଧ ତାର ସଂକେତ ଓ ଉପୋଦ୍‌ଘାତ ମାତ୍ର । ପାଣ୍ଡବଗଣ ବନବାସ ଓ ଅଜ୍ଞାତବାସରେ କିଛି ହରାଇ ନାହାନ୍ତି । ଶକ୍ତି କ୍ଷୟ ହେଇନି, ମିତ୍ରଲାଭରୁ ମଧ ବଞ୍ଚିତ ହେଇ ନାହାନ୍ତି । ବରଂ ଲୋକଚକ୍ଷୁର ଅନ୍ତରାଳରେ ଶକ୍ତି ସଂଗ୍ରହ କରି ଦ୍ୱିଗୁଣିତ ଭାବେ ତେଜୋଦୀପ୍ତ ହେଇ ଉଠିଛନ୍ତି । ଏହି ଯୁଦ୍ଧ ସେମାନଙ୍କର କ୍ରୋଧ, ବିଦ୍ୱେଷ ଆଉ ପ୍ରତିଶୋଧର ସ୍ପୃହାକୁ ପ୍ରକାଶିତ କରୁଛି । ଏହା ତାଙ୍କର ଇଚ୍ଛାର ସ୍ଫୁଲିଙ୍ଗ । ପ୍ରତିପକ୍ଷ ଏବଂ ଶତ୍ରୁ କୌରବମାନଙ୍କୁ ସତର୍କ ସାବଧାନ କରିବାର ଇଙ୍ଗିତ ।

ପାଣ୍ଡବଙ୍କ ବିକ୍ରମ ଦେଖି ଦୁର୍ଯ୍ୟୋଧନ ମନେ ମନେ ପ୍ରମାଦ ଗଣିଲେ । ପୁନରାୟ ପାଣ୍ଡବମାନଙ୍କୁ ବଣକୁ ପଠାଇବା ପାଇଁ ଏକ ନୂତନ ଷଡ଼ଯନ୍ତ୍ର ଆରମ୍ଭ କଲେ । ଯୁଧିଷ୍ଠିର ଇନ୍ଦ୍ରପ୍ରସ୍ଥ ଦାବି କରିବା ପୂର୍ବରୁ ଦୁର୍ଯ୍ୟୋଧନ ପାଣ୍ଡବଙ୍କ ଆତ୍ମପ୍ରକାଶ ଦିନଟିକୁ ନେଇ ହଇଚଇ ସୃଷ୍ଟି କଲେ । ହସ୍ତିନାପୁରରେ ଚହଳ ପଡ଼ିଗଲା । କହିଲେ, ପାଣ୍ଡବମାନେ ଅଜ୍ଞାତବାସ ସମାପ୍ତିର ନିର୍ଦ୍ଦିଷ୍ଟ ଦିନ ପୂର୍ବରୁ ଆତ୍ମପ୍ରକାଶ କରିଛନ୍ତି । ସୁତରାଂ ଇନ୍ଦ୍ରପ୍ରସ୍ଥ ଫେରିପାଇବାର କୌଣସି ପ୍ରଶ୍ନ ହିଁ ଉଠୁନି । ବରଂ ସେମାନେ ସତ୍ୟ ଓ ଧର୍ମଭ୍ରଷ୍ଟ ହେବା ପୂର୍ବରୁ ଯୁଧିଷ୍ଠିରଙ୍କୁ ପୁନର୍ବାର ଦ୍ୱାଦଶବର୍ଷ ବନବାସ ଏବଂ ଏକବର୍ଷ ଅଜ୍ଞାତବାସ କରିବା ପାଇଁ ପଡ଼ିବ ।

ପାଣ୍ଡବମାନଙ୍କ ଆତ୍ମପ୍ରକାଶର ଘଟଣାକୁ ନେଇ ଗୋଟାଏ ତର୍କର ଝଡ଼ ସୃଷ୍ଟି ହେବ, ଏକଥା ଆଗରୁ ବ୍ୟାସଦେବ ଜାଣିଥିଲେ । ପାଣ୍ଡବମାନେ ଚାନ୍ଦ୍ରବତ୍ସର ହିସାବ ଅନୁଯାୟୀ ବନବାସ ଏବଂ ଅଜ୍ଞାତବାସ କରିଥିଲେ । କିନ୍ତୁ ସୌରବତ୍ସର ଓ ଚାନ୍ଦ୍ରବତ୍ସର ହିସାବଗତ ପାର୍ଥକ୍ୟର ସୁଯୋଗ ନେଇ କୌରବମାନେ ଅଜ୍ଞାତବାସକୁ ମାନିଲେ ନାହିଁ । ସୌରବତ୍ସର ହିସାବରେ ଅଜ୍ଞାତବାସ ଶେଷ ହେବାର ପାଞ୍ଚମାସ ବାରଦିନ ପୂର୍ବରୁ ପାଣ୍ଡବମାନେ ଆତ୍ମପ୍ରକାଶ କରିଛନ୍ତି; କିନ୍ତୁ ବେଦବ୍ୟାସଙ୍କ ହିସାବରେ ଚାନ୍ଦ୍ରବତ୍ସର ଅନୁସାରେ ପାଣ୍ଡବମାନେ ଅଜ୍ଞାତବାସ ଶେଷ ହେବାର ତ୍ରୟୋଦଶ ଦିବସ ପରେ ଆତ୍ମପ୍ରକାଶ କଲେ । ପୁଣି ବିରାଟ ରାଜ୍ୟରେ ଗୋଧନ ହରଣକାରୀ କୌରବମାନଙ୍କ ସହିତ ପ୍ରଚ୍ଛନ୍ନ ରହି ଯୁଦ୍ଧ କରିଥିଲେ । ତଥାପି ଦୁର୍ଯ୍ୟୋଧନଙ୍କ ମତରେ ପାଣ୍ଡବଗଣ ନିର୍ବାସନର ସର୍ତ୍ତ ଭାଙ୍ଗିଛନ୍ତି । ସୁତରାଂ ହୃତରାଜ୍ୟ ପ୍ରତ୍ୟାର୍ପଣର ଦାବି ଗ୍ରହଣଯୋଗ୍ୟ ନୁହେଁ ।

ପାଣ୍ଡବଙ୍କର ସମସ୍ତ ପ୍ରକାରର ଦୌତ୍ୟ ନିଷ୍ଫଳ ହେଲା । ରଣଭେରୀ ବାଜି ଉଠିଲା । ପ୍ରତିହିଂସା, ପ୍ରତିଶୋଧ, ଅବିଚାର ଏବଂ ଅଧର୍ମର ବହ୍ନି ଜଳିଉଠିଲା ସରସ୍ୱତୀ ନଦୀ ତୀରବର୍ତ୍ତୀ କୁରୁକ୍ଷେତ୍ର ପ୍ରାଙ୍ଗଣରେ ।

ଭୀଷ୍ମଙ୍କ ଶରଶଯ୍ୟା ସମ୍ବାଦ ଶୁଣି ବ୍ୟାସଦେବଙ୍କର ସାରା ରାତି ନିଦ ହେଲା ନାହିଁ । କେତେ କଥା, କେତେ ଘଟଣା, କେତେ ଚିତ୍ର ମନେପଡ଼ିଗଲା । ସେସବୁ କଥା ମନେପଡ଼ିଲେ ହିଁ ଶାନ୍ତି, ସ୍ୱସ୍ତି ଅନ୍ତର୍ହିତ ହୁଏ । ଦୁଃଖ ବେଦନାରେ ମନ ଭାରାକ୍ରାନ୍ତ, ବିଷଣ୍ଣ ହେଇଉଠେ; ଭୀଷ୍ମଙ୍କ ସହିତ ତାଙ୍କର କୌଣସି ତିକ୍ତତା କେବେ ନ ଥିଲା କିମ୍ବା ପ୍ରକାଶ୍ୟରେ କଥା କଟାକଟି କିମ୍ବା ରାଗରୁଷା କିଛି ହେଇନି । ଅଥଚ ଭିତରେ ଭିତରେ ଦୁହେଁ ଦୁହିଁଙ୍କ ସହିତ ଲଢ଼ିଛନ୍ତି ଗୋପନରେ, ଯଥେଷ୍ଟ ସାବଧାନରେ-ବ୍ୟବଧାନ ରଖି । ସେହି ଜଟିଳ କୁଟିଳ ପ୍ରତିଦ୍ୱନ୍ଦ୍ୱିତାର ପରିଣାମ ହିଁ ପାଣ୍ଡବ-କୌରବଙ୍କ ମହାସମର । ଭୀଷ୍ମ ନିଜ ଭୁଲର, ବିଦ୍ୱେଷର, ଘୃଣା ଆଉ ପକ୍ଷପାତିତାର ପ୍ରାୟଶ୍ଚିତ୍ତ କରିବାକୁ ହିଁ ଯେମିତି ଆତ୍ମହନନ / ଅଥଚ ଇଚ୍ଛାମୃତ୍ୟୁର ପଥ ବାଛି ନେଇଛନ୍ତି । କୌରବଙ୍କ ନିକଟରେ ନିଜ ବିବେକ, ସତ୍ୟ ଧର୍ମକୁ ବିକ୍ରି କରିଦେବାର ଆତ୍ମଗ୍ଳାନିରେ ଜର୍ଜରିତ ମନ ଏମିତି ତ ହଜାରେ ଶରରେ ବିଦ୍ଧ ହୋଇଅଛି । ଦୈହିକ ମୃତ୍ୟୁର ଯାତନା ତା ତୁଳନାରେ କିଛି ନୁହେଁ, ଏହା ବୁଝେଇବା ପାଇଁ ସେ ଅସ୍ତ୍ର ତ୍ୟାଗ କରିଛନ୍ତି । ଆଗାମୀ ପିଢ଼ି ନିକଟରେ ତାଙ୍କ ଅନ୍ୟାୟ, ଅପରାଧ, ପାପକୁ ଲୁଚେଇ ରଖିବା ପାଇଁ ଏହା ଏକ ଅଦ୍ଭୁତ କୌଶଳ ବୋଲି ବ୍ୟାସଦେବଙ୍କର ମନେହେଲା । ଭୀଷ୍ମ ଜାଣନ୍ତି ମୁହଁର କ୍ଷମା, କ୍ଷମା ନୁହେଁ । ପୁଣି କ୍ଷମା ସମସ୍ତଙ୍କୁ ତ କରାଯାଇପାରେନା... କ୍ଷମା ଚାହିଁବା ଭିତରେ ବି ସେମିତି କିଛି ମହତ୍ତ୍ୱ ନାହିଁ । କିନ୍ତୁ ଯାହା ଫଳରେ କ୍ଷମାଦ୍ୱାରା ଅତିରିକ୍ତ ଶ୍ରଦ୍ଧା ମିଳେ, ସେଥିପାଇଁ ତାଙ୍କର ଏହି ଯୁଦ୍ଧକ୍ଷେତ୍ରରେ ମୃତ୍ୟୁବରଣ । ସେ ଯେମିତି ସମସ୍ତ ଶ୍ରଦ୍ଧାର

ଭାଜନ ହୋଇପାରିବେ, ସେଇ ଉଦ୍ଦେଶ୍ୟ ହିଁ ଏହି ଇଚ୍ଛାମୃତ୍ୟୁରେ ଥିଲା । ଭୀଷ୍ମଙ୍କ ଆତ୍ମହତ୍ୟାର ସଂବାଦ ତେଣୁ ହିଁ ବ୍ୟାସଦେବଙ୍କ ମନରେ କୌଣସି ସହାନୁଭୂତି ଉଦ୍ରେକ କଲା ନାହିଁ । ତଥାପି ଭିତରେ ଭିତରେ ତାଙ୍କ ପାଇଁ କେମିତି ଦୁଃଖ ହେଲା ମନରେ ।

ସମଗ୍ର ରାତ୍ରି ଅନିଦ୍ରାରେ କଟେଇ ଆତ୍ମସମାଲୋଚନା କରୁ କରୁ ବ୍ୟାସଦେବଙ୍କର ମନେହେଲା ତାଙ୍କର ମଧ୍ୟ କୋଉଠି କିଛି ଭୁଲ ରହିଯାଇଛି । ହୁଏତ ତାଙ୍କ ଜୀବନର ଯୋଗ ବିଯୋଗର ଭୁଲ । ଆଶ୍ରମିକ ଜୀବନରେ ମନେହେଉଥିଲା ବୋଧହୁଏ ସେ ସମସ୍ତ ବନ୍ଧନରୁ ମୁକ୍ତି ପାଇଛନ୍ତି । ତାଙ୍କର ତ ନିଜ ବନ୍ଧନ କିଛି ନାହିଁ, କେବଳ ଜନନୀ ସତ୍ୟବତୀଙ୍କୁ ଛାଡ଼ିଦେଲେ । ସେ ହିଁ ତାଙ୍କର ସଂସାର ଏବଂ ସାମାଜିକ ବନ୍ଧନ । ଦିନେ ସେଇ ବନ୍ଧନଟା ତାଙ୍କ ଜୀବନର ସବୁଠାରୁ ବଡ଼ ବନ୍ଧନ ହେଇଉଠିଥିଲା । କିନ୍ତୁ ସେଦିନ ଥରକ ପାଇଁ ବି ଏକଥା ମନେ ହୋଇନଥିଲା । ବରଂ ସେ ଭାବିଥିଲେ, ଯିଏ ନିଜକୁ ଅସ୍ୱୀକାର କରିପାରିଛନ୍ତି ତାଙ୍କ ନିକଟରେ ତ ପ୍ରୟୋଜନଟା ଗୋଟାଏ ବନ୍ଧନ ନୁହଁ । ଦ୍ୱୈପାୟନ ଜାଣନ୍ତି ସନ୍ନ୍ୟାସ ଜୀବନରେ କାମନାରୁ, କ୍ଷୁଧାରୁ, ଆଘାତରୁ ସେ ପରିତ୍ରାଣ ପାଇଛନ୍ତି । କିନ୍ତୁ ସେଇଟା କେତେ ଭୁଲ ଥିଲା ହସ୍ତିନାପୁରକୁ ଯିବାପରେ ସେ ବୁଝି ପାରିଲେ । ବୁଝିଲେ, ପ୍ରବୃତ୍ତିର କ୍ଷୁଧା ନିକଟରୁ ସେ ମୁକ୍ତି ପାଇ ନାହାନ୍ତି କିମ୍ବା ତାକୁ ନିବୃତ୍ତ କରିବାପାଇଁ ହିଁ ଈଶ୍ୱର ଅମ୍ବିକା ମାଧ୍ୟମରେ ଅପମାନ, ପ୍ରତ୍ୟାଖ୍ୟାନ କରିଛନ୍ତି । କିନ୍ତୁ ଆଘାତ ପାଇ ସେ ଆହୁରି ଭୀଷଣ ପ୍ରତିଶୋଧପରାୟଣ ହେଇଉଠିଲେ । ରକ୍ତ ଭିତରେ ପ୍ରତିହିଂସା ଦୁର୍ବାର ହୋଇଉଠିଲା । ଲକ୍ଷ୍ୟ ସ୍ଥିର ରଖି ସେ ଆହୁରି ଆଗେଇ ଚାଲିଲେ ।

ଏହି ମୁହୂର୍ତ୍ତରେ ବ୍ୟାସଦେବଙ୍କର ମନେହେଲା, ପଥଟା ମଧ୍ୟ ସତ୍ୟ, ପଥର ଶେଷଟା ବି ସତ୍ୟ । ସବୁ ନିୟତିର ଖେଳ । ଏହି ପଥକୁ ଅତିକ୍ରମ କଲେ ବୋଲି ସେ ଜୀବନକୁ ଚିହ୍ନିପାରିଲେ । ଜାଣିପାରିଲେ ରାଜନୀତି କ'ଣ । ହୁଏତ ସେଥିପାଇଁ ତାଙ୍କୁ କିଛି କଷ୍ଟ ସହ୍ୟ କରିବାକୁ ହେଲା । ଯନ୍ତ୍ରଣା ଭୋଗିଲେ । ତାଙ୍କର ଏହି ଯନ୍ତ୍ରଣା ଦିନେ ସମସ୍ତଙ୍କର କଲ୍ୟାଣକାରୀ ହୋଇ ସମସ୍ତଙ୍କୁ ଅଭିଷିକ୍ତ କରୁ; ଏହାହିଁ ତାଙ୍କର କାମନା, ଏହାହିଁ ତାଙ୍କର ଆକାଙ୍କ୍ଷା ।

ନିଜକୁ ଭାରି ନିଃସଙ୍ଗ, ଏକୁଟିଆ ମନେ ହେଉଥିଲା । ପୃଥିବୀରେ ଦ୍ୱୈପାୟନଙ୍କ ଭଳି କେହି ଆଉ ନ ଥିବେ । କେହି ଥିବା ପାଇଁ ହୁଏତ ଜନ୍ମ ହିଁ ହୋଇନଥିବେ । କେହି ଯଦି ଥିବେ, ତା'ହେଲେ ମଣିଷର ମୁକ୍ତି କେମିତି ହେବ ? କିମିତି ଆଗେଇ ଚାଲିବ ପୃଥିବୀର ଇତିହାସ ? ଇତିହାସ ସୃଷ୍ଟି ପାଇଁ ତାର ବି ତ ଜଣେ ଭୀଷ୍ମ ଦରକାର । ଯଦି ଭୀଷ୍ମଙ୍କ ସହିତ ତାଙ୍କର କୌଣସି ଈର୍ଷା, ବିଦ୍ୱେଷ, ଘୃଣା ଭିତରେ ନ ଥାନ୍ତା, ତାହେଲେ ଏହି ଭୟଙ୍କର ଯୁଦ୍ଧ ମଧ୍ୟ ହେଇନଥାନ୍ତା । ଖୋଲିନଥାନ୍ତା ଧର୍ମର ମୁଖା । ଭଣ୍ଡାମିର ସମାଧାନ ହେଇନଥାନ୍ତା ।

ବଞ୍ଚିତ, ନିପୀଡ଼ିତ, ଲାଞ୍ଛିତ ମଣିଷର ବିଜୟ ଘଟିନଥାନ୍ତା । ଏହି ଯୁଦ୍ଧ ସେହି ବଞ୍ଚିତ, ଲାଞ୍ଛିତ, ନିପୀଡ଼ିତ ମଣିଷର ଅସ୍ତିତ୍ୱ ରକ୍ଷା ପାଇଁ ସଂଗ୍ରାମ । ଏଇ ସଂଗ୍ରାମ ଆଜି ବି ଶେଷ ହୋଇନି ।

ଅଭିମନ୍ୟୁର ମୃତ୍ୟୁରେ ପାଣ୍ଡବମାନେ ଭାଙ୍ଗିପଡ଼ିଛନ୍ତି । ଶୋକରେ, ଦୁଃଖରେ ପାଣ୍ଡବ ଶିବିର ସ୍ତବ୍ଧ । ଅର୍ଜୁନ ସ୍ତମ୍ଭିତ । ଏକ ଭୟଙ୍କର ପ୍ରତିହିଂସାରେ ମାତି ଉଠିଛନ୍ତି । ଜୟଦ୍ରଥକୁ ହତ୍ୟାକରି ପୁତ୍ରହତ୍ୟାର ପ୍ରତିଶୋଧ ନେଇଛନ୍ତି ସେମାନେ । କିନ୍ତୁ ଦ୍ରୋଣଙ୍କ ଦୁର୍ଜୟ ଆକ୍ରମଣକୁ ପ୍ରତିରୋଧ କଲାଭଳି ଅସ୍ତ୍ର ପାଣ୍ଡବଙ୍କର କାହିଁ ?

ବ୍ୟାସଦେବ ରାତିସାରା ବିଛଣାରେ ଶୋଇ ଶୋଇ ଛଟପଟ ହେବାକୁ ଲାଗିଲେ । ପାହାନ୍ତାରୁ ବିଛଣା ତ୍ୟାଗ କରି ଉଠିବସିଲେ । ସମସ୍ତ ତପୋବନ ସ୍ତବ୍ଧ । କିଛି ସମୟ ସ୍ତମ୍ଭୀଭୂତ ହୋଇ ଠିଆହେଲେ ସେ । ତାହେଲେ ? ତାହେଲେ ସେ କଣ କରିବେ ? ସେ ତ ଆଉ ଯୋଦ୍ଧା ନୁହନ୍ତି । ଯୁଦ୍ଧର ହ-ଠ-କିଛି ବୁଝନ୍ତି ନାହିଁ । ତେବେ ଆଉ ଗୋଟାଏ ଯୁଦ୍ଧର ଅଯମାରମ୍ଭ କରିଦେଇପାରନ୍ତି । ତା'ପାଇଁ ଇନ୍ଧନ ଯୋଗେଇ ଦେଇପାରନ୍ତି । ହେଲେ ଅଟକାଇପାରିବା ତାଙ୍କ ହାତକଥା ନୁହେଁ । ଅବଶ୍ୟ ଯୁଦ୍ଧ ଅଟକେଇବାର କୌଣସି ଇଚ୍ଛା, ଉଦ୍ଦେଶ୍ୟ ଓ ଲକ୍ଷ୍ୟ କିଛି ନାହିଁ ତାଙ୍କର । ବରଂ ଏଇ ଯୁଦ୍ଧରେ କିଛି ଇନ୍ଧନ ଯୋଗେଇବା ପାଇଁ ତାଙ୍କର ଏହି ମୁହୂର୍ତ୍ତରେ ପାଣ୍ଡବ ଶିବିରକୁ ଯିବାକୁ ପଡ଼ିବ । ବ୍ୟାସଦେବ ଆଉ ସ୍ଥିର ହୋଇ ବସି ରହିପାରିଲେ ନାହିଁ । ଧୀରେ ଧୀରେ ଉଠି ଆଗେଇ ଚାଲିଲେ ।

ସୂର୍ଯ୍ୟୋଦୟ ପୂର୍ବରୁ ପାଣ୍ଡବ ଶିବିରରେ ପହଞ୍ଚିଗଲେ ବ୍ୟାସଦେବ । ଏତେ ପାହାନ୍ତାରୁ ବ୍ୟାସଦେବଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲେ ଯୁଧିଷ୍ଠିର । ଚାହିଁରହିଲେ ହତଭମ୍ବଙ୍କ ଭଳି । କୌତୂହଳୀ ହେଇଉଠିଲା ଯୁଧିଷ୍ଠିରଙ୍କ ଆଖି । ସ୍ଥିର ଦୃଷ୍ଟିରେ କ'ଣ ଯେମିତି ଦେଖିବାକୁ ଲାଗିଲେ ବ୍ୟାସଙ୍କ ମୁହଁକୁ ଚାହିଁ । ଗୋଟାଏ ଅଜଣା ବିପଦର କଳ୍ପନା କରି ଉଦ୍‌ବିଗ୍ନ କଣ୍ଠରେ ପଚାରିଲେ, ମହର୍ଷି ! ଆପଣ ?

କୌଣସି ଉତ୍ତର ଦେଲେ ନାହିଁ ବ୍ୟାସଦେବ । ନିଜେ ଭିତର ଶିବିରକୁ ପଶିଗଲେ । ସେଥିରୁ ଯୁଧିଷ୍ଠିରଙ୍କ ମନର ରହସ୍ୟ ଆହୁରି ଗମ୍ଭୀର ଏବଂ ରହସ୍ୟମୟ ହେଇଉଠିଲା । କୌଣସି ଭୂମିକା ନ କରି କହିଲେ- ତୁମେ ଯୁଦ୍ଧର ସାଜସଜ୍ଜାରେ ବର୍ତ୍ତମାନ ବ୍ୟସ୍ତ । ତଥାପି ନକହିଲେ ଚଳୁନି । ଯୁଦ୍ଧର ଗତି ପ୍ରକୃତି ଦୁର୍ଯ୍ୟୋଧନକୁ ହତାଶ କରିଛି । ତେଣୁ ତୁମମାନଙ୍କୁ ବନ୍ଦୀ କରିବା ପାଇଁ ସେ ଉପାୟ ଖୋଜୁଛି । ଆଜି ସମସ୍ତ ଶକ୍ତି ନିୟୋଗ କରି ଯୁଧିଷ୍ଠିରଙ୍କୁ ହରଣ କରିବ । ଯୁଦ୍ଧ ଆରମ୍ଭରୁ ଅନେକ ଯୁଦ୍ଧର ସୂଚନା ଦେଇ ସେ ସମସ୍ତଙ୍କୁ ଏମିତି ବ୍ୟତିବ୍ୟସ୍ତ କରି ରଖିବ, ଯାହାଫଳରେ କେହି ଯୁଧିଷ୍ଠିରଙ୍କୁ ସାହାଯ୍ୟ କରିପାରିବ ନାହିଁ ଯେମିତି । ତ୍ରିଗର୍ତ୍ତାଧିପତି ସୁଶର୍ମା, ପଞ୍ଚଭ୍ରାତା ଏବଂ ତାଙ୍କର ସଂଶପ୍ତକ ବାହିନୀ ନେଇ-

ଅର୍ଜୁନଙ୍କୁ ଆମରଣ ସଂଗ୍ରାମ ପାଇଁ ଆହ୍ୱାନ କରିବ । ଦ୍ରୋଣ ପ୍ରତିଶ୍ରୁତିବଦ୍ଧ, ଯେ କୌଣସି ଉପାୟରେ ଯୁଧିଷ୍ଠିରଙ୍କୁ ବନ୍ଦୀ କରି ଦୁର୍ଯ୍ୟୋଧନ ହାତରେ ଦେବ । ଦୁର୍ଯ୍ୟୋଧନ କ୍ରୀଡ଼ାସକ୍ତ-ବନ୍ଦୀ-ଧର୍ମରାଜଙ୍କୁ ପୁନର୍ବାର ଦ୍ୟୂତକ୍ରୀଡ଼ା ପାଇଁ ଆହ୍ୱାନ କରି ଯୁଦ୍ଧର ନିଷ୍ପତ୍ତି କରିବ । ନିଷ୍ଠୁର ହାଣକଟା କିମ୍ବା ରକ୍ତପାତ ନୁହେଁ, ଦ୍ୟୂତକ୍ରୀଡ଼ାରେ ଜୟ ପରାଜୟ ନିର୍ଣ୍ଣୟ । ବର୍ତ୍ତମାନ କଣ କରିବା ଉଚିତ ବୋଲି ତୁମ୍ଭେ ସ୍ଥିର କରିଛ ?

ଯୁଧିଷ୍ଠିରଙ୍କ ମୁଖମଣ୍ଡଳ ଭୟରେ ବିବର୍ଣ୍ଣ ଓ ମଳିନ ଦିଶିଲା । ଶ୍ରୀକୃଷ୍ଣଙ୍କ ମୁଖକୁ ଅସହାୟ ଦୃଷ୍ଟିରେ ଚାହିଁ କହିଲେ : ସଖା ତୁମେ ପଥ ବଦଳାଇ ଦିଅ ।

କୃଷ୍ଣ ଅର୍ଜୁନ ମୁହଁକୁ ଚାହିଁ ଇସାରାରେ ତାଙ୍କର ଅଭିମତ ଚାହିଁଲେ । ମଥାନତ କରି ଅର୍ଜୁନ କ୍ଷୀଣ କଣ୍ଠରେ ଉତ୍ତର ଦେଲେ : ପ୍ରାଣପଣେ ମୁଁ ଅଗ୍ରଜଙ୍କୁ ରକ୍ଷା କରିବି ।

ବ୍ୟାସଦେବ ଅର୍ଜୁନଙ୍କୁ ପ୍ରଶ୍ନ କଲେ : ଦ୍ରୋଣଙ୍କ ସଂପର୍କରେ ତୁମର ମତ କ'ଣ ? ନିଃସଂକୋଚରେ ଅର୍ଜୁନ କହିଲେ : ଗୁରୁ ହତ୍ୟା କରିବା ପାଇଁ ମୁଁ ଅକ୍ଷମ । କୃଷ୍ଣ କୁପିତ ହୋଇ ବୃହସ୍ପତିଙ୍କ ନୀତିବାକ୍ୟ ଉଦ୍ଧାର କରି କହିଲେ : ସଖା ସେ ଗୁଣୀ, ଗୁରୁ କିମ୍ବା ବୃଦ୍ଧ ଯିଏ ବି ହେଉ, ଯଦି ଆତତାୟୀ ଭଳି ଆକ୍ରମଣ କରେ ତାକୁ ବଧ କରିବା ହିଁ ଧର୍ମ । ଏଇ ହତ୍ୟାରେ କୌଣସି ପାପ ହୁଏ ନାହିଁ । ସୁକୁମାର ବୃତ୍ତିର ମଧ୍ୟ କୌଣସି କ୍ଷତି ଘଟେ ନାହିଁ । ବରଂ ବିବେକ ପରିଚ୍ଛନ୍ନ ରହେ । ଧର୍ମ ପ୍ରତି ଅନୁରାଗ ଓ ଶ୍ରଦ୍ଧା ଗଭୀର ହୁଏ ।

ବ୍ୟାସଦେବ କହିଲେ : ଦ୍ରୋଣଙ୍କୁ ହତ୍ୟା କରିବା ଶକ୍ତି କିମ୍ବା ଅସ୍ତ୍ର ପାଣ୍ଡବଙ୍କ ପାଖରେ ନାହିଁ ।

ଅର୍ଜୁନ ଚମକି ପଡ଼ି ବ୍ୟାସଦେବଙ୍କ ମୁଖକୁ ଚାହିଁଲେ ।

ହତାଶ ହୋଇ ଯୁଧିଷ୍ଠିର ପଚାରିଲେ : ତାହାହେଲେ ?

ବ୍ୟାସଦେବ ଥରେ କୃଷ୍ଣଙ୍କ ଆଖିରେ ଆଖି ରଖି ଅର୍ଜୁନଙ୍କ ଆଡ଼କୁ ଅପଳକ ଦୃଷ୍ଟିରେ ଚାହିଁ କହିଲେ, ଯୁଦ୍ଧକ୍ଷେତ୍ରରେ ପ୍ରାଣରକ୍ଷା ପାଇଁ ଏବଂ ଶତ୍ରୁକୁ ହତ୍ୟା କରିବା ପାଇଁ ମିଥ୍ୟା କହିଲେ ପାପ ହୁଏ ନାହିଁ । ମିଥ୍ୟା ଓ ବିଭ୍ରାନ୍ତି ସୃଷ୍ଟି କରିବା ହେଲା ଯୁଦ୍ଧ କୌଶଳ । ତୁମେମାନେ କୌଣସି ପ୍ରକାରେ ବିଭ୍ରାନ୍ତି ସୃଷ୍ଟି କର । ଦ୍ରୋଣଙ୍କ ମର୍ମଦେଶକୁ ବିଦ୍ଧକଲା ଭଳି କିଛି ବିଭ୍ରାନ୍ତି ଦ୍ୱାରା ଆଘାତ କର । ମର୍ମବିଦ୍ଧ ଯନ୍ତ୍ରଣାରେ ଦ୍ରୋଣ ଅବସନ୍ନ ହୋଇପଡ଼ିଲେ, ଅସ୍ତ୍ର ଚାଳନା କରିବା ପାଇଁ ତାଙ୍କର ଆଉ ଶକ୍ତି ନ ଥିବ ବାହୁରେ । ଭୀଷ୍ମଙ୍କ ଭଳି ଦ୍ରୋଣ ମଧ୍ୟ ଅସହାୟତା ବରଣ କରିବେ ଯୁଦ୍ଧକ୍ଷେତ୍ରରେ ।

ସୂର୍ଯ୍ୟ ଅସ୍ତାଚଳଗାମୀ ।

ଆକାଶ ରକ୍ତ ଭଳି ଲାଲ । ପକ୍ଷୀମାନେ ଗଛ ଡ଼ାଳରେ ନିଶ୍ଚୁପ ହୋଇ ବସିଗଲେଣି । ଟିକିଏ ଆଗରୁ ଭୀମର ଗଦାଘାତରେ ଦୁର୍ଯ୍ୟୋଧନ ଜାନୁଭଙ୍ଗ ହୋଇ ରକ୍ତାକ୍ତ କଳେବରରେ ଭୂମି ଉପରେ ମାଟିରେ ପଡ଼ି ଛଟପଟ କରୁଛନ୍ତି ।

ଅମାବାସ୍ୟାର କୁହୁଡ଼ିମଖା ଅନ୍ଧକାର ଧୀରେ ଧୀରେ ମାଡ଼ିଆସୁଛି ଚାରିଦିଗରୁ । ଜଳସ୍ଥଳ ଅନ୍ତରୀକ୍ଷର ସବୁ ବାସ୍ତବତା ହଜିଯାଉଛି ସେହି ରହସ୍ୟାବୃତ୍ତ କୁହେଳି ଭିତରେ । ଦ୍ୱୈପାୟନ-ହ୍ରଦରେ ଜଳ କଳା ଦିଶିଲାଣି ।

କୁରୁବଂଶର ଶେଷ ବୀର ଏବଂ ବଂଶଧର ଦୁର୍ଯ୍ୟୋଧନ ସେତେବେଳକୁ ଦ୍ୱୈପାୟନ ହ୍ରଦକୂଳରେ ଜୀବନ ଓ ମୃତ୍ୟୁ ସହିତ ଯୁଝୁଥିଲେ । ତାଙ୍କୁ ଘେରି ମାଂସାସୀ ପଶୁପକ୍ଷୀଙ୍କ ଆଖି ସବୁ କ୍ଷୁଧାରେ, ହିଂସାରେ, ଲୋଭରେ ଜଳି ଦପ୍ ଦପ୍ କରୁଥିଲା ।

ମାଟି ଉପରେ ଦୁର୍ଯ୍ୟୋଧନ ସିଧାସଳଖ ହେଇ ଶୋଇଥିଲେ । ଖୋଲାମୁଖର ଓଷ୍ଠ ଫାଙ୍କରେ ଧପ୍ ଧପ୍ ହୋଇ ଉଜ୍ଜ୍ୱଳ ଦନ୍ତପନ୍ତି ଦିଶୁଛି । ଉନ୍ମୁକ୍ତ ଅଧରରେ ଯନ୍ତ୍ରଣାର, କ୍ଷୀଣ ଶବ୍ଦ ରହି ରହି ଭାସି ଆସୁଛି । ପଶୁମାନେ ଚଳଚଞ୍ଚଳ ହୋଇ ଉଠିଛନ୍ତି । ତଥାପି ଦୁର୍ଯ୍ୟୋଧନ ନିଜର ଦୁର୍ବଳ ଶକ୍ତିହୀନ ହାତରେ ସେମାନଙ୍କୁ ଘଉଡ଼େଇବାକୁ ପ୍ରୟାସ କରୁଥିଲେ । କ୍ରମଶଃ ଶରୀର ଅବସନ୍ନ ଓ ନିସ୍ତେଜ ହେଇ ଆସିଲା । ଧୀରେ ଧୀରେ ଲୁପ୍ତ ହେଇ ଆସୁଥିଲା ଚେତନା । ଗୋଟାଏ ଗଭୀର ନିଦ ଭିତରକୁ ସେ ତଳେଇ ତଳେଇ ବୁଡିଯାଉଥିଲେ । ହାତ ଉଠାଇବା ପାଇଁ ଶକ୍ତି ନ ଥିଲା । ଆଖିର ଡୋଳା ଓଲଟି ପଡ଼ିଲା । ଛାତିର ଉଠପଡ଼ ଗତି, ନିଃଶ୍ୱାସର ଶବ୍ଦ ବନ୍ଦ ହୋଇଗଲା । ନିଷ୍ପ୍ରାଣ ଦୁର୍ଯ୍ୟୋଧନଙ୍କୁ ନରମାଂସ-ଭୁକ୍ ଜାନୁଆରମାନେ ଘେରିଗଲେ । ପଞ୍ଝରା ମାଡ଼ି, ଦାନ୍ତ ବସେଇ ଶରୀରରୁ ମାଂସ ଛିଣ୍ଡେଇ ଖାଇବାକୁ ଲାଗିଲେ ।

ଦୂରରେ ଅନ୍ଧକାର ଭିତରେ ପାଦେ ପାଦେ ହେଇ ଆଗେଇ ଆସୁଥିଲେ ଅନାର୍ଯ୍ୟ ରମଣୀର ଜାରଜ ପୁତ୍ର ଦ୍ୱୈପାୟନ । ଅନ୍ଧାର ଭିତରେ ଠିଆ ହେଇ ସେ ଦେଖିଲେ ଅସହାୟ ଦୁର୍ଯ୍ୟୋଧନର କରୁଣ ଅନ୍ତ । ପଶୁର ଆକ୍ରମଣରେ ତିଳ ତିଳ ହେଇ କିଭଳି ଭାବେ ଯନ୍ତ୍ରଣା ଭିତରେ ମୃତ୍ୟୁବରଣ କରିଛନ୍ତି । ଦ୍ୱୈପାୟନଙ୍କ ଛାତି ଭିତରୁ ଗଭୀର ଦୀର୍ଘଶ୍ୱାସ ଓହ୍ଲେଇ ଆସିଲା । ହେଲେ ମୁଖମଣ୍ଡଳରେ କୌଣସି ପ୍ରକାରର ବିକାରଜନିତ ପ୍ରତିକ୍ରିୟା ଫୁଟି ଉଠି ନ ଥିଲା । ସେ ଯେ ନିର୍ବିକଳ୍ପ ମହାପୁରୁଷ । ତାଙ୍କର କୌଣସି ଦୁଃଖ ଅଥବା ଅନୁଶୋଚନା ହେବା କଥା ନୁହେଁ ।

ଏହି ଲୋକ ସଂହାର ଯୁଦ୍ଧର ସ୍ରଷ୍ଟା ତ ସେ ନିଜେ । ଅମ୍ବାଳିକାର ଘୃଣା, ପ୍ରତ୍ୟାଖ୍ୟାନ, ଅପମାନର ପ୍ରତିଶୋଧ ନେବେ ବୋଲି ପ୍ରତିଜ୍ଞା କରିଥିଲେ ଦ୍ୱୈପାୟନ । ଦୁର୍ଯ୍ୟୋଧନଙ୍କ ମୃତ୍ୟୁରେ ସେଇ ପ୍ରତିଜ୍ଞା ପୂରଣ ହେଲା । କୁରୁକ୍ଷେତ୍ର ଯୁଦ୍ଧର ସମାପ୍ତି ଘଟିଲା । ଶତ୍ରୁହୀନ ହେଲେ ପାଣ୍ଡବମାନେ । ବୀରଶୂନ୍ୟ ହେଲା ଆର୍ଯ୍ୟାବର୍ତ୍ତ । ରାଗ, ବିଦ୍ୱେଷ, ଘୃଣା, ପ୍ରତିଶୋଧ, ପ୍ରତିହିଂସାର ସମାପ୍ତି ଘଟିଲା ।

ସଂଧ୍ୟା ଅତିକ୍ରାନ୍ତ ।

କର୍ମର ଗୌରବମୟ ସମାପ୍ତି କରିବା ପାଇଁ ଦ୍ୱୈପାୟନ ଶେଷ ଦର୍ଶକ ହୋଇ ଦ୍ୱୈପାୟନ-ହ୍ରଦ ନିକଟକୁ ଗଲେ । ଅମାବାସ୍ୟାର ରାତ୍ରୀ ଗଭୀର ଆଲିଙ୍ଗନ ପାଶରେ ବାନ୍ଧି ରଖିଛି ସଭିଙ୍କୁ, ସବୁ କିଛିକୁ । କେହି ଆଉ କିଛି ଦେଖିପାରୁ ନାହାନ୍ତି, ଶୁଣିପାରୁ ନାହାନ୍ତି, ଜାଣିପାରୁ ନାହାନ୍ତି । କାହା ମୁଖରେ, ଆଖିରେ ଆଉ କିଛି ପ୍ରଶ୍ନବାଚୀର ଚିହ୍ନ ନାହିଁ । କେବଳ ଏକ ଧାରାବାହିକ ଅବଲୁପ୍ତି ।

(ମହାଭାରତ ପ୍ରଣେତା ମହର୍ଷି କୃଷ୍ଣଦ୍ୱୈପାୟନ - ବେଦବ୍ୟାସ ନିଜେ କାହିଁକି ମହାକାବ୍ୟର ଅନ୍ୟତମ ଚରିତ୍ର ? ମହାଭାରତରେ ତାଙ୍କର ଭୂମିକା କଣ ? କୁରୁକ୍ଷେତ୍ର ଯୁଦ୍ଧ ପାଇଁ ଇତିହାସ ନିକଟରେ ସେ କିଭଳି ଭାବରେ ଦାୟୀ ? କୁରୁକ୍ଷେତ୍ର ଯୁଦ୍ଧ କାହିଁକି ଆର୍ଯ୍ୟ-ଅନାର୍ଯ୍ୟଙ୍କର ଯୁଦ୍ଧ ?

ଏହି ଦ୍ୱନ୍ଦ୍ୱର ବୀଜ ଭୀଷ୍ମ ଏବଂ ଦ୍ୱୈପାୟନ । ଭୀଷ୍ମ ଏବଂ ବିଚିତ୍ରବୀର୍ଯ୍ୟଙ୍କ ଶ୍ୱେତାଙ୍ଗିନୀ ପତ୍ନୀ ଅମ୍ବିକା ମିଶି ଦ୍ୱୈପାୟନଙ୍କ ଅନ୍ତରରେ ଯେଉଁ ବିଦ୍ୱେଷର ବହ୍ନିଶିଖା ଜାଳିଥିଲେ, କୌରବ-ପାଣ୍ଡବ ତାଙ୍କର ସେଇ ଶିଖାର ହିଁ ଇନ୍ଧନ ଏବଂ ଶ୍ରୀକୃଷ୍ଣ ତାଙ୍କର ଜୟଲାଭର ଉପାୟ ।

ଦ୍ୱୈପାୟନ ନ ଥିଲେ କୁରୁକ୍ଷେତ୍ର ଯୁଦ୍ଧ ହେଇନଥାନ୍ତା । ଏହି କଥାକୁ ସମର୍ଥନ କରିବାକୁ ଯାଇ ଦ୍ୱୈପାୟନ କୁହନ୍ତି- "ଏହି ଯୁଦ୍ଧ ବ୍ୟତୀତ ଇତିହାସ ସୃଷ୍ଟି ହେଇ ନ ଥାନ୍ତା, ଧର୍ମର ମୁଖା ଖୋଲି ନ ଥାନ୍ତା । ଏହି ଯୁଦ୍ଧ ଯେ ନିପୀଡ଼ିତ ବଞ୍ଚିତ ମଣିଷର ଅସ୍ତିତ୍ୱ ରକ୍ଷାର ସଂଗ୍ରାମ । ଏହି ସଂଗ୍ରାମ ଆଜି ମଧ୍ୟ ଶେଷ ହେଇନି ।")



ନୂଆ ଭାରତର ସ୍ୱନକ୍ଷତ୍ର ସହିତ ସଂପୃକ୍ତ ତାଙ୍କ ନାଁ ।

ରୂପ ଓ ଆଚରଣରେ ସେ ଠିକ୍ ସେମିତି ମୁକ୍ତିକାମୀ ।

ଏବଂ ତାଙ୍କ ପ୍ରତ୍ୟେକ ସର୍ଜନକର୍ମ
ନାରୀମୁକ୍ତି ମାନସିକତାର ଉଚ୍ଚାରଣ ।
ତାଙ୍କ ରଚନାରେ ସେ ଥା'ନ୍ତି,
ଅନନ୍ତକାଳର ନାରୀ ଥାଏ । ସେଥିପାଇଁ
ସେ ସ୍ୱତନ୍ତ୍ର ।

ତାଙ୍କ ଅନୂଦିତ ଗ୍ରନ୍ଥଗୁଡ଼ିକ ମଧ୍ୟ
ସମମାନସିକତାର ପ୍ରତୀକ ।
"କୁରୁକ୍ଷେତ୍ରରେ ଦ୍ୱୈପାୟନ" ତାହାର
ଉଦାହରଣ ।



